# ପରମ ପୁରୁଷ ଶ୍ରୀଶ୍ରୀରାମକୃଷ୍ଣ

ଅଚିନ୍ତ୍ୟ କୁମାର ସେନ୍‌ଗୁପ୍ତ

ଭାଷାନ୍ତର
ଗୌର ଗୋପାଳ ଜେନା



୧ମ

।। ପରମ ପୁରୁଷ ଶ୍ରୀ ଶ୍ରୀରାମକୃଷ୍ଣ (୧ମ ଖଣ୍ଡ) ।। ଲେଖକ : ଅଚିନ୍ତ୍ୟ କୁମାର ସେନଗୁପ୍ତ ।। ଭାଷାନ୍ତର : ଗୌର ଗୋପାଳ ଜେନା ।। ପ୍ରକାଶକ : ଅଗ୍ରଦୂତ, ବାଙ୍କା ବଜାର, କଟକ - ୨ ।। ପ୍ରଥମ ପ୍ରକାଶ : ୨୦୦୧ ।। ଡି.ଟି.ପି. : ଏମ୍ ପ୍ରିଣ୍ଟର୍ସ, ଭୁବନେଶ୍ୱର ।। ମୁଦ୍ରଣ : ପରମହଂସ ଅଫ୍‌ସେଟ୍, କଟକ ।। ପ୍ରଚ୍ଛଦ : ଶଶୀକାନ୍ତ ରାଉତ ।। ମୂଲ୍ୟ : ଟ.୧୦୦/- (ସାଦା), ଟ.୧୨୦/- (ବନ୍ଧାଇ)

II **PARAM PURUSHA SRI SRIRAMAKRISHNA** II Written by : Achintya Kumar Sengupta II Trns. By : Goura Gopal Jena II Published by : Agraduta, Banka Bazar, Cuttack - 2 II Price : Rs. 100/- (Paper Back) Rs. 120/- (Bound)

ISBN81-86354-88-3



ଯାହାଙ୍କ ଉପଚାର ପାଇଁ ମୋର ଏହି କ୍ଷୁଦ୍ର ଆୟୋଜନ
ତାଙ୍କରି ଶ୍ରୀପାଦପଦ୍ମରେ ...

# ନିବେଦନ



ବଙ୍ଗ ଭାଷାରେ ଲିଖିତ ''ପରମ ପୁରୁଷ ଶ୍ରୀଶ୍ରୀରାମକୃଷ୍ଣ'' ଅଚିନ୍ତ୍ୟ କୁମାର ସେନଗୁପ୍ତଙ୍କ ଏକ ଅନନ୍ୟ ସୃଷ୍ଟି । ସାଧକ-ଶିରୋମଣି ଭଗବାନ ଶ୍ରୀରାମକୃଷ୍ଣଙ୍କ ଜୀବନକାହାଣୀ ଏହାର ଉପଜୀବ୍ୟ । ହେଲେ ହେଁ, ଏହା ଏକ ସାଧାରଣ ଜୀବନୀ-ପୁସ୍ତକ ନୁହେଁ । ଶ୍ରୀରାମକୃଷ୍ଣଙ୍କ ଲୋକୋତ୍ତର ସାଧନାଲବ୍ଧ ସିଦ୍ଧି ଏବଂ ତାଙ୍କ ଶ୍ରୀମୁଖ-ନିଃସୃତ ବାଣୀର ଏହା ଏକ ସତ୍ୟନିଷ୍ଠ ମନୋଜ୍ଞ ସାହିତ୍ୟ-ରୂପ । ତେଣୁ ବୟସ-ବିଶ୍ୱାସ-ନିର୍ବିଶେଷରେ ଏହା ପାଠକ-ଚିତ୍ତରେ ଉତ୍ତରଣର ଏକ ଶୁଚି-ଶୁଦ୍ଧ ସାରସ୍ୱତ ଶିହରଣ ସୃଷ୍ଟି କରେ । ଏହି ଶିହରଣରୁ ଏହାର ଭାଷାନ୍ତର-କଳ୍ପନାର ଉଦ୍‌ଭବ ।

ଅଚିନ୍ତ୍ୟ କୁମାର ଲେଖିଛନ୍ତି ନିଜର ବୈଦଗ୍ଧ୍ୟ ପ୍ରସୂତ ଅନୁଭୂତିରୁ, ନିଜର ଅନପେକ୍ଷ ଉପଲବ୍ଧିରୁ । ମୋର ସେ ଅନୁଭୂତି ନାହିଁ, ସେ ଉପଲବ୍ଧି ନାହିଁ । ମୁଁ ତାଙ୍କ ଭାଷାବ୍ଧିର ରୂପାନ୍ତର କରିଛି ମାତ୍ର । ମୋର ଏହି ଅବ୍ଧିମନ୍ଥନ-ଉଦ୍ୟମରୁ ଯଦି କିଛି ମଣି-ମୌକ୍ତିକ ଉପଲବ୍ଧ ହୁଏ, ସେହି ପ୍ରାପ୍ତିର ଗୌରବ ଏକାନ୍ତ ଭାବରେ ଅଚିନ୍ତ୍ୟଙ୍କର । ଯଦି କେଉଁଠି କିଛି ପଙ୍କ-କର୍ଦ୍ଦମର କ୍ଳେଦ ସ୍ପର୍ଶ ରହିଥାଏ, ତାହା ଏହି ଅକିଞ୍ଚନର ଅନିପୁଣତାର ଦୁଷ୍ପରିଣାମ ।

''ମନ୍ଦଃ କବିଯଶଃପ୍ରାର୍ଥୀ
ଗମିଷ୍ୟାମ୍ୟୁପହାସ୍ୟତାମ୍
ପ୍ରାଂଶୁଲଭ୍ୟେ ଫଳେ ଲୋଭା-
ଦୁଦ୍‌ବାହୁରିବ ବାମନଃ ।''

ବିନୀତ
**ଅନୁବାଦକ**

# କୃତଜ୍ଞତା - ଜ୍ଞାପନ

ଶ୍ରୀ ଶ୍ରୀ ଠାକୁରଙ୍କ ଅପାର କରୁଣାରୁ ''ପରମ ପୁରୁଷ ଶ୍ରୀଶ୍ରୀରାମକୃଷ୍ଣ'' ଗ୍ରନ୍ଥର ଓଡ଼ିଆ ରୂପାନ୍ତର ପ୍ରକାଶିତ ହେବାକୁ ଯାଉଛି । ଏହି ଦୁରୂହ କାର୍ଯ୍ୟରେ ମୋତେ ବହୁ ଭାବରେ ସାହାଯ୍ୟ ଓ ଉତ୍ସାହ ଦେଇଛନ୍ତି ଶ୍ରଦ୍ଧେୟ ବନ୍ଧୁ ଭଦ୍ରକର ବରିଷ୍ଠ ଆଇନଜୀବୀ ଶ୍ରୀ ରାଖାଲ ଚନ୍ଦ୍ର ଦାସ, ଅଧ୍ୟାପକ ଶ୍ରୀ ସୁଧାଂଶୁ ଶେଖର ରାୟ, ପ୍ରଖ୍ୟାତ ଅନୁବାଦ ସାହିତ୍ୟ ସ୍ରଷ୍ଟା ଶ୍ରୀ ଲକ୍ଷ୍ମୀ ନାରାୟଣ ମହାନ୍ତି, ଓଡ଼ିଶାର ସ୍ୱନାମଧନ୍ୟ ବିଦ୍ୱାନ ସାରସ୍ୱତ- ପୁରୁଷ ଶ୍ରୀ ଶରତ କୁମାର ମହାନ୍ତି ତଥା କର୍ମକ୍ଷେତ୍ରରେ ମୋର ସହକର୍ମୀ ଓ ବନ୍ଧୁ ଶ୍ରୀ ସୁଭାଷ ଚନ୍ଦ୍ର ବେନାର୍ଯୀ (ପରଲୋକଗତ), ଶ୍ରୀ ବିଭୂତି ଭୂଷଣ ନାୟକ, ଶ୍ରୀ ଫଣି ଭୂଷଣ ନାୟକ ଏବଂ ପଣ୍ଡିତ ବ୍ରଜନାଥ ରଥ । ପଣ୍ଡିତ ଶ୍ରୀ ବୀରେନ୍ଦ୍ର କୁମାର ପଣ୍ଡା ମଧ ମୋର ବହୁ ସନ୍ଦେହ-ମୋଚନରେ ସହାୟତା କରିଛନ୍ତି । ଏ ସମସ୍ତଙ୍କୁ ମୋର ବିନମ୍ର କୃତଜ୍ଞତା ଜଣାଉଛି । ଓଡ଼ିଶାର ଅନ୍ୟତମ ପ୍ରଜ୍ଞାପୁରୁଷ ବରିଷ୍ଠ ସାହିତ୍ୟିକ ମୋର ପରମ ହିତୈଷୀ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ସ୍ୱେଚ୍ଛା ପ୍ରବୃତ୍ତ ହୋଇ ଏହି ପୁସ୍ତକର ମୁଖବନ୍ଧ ଲେଖି ଦେଇଛନ୍ତି । ତାଙ୍କୁ କୃତଜ୍ଞତା ଜଣାଇବାର ଭାଷା ମୋର ନାହିଁ ।

ମୋର ମଧ୍ୟମ ଜାମାତା ପବିତ୍ର ପାଣିଗ୍ରାହୀ, ମୋର ଦୁଇ ଆତ୍ମଜ ଅଶୋକ ଏବଂ ବିକ୍ରମାଦିତ୍ୟ ଏବଂ ମୋର ପ୍ରାକ୍ତନ ଛାତ୍ର ପୁତ୍ରୋପମ ଶ୍ରୀମାନ୍ ଅଶ୍ୱିନୀ କୁମାର ସାହୁ ମୋର ଏହି ଦୁର୍ଗମ ଯାତ୍ରାପଥର ବିଭିନ୍ନ ପର୍ଯ୍ୟାୟରେ ବହୁବିଧ ସହାୟତା ଦେଇଛନ୍ତି । ସେମାନଙ୍କୁ ମୋର ସସ୍ନେହ ଶୁଭାଶିଷ । କୃତଜ୍ଞତା ଜଣାଉଛି ଆମ ରାଜ୍ୟର ଅନ୍ୟତମ ସମ୍ଭ୍ରାନ୍ତ ପ୍ରକାଶନ-ସଂସ୍ଥା 'ଅଗ୍ରଦୂତ'ଙ୍କୁ ଏବଂ ଏହାର ପରିଚାଳକ ଶ୍ରୀମାନ ମନ୍ମଥ ପଟ୍ଟନାୟକଙ୍କୁ- ଯାହାଙ୍କର ଅନାବିଳ ଆଗ୍ରହରେ ମୋର ଏହି ବହୁକାଳ ପୋଷିତ ସ୍ୱପ୍ନ ସାକାର ହୋଇ ପାରିଛି ।

ମୂଳ ବଙ୍ଗଳା ଗ୍ରନ୍ଥର ପ୍ରକାଶକ କଲିକତାର 'ମିତ୍ର ଓ ଘୋଷ ପବ୍‌ଲିଶରସ୍ ପ୍ରା: ଲି:' ଏହି ଗ୍ରନ୍ଥର ଓଡ଼ିଆ ରୂପାନ୍ତର ପ୍ରକାଶ ପାଇଁ ସାଦର ଅନୁମତି ଦେଇ ଥିବାରୁ ସେମାନେ ମୋର ବିଶେଷ ଧନ୍ୟବାଦାର୍ହ ।

ପରିଶେଷରେ, ଏହି ଗ୍ରନ୍ଥରେ ଆଉ ଜଣଙ୍କ ନାଁ ଉଲ୍ଲେଖ କରୁଛି, ଯାହାଙ୍କ ନାଁ ଏଠି ନ କହିଲେ ବି ସେ କିଛି କହିବେ ନାହିଁ, ମାତ୍ର ମୁଁ ନିଜେ ତାଙ୍କ ପାଖରେ ଅପରାଧୀ ହେବି । ସେ ହେଉଛନ୍ତି ମୋର ପତ୍ନୀ ଶ୍ରୀମତୀ ସୁଷମା- ଯାହାଙ୍କର ମୁହୂର୍ତ୍ତ ମୁହୂର୍ତ୍ତର ଖୋଞ୍ଚା ମୋତେ ଏ କାମରେ ଆଗେଇବା ପାଇଁ ପ୍ରେରଣା ଦେଇଛି ।

*'ସର୍ବେ ଭବନ୍ତୁ ସୁଖୀନୋ ସର୍ବେ ସନ୍ତୁ ନିରାମୟାଃ*
*ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚି ଦୁଃଖଭାକ୍ ଭବେତ୍ ।'*

*ବସନ୍ତ ପଞ୍ଚମୀ*
*୨୦୦୧*

*ଗୌର ଗୋପାଳ ଜେନା*

ବଙ୍ଗ ଭାଷା ସାହିତ୍ୟ କ୍ଷେତ୍ରରେ ଅନ୍ୟତମ କାଳଜୟୀ ସାରସ୍ୱତ ପୁରୁଷ ଶ୍ରୀ ଅଚିନ୍ତ୍ୟ କୁମାର ସେନଗୁପ୍ତ କେବଳ ବଙ୍ଗଦେଶରେ ପ୍ରତିଷ୍ଠିତ ନୁହନ୍ତି -ସେ ଆଜି ସମଗ୍ର ଭାରତରେ ସୁପରିଚିତ । ତାର କାରଣ ହେଲା - ତାଙ୍କ ରଚିତ ''ପରମପୁରୁଷ ଶ୍ରୀ ଶ୍ରୀ ରାମକୃଷ୍ଣ'' ଗ୍ରନ୍ଥଟି ବଙ୍ଗଦେଶର ସୀମା ଅତିକ୍ରମ କରି ଭାରତର ପ୍ରାୟ ଅଧିକାଂଶ ଭାଷାରେ ଅନୂଦିତ ହୋଇ ବହୁ ଆଦୃତ ହୋଇଛି । ଏହି ଅନନ୍ୟ ଗ୍ରନ୍ଥଟି ପଚାଶ ବର୍ଷ ତଳେ ବଙ୍ଗ ଦେଶର ପୁସ୍ତକ ବଜାରରେ ଦିନେ ଅଧିକ ବିକ୍ରିତ ପୁସ୍ତକମାନଙ୍କ ଭିତରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା । (Best Seller) ଏବଂ ଏହି ଅର୍ଦ୍ଧ ଶତାବ୍ଦୀ ଭିତରେ ଶ୍ରୀ ରାମକୃଷ୍ଣଙ୍କ ଜୀବନ ଲୀଳା ସମ୍ବନ୍ଧୀୟ ଶତାଧିକ ଗ୍ରନ୍ଥ ଭିତରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ବସିଛି ।

ଅତି ଆନନ୍ଦର କଥା ଯେ, ଭଦ୍ରକ ହାଇସ୍କୁଲର ପ୍ରାକ୍ତନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଗୌରଗୋପାଳ ଜେନା ଏହି ଗ୍ରନ୍ଥଟିର ଓଡ଼ିଆ ଅନୁବାଦ କରି ଆମ୍ଭମାନଙ୍କର ଆଶେଷ ଉପକାର କରିଛନ୍ତି । ଶ୍ରୀଯୁକ୍ତ ଜେନା ଆମ ରାଜ୍ୟର ଜଣେ ନିଷ୍ଠାପର ଶିକ୍ଷାବିଦ୍ ଓ ସାହିତ୍ୟ ସଂସ୍କୃତିପ୍ରେମୀ ମଣିଷ ।ନୈତିକ ଓ ଆଧାତ୍ମିକ ଜୀବନାଦର୍ଶନରେ ସେ ନିଜ ଜୀବନକୁ ଆଜି ପର୍ଯ୍ୟନ୍ତ ଚଳାଇ ଆସିଛନ୍ତି । ସେଥିଯୋଗୁଁ ସେ ତାଙ୍କର ଛାତ୍ରଛାତ୍ରୀମାନଙ୍କର ଭକ୍ତିଭାଜନ ଓ ଆମ୍ଭମାନଙ୍କର ଶ୍ରଦ୍ଧାଭାଜନ ହୋଇ ରହିଛନ୍ତି । ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ଇଂରାଜୀ ଭାଷାରେ ତାଙ୍କର ସମଧିକ ପ୍ରବେଶ ରହିଛି ଓ ସେ ଜଣେ ବହୁପଠିତ ପଣ୍ଡିତ ବ୍ୟକ୍ତି । ତାଙ୍କ ଦ୍ୱାରା ଅନୂଦିତ ଏହି ମହାନ୍ ଗ୍ରନ୍ଥଟିର ପାଣ୍ଡୁଲିପି ପାଠ କରି ମୁଁ ଖୁବ୍ ତୃପ୍ତି ଲାଭ କରିଥିଲି । ମୂଳ ବଙ୍ଗଳା ପୁସ୍ତକଟି ମୁଁ ବହୁବାର ମନ୍ତ୍ରମୁଗ୍ଧ ଚିତ୍ତରେ ପାଠ କରିଛି । ତଥାପି, ତାଙ୍କର ଏହି ସରଳ ସାବଲୀଳ ଶୁଦ୍ଧ ଓଡ଼ିଆ ଅନୁବାଦଟି ପାଠ କଲାବେଳେ ମୋତେ ମୂଳଗ୍ରନ୍ଥଟି ପଢ଼ିବା ଭଳି ଲାଗିଲା ଓ ମୋ ନିଜ ମାତୃଭାଷାରେ ପଢ଼ିବା ବେଳେ ମୋର ଆନନ୍ଦ ଦ୍ୱିଗୁଣିତ ହୋଇଗଲା ।

ପରମପୁରୁଷ ରାମକୃଷ୍ଣ ଆମ ଯୁଗର ଅନ୍ୟତମ ବିସ୍ମୟକର ଦେବମାନବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ତର୍କ-ବିଚାର ଯୁଗରେ - ଏହି ଜଡ଼-ବିଜ୍ଞାନର ବସ୍ତୁବାଦୀ ଯୁଗରେ ଏଭଳି ଜଣେ ଦେବପୁରୁଷଙ୍କର ବାସ୍ତବ ଆବିର୍ଭାବ ପ୍ରମାଣ କରି ଦେଲା ଯେ, ଏ ଯୁଗରେ ବି ଭଗବାନ ମର୍ତ୍ତ୍ୟରେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇପାରନ୍ତି । ତାଙ୍କର ପ୍ରିୟତମ ଶିଷ୍ୟ ଭାରତବର୍ଷର ମହାନ ବରପୁତ୍ର ଯୋଗେଶ୍ୱର ସ୍ୱାମୀ ବିବେକାନନ୍ଦ ତାଙ୍କୁ ''ଅବତାର ବରିଷ୍ଠ''

ବୋଲି ଆଖ୍ୟାତ କରିଛନ୍ତି । ରାମକୃଷ୍ଣ ତାଙ୍କର ମରଶରୀର ତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ ନିଜ ତୁଣ୍ଡରେ ପ୍ରକାଶ କରିଛନ୍ତି ଯେ ତ୍ରେତାରେ ଯେ ରାମ ରୂପରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ଦ୍ୱାପରରେ ଯେ କୃଷ୍ଣ ରୂପରେ ଅବତୀର୍ଣ୍ଣ ହୋଇଥିଲେ ଏବେ ସେ ଦୁହେଁ ଗୋଟିଏ ବିଗ୍ରହରେ ତାଙ୍କ ଭିତରେ ପ୍ରକାଶ ପାଇଛନ୍ତି । ଏହା ଅବଶ୍ୟ ବେଦାନ୍ତ ଦୃଷ୍ଟିରୁ ନୁହେଁ । କିନ୍ତୁ ଏ କଥା ସମସ୍ତେ ସ୍ୱୀକାର କରିବେ ଯେ, ଅତୀତରେ ସବୁ ଅବତାରମାନଙ୍କର ଏକ ଜ୍ୟୋତିର୍ମୟ ସମନ୍ୱୟ ହେଉଛନ୍ତି ପରମପୁରୁଷ ରାମକୃଷ୍ଣ । ମନୁଷ୍ୟ ଜାତିର ଆଧ୍ୟାତ୍ମ ଗତିପଥରେ ସେ ଏକ ଉଜ୍ୱଳତମ ଆଲୋକସ୍ତମ୍ଭ ।

ରାମକୃଷ୍ଣ ମା ସାରଦାମଣି ଓ ସ୍ୱାମୀ ବିବେକାନନ୍ଦଙ୍କୁ ଗୋଟିଏ ଦିବ୍ୟ ଚେତନାର ଦିବ୍ୟାତ୍ମତ୍ରୟୀ ଭାବେ ଗ୍ରହଣ କରାଯାଇଛି । ରୋମାରୋଲାଁ ପ୍ରମୁଖ ବହୁ ପାଶ୍ଚାତ୍ୟ ଓ ପ୍ରାଚ୍ୟ ମନୀଷୀ ରାମକୃଷ୍ଣ-ବିବେକାନନ୍ଦଙ୍କୁ ନେଇ ବହୁ ମୂଲ୍ୟବାନ ଗ୍ରନ୍ଥ ପୃଥିବୀର ବିଭିନ୍ନ ଭାଷାରେ ଲେଖି ଯାଇଛନ୍ତି । ଆଜି ସାରା ବିଶ୍ୱରେ ସର୍ବତ୍ର ରାମକୃଷ୍ଣ ମିସନ ଓ ମଠ ସ୍ଥାପିତ ହୋଇଛି । ଦିବ୍ୟଜ୍ଞାନ ବିତରଣ ଓ ଶିବ ଜ୍ଞାନରେ ଜୀବସେବା ରାମକୃଷ୍ଣ ମିସନର ସନ୍ନ୍ୟାସୀ ଓ ଭକ୍ତମାନଙ୍କ ଜୀବନ ସାଧନାର ପ୍ରଧାନ ବ୍ରତ । ରାମକୃଷ୍ଣ ନିଜେ ସର୍ବଧର୍ମ ସମନ୍ୱୟର ପୁରୋଧା । ଧର୍ମକୁ ସାଂପ୍ରଦାୟିକ ଅନ୍ଧ ସଂକୀର୍ଣ୍ଣତାରୁ ମୁକ୍ତ କରି ସେ ଏକ ଉଦାର ବିଶ୍ୱ- ଆଧ୍ୟାତ୍ମିକ ଚେତନାର ଉପଲବ୍ଧି ନିଜେ କରିଛନ୍ତି ଓ ମାନବ ସମାଜକୁ ତାର ସାଧନାର ଉପାୟ ବତାଇ ଯାଇଛନ୍ତି । କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ, ରାମକୃଷ୍ଣ ବିବେକାନନ୍ଦ ଆଦି ମନୁଷ୍ୟ ସମାଜର ଆଧ୍ୟାତ୍ମିକ ସାଧନା କ୍ଷେତ୍ରରେ ବିଶ୍ୱଗୁରୁ ସ୍ଥାନରେ ଅଧିରୂଢ଼ ହୋଇଛନ୍ତି ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ଆଦ୍ୟଭାଗ ପର୍ଯ୍ୟନ୍ତ ରାମକୃଷ୍ଣ, ବିବେକାନନ୍ଦ, ଶାରଦାମଣି ଓ ସେମାନଙ୍କୁ କେନ୍ଦ୍ର କରି ଯେଉଁ ମହାନ୍ ତ୍ୟାଗୀ ସନ୍ନ୍ୟାସୀବୃନ୍ଦ ଏବଂ ଭକ୍ତବୃନ୍ଦ ଯେଉଁ ଅଭୂତପୂର୍ବ ଅଧ୍ୟାତ୍ମଲୀଳା ସାଧନ କରିଯାଇଛନ୍ତି - ସେ ସବୁର ଅସଂଖ୍ୟ ବୃତ୍ତାନ୍ତ ଅସଂଖ୍ୟ ପୁସ୍ତକରେ ଲିପିବଦ୍ଧ ହୋଇଛି । ଆଧୁନିକ ଯୁଗରେ ରାମକୃଷ୍ଣଙ୍କର ଆବିର୍ଭାବ ସାରା ବିଶ୍ୱରେ ଧର୍ମ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଏକ ମହା ବିପ୍ଳବ ସଂଘଟନ କରିଛି । ବିଶିଷ୍ଟ ସାହିତ୍ୟିକ ଓ ଈଶ୍ୱରାନ୍ୱେଷୀ ଶ୍ରୀ ଅଚିନ୍ତ୍ୟ କୁମାର ସେନଗୁପ୍ତ ସେହି ମହାଜୀବନଲୀଳା ଓ ନିଗୂଢ଼ ରହସ୍ୟମୟ ସାଧନାର କାହାଣୀ ଗୁଡ଼ିକୁ ଅପୂର୍ବ ଏକ ଦିବ୍ୟ ଭାଷାଶୈଳୀରେ ପ୍ରକାଶ କରିଛନ୍ତି । ଏହି ପୁସ୍ତକଟି ପାଠ କଲା ବେଳେ ଆମେ ଏକାଧାରରେ ଗଭୀର ସୁକୁମାର କବିତାର ଶୁଦ୍ଧ ଭାବାବେଗ, ଉପନ୍ୟାସର ଛବିଳ ବର୍ଣ୍ଣନାମାଧୁରୀ ଓ ମହାନାଟକର ସ୍ୱର୍ଗୀୟ ରୋମାଞ୍ଚ ଅନୁଭବ କରୁ ଏବଂ ତାହା ସହିତ ସଂସାର ଓ ଈଶ୍ୱର ସମ୍ବନ୍ଧୀୟ ନିଗୂଢ଼ ତତ୍ତ୍ୱଗୁଡ଼ିକର ଅତି ସହଜ ସାବଲୀଳ ହୃଦୟଗ୍ରାହୀ ବ୍ୟାଖ୍ୟା- ମାଧୁର୍ଯ୍ୟ ଉପଲବ୍ଧି କରୁ । ଏହା ପାଠ କଲାବେଳେ ପାଠକ ସ୍ଥାନାକାଳପାତ୍ର ଜ୍ଞାନ ହରାଇ ଥାଏ ଏବଂ ଏକ ଆନନ୍ଦମୟ ଦିବ୍ୟ ତୁରୀୟ ସ୍ୱପ୍ନ ଭିତରେ ବା ରସଲୋକରେ ଅଭିଭୂତ ହୋଇଯାଏ । ସେହି ଦିବ୍ୟ ପୁରୁଷ ଓ ତାଙ୍କର ସାଙ୍ଗୋପାଙ୍ଗ ଶିଷ୍ୟ ଶିଷ୍ୟା ଅନୁଗତ ଅନୁଗତାମାନଙ୍କର ସ୍ୱର୍ଗୀୟ ପ୍ରେମଭକ୍ତିର ଲୀଳା ଜୀବନ୍ତ ଭାବେ ପାଠକର ଚିଦାକାଶରେ ପ୍ରତିଭାତ ହୋଇଯାଏ ।

ରାମକୃଷ୍ଣଙ୍କର ଏହି ଅଲୌକିକ ଲୀଳା ପ୍ରସଙ୍ଗ ଭିତରକୁ ପ୍ରବେଶ କଲେ ଆମର ମନ ଭିତରେ ଏହି ଦୃଢ଼ ପ୍ରତ୍ୟୟ ଜାତ ହୁଏ ଯେ, ଏହି ଘୋର କଳିଯୁଗରେ ମଧ୍ୟ ଏହି ଆମର ନିତ୍ୟପରିଚିତ ମର୍ତ୍ତ୍ୟ ମୃତ୍ତିକା ଉପରେ ସ୍ୱର୍ଗୀୟ ପ୍ରେମ ଓ ଜ୍ଞାନର କଳ୍ପତରୁ ଦିବ୍ୟ ପୁଷ୍ପ ଓ ଫଳରେ ଶୋଭାନ୍ୱିତ ହୋଇ ମର୍ତ୍ତ୍ୟ ଦୃଷ୍ଟିରେ ଦୃଶ୍ୟମାନ ହୋଇପାରେ ।

ଶ୍ରୀଯୁକ୍ତ ଗୌରଗୋପାଳ ଜେନାଙ୍କୁ ଅଶେଷ ଧନ୍ୟବାଦ ଯେ, ସେ ଏହି ମହାନ୍ ଗ୍ରନ୍ଥଟିକୁ ହୃଦୟର ମହାପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଏତେ ସୁନ୍ଦରଭାବେ ଆମ ମାତୃଭାଷାରେ ଅନୁବାଦ କରି ଆମର ଅଧ୍ୟାତ୍ମରସତୃଷ୍ଣାକୁ ଚରିତାର୍ଥ କରିବା ପାଇଁ ଏତେ ଶ୍ରମ ସ୍ୱୀକାର କରିଛନ୍ତି । ଏହି ଅବସରରେ ଆମେ ଅଭଜାତ ପ୍ରକାଶନୀ ସଂସ୍ଥା ଅଗ୍ରଦୂତଙ୍କୁ ମଧ୍ୟ ଏଭଳି ମହାନ୍ ଗ୍ରନ୍ଥର ପ୍ରକାଶନ ପାଇଁ ସାଧୁବାଦ ଅର୍ପଣ କରୁଛୁ ।

ମୋର ଦୃଢ଼ ବିଶ୍ୱାସ- ଏହି ଅପୂର୍ବ ଗ୍ରନ୍ଥଟି ଓଡ଼ିଆ ପାଠକ ପାଠିକାମାନଙ୍କ ଦ୍ୱାରା ବହୁ ଆଦୃତ ହେବ ଏବଂ ଆମର ଭାଷାସାହିତ୍ୟ ଭଣ୍ଡାରରେ ଏ ଗ୍ରନ୍ଥଟି ଏକ ଅମୂଲ୍ୟରତ୍ନ ରୂପେ ବିବେଚିତ ହେବ । ଇତି

**ମହାପାତ୍ର ନୀଳମଣି ସାହୁ**

୭୮୭, ଆକାଶପାତାଳ
**ସହୀଦନଗର**
ଭୁବନେଶ୍ୱର- ୭୫୧ ୦୦୭

ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା
ଆ ଯେ ଧାମାନି ଦିବ୍ୟାନି ତସ୍ଥୁଃ
ବେଦାହମେତଂ ପୁରୁଷଂ ମହାନ୍ତ-
ମାଦିତ୍ୟବର୍ଣ୍ଣଂ ତମସଃ ପରିସ୍ତାତ୍
ତମେବ ବିଦିତ୍ୱାଽତି ମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।

-ଯଜୁର୍ବେଦ

ହଁ, ମୁଁ ଈଶ୍ୱରଙ୍କୁ ଦେଖିଛି । ତୁମକୁ ଯେପରି ପ୍ରତ୍ୟକ୍ଷ ଦେଖୁଛି, ତାହାଠାରୁ ସ୍ପଷ୍ଟତର ଭାବରେ ଈଶ୍ୱରଙ୍କୁ ଦେଖିଛି । ..... ତୁମେ ଦେଖିବାକୁ ଚାହଁ ? .... ତୁମକୁ ମଧ୍ୟ ଦେଖାଇ ପାରିବି ।

- ଶ୍ରୀ ରାମକୃଷ୍ଣ

ଏଇଟା ହେଉଛି କଲିକତା ସହର । ବୁଝିଲୁ ? ତୋତେ ଏଥର ନେଇ ଆସିଲି ଏଇଠିକି । ଦେଖି ପାରୁଛୁ ତ ?

ପ୍ରକାଣ୍ଡ ସହର କଲିକତା । ଝଲମଲ କରୁଛି ଆଖି ଆଗରେ । ନ ଦେଖିବାର ଉପାୟ ନାହିଁ । ଇଏ କ'ଣ ଆମ କାମାରପୁକୁର ଗାଁ ପରି ନୀରବ ? ନିର୍ଜନ ?

ରାମକୁମାରଙ୍କ ମୁହଁରେ ଚିନ୍ତାର ଚିହ୍ନ । କହିଲେ, "କଲିକତା ଆସି ଟୋଲ ଖୋଲି ବସିଲି–"

ଦେଖୁଛି ତ ? ଆହୁରି ବି ଦେଖୁଛି, ଭାଇ ଝାମାପୁକୁରରେ କେତେ ଜଣଙ୍କ ଘରେ ଯଜମାନି କାମ ବି କରୁଛନ୍ତି । ସବୁ କାମ ତୁଲେଇବାକୁ ସମୟ ପାଉ ନାହାନ୍ତି । ଟୋଲ କାମରେ ତ ଦିନ ଯାଉଛି–

"ସେଇଥିପାଇଁ ତ ତୋତେ ଏଠିକି ନେଇ ଆସିଲି ।" କହିଲେ ରାମକୁମାର: "ଏଥର ଦି' ଅକ୍ଷର ପାଠ-ଶାଠ ପଢ଼ ।"

ପାଠ-ଶାଠ ? ବଡ଼ ବଡ଼ ସରଳ ଆଖି ଦୁଇଟି ଟେକି ଗଦାଧର ଚାହିଁଲା ଭାଇଙ୍କ ମୁହଁକୁ ।

'ହଁ, ଏଥର ଘରକୁ ଯାଇ ଦେଖିଲି, ଲେଖା ପଢ଼ାରେ ତୋର ଟିକିଏ ହେଲେ ମନ ନାହିଁ । ସାଇ ଟୋକାଙ୍କ ମେଳରେ ଦିନ ତମାମ ବୁଲୁଛୁ ଗାଁ ଦାଣ୍ଡରେ । ନ ହେଲେ ଯାତ୍ରା ଦଳରେ ମିଶି ଶିବ ପାର୍ଟ କରୁଛୁ । ଏଇ ସବୁ କାମରେ ପେଟ ପୂରିବ ?' ରାମକୁମାରଙ୍କ କଣ୍ଠ ସ୍ୱରରେ ଟିକିଏ କ୍ରୋଧ ପ୍ରକାଶ ପାଇଲା ।

ତା'ହେଲେ କଅଣ କରିବାକୁ ପଡ଼ିବ ?

ମନ ଦେଇ ପାଠ ଶାଠ ପଢ଼ିବାକୁ ହେବ । ବୟସ ଆସି ତୋର ଷୋହଳ ସତର ବର୍ଷ ହେଲା । ରତିଏ ହେଲେ ପାଠ ନାହିଁ ତୋ ପେଟରେ । ମୋ ରୋଜଗାର ତ ଦେଖୁଛୁ । ଦାଣ୍ଡରୁ ଆସେ ହାଣ୍ଡିରେ ପଶେ । –

ସେ କଥା ମୁଁ ଜାଣେ । ତେବେ କଅଣ ଶିଖିବାକୁ ପଡ଼ିବ ?

'ଶାସ୍ତ୍ର – ବ୍ୟାକରଣ –' ଗମ୍ଭୀର ହୋଇ କହିଲେ ରାମକୁମାର: 'ଟିକିଏ ମନ ଦେ ପାଠରେ । ମା'ଙ୍କ ପାଖରୁ ତୋତେ ନେଇ ଆସିଲି । ମା'ଙ୍କ ମୁହଁକୁ ପ୍ରସନ୍ନ କର ।'

ମା'ଙ୍କ ମୁହଁକୁ ପ୍ରସନ୍ନ କର ! ମା'ଙ୍କ ବିଷଣ୍ଣ ମୁହଁଟି ଦିଶିଗଲା ମନ ଭିତରେ । ତାହା କ'ଣ

କେବଳ ଚନ୍ଦ୍ରମଣିଙ୍କ ମୁହଁ ?

ସେ ମୁହଁରେ ଅଭୟପ୍ରଦା ପ୍ରସନ୍ନତା । ''ସବ୍ୟ ହସ୍ତେ ମୁକ୍ତ ଖଡ଼ଗ ଦକ୍ଷିଣେ ଅଭୟ – ।''

'ବୁଝିଲି । ହେଲେ, ଭାଇ, ଚାଉଳ - କଦଳୀ ବାନ୍ଧିବା ପାଇଁ ଯେଉଁ ପାଠ, ସେ ପାଠ ପଢ଼ି ମୋର କଅଣ ଲାଭ ? ସେ ପାଠକୁ ନେଇ ମୁଁ କଅଣ କରିବି ?'

ମାନେ ? କଅଣ କହୁଛୁ ତୁ ? ବିରକ୍ତ ହେଲେ ରାମକୁମାର ।

ମାନେ, ଅର୍ଥକରୀ ବିଦ୍ୟା ମୋର ଲୋଡ଼ା ନାହିଁ । ଯେଉଁ ବିଦ୍ୟାକୁ ନେଇ କେବଳ ଘର ସଜେଇ ହେବ – ସେ ବିଦ୍ୟା ମୋର କଅଣ ହେବ ?

'ତେବେ ତୁ କଅଣ ଚାହୁଁ ?

'ମୁଁ ଚାହେଁ ଜ୍ଞାନ ।'

କଅଣ କହୁଛି ଏ ପିଲାଟା ! କି ଭଳି ଜ୍ଞାନ ? ଏ ଜ୍ଞାନର ଅର୍ଥ କଅଣ ?

ଏ ଜ୍ଞାନର ଅର୍ଥ ନେତି । ନେତି - ନେତି କରୁ କରୁ ଶେଷକୁ ଯାହା ବାକି ରହେ ସେଇଆ । ସେହି ଏକକୁ ଜାଣିବା ହେଉଛି ଜ୍ଞାନ, ଅନେକ ଜାଣିବା– ଅଜ୍ଞାନ ।

ବୁଝିପାରିଲେ ନାହିଁ ରାମକୁମାର । କେମିତି ବୁଝିବେ ? ସଂସାରର ସୁଖ- ସମ୍ଭୋଗ ତୁଚ୍ଛ କରି ମଣିଷ ତୁଚ୍ଛା ସ୍ୱପ୍ନ ବିଳାସରେ ମାତି ରହିପାରେ, ଏଇଟା ତାଙ୍କ କଳ୍ପନାର ବାହାରେ । ଯେଉଁ ବ୍ୟକ୍ତି ଦରିଦ୍ର ତା'ପକ୍ଷରେ ନିଜର ଅଭାବ ମେଣ୍ଟାଇବା ଚିନ୍ତା ଛଡ଼ା ଆଉ କେଉଁ ଚିନ୍ତା ଥାଇପାରେ ! ସାନ ଭାଇକୁ ତିରସ୍କାର କଲେ ରାମକୁମାର । କିନ୍ତୁ ଗଦାଧର ନୀରବ, ଅବିଚଳ ।

ଯେତେବେଳେ ପ୍ରକୃତ ଜ୍ଞାନ ଆସେ ସେତେବେଳେ ସ୍ତବ୍ଧ ହୋଇଯିବାକୁ ପଡ଼େ । ପ୍ରକୃତ ଜ୍ଞାନ ମାନେ ବ୍ରହ୍ମଜ୍ଞାନ । ମନେ କର, ଜଣେ ଝିଅର ସ୍ୱାମୀ ଆସିଛନ୍ତି । ତାଙ୍କ ସହିତ ଆସିଛନ୍ତି ସମବୟସ୍କ କେତେ ଜଣ ବନ୍ଧୁ । ସମସ୍ତେ ଦାଣ୍ଡ ଘରେ ବସି ହସ ଖୁସି ହେଉଛନ୍ତି । ଝିଅ ବାପଘରକୁ ଆସିଛି ବୋଲି ତା' ସାଙ୍ଗମାନେ ବି ଆସିଛନ୍ତି ତା' ଘରକୁ । ସମସ୍ତେ ସେପାଖ ଘରେ ଥାଇ ଝରକା ଫାଙ୍କରେ ଅନେଇ ଦେଖୁଛନ୍ତି । ଝିଅର ସ୍ୱାମୀ କିଏ, ସାଙ୍ଗମାନେ ଚିହ୍ନନ୍ତି ନାହିଁ । ଜଣକୁ ଦେଖେଇ ପଚାରିଲେ, 'ଏଇ ନା ତୋ ବର ?' ଝିଅଟି ଟିକିଏ ହସି ଦେଇ କହିଲା, 'ନା' । ଇଏ ? ଉହୁଁ । ଏ ଜଣକ ? ନା । ଏଇ ଭଳି ଭାବରେ ଚାଲିଛି ନେତି-ନେତି । ଶେଷକୁ ପ୍ରକୃତରେ ଯିଏ ତା'ର ସ୍ୱାମୀ ତାକୁ ଦେଖେଇ ପଚାରିଲେ, ତା' ହେଲେ ଏଇ ଜଣକ ନିଶ୍ଚୟ ତୋ ବର ? ସେତେବେଳେ ଝିଅଟି 'ହଁ' କହିଲା ନାହିଁ, କି 'ନା' କହିଲା ନାହିଁ, ଖାଲି ଟିକିଏ ହସି ଦେଇ ଚୁପ୍ ହେଇ ରହିଲା । ସାଙ୍ଗମାନେ ବୁଝିଗଲେ, କିଏ ତା' ବର ।

ସେଇଭଳି ଯେଉଁଠାରେ ବ୍ରହ୍ମଜ୍ଞାନ ସେଠାରେ ମୌନ ।

ଏ ମୌନର ଭୁଲ ଅର୍ଥ ବୁଝିଲେ ରାମକୁମାର । ଭାବିଲେ, ପିଲାଟାର ମୁଣ୍ଡ ବିଗିଡ଼ିଛି ।

ପାଠ ଯଦି ନ ପଢ଼ିବ, କିଛି ଗୋଟାଏ କାମ କରୁ । ଅନ୍ତତ ପୂଜା-ପୂଜି କାମ । ଘରେ ରଘୁବୀର ଅଛନ୍ତି, ସେବା ପୂଜା କାମ ସେ ଶିଖିଛି । ସେଇ ଆଡ଼କୁ ମନ ଦଉ । କିଛି କିଛି ଦକ୍ଷିଣା ମିଳିବାର ବାଟ ଫିଟୁ ।

କାମାପୁକୁରରେ ଦିଗମ୍ବର ମିତ୍ରଙ୍କ ଘରେ ଗୃହଦେବତାଙ୍କର ନିତ୍ୟପୂଜା । ଗଦାଧରକୁ

ରାମକୁମାର ସେଇଠି ସେଇ କାମରେ ଲଗେଇ ଦେଲେ ।

ଗଦାଧର ମହା ଖୁସି । ମନ ମୁତାବକ କାମ ମିଳିଯାଇଛି । ମନର ମଣିଷ ସତେ କି ଚାଲି ଆସିଲା ତା' ହାତ ମୁଠାକୁ ।

ରୂପ ତ ସହଜେ ମନୋହର । କଣ୍ଠରୁ ବି ମହୁ ଝରେ । ଭଜନ ଗାଏ ଗଦାଧର । ଦେଖିବା ଶୁଣିବା ଲୋକେ ତଦ୍‌ଗତ ହୋଇପଡ଼ନ୍ତି । ସତେ ଯେପରି ଅତି ଆପଣାର ଲୋକଟିଏ, କୋଉଠି ଥିଲା କେଜାଣି,ବାଟ ଭୁଲି ଚାଲି ଆସିଛି । ଅଭିଜାତ ପରିବାରର ସ୍ତ୍ରୀ ଲୋକମାନଙ୍କର ମଧ୍ୟ ଟିକେ ହେଲେ କୁଣ୍ଠା ନାହିଁ । ସୂର୍ଯ୍ୟଙ୍କୁ ମୁହଁ ଦେଖେଇବାକୁ ସଂକୋଚ, ମାତ୍ର ଇଏ ସତେ ଅବା ଅନ୍ଧାର ଘରର ଅନ୍ତରଙ୍ଗ ଆଲୋକ । ସମସ୍ତଙ୍କର ଗଣ୍ଠିଧନ । ଉଦାସୀନ, ଅଥଚ ଆନନ୍ଦମୟ । ଠାକୁରଙ୍କ ଆଗରେ ଯେତେବେଳେ ବସେ ପୂଜା କରିବା ପାଇଁ, ସମସ୍ତେ ଚମକି ଉଠନ୍ତି । ସତେ ଅବା ଠାକୁର ନିଜେ ଆସି ବସିଛନ୍ତି ଆଗରେ ।

ଏଣେ କିନ୍ତୁ ଯାହାର ଯେତେବେଳେ ଯାହା ଦରକାର, ସମସ୍ତଙ୍କ ବରାଦ ମୁତାବକ କାମ କରୁଛି ଗଦାଧର । ଆଡ୍ଡା ଜମେଇ ବସିଯାଉଛି ଅନ୍ଦର ମହଲ, ବାହାର ମହଲ, ସବୁଠି । ପିଲାଙ୍କୁ ନେଇ ବଳ ବାନ୍ଧି ହୋ-ହା କରୁଛି । ପାଠ ପଢ଼ା ଗୋଳ ।

କଅଣ ମିଳିବ ସେଇ ସବୁ ଅବିଦ୍ୟାରୁ ?

ଅମୃତ-ସାଗରକୁ ଯିବାର ବାଟ ଖୋଜୁଛ ? ଯେମିତି ହେଉ,ଯାଇ ସାଗର ପାଖରେ ପହଞ୍ଚି ପାରିଲେ ହେଲା । ଖାଲି ପହଞ୍ଚିଗଲେ ବି ଚଳିବ ନାହିଁ, ବୁଡ଼ିବାକୁ ପଡ଼ିବ ସେଇ ସାଗର ଭିତରେ । କିଏ ତୁମକୁ ଧକ୍କାମାରି ଠେଲି ପକାଇ ଦେଉ, ଅଥବା ନିଜେ ଡେଇଁ ପଡ଼ - ବୁଡ଼ିବାକୁ ହିଁ ହେବ । ଯାହା ବୁଡ଼ାଇ ଦିଏ ନା, ଭସାଇ ରଖେ, ତାକୁ ନେଇ ମୁଁ କଅଣ କରିବି ?

ବ୍ରହ୍ମବାଦିନୀ ମୈତ୍ରେୟୀ ମଧ୍ୟ ଏଇ କଥା କହିଥିଲେ । ଧନଧାରିଣୀ ବସୁନ୍ଧରାର ଯେତେ ସଂପଦ ସବୁ ଆଣି ତାଙ୍କୁ ଯାଚିଲେ ଯାଜ୍ଞବଲକ୍ୟ । ମୈତ୍ରେୟୀ ମମତାଶୂନ୍ୟ ପରି କହିଲେ, 'ଯାହା ଦ୍ୱାରା ମୁଁ ଅମୃତ ହୋଇ ପାରିବି ନାହିଁ ତାହା ନେଇ କଅଣ କରିବି ? ଯେନାହଂ ନାମୃତା ସ୍ୟାମ୍ କିମହଂ ତେନ କୁର୍ଯ୍ୟାମ ?'

କେବଳ ପୋଥି ପଢ଼ିଲେ ଚୈତନ୍ୟ ହୁଏ ? ଚୈତନ୍ୟ କୁଣ୍ଡଳୀ ପକାଇ ଶୋଇ ରହିଛି ଦେହ ଭିତରେ । ତାକୁ ଉଠାଇବାକୁ ପଡ଼ିବ । କେମିତି ଉଠେଇବ ? ଯୋଗରେ ବସି । ଯୋଗ କଅଣ ? ଯୋଗ ମାନେ ଯୁକ୍ତ ହୋଇଯିବା । ଦୀପ ଶିଖା ଦେଖିଛ ? ଯେଉଁଠି ପବନ ନାହିଁ, ସେଇଠି ସେହି ନିଷ୍କମ୍ପ ଦୀପଶିଖା ? ସେହି ସ୍ଥିର ସ୍ଥିତି ? ତାହାରି ନାମ ଯୋଗ । ଊର୍ଦ୍ଧ୍ୱ ସହିତ ସଂସ୍ପର୍ଶ । ଦିଗମ୍ବର ମିତ୍ରଙ୍କ ଘରେ ହିଁ ଏହି ଯୋଗର ପ୍ରଥମ ଆସନ ।

କିନ୍ତୁ, ରାମକୁମାର କଅଣ କରିବେ ? କାହା ସାହାଯ୍ୟରେ ସ୍ୱଚ୍ଛଳ ହୋଇପାରିବ ତାଙ୍କ ସଂସାର ? କିଏ ଆସି ଠିଆ ହେବ ପାଖରେ ?

'ତୁମ ଇଚ୍ଛା । ତୁମେ ଯାହା କରିବ—' ମନେ ମନେ ରଘୁବୀରଙ୍କୁ ସ୍ମରଣ କଲେ ରାମକୁମାର । ଶ୍ୟାମଳ- ଶାନ୍ତ ରଘୁବୀର !

ରଘୁବୀର ଅଛନ୍ତି ଦେରେ ଗାଁରେ, ମାଣିକରାମ ଚଟ୍ଟୋପାଧ୍ୟାୟଙ୍କ ଘରେ । ସେ ଗାଁର ଜମିଦାର ମହାପ୍ରତାପୀ ରାମାନନ୍ଦ ରାୟ । ଦୌରାତ୍ମ୍ୟ ହିଁ ଯାହାଙ୍କର ଏକମାତ୍ର ମାହାତ୍ମ୍ୟ ।

କ୍ଷୁଦିରାମ ମାଣିକରାମଙ୍କ ବଡ଼ ପୁଅ । ବାପାଙ୍କ ମୃତ୍ୟୁ ପରେ ବିଷୟ-ସଂପତ୍ତି ଦେଖା-ଶୁଣା କରନ୍ତି ଏବଂ ରଘୁବୀରଙ୍କ ସେବା କରନ୍ତି । ପ୍ରଥମ ସ୍ତ୍ରୀ ଅଳ୍ପ ବୟସରେ ଦେହ ତ୍ୟାଗ କରିଥିଲେ । ଆଉ ଥରେ ବିବାହ କଲେ ଚନ୍ଦ୍ରମଣିଙ୍କୁ । ସେତେବେଳେ ଚନ୍ଦ୍ରମଣିଙ୍କ ବୟସ ଆଠ ବର୍ଷ, ଆଉ ତାଙ୍କ ନିଜ ବୟସ ପଚିଶ । ବିବାହର ଛଅ ବର୍ଷ ପରେ ଜନ୍ମ ହେଲେ ରାମକୁମାର । ଏହାର ପାଞ୍ଚ ବର୍ଷ ପରେ ପ୍ରଥମ ଝିଅ କାତ୍ୟାୟନୀ ।

'ଆପଣଙ୍କୁ ରାଜା ଡାକିଛନ୍ତି, -' କ୍ଷୁଦିରାମଙ୍କ ଘର ଆଗରେ ଜମିଦାରଙ୍କ ପିଆଦା ।

କଅଣ ହଜୁରଙ୍କର ଅର୍ଜି ? ମୁହଁ ଟେକି ଚାହିଁଲେ ଖୁଦିରାମ ।

ଅର୍ଜି ନୁହେଁ, ହୁକୁମ । ରାଜାଙ୍କ ତରଫରୁ ଗୋଟାଏ ମୋକଦ୍ଦମା ଚାଲୁଛି ଅଦାଲତରେ । ଆପଣଙ୍କୁ ସାକ୍ଷୀ ଦେବାକୁ ହେବ । ଆପଣ ଧାର୍ମିକ ଲୋକ । ଆପଣଙ୍କ ଜବାନବନ୍ଦିର ଦାମ ଅଛି ।

ସମସ୍ତ ଘଟଣା ଶୁଣିଲେ ଭଲ କରି । ବୁଝିଲେ, ମିଥ୍ୟା ମୋକଦ୍ଦମା, ତଞ୍ଚକି ।

'ମିଛ ମୋକଦ୍ଦମାର ସାକ୍ଷୀ ହୋଇପାରିବି ନାହିଁ ।' ପଦେ କଥାରେ ମନା କରିଦେଲେ କ୍ଷୁଦିରାମ ।

ପିଆଦା ଅବାକ୍ । ରାଜାଙ୍କ ଆଦେଶକୁ ଏଭଳି ପ୍ରତ୍ୟାଖ୍ୟାନ କରାଯାଇପାରେ - ଏହା ତା'ର କଳ୍ପନାର ବାହାରେ । ଏହାର ପରିଣାମ କଅଣ ହୋଇପାରେ ସେ କଥା କ'ଣ ଚଟ୍ଟୋପାଧ୍ୟାୟ ମହାଶୟ ଜାଣନ୍ତି ନାହିଁ । ?

ଜାଣନ୍ତି । ଜମିଦାରଙ୍କ କୋପଦୃଷ୍ଟିରେ ପଡ଼ିବେ । କିନ୍ତୁ ଜମିଦାରଙ୍କ ପ୍ରଶ୍ରୟ ଠାରୁ ସତ୍ୟର ଆଶ୍ରୟରେ ଅଧିକ ଶାନ୍ତି ।

ଅନ୍ତର ଭିତରକୁ ଚାହିଁ ଦେଇ ଥରେ କେବଳ ଦେଖିନେଲେ ତାଙ୍କ ରଘୁବୀରଙ୍କୁ । ସତ୍ୟ ଓ ନ୍ୟାୟରେ ଯିଏ ପ୍ରତିଷ୍ଠିତ ସେହି କରୁଣାଘନ ରାମଚନ୍ଦ୍ରଙ୍କୁ ।

ଯାହା ହେବାର ତାହା ହିଁ ହେଲା ।

ରାମାନନ୍ଦ ରାୟ ଓଲଟି କ୍ଷୁଦିରାମଙ୍କ ନାଁରେ ମିଛ ମୋକଦ୍ଦମାଟିଏ କଲେ । ଯାହା ସପକ୍ଷରେ ଅମଲା ତାହାରି ସପକ୍ଷରେ ମାମଲା । ଜିତାପଟ ହେଲା ଜମିଦାରଙ୍କର । ଡିକ୍ରି-ଜାରିରେ କ୍ଷୁଦିରାମଙ୍କର ସ୍ଥାବର-ଅସ୍ଥାବର ସମସ୍ତ ସଂପତ୍ତି ନିଲାମ ହୋଇଗଲା । ସ୍ତ୍ରୀ-ପୁତ୍ର-କନ୍ୟାଙ୍କର ହାତ ଧରି କ୍ଷୁଦିରାମ ଓହ୍ଲାଇ ଆସିଲେ ରାସ୍ତାକୁ ।

ପଚାଶ ମାଣ ସରିକି ଜମି ଥିଲା । ଆଖି ପିଛୁଳାକେ ମିଳେଇ ଗଲା ଶୂନ୍ୟରେ । କିଛି ଆଉ ରହିଲା ନାହିଁ ସଂସାରରେ ? କେହି ନାହାନ୍ତି ସାହା-ଭରସା ?

ଅଛନ୍ତି । ରଘୁବୀର ଅଛନ୍ତି । ଅଭୟ ଆଶ୍ରୟର ସ୍ନିଗ୍ଧ ଆତପଚ୍ଛଦ ମେଲାଇ ଧରିଛନ୍ତି ଆକାଶରେ । ଯାହାର କେହି ନାହିଁ, କିଛି ନାହିଁ, ତା' ପାଇଁ ବି ଆଶ୍ରୟ ଅଛି । ଆଶ୍ରୟ ଅଛି ଅନ୍ତର ଭିତରେ । ଅନନ୍ତ କୋଳରେ ।

ଅପ୍ରତ୍ୟାଶିତ ଭାବରେ ଆସି ପହଞ୍ଚିଲେ ଜଣେ ବନ୍ଧୁ ।

'ମୁଁ କାମାରପୁକୁରର ସୁଖଲାଲ ଗୋସ୍ୱାମୀ । ଚିହ୍ନି ପାରୁଛ ?'

'ଚିହ୍ନିବି ନାହିଁ ? ତୁମେ ମୋର କେତେ କାଳର ବନ୍ଧୁ !'

ଚାଲ ଆମ ଗାଁକୁ । ମୋ ଘରର ଗୋଟାଏ ଖଞ୍ଜା ଛାଡ଼ିଦେବି, ସେଇଠି ରହିବ । ଜମି ଆଠ ଦଶ ଗୁଣ୍ଠ ଦେବି । ଉଜୁଡ଼ା ସଂସାରକୁ ପୁଣି ସଜାଡ଼ି ନେବ ।

କାମରପୁକୁରରେ ଗୋସ୍ୱାମୀଙ୍କର ଲାଖରାଜି ସ୍ୱତ୍ୱ । ହୃଦୟଟା ବି ତାଙ୍କର ସେହିଭଳି ନିଷ୍କର । ନିଷ୍କଣ୍ଟକ ।

ସପରିବାର କ୍ଷୁଦିରାମ ଆସିଲେ କାମାରପୁକୁର । ଗୋସ୍ୱାମୀଙ୍କ ଘରର ଗୋଟାଏ ପାଖରେ କେତେ ବଖରା ଚାଳ ଘର ଥିଲା । ସେଇ ଘରେ ରହିଲେ । ଲକ୍ଷ୍ମୀଜଳା ମୌଜାରେ ଅଉଲ କିସମ ଜମି ପାଇଲେ ପ୍ରାୟ ବାରଗୁଣ୍ଠ । ଚିରକାଳ ପାଇଁ ଅର୍ପଣ ।

ବର୍ତ୍ତିଗଲେ କ୍ଷୁଦିରାମ । ଯିଏ ନିଅନ୍ତି ସିଏ ପୁଣି ଫେରେଇ ଦିଅନ୍ତି । ଗୋଟାଏ ବାଟରେ ଯାଆନ୍ତି, ହଜାରେ ବାଟ ଦେଇ ଆସନ୍ତି । ନିତ୍ୟରେ ସେ, ଲୀଳାରେ ମଧ୍ୟ ସେ ।

ମନେ ପଡ଼ିଲା, ଦିନେ ଅସହାୟ କଣ୍ଠରେ ଚନ୍ଦ୍ରମଣି କହିଥିଲେ, 'ଘରେ ଆଜି ଚାଉଳ ନାହିଁ—'

ବିଚଳିତ ହୋଇ ନଥିଲେ କ୍ଷୁଦିରାମ । କହିଥିଲେ, 'କାହିଁକି ବ୍ୟସ୍ତ, ହେଉଛ ? ରଘୁବୀର ଯଦି ଓପାସ ରହନ୍ତି ଆମେ ବି ଓପାସ ରହିବା ।'

ସୌମ୍ୟୋଜ୍ଜ୍ୱଳ ଆଖିରେ ହସି ଦେଲେରଘୁବୀର । ବାଃ, ଓପାସ ରହିବି କାହିଁକି ?

ଲକ୍ଷ୍ମୀଜଳା ପାଟର ଅଉଲ ଜମି ସୁନା-ଧାନରେ ଝଲମଲ କରି ଉଠିଲା । କ୍ଷୁଧା-ନିବୃତ୍ତିର ତୃପ୍ତିରେ ସତେ ଅବା ପ୍ରସନ୍ନ ହସ ଫୁଟି ଉଠିଛି ଦେବତାଙ୍କ ମୁହଁରେ ।

ବେଳଆସି ଦି'ପହର ହେଲାଣି । ଅନ୍ୟ ଗୋଟିଏ ଗାଁକୁ ଯାଇଥିଲେ କ୍ଷୁଦିରାମ କୌଣସି କାମରେ । ଫେରିବା ବାଟରେ ଗଛ ଛାଇରେ ବସି ପଡ଼ିଛନ୍ତି ଟିକିଏ ଥକା ମାରିବା ପାଇଁ । ଛାଇ ନିଦ ଲାଗି ଆସୁଥିଲା । ଶୋଇ ପଡ଼ିଲେ ଲମ୍ବ ହୋଇ ସେଇ ଗଛ ମୂଳରେ । ସ୍ୱପ୍ନ ଦେଖିଲେ, ଶ୍ରୀରାମଚନ୍ଦ୍ର ବାଳକ ବେଶରେ ଆସି ଛିଡ଼ା ହୋଇଛନ୍ତି ଆଗରେ । ଚନ୍ଦ୍ର ତୁଲ୍ୟ ରମଣୀୟ, ସେଇଥିପାଇଁ ତ ରାମଚନ୍ଦ୍ର । ନବଦୂର୍ବାଦଳ ପରି ଶ୍ୟାମଳ-ସ୍ନେହଳ । କିନ୍ତୁ ମୁହଁଟି ଶୁଖି ଯାଇଛି ।

'ମୁଁ ବଡ଼ ଅଣହେଳାରେ ରହିଛି । ବହୁତ ଦିନରୁ କିଛି ଖାଇ ନାହିଁ ।' କହିଲା ବାଳକ: ମୋତେ ତୁମ ଘରକୁ ନେଇ ଚାଲ । ତୁମ ହାତର ଟିକିଏ ସେବା ପାଇଁ ଭାରି ମନ ବଳୁଛି ।'

କ୍ଷୁଦିରାମ ଅସ୍ଥିର ହୋଇ ପଡ଼ିଲେ । କହିଲେ, 'ମୁଁ ଦୀନ ହୀନ, ଅଧମ, ମୋର ଶକ୍ତି କାହିଁ ତୁମ ସେବା କରି ପାରିବି ?'

'କିଛି ଚିନ୍ତା କର ନା । ମୋତେ ନେଇ ଚାଲ ଘରକୁ । ଯାହାର ହୃଦୟରେ ଭକ୍ତିଭାବ ଥାଏ ମୁଁ ତା'ର ତ୍ରୁଟି ଧରେ ନାହିଁ ।'

ନିଦ ଭାଙ୍ଗିଗଲା କ୍ଷୁଦିରାମଙ୍କର । ଚାରି ଆଡ଼କୁ ଚାହିଁ ଦେଖିଲେ କେହି ନାହିଁ । କିନ୍ତୁ ସ୍ୱପ୍ନରେ ଯେଉଁ ଧାନ-କ୍ଷେତଟା ଦେଖିଥିଲେ ସେଇଟା ଆଗରେ ଦେଖା ଯାଉଛି । ନିଶ୍ଚୟ ସେଇଠି

କୋଉଠି ଲୁଚି ରହିଛନ୍ତି । ଆଗେଇ ଗଲେ କ୍ଷୁଦିରାମ । ଦେଖିଲେ, ଠାଏ ଖଣ୍ଡିଏ ପଥର ପଡ଼ିଛି, ତା' ଉପରେ ବିଷଧର ସର୍ପଟିଏ ଫଣା ଟେକି ରହିଛି । ଠଉରେଇ ଦେଖିଲେ, ସାମାନ୍ୟ ପଥର ନୁହେଁ, ଶାଳଗ୍ରାମ ଶିଳା । ଭାବିଲେ, ସ୍ୱପ୍ନ ମିଛ ନୁହେଁ, ଏହି ଶିଳା ହିଁ ତାଙ୍କର ରାମଚନ୍ଦ୍ର, ତା' ନ ହୋଇଥିଲେ ସାପ ହଠାତ୍ ଅଦୃଶ୍ୟ ହୋଇ ଯାଇଥାଆନ୍ତା କାହିଁକି ? ସାପ କିନ୍ତୁ ଶୂନ୍ୟରେ ମିଳାଇ ଯାଇନାହିଁ । କ୍ଷୁଦିରାମ ଦେଖିଲେ, ପଥର ପାଖରେ ଗୋଟାଏ ବିଳ, ତାହାରି ଭିତରେ ଯାଇ ଲୁଚି ରହିଛି । ପଥର ଉଠାଇ ଆଣିବା ବେଳେ ଯଦି ହଠାତ୍ ହାତରେ ଚୋଟ ବସେଇ ଦିଏ ! ଇତସ୍ତତ କରିବାକୁ ଲାଗିଲେ କ୍ଷୁଦିରାମ । କିନ୍ତୁ ଯିଏ ରାମ ସିଏ କଅଣ ବିଷହରଣ ନୁହନ୍ତି ? 'ଜୟ ରଘୁବୀର !' କହି କ୍ଷିପ୍ର ହସ୍ତରେ ଉଠାଇ ଆଣିଲେ ଶିଳା । ସାପ କାହିଁ ? କୁଆଡ଼େ ଗଲା ?

ଲକ୍ଷଣ ଦେଖି ବୁଝିଲେ ପଥରଟି ହେଉଛି 'ରଘୁବୀର' ଶିଳା ! ଆଉ ସନ୍ଦେହ ରହିଲା ନାହିଁ, ଏଇ ଶିଳା ହିଁ ତାଙ୍କର ଜାଗ୍ରତ ଗୃହଦେବତା । କେବଳ ଜାଗ୍ରତ ନୁହନ୍ତି, ସ୍ୱୟମାଗତ ।

ଆଉ ଦିନେ । ପାଦରେ ଚାଲି ଚାଲି ଯାଉଥିଲେ ମେଦିନୀପୁର । କାମାରପୁକୁରରୁ ଅତି କମ୍‌ରେ ଚାଳିଶ ମାଇଲ । ପାହାନ୍ତା ପହରରୁ ବାହାରି ଥିଲେ । ଚାଲୁଛନ୍ତି । ଦିନ ପ୍ରାୟ ଦଶଟା ହେଲାଣି । ହଠାତ୍ ଦେଖିଲେ ବାଟ କଡ଼ରେ ଗୋଟାଏ ବେଲ ଗଛ । ଫାଲ୍‌ଗୁନର ରାଶି ରାଶି ନୂତନ ପତ୍ରରେ ଝଲମଲ୍ କରୁଛି ଗଛଟି । ଆଖି ପଡ଼ିଲା ମାତ୍ରେ କ୍ଷୁଦିରାମଙ୍କ ମନ ସେହି ଆନ୍ଦୋଳିତ କଅଁଳ ପତ୍ର ପରି ନାଚି ଉଠିଲା । ପାଖରେ ଗୋଟାଏ ଗାଁ ଥିଲା । ସେହି ଗାଁକୁ ଯାଇ କିଣି ଆଣିଲେ ଗୋଟାଏ ଟୋକେଇ ଓ ଖଣ୍ଡେ ନୂଆ ଗାମୁଛା । ଆଗରେ ପୋଖରୀ । ପାଣିରେ ବୁଡ଼ାଇ ଧୋଇ ଆଣିଲେ ଭଲ କରି । ପତ୍ର ତୋଳି ଟୋକେଇ ପୂର୍ଣ୍ଣ କଲେ । ଓଦା ଗାମୁଛା ଖଣ୍ଡିକ ଘୋଡ଼ାଇ ଦେଲେ ତା' ଉପରେ । ମେଦିନୀପୁର କଥା ଭୁଲିଗଲେ । ପତ୍ର-ବୋଝ ଧରି ଲେଉଟି ଆସି ଘରେ ପହଞ୍ଚିଲେ ଦିନ ତିନିଟା ବେଳେ ।

ଚନ୍ଦ୍ରମଣି ଅବାକ୍ ।

'ଆଜି ବହୁତ ବେଲପତ୍ର ପାଇଗଲି - ବହୁତ ! ଛନ ଛନ ନୂଆ, କଅଁଳିଆ । ଆଜି ମନ ପୂରେଇ ଶିବ-ପୂଜା କରିବି ।'

'ମେଦିନୀପୁର ଗଲ ନାହିଁ '?

'ବେଲପତ୍ର ଦେଖି ମନ ଉଛନ୍ନ ହେଲା । ଆଉ ଦିନେ ପଛେ ମେଦିନୀପୁର ଯିବି । କିନ୍ତୁ ଏ ଭଳି ବେଲପତ୍ର ଆଉ ମିଳିବ ?'

ଏଇ ହେଲେ କ୍ଷୁଦିରାମ !

ଏଥର କିନ୍ତୁ ଯାଉଛନ୍ତି - ମେଦିନୀପୁର ନୁହେଁ - ସେତୁବନ୍ଧ ରାମେଶ୍ୱର । ଯାଉଛନ୍ତି ଆଗ ଭଳି ପାଦରେ ଚାଲି ଚାଲି । ପଦବ୍ରଜରେ ନ ଗଲେ ତୀର୍ଥଯାତ୍ରା ହୁଏ ? କ୍ଲେଶ ନ କଲେ କେମିତି ପାଇବି କ୍ଳେଶମୋଚନଙ୍କ ସ୍ପର୍ଶ ?

ଫେରିଲେ ବର୍ଷକ ପରେ । ସାଙ୍ଗରେ ଆଣିଥିଲେ ବାଣଲିଙ୍ଗ-ଶିବ । ଥାପନା କଲେ ରଘୁବୀରଙ୍କ ପାଖରେ । ହରିଙ୍କ ପାଖରେ ହର । ସୀତାପତିଙ୍କ ପାଖରେ ଉମାପତି ।

ପ୍ରାୟ ଷୋହଳ ବର୍ଷ ପରେ ପୁଣି ପୁଅଟିଏ ହେଲା ଚନ୍ଦ୍ରମଣିଙ୍କର । ଦ୍ୱିତୀୟ ପୁଅ ।

କ୍ଷୁଦିରାମ ତା' ନାଁ ରଖିଲେ ରାମେଶ୍ୱର ।

ରାମକୁମାର ସେତେବେଳକୁ ବେଶ ବଡ଼ ହୋଇ ସାରିଛନ୍ତି । ପୂଜା, ହୋମ ସବୁ କାମ କରୁଛନ୍ତି ଯଜମାନ ଘରେ । ଲକ୍ଷ୍ମୀପୂଜା ରାତି । ଦିନ ଥାଉଁ ଥାଉଁ ଯାଇଛନ୍ତି ଭୁରସୁବୋ ଗାଁକୁ, ରାତି ଆସି ଦି' ପହର ହେଲାଣି, ଫେରୁ ନାହାନ୍ତି ଏ ଯାଏଁ । ପୁଅ ଆସିଲା କି ବୋଲି ଚନ୍ଦ୍ରମଣି ବାରମ୍ବାର ଦାଣ୍ଡକୁ ଚାହୁଁଛନ୍ତି । ମନ ଅସ୍ଥିର ।

ଏତେ ରାତି ହେଲାଣି । ଫେରୁ ନାହିଁ କାହିଁକି ?

ପରିଷ୍କାର ଜହ୍ନ ରାତି । ଏକ ଲୟରେ ଚନ୍ଦ୍ରମଣି ଚାହିଁ ରହିଛନ୍ତି ଗହୀର ଆଡ଼କୁ । ଅନେକ ସମୟ ଚାଲିଗଲା । ହଠାତ୍ ଦେଖିଲେ, କିଏ ଜଣେ ଭୁରସୁବୋ ଆଡୁ ଆସୁଛି ବିଲ ବାଟରେ । ଆସିଲା ବୋଧହୁଏ ରାମକୁମାର । ଟିକିଏ ଦାଣ୍ଡ ଆଡ଼କୁ ଆଗେଇ ଗଲେ ଚନ୍ଦ୍ରମଣି । ହେଲେ, ପୁଅ କାହିଁ ? ଇଏ ତ ଜଣେ ସ୍ତ୍ରୀ ଲୋକ !

ଅପୂର୍ବ ସୁନ୍ଦର ରୂପ ଝିଅଟିର । ଅଳଙ୍କାରରେ ଦେହ ଛାଇ ହୋଇ ରହିଛି । ଏଇ ଜନହୀନ ମଧ୍ୟ ରାତ୍ରିରେ – ? କଥା କଅଣ ?

'କୋଉଠୁ ଆସୁଛ, ମା, ତୁମେ ?' ଚନ୍ଦ୍ରମଣି ପଚାରିଲେ ।

'ଭୁରସୁବୋ ଗାଁରୁ ।'

'ମୋ ପୁଅ ରାମକୁମାରର ଖବର କଅଣ, କହି ପାରିବ ?'

ପଚାରି ଦେଇ ଜିଭ କାମୁଡ଼ି ପକେଇଲେ ଚନ୍ଦ୍ରମଣି । ଅଚିହ୍ନା ଭଦ୍ର ଘରର ଝିଅ, କୌଣସି ବିଶେଷ କାରଣରୁ ହୁଏତ ବାହାରକୁ ଆସିଛି । ତାଙ୍କ ପୁଅର ଖବର ସେ ପାଇବ କେଉଁଠୁ ? ପୁଅ ପାଇଁ ବ୍ୟାକୁଳ ହୋଇ ପଡ଼ିଛନ୍ତି । ସେଇଥିପାଇଁ ବୋଧହୁଏ ତାଙ୍କ ମୁଣ୍ଡ କାମ କରୁନାହିଁ ।

'ଯାହାଙ୍କ ଘରକୁ ତୁମ ପୁଅ ପୂଜା କରିବାକୁ ଯାଇଛି, ମୁଁ ତ ତାଙ୍କରି ଘରୁ ଆସୁଛି,' ମୁହଁ ଟେକି କହିଲା ଝିଅଟି; 'ଡରିବାର କିଛି ନାହିଁ । ଆସିଯିବ ଅଳ୍ପ ସମୟ ଭିତରେ ।'

କାହିଁକି କେଜାଣି କଥାଟାରେ ବିଶ୍ୱାସ ଆସିଲା ଚନ୍ଦ୍ରମଣିଙ୍କର । ଧୋଟାଏ ଦକ ଗଲା । ସହଜ ଭାବରେ ପଚାରିଲେ,'ହେଲେ, ଏତେ ରାତିରେ ଏତେ ଗହଣା-ଗାଣ୍ଠି ପିନ୍ଧି କୁଆଡ଼େ ତୁମେ ଯାଉଛ,ମା ?

ଝିଅଟି ହସିଲା । କହିଲା, 'ବହୁତ ଦୂର ।'

'ତୁମ କାନରେ ସେଇ ଯେଉଁଟା ପିନ୍ଧିଛ, ସେଇଟା କଅଣ ?'

'ସେଇଟା - ? ସେଇଟା କୁଣ୍ଡଳ ।'

'ମା, ତୁମ ବୟସ କମ୍ । ଏଇ ଅସମୟରେ ଏମିତି ବେଶରେ ଏକୁଟିଆ ଯିବା ଭଲ ନୁହେଁ,' ଚନ୍ଦ୍ରମଣିଙ୍କ କଣ୍ଠରେ ଅକପଟ ଆକୁଳତା; 'ତୁମେ ଆମ ଘରକୁ ଆସ । ରାତିଟା ରହି ପାହାନ୍ତାକୁ ଚାଲିଯିବ ।'

'ନା, ମା, ମୋତେ ଏଇ ଲାଗେ ଯିବାକୁ ପଡ଼ିବ । ଆଉ ଥରେ କେବେ ଆସିବି ତୁମ ଘରକୁ ।' କହି ଦେଇ ଚାଲିଗଲା ଝିଅଟି ।

ଚାଲିଗଲା ସତ, କିନ୍ତୁ ଗାଁ ରାସ୍ତାରେ ନୁହେଁ, କି ବିଲବାଟରେ ନୁହେଁ । ବଡ଼ ଆଶ୍ଚର୍ଯ୍ୟ

କଥା । ତାଙ୍କରି ଘରକୁ ଲାଗି ନୂଆ ଜମିଦାର ଲାହା ବାବୁଙ୍କର ସାରି ସାରି ଧାନ ଅମାର । ସେଇ ଅମାର ଆଡ଼କୁ ଗଲା ଭଳି ଲାଗିଲା । ସେ ପାଖରେ ବାଟ କାହିଁ ? କୋଉ ଗାଁ ଝିଅ କେଜାଣି- ବାଟ ଭୁଲିଲା ନା, କଅଣ ?

ଚନ୍ଦ୍ରମଣି ଛନ ଛନ ମନରେ ବାହାରକୁ ବାହାରି ଆସିଲେ । ଏ-ପାଖ ସେ-ପାଖ କେତେ ଅନେଇଲେ । କୁଆଡ଼େ ଗଲା ସେ ଚଞ୍ଚଳା ?

ତେବେ, ଏଇ ଯାହାଙ୍କୁ ମୁଁ ଦେଖିଲି ଟିକିଏ ଆଗରୁ, ସେ କିଏ ? କିଏ ? ... ରାତ୍ରିର ଜ୍ୟୋତ୍ସ୍ନାରେ ମିଳେଇଗଲା ସେ ପ୍ରଶ୍ନ ? କିଏ ତେବେ ସେ ... ?

ଯାଇ ନିଦରୁ ଉଠେଇଲେ ସ୍ୱାମୀଙ୍କୁ । କୁହ, ଇଏ କାହାକୁ ମୁଁ ଦେଖିଲି ? ସର୍ବାବୟବାନବଦ୍ୟା ସର୍ବାଳଙ୍କାରଭୂଷିତା କିଏ ଇଏ ?

ସବୁ କଥା ମନ ଦେଇ ଶୁଣିଲେ କ୍ଷୁଦିରାମ । କହିଲେ, 'ଶ୍ରୀ ଶ୍ରୀ ଲକ୍ଷ୍ମୀଦେବୀଙ୍କୁ ଦେଖିଲ ।'

ଏଇ ହେଲେ ଚନ୍ଦ୍ର ମଣି !

ପିତୃ ଦେବ ଓ ମାତୃଦେବୀ । ଉଭୟେ ଦିବ୍ୟ ଭାବର ଭାବୁକ ।

## ୩

ଏଇଭଳି ବାପା-ମା ନ ହେଲେ ଏଭଳି ପୁଅ ଜନ୍ମ ହୋଇପାରିବ ?

କାତ୍ୟାୟନୀର ଦେହ ବହୁତ ଖରାପ । ଆନୁଡ଼ ଗାଁରେ ତା' ଶ୍ୱଶୁର ଘର । ତାକୁ ଦେଖିବାକୁ ଯାଇଛନ୍ତି କ୍ଷୁଦିରାମ । ଝିଅର ଢଙ୍ଗ ଢାଙ୍ଗ କଥାବାର୍ତ୍ତା କେମିତିକା ଅସ୍ୱାଭାବିକ ମନେହେଲା । ଭାବିଲେ ଭୂତାବେଶ ହୋଇଛି ।

ଚିତ୍ତ ସମାହିତ କରି ନିଜ ଦେହ ଭିତରକୁ ଦିବ୍ୟଯୋନିଙ୍କୁ ଆହ୍ୱାନ କରେ କ୍ଷୁଦିରାମ । ପ୍ରେତଯୋନିଙ୍କୁ ସମ୍ବୋଧନ କରି କହିଲେ, 'କାହିଁକି ମୋ ଝିଅକୁ ଅକାରଣରେ କଷ୍ଟ ଦେଉଛ ? ଚାଲିଯାଅ କହୁଛି ।'

କାତ୍ୟାୟନୀ ମୁହଁରେ ପ୍ରେତାତ୍ମା କହିଲା, 'ଚାଲିଯିବି, ଯଦି ମୋର ଗୋଟିଏ କଥା ରଖିବ ।'

'କେଉଁକଥା ?'

'ଗୟାରେ ମୋର ପିଣ୍ଡ ଦେବ । ସେହି ଅଭାବରୁ ମୁଁ ବହୁତ କଷ୍ଟ ପାଉଛି ।'

କ୍ଷୁଦିରାମ ତିଳେ ହେଲେ ଦ୍ୱିଧା କଲେ ନାହିଁ । କହିଲେ, 'ଦେବି ପିଣ୍ଡ । କିନ୍ତୁ ସେତିକିରେ ତୁମେ ଉଦ୍ଧାର ପାଇବ ତ ?'

'ପାଇବି ।'

'ପ୍ରମାଣ କଅଣ ?'

'ପ୍ରମାଣ ମୁଁ ବର୍ତ୍ତମାନ ଦେଇଯିବି । ଗଲା ବେଳେ,ଆଗରେ ସେଇ ଯେଉଁ ନିମ ଗଛଟା

ଦେଖୁଛ, ତାହାରି ଗୋଟାଏ ବଡ଼ ଡାଳ ଭାଙ୍ଗି ଦେଇଯିବି ।'

ମୁହୂର୍ତ୍ତ ପରେ ନିମ ଗଛର ବଡ଼ ଡାଳଟା ଭାଙ୍ଗି ପଡ଼ିଲା ।

କାତ୍ୟାୟନୀ ଧୀରେ ଧୀରେ ସୁସ୍ଥ ହେଲା ।

କ୍ଷୁଦିରାମ ଗୟା ଯିବା ପାଇଁ ବାହାରିଲେ । ସେତେବେଳେ ଶୀତକାଳ, ୧୨୪୧ ସାଲ । ପହଞ୍ଚିଲେ ଚୈତ୍ର ମାସର ଆରମ୍ଭରେ । ମଧୁ ମାସ ହିଁ ପିଣ୍ଡଦାନ ପାଇଁ ପ୍ରଶସ୍ତ ।

ବିଷ୍ଣୁପଦରେ ପିଣ୍ଡ ଦେଲେ କ୍ଷୁଦିରାମ । ରାତିରେ ଦେଖିଲେ ଅଦ୍‌ଭୁତ ସ୍ୱପ୍ନ । ଗଦାଧର ଆସି ତାଙ୍କ ଆଗରେ ଠିଆ ହୋଇଛନ୍ତି । କହୁଛନ୍ତି, 'ତୁମ ପୁଅ ହୋଇ ତୁମ ଘରେ ଜନ୍ମ ହେବି । ସେବା ଘେନିବି ତୁମ ହାତରେ ।'

କ୍ଷୁଦିରାମ କାନ୍ଦି ପକାଇଲେ । କହିଲେ, 'ମୁଁ ଦରିଦ୍ର, ମୋର ଶକ୍ତି କାହିଁ ତୁମ ସେବା କରି ପାରିବି ?'

'ଡରିବାର କିଛି ନାହିଁ ।' କହିଲେ ଗଦାଧର; 'ଯାହା ଯେତେବେଳେ ମିଳିବ ମୋତେ ଖୁଆଇବ । ମୁଁ ଉପଚାର ଚାହେଁନା, ଭକ୍ତି ଚାହେଁ ।'

ମାସକ ପରେ ଘରକୁ ଫେରିଲେ କ୍ଷୁଦିରାମ । ସ୍ୱପ୍ନ କଥା ମନରେ ରହିଛି ।

ଏଣେ ଚନ୍ଦ୍ରମଣି କଅଣ ଦେଖୁଛନ୍ତି ?

ଦେଖୁଛନ୍ତି, ରାତିରେ ତାଙ୍କ ଶେଯରେ ତାଙ୍କରି ପାଖରେ କିଏ ଜଣେ ଶୋଇଛନ୍ତି । ସ୍ୱାମୀ ତ ବିଦେଶରେ, ତେବେ ଏମିତି ଅଭାବନୀୟ ଘଟଣା ଘଟିଲା କେମିତି ? ତା'ଛଡ଼ା, ମଣିଷର ରୂପ କଅଣ ଏତେ ସୁନ୍ଦର ହୋଇପାରେ ! ଧଡ଼ପଡ଼ କରି ଉଠି ବସିଲେ ଚନ୍ଦ୍ରମଣି । ଦୀପ ଜଳେଇଲେ । କେହି କୁଆଡ଼େ ନାହିଁ । କବାଟର ଶିକୁଳି ଭିତରୁ ବନ୍ଦ ଅଛି । କୌଶଳରେ ଶିକୁଳି ଖୋଲି କେହି ଘରେ ପଶି ପୁଣି ସେଇ ଭଳି କୌଶଳରେ ଶିକୁଳି ଲଗେଇ ଦେଇ ପଳେଇଗଲା ନା କଅଣ ? ଏତେ ସ୍ପଷ୍ଟ ଯେ ସ୍ୱପ୍ନ ବୋଲି ବିଶ୍ୱାସ କରିହେଉନାହିଁ । ରାତି ପାହିଲାରୁ ଧନୀ-କମାରୁଣୀକୁ ଡାକି ପଠେଇଲେ । କହିଲେ, 'ଆଲୋ, କାଲି ରାତିରେ ମୋ ଘରେ କିଏ ପଶିଥିଲା କହି ପାରିବୁ ?'

ଧନୀ ସବୁ କଥା ଶୁଣି ହସି ହସି ବେଦମ । କହିଲା, 'ମରୁ ନୁ ? ଲୋକେ ଶୁଣିଲେ କହିବେ କଅଣ ? ଏ ବୁଢ଼ୀ ବୟସରେ ତୁ ଆଉ ଏତେ ରଙ୍ଗ ଦେଖାନା । ଆଲୋ, ତୁ ସପନ ଦେଖିଛୁ, ବୁଝିଲୁ ? ସ୍ୱପ୍ନ ।'

ଚନ୍ଦ୍ରମଣି ବିଶ୍ୱାସ କଲେ ତା' କଥା । ବୋଧ ହୁଏ ସ୍ୱପ୍ନ । କିନ୍ତୁ, ଆଶ୍ଚର୍ଯ୍ୟ, ରାତିରେ ଦେଖିଥିବା ଘଟଣା ଦିନରେ ଦେଖିଲା ଭଳି ଏତେ ସ୍ପଷ୍ଟ ହୋଇପାରେ ?

ଆଉ ଦିନକର କଥା ।

ଗାଁରେ ଯୋଗୀମାନଙ୍କର ଶିବ ମନ୍ଦିର । ସେଇ ମନ୍ଦିର ଆଗରେ ଠିଆ ହୋଇଛନ୍ତି ଚନ୍ଦ୍ରମଣି, ଦେଖିଲେ, ମହାଦେବଙ୍କ ଅଙ୍ଗରୁ ଗୋଟିଏ ଜ୍ୟୋତି-ଶିଖା ବାହାରି ଆସି ତାଙ୍କ ଚାରିପାଖରେ ଘୂରିବାକୁ ଲାଗିଲା ଏବଂ ଘୂରି ଘୂରି ଶେଷରେ ପ୍ରବଳ ବେଗରେ ପଶିଗଲା ତାଙ୍କ ଦେହ ଭିତରକୁ । ଚେତା ହରେଇ ପଡ଼ିଯାଉଥିଲେ ଚନ୍ଦ୍ରମଣି, ଧନୀ ପାଖରେ ଥିଲା, ଧରି

ପକେଇଲା । ଚେତା ଫେରିଲା ପରେ ଧନୀକୁ ସବୁ କଥା କହିଲେ । ଧନୀ କହିଲା, 'ତୋର ବାତ ବେମାରି ବାହାରିଲାଣି ।'

ଗୟାରୁ ଫେରି ସବୁ କଥା ଶୁଣିଲେ କ୍ଷୁଦିରାମ । ଚନ୍ଦ୍ରମଣି ସ୍ୱାମୀଙ୍କୁ କହିଲେ, 'ମୋତେ ଜଣାଯାଉଛି, ମୋ ପେଟ ଭିତରକୁ କିଏ ଜଣେ ଆସିଛି ।'

'ଗଦାଧର ଆସୁଛନ୍ତି !'

ଏଥର ଗର୍ଭଧାରଣ କରି ଚନ୍ଦ୍ରମଣିଙ୍କ ରୂପ ଦୁଇଗୁଣ ଚହଟି ଉଠିଛି । ସତେ ଯେପରି ଲାବଣ୍ୟ-ବାରିଧି ଉଦ୍‌ବେଳିତ ହୋଇ ଉଠୁଛି । ସୂର୍ଯ୍ୟୋଦୟ ପୂର୍ବରୁ ଆରକ୍ତିମ ଆକାଶରେ ଯେଉଁ ରୂପ ଫୁଟି ଉଠେ, ଏ ସେଇ ରୂପ ।

ପଡ଼ିଶା ଘରର ସ୍ତ୍ରୀଲୋକମାନେ କୁହାକୁହି ହୁଅନ୍ତି, 'ବୁଢ଼ୀ ବୟସରେ ଗର୍ଭ ହୋଇ ରୂପ ଯେମିତି ଫାଟିପଡୁଛି ।' କେହି କେହି ବି କହନ୍ତି, 'ନାଇଁ ମ, ତା' ପେଟରେ ବ୍ରହ୍ମରାକ୍ଷସ ପଶିଛି । ବଞ୍ଚିବ ତ ଏଥର ?'

ନାନା ପ୍ରକାର ଦିବ୍ୟଦର୍ଶନ ହେଉଛି ଚନ୍ଦ୍ରମଣିଙ୍କର । କେତେବେଳେ ତ୍ରାସ, କେତେବେଳେ ଉଲ୍ଲାସ, କେତେବେଳେ ପୁଣି ଔଦାସୀନ୍ୟ । ବେଳେ ବେଳେ କହନ୍ତି, ମୋର ଏ ଗର୍ଭ ପତି-ସ୍ପର୍ଶରୁ ହୋଇନାହିଁ । ଆଉ ଥରେ ଥରେ କହନ୍ତି, ମୋ ଭିତରକୁ ପୁରୁଷୋତ୍ତମ ଆସିଛନ୍ତି । କେତେବେଳେ ପୁଣି ଅତି ଅସହାୟ ଭଳି କହନ୍ତି, ମୋତେ ବୋଧହୁଏ ଗୋସାଇଁ ଲାଗିଛି ।

ଗୋସାଇଁ ଲାଗିଛି, ମାନେ ଭୂତ ଲାଗିଛି । ସୁଖଲାଲ ଗୋସ୍ୱାମୀ ମଲା ପରେ ନାନା ପ୍ରକାର ଦୈବୀ ଉତ୍‌ପାତ ଦେଖାଦେଇଥିଲା ଗାଁରେ । ଲୋକଙ୍କର ଧାରଣା ସୁଖଲାଲ ମଲା ପରେ ଭୂତ ହୋଇଛି ଏବଂ ରହିଛି ଆସି ତାଙ୍କରି ଘର ଆଗରେ ଥିବା ବଉଳ ଗଛର ଅଗ ଡାଳରେ । ସେହିଦିନ ଠାରୁ କାହାରି ଠାରେ କୌଣସି ଅସ୍ୱାଭାବିକ ରୀତି ଦେଖିଲେ ଲୋକେ କହୁଥିଲେ, ଗୋସାଇଁ ଲାଗିଛି ।

କ୍ଷୁଦିରାମ କିନ୍ତୁ ନିଜ ମନଟିକୁ ନିର୍ମଳ କରି ରଖିଛନ୍ତି, ତାଙ୍କ ଘରକୁ ପୁତ୍ର ରୂପରେ ଆସୁଛନ୍ତି ନାରାୟଣ ।

ଘରର ଦରଜା ବନ୍ଦ କରି ବାହାରେ ଦରଜା ପାଖରେ ଶୋଇଛନ୍ତି ଚନ୍ଦ୍ରମଣି । ହଠାତ୍ ଶୁଣି ପାରିଲେ କେଉଁଠି ଯେପରି ନୂପୁରର ରୁଣୁଝୁଣୁ ଶବ୍ଦ ହେଉଛି । କାନ ଡେରିଲେ । ଶବ୍ଦ ଆସୁଛି ବନ୍ଦ ଥିବା ଘର ଭିତରୁ । ଆଶ୍ଚର୍ଯ୍ୟ କଥା ! ଘର ଭିତରେ ତ କେହି ନଥିଲେ, ମୁଁ ଦରଜା ବନ୍ଦ କଲି । ଅଗୋଚରରେ କେହି ଘର ଭିତରକୁ ପଶିଗଲା ପରା ? ଯଦି ବା ପଶିଲା ନୂପୁର ପାଇଲା କେଉଁଠୁ ? ତରବରରେ ଉଠି ପଡ଼ି କବାଟ ଫିଟେଇ ଦେଲେ ଚନ୍ଦ୍ରମଣି । କେହି ନାହିଁ । ଘର ଯେମିତି ଖାଲି ଥିଲା ସେମିତି ଖାଲି ରହିଛି ।

ସ୍ୱାମୀଙ୍କୁ କହିଲେ ଏହି ନୂପୁର ଶବ୍ଦ ହେବା କଥା । କ୍ଷୁଦିରାମ କହିଲେ, 'ଗୋକୁଳଚନ୍ଦ୍ର ଆସୁଛନ୍ତି ।'

ଆଉ ଦିନେ ମନେ ହେଲା ଚନ୍ଦନ ଗନ୍ଧ ଆସୁଛି ଚାରିଆଡୁ । ଘର ଭିତରେ ସତେ କି ବିଜୁଳି ଝଟକୁଛି । ଶିଶୁଟିଏ ଯେପରି ଛାତି ଉପରକୁ ଉଠି ଆସି ଗଳାରେ ବାହୁ ଛନ୍ଦି ଦେଉଛି ।

ରଘୁବୀରଙ୍କ ପାଇଁ ଭୋଗ ରାନ୍ଧୁଥିଲେ ଚନ୍ଦ୍ରମଣି, ହଠାତ୍ ପ୍ରସବ ବେଦନା ଅନୁଭବ କଲେ । କହିଲେ, 'ଏବେ ଉପାୟ ? ଏତେବେଳେ ଯଦି ହୋଇଯାଏ, ଠାକୁରଙ୍କ ସେବା ହେବ କେମିତି ?'

କ୍ଷୁଦିରାମ କହିଲେ, 'ଯିଏ ଆସୁଛନ୍ତି ସେ ରଘୁବୀରଙ୍କ ସେବାରେ ବ୍ୟାଘାତ ଘଟାଇବାକୁ ଆସୁନାହାନ୍ତି । ତୁମେ ବ୍ୟସ୍ତ ହୁଅ ନାହିଁ । ଯାହାଙ୍କର ପୂଜା ସେ ନିଜେ ସବୁ ବ୍ୟବସ୍ଥା କରିଦେବେ ।'

ଠାକୁରଙ୍କ ମଧ୍ୟାହ୍ନ-ଭୋଗ ଓ ସଂଧ୍ୟାର ଶୀତଳ-ମଣୋହି ସମାପ୍ତ ହେଲା ନିର୍ବିଘ୍ନରେ । ରାତି ସରି ଆସୁଛି । ଧନୀ ଆସି ଶୋଇଛି ଚନ୍ଦ୍ରମଣିଙ୍କ ପାଖରେ । ଘରେ ଚଳିବା ଭଳି ଦୁଇଟି ମାତ୍ର ବଖରା -ଚାଳ ଘର । ତା'ଛଡ଼ା ରୋଷେଇ ଘର, ଠାକୁର ଘର ଓ ଢିଙ୍କିଶାଳ । ଢିଙ୍କିଶାଳ ଭିତରେ ଅନ୍ତୁଡ଼ି ବ୍ୟବସ୍ଥା ହୋଇଛି । ସେଇ ଘରେ ଗୋଟାଏ ପାଖରେ ଧାନ କୁଟା ଢିଙ୍କି । ଆଉ ଗୋଟାଏ ପାଖରେ ଧାନ ଓଷୁଆଁ ଚୁଲି ।

ରାତି ପାହିବାକୁ ଆହୁରି ଘଡ଼ିଏ ବାକି ଅଛି, ଚନ୍ଦ୍ରମଣି ପ୍ରସବ-ପୀଡ଼ା ଅନୁଭବ କଲେ । ଧନୀ ତାଙ୍କୁ ନେଇ ଆସିଲା ଢିଙ୍କିଶାଳ ଭିତରକୁ, ଶୁଆଇ ଦେଲା ଭୂଇଁ ଉପରେ । ଚାହୁଁ ଚାହୁଁ ପ୍ରସବ ହୋଇଗଲା । ଯାହା ଅନୁମାନ କରାଯାଉଥିଲା - ପୁଅଟିଏ । ନର ରୂପରେ ଆସିଛନ୍ତି ପରମ ପୁରୁଷ । ପ୍ରତିଶ୍ରୁତ ପ୍ରତିମୂର୍ତ୍ତି ।

ଆସିଛନ୍ତି ? ତୁ ଆଖିରେ ଦେଖିଛୁ ?

ହଁ, ହଁ, ଦେଖିଛି । ତୁ ବି ଦେଖିବୁ । ଟିକିଏ ସାଷ୍ଟମ ହ ।

ପ୍ରସୂତି ପାଇଁ କଅଣ ଟିକିଏ ବ୍ୟବସ୍ଥା କରିବା ପାଇଁ ଧନୀ ବାହାରକୁ ଆସିଲା । ଫେରିଲା ପ୍ରାୟ ସଂଗେ ସଂଗେ । ସର୍ବନାଶ ! ପୁଅ କାହିଁ ? କାହିଁ ସେଇ ନବ କଳେବର !

ଚାରିଆଡ଼େ ଅଣ୍ଡାଳି ପକାଇଲା ଧନୀ । ଥରିଲା ହାତରେ ଟେକି ଦେଲା ଦୀପର ସଳିତାଟା । ପୁଅ କାହିଁ ? ଦେଖା ଦେଇ ସଙ୍ଗେ ସଙ୍ଗେ ପୁଣି ଉଭେଇ ଗଲା ନା, କଅଣ ?

ଦେଖି ପକେଇ ଚମକି ପଡ଼ିଲା ଧନୀ । ଓଦା ଖସଡ଼ା ଭୂଇଁ ଉପରେ ଖସଡ଼ି ଖସଡ଼ି ଯାଇ ପୁଅ ପଶିଛି ଚୁଲି ଭିତରେ । ଚୁଲିରେ ଅବଶ୍ୟ ନିଆଁ ନାହିଁ, କିନ୍ତୁ ପାଉଁଶ ଥିଲା ଗଦାଏ ।

ଶୂନ୍ୟରେ ଟେକି ଆଣି ପୁଅକୁ କୋଳରେ ରଖିଲା ଧନୀ । ପାଉଁଶବୋଳା ଦେହ । ଭାସ୍ୱର ଭଷ୍ମଭୂଷଣ !

'କେଡ଼େ ବଡ଼ ହୋଇଛି ପିଲାଟା ! ଛ'ମାସର ଛୁଆ ପରି ।' ଧନୀ ତାକୁ ନଉଟେଇ ପଉଟେଇ ଦେଖୁଛି । ନଗ୍ନ ଦେହ, ଅଥଚ ମନେ ହେଉଛି ଯେପରି କେତେ କଅଣ ମଣି ରତ୍ନ ପିନ୍ଧିଛି ।

ଦ୍ୱିତୀୟା ତିଥି, କିନ୍ତୁ ମନେ ହେଉଛି, ଅଦ୍ୱିତୀୟ ଚନ୍ଦ୍ର ।

ବଙ୍ଗୀୟ ୧୨୪୨ ସାଲ ଫାଲଗୁନ ୬ ଦିନ, ଇଂରାଜୀ ୧୮୩୬ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୭ ତାରିଖ । ଶୁକ୍ଳ ପକ୍ଷ, ବୁଧବାର । ବ୍ରାହ୍ମ ମୁହୂର୍ତ୍ତ ।

ଦିନକର କଥା । ପୁଅକୁ କୋଳରେ ଧରି ଖରାରେ ବସିଛନ୍ତି ଚନ୍ଦ୍ରମଣି । ହଠାତ୍ ମନେ

ହେଲା କୋଳ ଅବୋରି ପଡ଼ିଛି ଗୋଟାଏ ପଥର-ଖଣ୍ଡ । ଓଜନ ସହି ହେଉ ନାହିଁ ।

ଏମିତି କଅଣ ହେଲା କହିଲ ?

କଅଣ ଆଉ ହେବ ? ପୁଅ ଉପରେ ବିଶ୍ୱମ୍ଭର ଭରା ଦେଇଛନ୍ତି ।

ଅସହ୍ୟ । ପୁଅକୁ କୋଳରୁ ଓହ୍ଲାଇ ଦେଇ କୁଲା ଉପରେ ଶୁଆଇ ଦେଲେ ଚନ୍ଦ୍ରମଣି । ଶିଶୁର ଓଜନରେ କୁଲା ଚଡ଼ ଚଡ଼ ଶବ୍ଦ କଲା । କୁଲାଟା ଭାଙ୍ଗିଯିବ ନା କଅଣ ? ବ୍ୟସ୍ତ ହୋଇ ଚନ୍ଦ୍ରମଣି ଆଉ ଥରେ ପୁଅକୁ କୋଳକୁ ଆଣିବା ପାଇଁ ହାତ ବଢ଼ାଇଲେ । ପୁଅ ନିଶ୍ଚଳ ପାଷାଣ । ଦୁଇ ହାତର ବଳ ପାଇଲା ନାହିଁ ଟେକି ଉଠାଇବେ । ଦିନେ ଯିଏ ଗିରି ଧାରଣ କରିଥିଲେ ସେ ଆଜି କୁଲା ଉପରେ ଶୋଇଛନ୍ତି, କିଏ ଜାଣିବ ସେ କଥା ! ଚନ୍ଦ୍ରମଣି କାନ୍ଦି ପକାଇଲେ ।

ଯେ ଯେଉଁଠି ଥିଲେ ଧାଇଁ ଆସିଲେ ।

କଅଣ ହେଲା ? କଅଣ ହେଲା ?

'ପୁଅକୁ କୋଳକୁ ଉଠାଇ ପାରୁ ନାହିଁ ।'

'କାହିଁକି ?'

'ଏଇ ନିମ ଗଛରେ ଯେଉଁ ବ୍ରହ୍ମ ରାକ୍ଷସ ଅଛି ସେ ଆସି ନିଶ୍ଚୟ ଭରା ହୋଇଛି ପିଲା ଉପରେ-'

'କଅଣ ତୁ କହୁଛୁ ପାଗଳୀଗଙ୍କ ପରି ? ରହ, ମୁଁ ତା' ଦେହ ଝାଡ଼ି ଦେଉଛି -' କହି ଧନୀ କମାରୁଣୀ କୁଲା ପାଖରେ ବସି ପଡ଼ି ଗୁଣୁ ଗୁଣୁ ହେଇ ମନ୍ତ୍ର ପଢ଼ିଲା ।

ପଲକ ଭିତରେ ଶିଶୁ ହାଲୁକା ହୋଇଗଲା । ଠିକ୍ ଆଗ ଭଳି ।

ଆଉ ଦିନେ ।

ଘର କାମ କରୁ କରୁ ଆର ଘରକୁ ଯାଇଛନ୍ତି ଚନ୍ଦ୍ରମଣି । ପାଞ୍ଚ ମାସର ଶିଶୁ ଶୋଇଛି ଶେଯରେ, ମଶାରି ଭିତରେ । ଘର ଭିତରକୁ ଫେରି ଆସି ଦେଖିଲେ ପୁଅ ନାହିଁ, ପୁଅ ବଦଳରେ ଠିକ୍ ମଶାରି ମାପର କିଏ ଜଣେ ଡେଙ୍ଗା ମଣିଷ ସେଠି ଶୋଇଛି । ନବୋଦ୍‌ଗତ ଅଙ୍କୁର ପରିବର୍ତ୍ତେ ବିରାଟ ବନସ୍ପତି ।

ଚିତ୍କାର କରି ଉଠିଲେ ଚନ୍ଦ୍ରମଣି ।'ଧାଇଁ ଆସ, ଦେଖ, ଶେଯରେ ପୁଅ ନାହିଁ -'

'କଅଣ କହିଲ ?' ବ୍ୟସ୍ତ ହୋଇ ଧାଇଁ ଆସିଲେ କ୍ଷୁଦିରାମ ।

'ଦେଖ ଆସି, ଶେଯରେ ପୁଅ ନାହିଁ, ଆଉ ଜଣେ କିଏ ଶୋଇଛି !'

ଚାହିଁ ଦେଲେ ଦୁଇ ଜଣ ମଶାରି ଭିତରକୁ । କାହିଁ କିଏ ? ତାଙ୍କରି ପୁଅ ତ ଶୋଇ ରହିଛି ଶାନ୍ତିରେ । ହାତ ଗୋଡ଼ ହଲେଇ ଖେଳୁଛି ମନକୁ ମନ ।

ଇଏ କି ପ୍ରକାର ଖେଳ ? ଏଇ ପରା ଦେଖିଲି ମହାକାୟ ମଣିଷ, ପୁଣି ଦେଖୁଛି ଦୁଗ୍ଧ-ପୋଷ୍ୟ ଶିଶୁ ।

ଘଟଣା ଦେଖି ଗମ୍ଭୀର ହୋଇଗଲେ କ୍ଷୁଦିରାମ । କହିଲେ, 'କାହାକୁ କିଛି କହିବ ନାହିଁ ।'

ଛ'ମାସ ହେଲା ପୁଅକୁ । ଅନ୍ନପ୍ରାଶନର ବ୍ୟବସ୍ଥା କରିବାକୁ ପଡ଼ିବ । ବେଶୀ ଜାକ୍-ଜମକ କଲା ଭଳି ଅବସ୍ଥା କାହିଁ ? କୌଣସି ପ୍ରକାରେ ବିଧିରକ୍ଷା କରି ରଘୁବୀରଙ୍କ ପ୍ରସାଦୀ ଅନ୍ନ ପୁଅ

ମୁହଁରେ ଦେଇଦେଲେ କାମ ସରିବ ।

କିନ୍ତୁ ସାଇ-ପଡ଼ିଶାର ଲୋକେ ଅଡ଼ି ବସିଲେ, ଏ ଭଳି ରାଜ-ରାଜେଶ୍ୱର ପୁଅ ପାଇଛ, ଭୋଜି-ଭାତ ଦିଅ ।

ବ୍ୟବସାୟୀ ଧର୍ମଦାସ ଲାହା କ୍ଷୁଦିରାମଙ୍କ ବନ୍ଧୁ । ଏକା ସାହିରେ ଘର । ତାଙ୍କ ପାଖରେ ଯାଇ ପହଞ୍ଚିଲେ କ୍ଷୁଦିରାମ । କହିଲେ, 'ବନ୍ଧୁ, ଏବେ ଉପାୟ କୁହ ।'

ଈଶ୍ୱର ଉପାୟ, ପୁଣି ସେହି ଈଶ୍ୱର ହିଁ ଉପେୟ । ଯାହା ତାଙ୍କର କୃପା ତାହା ହିଁ ତାଙ୍କ ଶକ୍ତି ।

'ଡରୁଛ କାହିଁକି ? ଆରମ୍ଭ କରିଦିଅ । ରଘୁବୀର ଅଛନ୍ତି ।' କହିଲେ ଧର୍ମଦାସ ।

ନିଜେ ସବୁ ବ୍ୟବସ୍ଥା କଲେ ଧର୍ମଦାସ । ଟଙ୍କା ଥଳୀ ମୁହଁ ଖୋଲି ଦେଲେ । ସାହିଲୋକଙ୍କୁ ସେ ନିର୍ଜେ ଟି ହେଇ ଦେଇଥିଲେ କ୍ଷୁଦିରାମଙ୍କ ପାଖରୁ ଭୋଜି-ଭାତ ଆଦାୟ କରିବା ପାଇଁ ।ନିଜେ ପୁଣି ସମସ୍ତ ଆୟୋଜନ କଲେ । ଏ ସାହି ସେ ସାହି ବୁଲି ଜଣ ଜଣ କରି ସମସ୍ତଙ୍କୁ ନିମନ୍ତ୍ରଣ କରି ଆସିଲେ । ଗାଁ ଗୋଟାକର ସମସ୍ତଙ୍କ ପାଇଁ ଆସନ ପଡ଼ିଲା । ଜୀବ ମଧ୍ୟରେ ଯେଉଁ ଶିବ ଅଛନ୍ତି, ନିଃସ୍ୱ ନିର୍ଦ୍ଧନ ଭିତରେ ଯେଉଁ ନାରାୟଣ ଅଛନ୍ତି -ସେ ମଧ୍ୟ ଆରାଧନୀୟ । ସେ ବି ସେବ୍ୟ - ପୂଜ୍ୟ ।

ପିଲାର ନାଁ କଅଣ ରଖିବ ?

ସେ କଥା ପୁଣି ପଚାରୁଛ କାହିଁକି ? ଗୟା ଯାଇ ଗଦାଧରଙ୍କୁ ପାଇଲି । ଇଏ ସେହି ଗଦାଧର । ଗୟା ବିଷ୍ଣୁ ।

ଡାକ- ନାଁ ?

ବାପା-ମା ଆଦର କରି ଡାକନ୍ତି ଗଦାଇ । ଧନୀ କମାରୁଣୀ ବି ଡାକେ ସେଇ ନାଆଁରେ ।

ଦିନକୁ ଦିନ ବଡ଼ ହେଉଛି ଗଦାଧର । ବେଶ ହୃଷ୍ଟପୁଷ୍ଟ ଡଉଲ ଡାଉଲ ହେଇ ଆସୁଛି । ଚନ୍ଦ୍ରମଣି ତାକୁ ଦିନେ ଦିନେ ଧୋତି ପିନ୍ଧେଇ ଦିଅନ୍ତି ।

ଲାହା ବାବୁଙ୍କ ଅତିଥିଶାଳାକୁ ସାଧୁ ସନ୍ନ୍ୟାସୀମାନେ ପ୍ରାୟ ଆସନ୍ତି । ରହି ଯାଆନ୍ତି କିଛିଦିନ । ଗଦାଧରର ମନଟି ରହିଛି ସେଇ ସନ୍ନ୍ୟାସୀମାନଙ୍କ ପାଖରେ । କେବଳ ପ୍ରସାଦ ଲୋଭରେ ନୁହେଁ, ଅନ୍ୟ କୌଣସି ଆକର୍ଷଣରେ । କେଜାଣି ବା କୌଣସି ଜ୍ଞାତିତ୍ୱର ପ୍ରତିଶ୍ରୁତିରେ । ଆତ୍ମ-ଭୋଳା ଶିଶୁ ଭିତରେ ରହିଛନ୍ତି ଶିଶୁ-ଭୋଳାନାଥ ।

ମା ଖଣ୍ଡିଏ ନୂଆ ଲୁଗା ପିନ୍ଧେଇ ଦେଇଛନ୍ତି ଗଦାଧରକୁ । କିଛି ସମୟ ପରେ ଲୁଗାର ପରିଣତି ଦେଖି ମା ଆଚମ୍ବିତ । ଫାଳ ଫାଳ କରି ଚିରି ପକାଇଛି । ଗୋଟାଏ ଫାଳ ପିନ୍ଧିଛି କୌପୀନ କରି, ଆର ଫାଳକୁ କରିଛି ବହିର୍ବାସ । ଏଇ ବେଶରେ ମନ ଖୁସିରେ ଫେରିଲା ଘରକୁ ।

'ଇଏ କଅଣ ରେ ? ଇଏ କି ବେଶ !'

'ଅତିଥି ହୋଇଛି ।'

'ଅତିଥି ? ମାନେ ?'

ବୁଝାଇ ଦେଲା ଗଦାଧର । ଲାହା ବାବୁଙ୍କ ଅତିଥିଶାଳାକୁ ଯେଉଁମାନେ ଆସନ୍ତି ତାଙ୍କୁ ସବୁ ଅତିଥି କହନ୍ତି ନାହିଁ ?

ସେମାନେ ତ ସନ୍ନ୍ୟାସୀ । ତୁ ସେହି ସନ୍ନ୍ୟାସୀ ବେଶ ପସନ୍ଦ କଲୁ ? ମା' ମନ କାନ୍ଦି ଉଠିଲା । ନୂଆ ଲୁଗା ଦେଲି ତୋତେ, ତୁ ତାକୁ ଚିରି ପକେଇ ଲେଙ୍ଗୁଟି କଲୁ ?

ଗଦାଧରର ହସିଲା । ଅଖଣ୍ଡ ବ୍ରହ୍ମାଣ୍ଡେଶ୍ୱର ହୁଏତ ବା ଏହି ସାମାନ୍ୟ ଖଣ୍ଡକୁ ନେଇ ସନ୍ତୁଷ୍ଟ ।

ସାନ ସାନ ତିନି ବଖରା ଚାଳ ଘର । ସେଥିରୁ ପୁଣି ଗୋଟାଏ ଢିଙ୍କିଶାଳ । ଚାରିପାଖରେ ବଣ-ବୁଦା, ଗଛ ଲଟା । ଦେଖିଲା ମାତ୍ରେ ବୁଝିହୁଏ, ଦରିଦ୍ରର ସାମାନ୍ୟ କୁଟୀର । ତଥାପି କାହିଁକି କେଜାଣି, ଛବି ଭଳି ଲାଗେ । ଚାହିଁ ଦେଲେ ଆଖି ଫେରେଇ ଆଣିବାକୁ ଇଚ୍ଛା ହୁଏ ନାହିଁ । ମନେହୁଏ, କିଛି ଗୋଟାଏ ଅଛି ଏଠି । କେତେ ଶାନ୍ତି ! କେତେ ଦୟା ! କେତେ ଆଶ୍ରୟ !

ବାଟ ଗଲା ଲୋକେ ଚାଲୁ ଚାଲୁ ଅଟକି ଯାଆନ୍ତି । ଭାବନ୍ତି, କାହିଁକି ଭାବନ୍ତି କିଏ କହିବ, ସେହିଠାକୁ ଗଲେ ବୋଧହୁଏ ମିଳିବ ତୃଷା-ନିବୃତ୍ତିର ଜଳ, ମିଳିବ ସମସ୍ତ ରୋଗର ଆରୋଗ୍ୟ !

କିଏ ଅଛି ସେଠି ? କାହା ଘର ସେଇଟା ? କୌଣସି ମୁନି-ଋଷିଙ୍କ ଆଶ୍ରମ ପରା !

## ୪

ଲାହା ବାବୁଙ୍କ ଘର ଆଗରେ ପ୍ରଶସ୍ତ ନାଟମନ୍ଦିର, ସେଇଠି ଖୋଲା ହୋଇଛି ଚାଟଶାଳୀ । ଗଦାଧରକୁ ଯେତେବେଳେ ପାଞ୍ଚ ବରଷ, କାଖରେ ବହି ବସ୍ତାନି ଯାକି ଆସି ପଶିଲା ସେହି ଚାଟଶାଳୀରେ ।

ପାଠ ପଢ଼ା ହୁଏ ଦୁଇ ଓଳି । ସକାଳ ଓଳି ଦୁଇ ତିନି ଘଣ୍ଟା ପଢ଼ା ହୁଏ । ତା' ପରେ ସ୍ନାନାହାର ପାଇଁ ଛୁଟି । ଉପର ଓଳି ପୁଣି ପଢ଼ା ହୁଏ ବେଳ ବୁଡ଼ିବା ପର୍ଯ୍ୟନ୍ତ । ଚାଟଶାଳୀର କୌଣସି କାମ ଗଦାଧରକୁ ଭଲ ଲାଗେ ନାହିଁ । କେବଳ ଆଉ କେତେ ଜଣ ପିଲା ଆସି ସେଠି ଏକଯୁଟ ହେଉଛନ୍ତି; ଏଇଥିରେ ତା'ର ଆନନ୍ଦ । ମନ ଇଚ୍ଛା ଖେଳି ହେବ । ଯେଉଁଠି ଯେତେ ବେଶୀ ପ୍ରାଣ ସେଇଠି ସେତେ ବେଶୀ ଲୀଳା । ହେଲେ, ଏଇ ଶୁଭଙ୍କରୀଟା ଭଲା ନଥାଆନ୍ତା ! ଦେଖିଲା ମାତ୍ରେ ମୁଣ୍ଡ ବିଗିଡ଼ି ଯାଏ ଗଦାଧରର । ମିଶାଣଟା ଯଦି ବା ହେଲା କଷ୍ଟେ ମଷ୍ଟେ, ଫେଡ଼ାଣକୁ ଯେତେ କସରତ କଲେ ବି ଆୟତ୍ତ କରି ପାରିଲା ନାହିଁ । ପାରିବ ବା କେମିତି ? ନିରନ୍ତର ରହିଛି ଯୋଗରେ, ଯୋଗ ତେଣୁ କରାୟତ୍ତ । ବିୟୋଗ ପୁଣି କଅଣ ? କେଉଁଠି ତ କିଛି ଲୟ କ୍ଷୟ ନାହିଁ, ବିୟୋଗ ବିଚ୍ଛେଦ ନାହିଁ । ଏଠି ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ପୂର୍ଣ୍ଣ ହିଁ ରହିଯାଏ ।

ପାଠ ପଚାରି ଦେଲେ ମୁହଁ ଶୁଖିଯାଏ । ବରଂ ସ୍ତୋତ୍ର-ପ୍ରଣାମ-ମନ୍ତ୍ର ପଚାର, ମୁହେଁ ମୁହେଁ କହିଯିବି । ଆଗେ ବର୍ଣ୍ଣ- ପରିଚୟ, ତା' ପରେ ପଠନ, ଏଇଟା ହିଁ ସ୍ୱାଭାବିକ ଧାରା । ଗଦାଧରର ରୀତି ବିପରୀତ - ତା'ର ପଢୁ ପଢୁ ବର୍ଣ୍ଣ-ପରିଚୟ । ଅଙ୍କ ନାଁ ଶୁଣିଲେ ଆତଙ୍କ । ଅଙ୍କ କଷିବା ଅପେକ୍ଷା ତାଳ ପତ୍ରରେ ଠାକୁରଙ୍କ ନାଁ ଲେଖିବାରେ ବେଶୀ ଆନନ୍ଦ । ଯାହା ରାମ ତାହା ହିଁ ନାମ ।

ଚାଟଶାଳୀ ମେଲାଣି ପରେ ଗଦାଧର ଯାଇ ବସିଛି ମଧୁ-ଯୋଗୀ ଘରେ । ପ୍ରହ୍ଲାଦ ଚରିତ ପଢୁଛି । ବହୁତ ଲୋକ ଜମା ହୋଇଛନ୍ତି, ଶୁଣୁଛନ୍ତି ସମସ୍ତେ । ଏଡ଼ିକି ବକଟେ ପିଲା, କେତେ

ସୁନ୍ଦର ପଢୁଛି ! କେହି କେବେ ଶୁଣି ନାହାନ୍ତି ଏଭଳି । ପାଖରେ ଗୋଟାଏ ଆମ୍ବ ଗଛ । ଡାଳରେ ବସିଛି ଗୋଟାଏ ହନୁ ମାଙ୍କଡ଼ । ସେ ବି ଶୁଣୁଛି ସେହି ପୁରାଣ ପାଠ । ମଜ୍ଜି ଯାଇଛି ସେହି ସୁଲଳିତ ସ୍ୱର-ଲହରୀ ଭିତରେ । ହଠାତ୍ ମର୍କଟ ଡିଆଁ ମାରି ଗଛରୁ ଓହ୍ଲାଇ ଆସିଲା, ଚାଲି ଆସିଲା ପିଲା ପାଖକୁ, ଆସି ତା' ପାଦ ଦୁଇଟି ଧରି ବସି ରହିଲା । ଗଦାଧରର ମନରେ ଭୟ ନାହିଁ, ଓଲଟି ସେ ହନୁମାନ ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ ଜଣାଇଲା ।

ହନୁମାନ ସତେ ଅବା ଚିହ୍ନି ପାରିଛି ତା' ପ୍ରଭୁ ରାମଚନ୍ଦ୍ରଙ୍କୁ । ପ୍ରଣାମ କରି ଆଶୀର୍ବାଦ ନେଇ ପୁଣି ଡିଆଁ ମାରି ଯାଇ ବସିଲା ଗଛ ଉପରେ ।

ସେହି ଭଳି, ଡୋଟାକୁ ଗାଈ ଚରେଇବାକୁ ଯାଇ ଗଦାଧର ହୋଇ ଯାଇଛି ବ୍ରଜର ଗୋପାଳ । ସାଙ୍ଗରେ ଅଛନ୍ତି ସଖା ଗଣ । କିଏ ହେଉଛି ସୁବଳ, କିଏ ଶ୍ରୀଦାମ, କେହି କେହି ପୁଣି ଦାମ-ବସୁଦାମ ଏବଂ ଯିଏ ଗଦାଧର, ସେହି ତ ବଂଶୀଧର । ଚରୁ ଚରୁ ପାଖକୁ ଆସୁଛନ୍ତି ଗାଈ-ବାଛୁରୀ । ନିଜ ହାତରେ ଘାସ ଛିଣ୍ଡାଇ ଖୁଆଇ ଦେଉଛି । କେତେବେଳେ ପୁଣି ଦୋଳି ଖେଳୁଛି ଗଛ ଡାଳରେ । ପୁଣି ମନ ହେଲେ, ପୋଖରୀ ହୁଡ଼ାରେ ଲୁଗା ରଖି ଦେଇ ଡେଇଁ ପଡୁଛି ପାଣି ଭିତରକୁ । କେତେବେଳେ ପୁଣି ଅଣ୍ଟିରେ ମୁଢ଼ି ପୂରାଇ ଖାଇବାରେ ଲାଗିଛି । ଖାଉ ଖାଉ ପୁଣି ନାଚ, ହସ, ରଙ୍ଗ-ରହସ୍ୟ । ଦିନେ ଗାଈ ପଲଙ୍କୁ ପଡ଼ିଆରେ ଚରିବାକୁ ଛାଡ଼ିଦେଇ ଗଦାଧର କହିଲା ସାଙ୍ଗ ପିଲାମାନଙ୍କୁ, 'ଆସ ଆଜି ସମସ୍ତେ ମିଶି ମାଥୁର ଗୀତ ଗାଇବା ।

ସମସ୍ତେ ରାଜି ।

ବଗିଚା ଭିତରେ ଗଛ ଛାଇରେ ଯାତ୍ରା ଆରମ୍ଭ ହେଲା ।

ଆଜି କୃଷ୍ଣ ନାହାନ୍ତି । ଅକ୍ରୁର ଆସି ତାଙ୍କୁ ମଥୁରା ନେଇ ଯାଇଛି । ରାଧିକା ଆଜି ଏକାକିନୀ । କୃଷ୍ଣ-କାନ୍ତ-ବିରହିଣୀ । ଏତେ ଦିନ ଧରି କୃଷ୍ଣଙ୍କୁ ଦେଖିଛ, ଆଜି ଦେଖ ରାଈ-କମଳିନୀଙ୍କୁ ।

ମାଥୁର-ବିରହର ଗୀତ ଆରମ୍ଭ କଲା ଗଦାଧର । ସୃଷ୍ଟିର ମହାମୌନ ଭିତରେ ଯେଉଁ ଶାଶ୍ୱତ କ୍ରନ୍ଦନ ପ୍ରଚ୍ଛନ୍ନ ହୋଇ ରହିଛି, ନିଜ ହୃଦୟରୁ ତାହା ଉଚ୍ଚାରିତ କରିଦେଲା । କାହିଁ ଅଛ, କାହିଁ ଅଛ, ତୁମେ କୃଷ୍ଣ, କାହିଁ ଅଛ ହେ ତୁମେ ପରମତମ ଆକର୍ଷଣୀୟ ! କେବେ ମୋର ଏହି କ୍ଷୁଦ୍ର ସ୍ଫୁଲିଙ୍ଗ ଯାଇ ମିଶିବ ତୁମର ନିର୍ବିକଳ୍ପ ନିର୍ବାଣହୀନତା ସହିତ ?

ଗାଉ ଗାଉ ଆଚ୍ଛନ୍ନ ହୋଇ ପଡ଼ିଲା ଗଦାଧର । ବାହ୍ୟ ଚୈତନ୍ୟ ଲୋପ ପାଇଲା । ସାଙ୍ଗମାନେ ଅସ୍ଥିର ହୋଇ ପଡ଼ିଲେ : 'ଗଦାଇ, ଗଦାଇ, କଅଣ ହେଲା ତୋର ! ଏମିତି କାହିଁକି ହେଉଛୁ ? ଅନା, ଆଖି ଖୋଲ ।'

କିଏ ତା' ଦେହକୁ ଧରି ହଲାଇଲା, କିଏ ମୁହଁରେ ପାଣି ଆଣି ସିଞ୍ଚିଲା, କେତେ ଜଣ କିଛି ବୁଝି ନପାରି ବିକଳରେ କେବଳ କାନ୍ଦିବାକୁ ଲାଗିଲେ ।

ଜଣେ କିଏ ହଠାତ୍ କାନ ପାଖରେ ମୁହଁ ରଖି କହିଲା, 'କୃଷ୍ଣ ! କୃଷ୍ଣ ! ହରେ କୃଷ୍ଣ-'

ଯେଉଁ ନାମରେ ଅଜ୍ଞାନ ସେହି ନାମରେ ପୁଣି ଜ୍ଞାନ । ଯେଉଁ ନାମରେ ବୈରାଗ୍ୟ ସେହି ନାମରେ ହିଁ ପ୍ରେମ ।

ପ୍ରାଣକର କୃଷ୍ଣ ନାମ ଶୁଣି ଉଠି ବସିଲା ଗଦାଧର । କୃଷ୍ଣ କାହାନ୍ତି ? ଚାରି ପାଖରେ ବେଢ଼ି ବସିଛନ୍ତି ବାଳକ- ସଖାଗଣ । ଏହିପରା ! ତୁମ୍ଭେମାନେ ହିଁ ତ କୃଷ୍ଣ । ସମସ୍ତ ସଂସାର କୃଷ୍ଣମୟ ।

ଏହି ଭଳି ଯେତେ ଖେଳ ସେଇଥିରେ ହିଁ ଗଦାଧରର ପଟୁତା । ଲେଖାପଢ଼ାରେ ମନ ନାହିଁ । ଅଙ୍କ ତ ସହଜେ ତାଙ୍କ ଉଣ୍ଟେଇ ରହିଛି । ତା' ଅପେକ୍ଷା ବରଂ, ଗାଆଁର କୁମ୍ଭାରମାନେ ମାଟି ଚକଟି ମୂର୍ତ୍ତି ଗଢୁଛନ୍ତି । ତାଙ୍କ ସହିତ କାମରେ ଲଗେଇ ଦିଅ, ଦେଖିବ ଗଦାଧର ପହିଲା ନମ୍ବର କାରିଗର । ପଟ-ଚିତ୍ର ଆଙ୍କିବାରେ ବି ଧୁରନ୍ଧର । ଛବି ଭଲ ଲାଗୁନାହିଁ ? ଗୀତ ଶୁଣିବ ? କେଉଁ ଗୀତ ଗାଇବି ? ହରି ନାମ ଛଡ଼ା ଆଉ ଗୀତ ଅଛି ? ଭକ୍ତି ଛଡ଼ା ଆଉ କିଛି ଆସ୍ୱାଦନ ଅଛି ?

ପୂଜାରେ ବସିଛନ୍ତି କ୍ଷୁଦିରାମ ।·ଆଗରେ ଶାନ୍ତ ସୌମ୍ୟ ରଘୁବୀର ମୂର୍ତ୍ତି । ପାଖରେ ରହିଛି ନାନା ପ୍ରକାର ପୂଜା-ସାମଗ୍ରୀ । ତା' ମଧ୍ୟରେ ଅଛି ସଜ ଫୁଲର ଗୋଟାଏ ଗଜରା ମାଳ । ଠାକୁରଙ୍କୁ ସ୍ନାନ କରାଇ ସାରି ଆଖି ବୁଜି ଧ୍ୟାନ କରୁଛନ୍ତି କ୍ଷୁଦିରାମ । ସେହି ସ୍ନାତ-ଅଙ୍ଗର ପୁଣ୍ୟସ୍ପର୍ଶ-ସ୍ୱାଦ କଳ୍ପନା କରୁଛନ୍ତି, ଧ୍ୟାନରେ କ୍ରମଶଃ ଅତଳାୟିତ ହୋଇଯାଉଛନ୍ତି । ଶବ୍ଦ ନାହିଁ, ସ୍ପନ୍ଦନ ନାହିଁ । ସୀମାହୀନ ସମାଧି ।

ଗଦାଧରର ଭାରି ଇଚ୍ଛା ସେହି ସୁନ୍ଦର ମାଳାଟି ନିଜ ଗଳାରେ ପିନ୍ଧିବ । କିନ୍ତୁ ଚୁପ୍ ଚାପ୍ ଉଠାଇ ଆଣି ଗଳାରେ ପକାଇ ଦେଇ ପଳେଇ ଗଲେ ତ ଚଳିବ ନାହିଁ । ନୟନ-ରୋଚନ ରଘୁବୀର ବେଶରେ ନିଜକୁ ସଜାଇବା ଦରକାର । ବସି ପଡ଼ିଲା ଶିଳା-ମୂର୍ତ୍ତି ପାଖରେ । ଚନ୍ଦନ-ଗିନାରୁ ଚନ୍ଦନ ଆଣି ବୋଳିହେଲା ସର୍ବାଙ୍ଗରେ । ପୁଷ୍ପଥାଳାରୁ ମାଳାଟି ଉଠାଇ ଆଣି ଲମ୍ବେଇ ଦେଲା ନିଜ ଗଳାରେ । ବାପାଙ୍କୁ ଲକ୍ଷ୍ୟ କରି କହିଲା, 'ଆଖି ଖୋଲ । ରଘୁବୀରଙ୍କୁ ଦେଖ । ଦେଖ, ତୁମ ରଘୁବୀର ଆଜି କିଭଳି ବେଶ ହୋଇଛନ୍ତି ।'

ଧ୍ୟାନ ଭାଙ୍ଗିଗଲା କ୍ଷୁଦିରାମଙ୍କର । ଚାହିଁ ଦେଖିଲେ ଆଗରେ ଗଦାଧର !

କ୍ଷୁଦିରାମ କଅଣ ସେଦିନ ପୁତ୍ର-ବନ୍ଦନା କରିଥିଲେ ? ଶିଶୁ-ପୁତ୍ର ଭିତରେ ସତେ କଅଣ ଲୁଚି ରହିଛନ୍ତି ବାଳ-ଗୋପାଳ ?

ରାମଶୀଳା ଦେବୀ କ୍ଷୁଦିରାମଙ୍କ ସାନ ଭଉଣୀ । କାମାରପୁକୁର ଠାରୁ ଅଳ୍ପ ଦୂରରେ ଛିଲିମପୁର ଗାଁରେ ତାଙ୍କ ଶ୍ୱଶୁର ଘର । ସେ ଶୀତଳା ଠାକୁରାଣୀଙ୍କ ଭକ୍ତ । ବେଳେ ବେଳେ ତାଙ୍କ ଉପରେ ଶୀତଳା ଠାକୁରାଣୀଙ୍କ ଆବେଶ ହୁଏ । ସେତେବେଳେ ସେ ଅନ୍ୟ ପ୍ରକାର ହୋଇଯାଆନ୍ତି । ଦିନେ ରାମଶୀଳା ଭାଇଙ୍କ ଘରକୁ ଆସିଛନ୍ତି । ସେହିଦିନ ସେଇଠି ହେଲା ଶୀତଳା ଦେବୀଙ୍କ ଆବେଶ । ସମସ୍ତେ ଭୟରେ ତଟସ୍ଥ । କଅଣ ହେବ, କଅଣ କରାଯିବ,କେହି କିଛି ଠଉରେଇ ପାରୁ ନାହାନ୍ତି । କିନ୍ତୁ ଗଦାଧରର ଭୟ ନାହିଁ । ଖୁବ୍ ମନ ଲଗେଇ ଦେଖୁଛି ପିଉସୀଙ୍କ ଭାବ - ଯାହାକୁ ଅନ୍ୟମାନେ କହୁଛନ୍ତି ଭାବାନ୍ତର । ଭାରି ଚମତ୍କାର ଅବସ୍ଥା ତ ! ଯେମିତି ଆଉ କେଉଁ ରାଜ୍ୟକୁ ବୁଲି ଯାଇଛନ୍ତି । କିଏ ଯେପରି ଜୋର କରି ଧରି ତିନି ଭୁବନ ବୁଲାଉଛି । ସମସ୍ତେ ତ୍ରସ୍ତ ବ୍ୟସ୍ତ; ଗଦାଧର କହୁଛି : 'ପିଉସୀଙ୍କ ଉପରେ ଯିଏ ଅଛନ୍ତି ସେ ଯଦି ମୋ ଉପରକୁ ଆସନ୍ତେ, ଭାରି ବଢ଼ିଆ ହୁଅନ୍ତା -'

ସେଦିନ କଅଣ ତେବେ ସତରେ ସେଇଆ ହେଲା ?

ଛଅ ବର୍ଷର ପିଲା । ଧାନ ବିଲର ସରୁ ହିଡ଼ ଉପରେ ଚାଲି ଚାଲି ଯାଉଛି । ଚାଲିଛି ନିରୁଦ୍ଦେଶ ଭାବରେ । ଅଣ୍ଟିରେ ମୁଢ଼ି, ମଝିରେ ମଝିରେ ମୁଠାଏ ମୁଠାଏ ନେଇ ପାଟିରେ ପକାଇ ଚୋବାଉଛି । ହଠାତ୍ କଅଣ ଭାବି ଚାହିଁ ଦେଲା ଉପରକୁ, ଆକାଶକୁ । ଆକାଶ ତ ଆକାଶ, କେବଳ ଚାହିଁବାରେ ହିଁ ତାତ୍ପର୍ଯ୍ୟ । ଗଦାଧର ଦେଖିଲା, ଗୋଟାଏ ବଡ଼ କଳାହାଣ୍ଡିଆ ମେଘ ମାଡ଼ି ଆସୁଛି, ଢାଙ୍କି ପକାଉଛି ଆକାଶର ପ୍ରାନ୍ତରୁ ପ୍ରାନ୍ତକୁ । କି ଦିବ୍ୟ ମହିମା ଏହି ମେଘ ମଣ୍ଡିତ ଆକାଶର ! ଗଦାଧର ଆଖି ଫେରାଇ ପାରୁନାହିଁ । ହଠାତ୍ ପଲେ ଧଳା ବଗ ସେହି କଳା ମେଘ ତଳେ ପକ୍ଷ ବିସ୍ତାର କରି ଉଡ଼ିଗଲେ - ଚାଲିଗଲେ ଦୂରାନ୍ତରକୁ । ଗଦାଧରର ସମଗ୍ର ଶରୀରରେ ଶିହରଣ ଜାତ ହେଲା । କିଏ ପରିବେଷଣ କଲା ଏହି ଅପୂର୍ବ ଅନିର୍ବାଚ୍ୟ ସୌନ୍ଦର୍ଯ୍ୟ ? କୃଷ୍ଣିମା ସହିତ ଶୁଭ୍ରତାର ଏହି ଅନବଦ୍ୟ ସଂଯୋଗ ? କାହାର ରଚନା ଏହି ଦିବ୍ୟ କାବ୍ୟ ? ହଠାତ୍ ଗଦାଧରର ପ୍ରାଣ-ପକ୍ଷୀ ପକ୍ଷ ବିସ୍ତାର କରି ଉଡ଼ି ଚାଲିଗଲା, ତାଙ୍କରି ଉଦ୍ଦେଶ୍ୟରେ । ଦେହ ପିଞ୍ଜର ପଡ଼ି ରହିଲା ମାଟି ଉପରେ ।

ଯେତେବେଳେ ଆଖି ଖୋଲିଲା, ଦେଖିଲା ନିଜ ଘରେ ଶୋଇଛି । କିଏ କେତେବେଳେ ତାକୁ ବିଲ୍‌ରୁ ଆଣି ଘରେ ପହଞ୍ଚାଇଛି, ସେ ଜାଣେ ନାହିଁ ।

## ୪

ଗଦାଧରକୁ ମାତ୍ର ସାତ ବରଷ, କ୍ଷୁଦିରାମ ଆଖି ବୁଜିଲେ ।

ଯାଇଥିଲେ ଛିଲିମପୁର, ଭଣଜା ରାମଚନ୍ଦ୍ର ଘରକୁ । ଦୁର୍ଗାପୂଜା ପାଖ ହେଇ ଆସୁଥାଏ । କିନ୍ତୁ ମନରେ ସୁଖ ନାହିଁ । ସୁଖ ନାହିଁ, କାରଣ ଗଦାଧର ସାଙ୍ଗରେ ନାହିଁ ।

ଭାବିଥିଲେ ପୁଅକୁ ସାଙ୍ଗରେ ନେଇଯିବେ । କିନ୍ତୁ ପୁଅକୁ ଦୂରକୁ ପଠେଇ ଚନ୍ଦ୍ରମଣି ବା ରହନ୍ତେ କେମିତି ? ସେ ଯେ କଟାକ୍ଷରେ ସ୍ଥିତି, କଟାକ୍ଷରେ ପୁଣି ପ୍ରଳୟ ।

ଛିଲିମପୁରରେ ପହଞ୍ଚିବାର ଅଳ୍ପ କେତେ ଦିନ ପରେ ଦେହ ଅସୁସ୍ଥ ହେଲା । ଖୁବ୍ ଖରାପ ହୋଇପଡ଼ିଲା ଦେହର ଅବସ୍ଥା । କିନ୍ତୁ ପୂଜାର ଆନନ୍ଦକୁ ମ୍ଳାନ ହେବାକୁ ଦେବେ ନାହିଁ । ଷଷ୍ଠୀ ଗଲା, ସପ୍ତମୀ ଗଲା, ଅଷ୍ଟମୀ ବି ଗଲା - ନବମୀ ବୋଧହୁଏ ଯିବ ନାହିଁ । କାତର ହୋଇ ଥରେ ଚାହିଁଲେ ପ୍ରତିମାର କରୁଣାୟତ କୋମଳ ଆଖି ଦୁଇଟିକୁ । ନବମୀ କଟିଗଲା । ଦଶମୀ ? ଦଶମୀ ଦିନ ସଂଧ୍ୟାରେ ପ୍ରତିମା ବିସର୍ଜନ ପରେ ରାମଚନ୍ଦ୍ର ଦେଖିଲେ କ୍ଷୁଦିରାମ ତଥାପି ଅଛନ୍ତି, ମାତ୍ର ସମୟ ଖୁବ୍ ସଂକ୍ଷିପ୍ତ । ଆଖିର ଦୃଷ୍ଟି ଲମ୍ବି ଯାଇଛି ସତେ କି ବିସର୍ଜିତା ପ୍ରତିମାର ପଥ ଧରି ।

ଡାକିଲେ : 'ମାମୁଁ !'

ସଡ଼ା-ଶବ୍ଦ ନାହିଁ । କ୍ଷୁଦିରାମ ନିର୍ବାକ୍ ।

କଅଣ ହେଲା ? ମୃତ୍ୟୁ ସମୟରେ ତୁଣ୍ଡରେ ନାମ ଉଚ୍ଚାରଣ କରିବ ନାହିଁ ? ଜିଭ ଅଚଳ ହୋଇ ରହିବ ? ଅବତରି ଆସିବ ବିସ୍ମୃତିର ବିଭ୍ରାନ୍ତି ? ଏତେ ଦିନର ଅଭ୍ୟାସ-ଯୋଗ ଆଜି ଆଉ କୌଣସି କାମରେ ଲାଗିବ ନାହିଁ ?

ସମସ୍ତ ଯଜ୍ଞର ଶ୍ରେଷ୍ଠ ହେଉଛି ଜପ-ଯଜ୍ଞ । ଠାକୁର ତେଣୁ କହିଲେ, ରାତି ଦିନ ଜପ କରୁଥିବୁ । ତା' ହେଲେ ଅଭ୍ୟାସ ବଳରେ ମଲା ବେଳେ ଈଶ୍ୱରଚିନ୍ତା ଆସିବ । ମୃତ୍ୟୁ ସମୟରେ ଯାହା ଭାବିଥିବୁ ସେଇଆ ହେବୁ । ଭରତ ରାଜା ହରିଣ-ହରିଣ କହି ଶୋକରେ ପ୍ରାଣତ୍ୟାଗ କରିଥିଲେ । ତେଣୁ ସେ ହରିଣ ହୋଇ ଜନ୍ମ ହେଲେ । ମୃତ୍ୟୁ ସମୟରେ ଯଦି ତୁଣ୍ଡରେ ହରିନାମ କହି ପାରିବୁ, ତେବେ ସଂଧାନ ପାଇବୁ ଈଶ୍ୱରଙ୍କର ।

'ମାମୁଁ, ରଘୁବୀରଙ୍କୁ ଭୁଲିଗଲ ?' ରାମଚାନ୍ଦଙ୍କ ଆଖିରେ ଲୁହ ଜକେଇ ଆସିଲା । 'ଏତେ ଯାହାଙ୍କର ନାଁ ଜପୁଥିଲ ସେ ଆଜି ଶେଷ ବେଳରେ ତୁମକୁ ପରିତ୍ୟାଗ କଲେ ?'

'କିଏ... ? ରାମଚାନ୍ଦ !' ଆଚ୍ଛନ୍ନ ଆଖି ଖୋଲି ଚାହିଁଲେ କ୍ଷୁଦିରାମ : 'ବିସର୍ଜନ ସରିଛି ? ତେବେ ମୋତେ ଟିକିଏ ଧରାଧରି କରି ଉଠେଇ ବସେଇ ଦିଅ ।'

ସମସ୍ତେ ମିଶି ଅତି ଯତ୍ନରେ ଧରି ବସେଇ ଦେଲେ ।

ଶୋଇଥିବା ଅବସ୍ଥାରେ ନାମ କରିବି ନାହିଁ, ପୂଜା -ଭଙ୍ଗୀରେ ବସି ନାମ କରିବି । ସେ ନାମ ମୁଁ କ'ଣ ଭୁଲିଯାଇପାରେ ? କଣ୍ଠରେ ସେ ମୋର ସ୍ୱର, ମସ୍ତିଷ୍କରେ ସ୍ମୃତି, ରକ୍ତରେ ମୋର ଚେତନା । ସେ ଯେ ମୋର ନିଃଶ୍ୱାସ ବାୟୁ, ମୋର ନିସ୍ତାର-ନୌକା । ଜ୍ଞାନ-ଗାଢ଼, ଗମ୍ଭୀର ସେହି ସ୍ୱର- କ୍ଷୁଦିରାମ ତିନି ଥର ଉଚ୍ଚାରଣ କଲେ ରଘୁବୀରଙ୍କ ନାମ । ପରମୁହୂର୍ତ୍ତରେ ପ୍ରୟାଣ କଲେ ସ୍ୱଧାମକୁ ।

ଭୁତିଖାଲ ଶ୍ମଶାନରେ ବୁଲୁଛି ଗଦାଧର । ବାପା ନାହାନ୍ତି । କୁଆଡ଼େ ଗଲେ ? ମନ ଅସ୍ଥିର, ଶୂନ୍ୟ । କୌଣସି କଥାରେ ମନ ଲାଗୁନାହିଁ । ମା'ଙ୍କ ପାଖଛଡ଼ା ହେଉନାହିଁ । ଏଇଟା ଦିଅ, ସେଇଟା କର - କେତେ କଅଣ ଅଳି ଅଝଟ କରିବାକୁ ମନ ହୁଏ । କିନ୍ତୁ ଘରେ ଅଭାବ ଲାଗି ରହିଛି, ମା ଯଦି କଥା ରଖି ନ ପାରନ୍ତି ? ବାପାଙ୍କ ପାଇଁ ଶୋକ ବଢ଼ିବ ସିନା !

ନୀରବ ରହେ ଗଦାଧର । କେଉଁଠାକୁ ଗଲେ ଅଭାବ ରହିବ ନାହିଁ ସଂସାରରେ, ଶୂନ୍ୟତାର ବେଦନା ମିଳାଇ ଯିବ ମେଘ ପରି - ଅନ୍ତରର ଅନ୍ଧକାର ଭିତରେ ବସି ସେହି ସ୍ଥାନର ଠିକଣା ଖୋଜିବାକୁ ଲାଗିଲା ।

ସାତ ପୂରି ଆଠ ଚାଲିଛି । ଏଥର ଉପନୟନର ଆୟୋଜନ କରିବାକୁ ପଡ଼ିବ । ଭାଇମାନେ ଅଣ୍ଟା ଭିଡ଼ି ଲାଗି ପଡ଼ିଛନ୍ତି ।

ଉପନୟନ ସରିଲା । କାନ୍ଧରେ ପଇତା ପଡ଼ିଲା । ଏଥର ବ୍ରତଭିକ୍ଷା । କିନ୍ତୁ ଭିକ୍ଷା ଦେବ କିଏ ? ଗଦାଧର ଅଡ଼ି ବସିଲା, ପ୍ରଥମ ଭିକ୍ଷା ନେବ ଧନୀ କମାରୁଣୀ ହାତରୁ ।

ଅଦ୍ଭୁତ କଥା ! ଧନୀ ନୀଚ଼ ଜାତିର ସ୍ତ୍ରୀ, ବ୍ରାହ୍ମଣ-କନ୍ୟା ନୁହେଁ । ସେ ପୁଣି ଭିକ୍ଷା ଦେବ ! କୁଳ-ପ୍ରଥା ଲଙ୍ଘନ ହେବ ଯେ !

କୁଳାଚାର କଅଣ ? ଜାତି-ଅଜାତି କଅଣ ? ପ୍ରାଣ ଚାହୁଁଛି ଧନୀକୁ ମା ବୋଲି ଡାକିବି, କୁଳାଚାର ପୁଣି କଅଣ ? ଯେଉଁ ଧନୀ ମୋତେ କୋଳରେ ଧରି ମୁକ୍ତ କରିଛି ମା'ର ଜଠରୁ- ସେହି ଧନୀକୁ ମା ଡାକିବି । କୌଣସି ବିଧି-ନିଷେଧ ମାନିବି ନାହିଁ । ଉତ୍ତମ । ତୁମେ ସବୁ ତୁମ ବ୍ରାହ୍ମଣ-ପଣିଆ ନେଇ ରହିଥାଅ, ମୁଁ ଓପାସ ରହିଲି । କବାଟ କିଳି ଦେଇ ଘର ଭିତରେ ରହିଲା

ଗଦାଧର ।

ଯେତେ ଯିଏ ଥିଲେ, ସମସ୍ତେ ବୁଝେଇଲେ, କାକୁତି-ମିନତି କଲେ । କବାଟ ଖୋଲିଲା ନାହିଁ । ବାଳକ, ଅଥଚ ବିପ୍ଳବୀ, ଗଦାଧର ।

ଶେଷକୁ ରାମକୁମାର କହିଲେ, 'ହଉ, ହେଲା ଏବେ । ଧନୀ କମାରୁଣୀ ହିଁ ଭିକ୍ଷା ଦେବ । କବାଟ ଖୋଲ ଏଥର । କୁଳାଚାର ପଛେ ନଷ୍ଟ ହେଉ, ତୁ ନ ଖାଇ ଓପାସରେ ପଡ଼ି ରହିଥିବୁ ମୁଁ ସହି ପାରିବି ନାହିଁ ।

ପ୍ରସନ୍ନ ସୂର୍ଯ୍ୟ ପରି ଦରଜା ଖୋଲି ବାହାରି ଆସିଲା ଗଦାଧର ।

ଧନୀ କମାରୁଣୀ ଭିକ୍ଷା ଦେଲା ।

ନିଃସ୍ୱ ବିଧବା, ନିଃସନ୍ତାନ । କିନ୍ତୁ ମହା ଭାଗ୍ୟବତୀ । ତ୍ରିଭୁବନ ବୁଲି ବୁଲି ନିଜେ ଯିଏ ପୂରାଉଥାଆନ୍ତି ସମସ୍ତଙ୍କ ଭିକ୍ଷା ଥାଳ ତାଙ୍କୁ ହିଁ ଭିକ୍ଷା ଦେଲା ଧନୀ-କାମରୁଣୀ !

ଆନୁଡ଼ ଗାଁରେ ଦେବୀ ବିଶାଳାକ୍ଷୀଙ୍କ ଆସ୍ଥାନ - କେହି କେହି କହନ୍ତି ବିଷଲକ୍ଷ୍ମୀ । କାମାରପୁକୁର ଠାରୁ ପ୍ରାୟ ଦୁଇ ମାଇଲ ଦୂର । ମଝିରେ ବିଲ । ଧର୍ମଦାସ ଲାହାଙ୍କର ବିଧବା ଝିଅ ପ୍ରସନ୍ନ ପୂଜା ଦେବାକୁ ଯାଉଛି । ସାଙ୍ଗରେ ଅଛନ୍ତି ଗାଁର ଆହୁରି କେତେ ଜଣ ସ୍ତ୍ରୀ ଲୋକ । ଗଦାଧର କେଉଁଠି ଥିଲା, ହଠାତ୍ ଆସି ପହଞ୍ଚିଗଲା । କହିଲା, 'ମୁଁ ଯିବି ।' କଅଣ ? ତୁ ଯିବୁ ? ଏତେ ଦୂର ବିଲ ବାଟ, ତୁ ଚାଲି ପାରିବୁ ? କିନ୍ତୁ ଗଦାଧରର ମୁହଁକୁ ଅନାଇ କାହାରି ତୁଣ୍ଡରୁ ଆଉ ଆପତ୍ତି ବାହାରିଲା ନାହିଁ । ହଉ, ଯଦି ମନ କରିଛି, ଆସୁ ସାଙ୍ଗରେ । ଫେରିବା ବେଳକୁ ତ ଡେରି ହେବ ନିଶ୍ଚୟ । ପିଲା ଲୋକ । ଭୋକ ଲାଗିବ ତାକୁ । ଚିନ୍ତା ନାହିଁ, ଠାକୁରାଣୀଙ୍କ ପ୍ରସାଦ ଥିବ, ଖାଇଦେବ । ତା' ଛଡ଼ା ପିଲାଟି ଭାରି ସୁନ୍ଦର ଗୀତ ଗାଇପାରେ । ଗଳାଟି ମିଠା । କହିଲେ,ଦି' ଚାରିଟା ଗୀତ ବି ଗାଇବ । ହଉ,ଚାଲ । କିନ୍ତୁ ଗୀତ ଗାଇ ଶୁଣାଇବାକୁ ପଡ଼ିବ ।

'ସତରେ, ଗଦାଇର ଗୀତ ଶୁଣିବା ପରେ ଆଉ କାହାରି ଗୀତ ଭଲ ଲାଗୁନାହିଁ କାନକୁ', କହିଲା ପ୍ରସନ୍ନ : 'ଆମ କାନଗୁଡ଼ାକ ସବୁ ଖରାପ କରି ଦେଲାଣି ।'

ଗହୀର ପାଟ । ଖୋଲା ଜାଗା । ଗଳା ଛାଡ଼ି ଗୀତ ଗାଇବାକୁ ଆରମ୍ଭ କଲା ଗଦାଧର । ଦେବୀ ବିଶାଳାକ୍ଷୀଙ୍କ ସ୍ତୁତି-ଗୀତ । ଗୀତ ଗାଉ ଗାଉ ହଠାତ୍ ରହିଗଲା ଗଦାଧର । ସାଙ୍ଗର ସ୍ତ୍ରୀଲୋକମାନେ ଅନାଇ ଦେଲେ । କଥା କଅଣ ? ଗଦାଧରର ଦୁଇ ଆଖିରୁ ଦରଦର ହୋଇ ଲୁହ ଝରି ପଡୁଛି, ଦେହ-ହାତ କାଠି ପରି, ଛିଡ଼ା ହୋଇଛି ପଥର ମୂର୍ତ୍ତି ଭଳି, ନିଷ୍ପନ୍ଦ ହୋଇ । କଅଣ ରେ, କଅଣ ହେଲା ତୋର ? କିଏ ଦେବ କଥାର ଉତ୍ତର ! ଗଦାଧରର ବାହ୍ୟଜ୍ଞାନ ନାହିଁ । କଅଣ କରିବା ଏବେ ? ସ୍ତ୍ରୀଲୋକମାନେ ଭୟରେ କାତର ହୋଇ ପଡ଼ିଲେ । ମୁହଁ ଶୁଖିଗଲା ସମସ୍ତଙ୍କର । ଖରା ଯୋଗୁଁ ବୋଧହୁଏ ମୁଣ୍ଡ ଗରମ ହୋଇ ଯାଇଛି ପିଲାଟାର । ମୁଣ୍ଡରେ ପାଣି ଢାଳ । ବିଞ୍ଚିଦିଅ । ଆଉଁସି ଦିଅ ଦେହ ।

ଗଦାଧର ସ୍ଥିର, ନିଶ୍ଚଳ ।

'ଗଦାଧର ! ଗଦାଇ !' ବ୍ୟାକୁଳ ହୋଇ ସମସ୍ତେ ଡାକିବାକୁ ଲାଗିଲେ । କେମିତି ତା' ଚେତା ଆସିବ । କେମତି ନେଇ ତାକୁ ତା' ମା' ପାଖରେ ପହଞ୍ଚେଇବେ !

ହଠାତ୍ ପ୍ରସନ୍ନର ମନକୁ ଗୋଟାଏ କଥା ଆସିଲା । ଯେଉଁ ବିଶାଳାକ୍ଷୀ ଦେବୀଙ୍କୁ ଆମେ ଦେଖିବାକୁ ଯାଉଛୁଁ, ସେ ନିଜେ ଆସିନାହାନ୍ତି ତ ଆମକୁ ବାଟ କଢ଼େଇ ନେବା ପାଇଁ ?

'ଶୁଣ, ଶୁଣ ମୋ କଥା, ତା' ଉପରେ ମା' ଆସି ଭରା ଦେଇଛନ୍ତି ।' ତେବେ ମିଛରେ ଆଉ ଗଦାଧରକୁ ଡାକିଲେ କଅଣ ହେବ । ବରଂ ମା' ବିଶାଳାକ୍ଷୀଙ୍କୁ ଡାକ- ଯିଏ ଆସି ଯାଇଛନ୍ତି ଆଗୁଆ, ଆମେ ପହଞ୍ଚିବା ଆଗରୁ । ଆଧାର ପାଇ ଆନନ୍ଦରେ ଅଧିଷ୍ଠିତ ହୋଇ ଯାଇଛନ୍ତି ।

ସମସ୍ତେ ମିଶି ଦେବୀ-ସ୍ତବ ଆରମ୍ଭ କଲେ । ଗଦାଧରର କାନ ପାଖକୁ ମୁହଁ ନେଇ କହିଲେ, 'ପ୍ରସନ୍ନ ହୁଅ, ମା' ବିଶାଳାକ୍ଷୀ ! ଆଖି ଖୋଲି ଚାହଁ ।' ବାରମ୍ବାର ଦେବୀ ନାମ ଉଚ୍ଚାରଣ କଲେ କାନ ପାଖରେ ।

ଗଦାଧରର ମୁହଁରେ ହସ ଫୁଟିଲା । ସଂଜ୍ଞାର ଲାବଣ୍ୟ ତରଳ ହୋଇ ଆସିଲା ସର୍ବାଙ୍ଗରେ । କେହି ଆଉ ତାକୁ ଗଦାଇ ବୋଲି କହୁନାହାନ୍ତି । ସମସ୍ତେ ଡାକୁଛନ୍ତି 'ମା' ବୋଲି । ଭୋଗ ଡାଲା ଆଉ ମନ୍ଦିରକୁ ନେଇ ଲାଭ କଅଣ ? ଏଇଠି ସମସ୍ତ ଭୋଗ ଅର୍ପଣ କର ଗଦାଇକୁ । ଗଦାଇକୁ ଅର୍ପଣ କଲେ ମା'ଙ୍କୁ ଅର୍ପଣ ହେଲା ବୋଲି ଜାଣିବ !

ଏଇଟା ଗଦାଧରର ଦ୍ୱିତୀୟ ଆବେଶ ।

ଘନକୃଷ୍ଣ ମେଘ କୋଳରେ ସିତପକ୍ଷ ବକ-ବଳାକାର ଯେଉଁ ରୂପ, ବିଶାଳାକ୍ଷୀଙ୍କର ସେହି ରୂପ । ଦୁଇଟିର ହିଁ ଏକ ଉଦ୍‌ଭାସ, ଏକ ତାତ୍ପର୍ଯ୍ୟ । ଗୋଟିଏ ଦିବ୍ୟ କାବ୍ୟର ଦୁଇଟି ଶ୍ଳୋକ ।

ସୀତାନାଥ ପାଇନ କାମାରପୁକୁରର ଜଣେ ସଙ୍ଗତି ସଂପନ୍ନ ଲୋକ । ଶିବରାତ୍ରି ଦିନ ତାଙ୍କ ଘର ଆଗରେ ଯାତ୍ରା ହେବ । ଶିବ-ଦୁର୍ଗା ପାଲା । ଧୁମ୍ ଧାମ ଲାଗିଛି । ଲୋକଙ୍କ ମନରେ ଆନନ୍ଦ କହିଲେ ନ ସରେ । ଠିକ୍ ଯାତ୍ରା ଆରମ୍ଭ ହେବା ପୂର୍ବରୁ ଜଣାଗଲା ଯେଉଁ ପିଲାଟି ଶିବ ପାର୍ଟ କରିବାର କଥା ସେ ଆସି ନାହିଁ, ତା' ଦେହ ସାଂଘାତିକ ଖରାପ । ତା' ବଦଳରେ ଶିବ ହୋଇ କିଏ ବାହାରିବ ଯାତ୍ରା ଦଳରେ ଏମିତି ବି ଆଉ କେହି ନାହିଁ । ଅତଏବ ଯାତ୍ରା ବନ୍ଦ ରହିବା ଛଡ଼ା ଆଉ ଉପାୟ ନାହିଁ । କିନ୍ତୁ ଯାତ୍ରା ଯଦି ବନ୍ଦ ହେଉଛି, ରାତ୍ରି-ଜାଗରଣ ହେବ କେମିତି ? ସମସ୍ତେ ଯାଇ ଅନୁରୋଧ କଲେ ଦଳର ଅଧିକାରୀଙ୍କୁ, ଯେମିତି ହେଉ ଯାତ୍ରା କରାଅ । ଅଧିକାରୀ କହିଲେ, ଆପଣମାନେ ଜଣେ ଶିବ ଯୋଗାଡ଼ କରି ଦିଅନ୍ତୁ, ମୁଁ ଯାତ୍ରା କରେଇବି ।

ଏକାଥରକେ ସମସ୍ତଙ୍କ ପାଟିରୁ ବାହାରିଲା – ଗଦାଧରକୁ ଆଣି ଶିବ କରେଇଲେ କେମିତି ହୁଅନ୍ତା ? ଚମତ୍କାର ହେବ । ବୟସ ଅବଶ୍ୟ ଅଳ୍ପ, କିନ୍ତୁ ଶିବଙ୍କ ବହୁତ ଗୀତ ସେ ଜାଣିଛି । ଚଳେଇ ନେଇ ପାରିବ । ତା' ଛଡ଼ା ଶିବ-ବେଶରେ ତାକୁ ଯାହା ମାନିବ - ବାଛିବାକୁ ନଥିବ ! ପରିସ୍ଥିତି କଅଣ ହେବ ଗଦାଧର ଠିକ୍ ବୁଝିପାରୁନାହିଁ । ତେବେ ସମସ୍ତେ ଧରାଧରି କରିବାରୁ ରାଜି ହେଲା ।

ଯାତ୍ରା ଆରମ୍ଭ ହେଲା । ଯେତେବେଳେ ଗଦାଧରର ଆସିବା ପାଳି ପଡ଼ିଲା ସେ ଆସି ଠିଆ ହେଲା ଆସର ମଝିରେ ଶିବ ବେଶରେ । ପୂରାପୂରି ସେହି ସ୍ୱଭାବସ୍ୱଚ୍ଛଧବଳ ସଚ୍ଚିଦାନନ୍ଦ

ଶିବ । ମୁଣ୍ଡରେ ରୁକ୍ଷ ବର୍ଣ୍ଣର ଜଟାଜୁଟ, ଅଙ୍ଗରେ ବିଭୂତି-ଲେପନ, ପରିଧାନରେ ବ୍ୟାଘ୍ର-ଚର୍ମ । ଗୋଟିଏ ହାତରେ ଡମ୍ବରୁ, ଅନ୍ୟ ହାତରେ ତ୍ରିଶୂଳ । କଣ୍ଠ ଓ ବାହୁରେ ଅନନ୍ତ ନାଗ ଫଣା ଟେକି ରହିଛି । ଶେଖରରେ ଝଟକୁଛି ସୁଧା-ମୟୂଖ ଶଶଧର । ପଦପାତରେ ଧୈର୍ଯ୍ୟ, ଅବସ୍ଥିତିରେ ଶାନ୍ତି । ନିର୍ନିମେଷ ଆଖିରେ ତୃତୀୟ ନୟନର ଦୀପ୍ତତା । ସତେ ଅବା ସ୍ୱୟଂ ମୃତ୍ୟୁଞ୍ଜୟ ମହାଦେବ ଅବତରି ଆସିଛନ୍ତି ନର ରୂପରେ । ସେହି ତପଯୋଗଗମ୍ୟ ଶୂଳପାଣି ବିଶ୍ୱନାଥ । ତାଣ୍ଡବ-ପ୍ରଚଣ୍ଡ ଅଥଚ ପ୍ରାଣ-ପୋଷକ ।

ଅଭାବନୀୟ ଆନନ୍ଦର ଢ଼େଉ ଖେଳିଗଲା ଚତୁର୍ଦ୍ଦିଗରେ । ଯାତ୍ରା ଦେଖିବା ପାଇଁ ଯେଉଁ ସ୍ତ୍ରୀଲୋକମାନେ ଆସିଥିଲେ ସେମାନେ ହଠାତ୍ ହୁଳ ହୁଳି ଦେବାକୁ ଆରମ୍ଭ କଲେ । କେହି କେହି ଶଙ୍ଖଧ୍ୱନିରେ ସଭାସ୍ଥଳକୁ ପ୍ରକମ୍ପିତ କରାଇଲେ । 'ହରିବୋଲ ! ହରିବୋଲ' ଧ୍ୱନିରେ ଗଗନ-ପବନ ମୁଖରିତ ହୋଇ ଉଠିଲା । ଓସ୍ତାଦ ନିଜେ ଯୋଡ଼ହସ୍ତରେ, ଶିବ ସ୍ତୁତି ଆରମ୍ଭ କରିଦେଲେ: 'ଜଟାଟକୀ ଗଳଜ୍ଜଳ ପ୍ରବାହପ୍ଲାବିତ ସ୍ଥଳେ –'

'ଆଃ, କେଡ଼େ ସୁନ୍ଦର ମାନିଛି ଗଦାଇକୁ ।'

'ଶିବ ପାର୍ଟ ଟା ଆଜି ଏତେ ଭଲ ହେବ, ଆମେ ତ କେହି ଭାବି ବି ନଥିଲୁଁ ।'

'ତାକୁ ଟିକିଏ ଶିଖାଶିଖି କରେଇ ବାଗେଇ ନେଇ ଯାତ୍ରା ଦଳଟିଏ ଗଢ଼ିବା–'

ଏହିଭଳି କେତେ କଅଣ କହି ଯାଉଥିଲେ ଦେଖଣାହାରିଏ ।

କିନ୍ତୁ, କଥା କଅଣ ? ଶିବ କିଛି କହୁ ନାହାନ୍ତି ! କଅଣ ହେଲା ? ଗଦାଧର କିଛି କହୁ ନାହିଁ କାହିଁକି ? ହଲଚଲ ହେଉନାହିଁ କାହିଁକି ? ଖାଲି ବେଶ ପିନ୍ଧି ଠିଆ ହେଲେ କ'ଣ ପାର୍ଟ ହେବ । କଥା କହିବାକୁ ପଡ଼ିବ, ଏପାଖ ସେପାଖ ହୋଇ ଚାଲିବାକୁ ପଡ଼ିବ । ଆରେ ! ଏ କଅଣ ? ଗଦାଧର କାନ୍ଦୁଛି ! ଶିବ ପୁଣି କାନ୍ଦିଲେ କେତେବେଳେ ... ?

କେତେ ଜଣ ଧାଇଁଗଲେ ପାଖକୁ । ଗଦାଧରର ବାହ୍ୟଜ୍ଞାନ ନାହିଁ । ଗଦାଧର ତତ୍‌ସ୍ୱରୂପ । ଜଳ ଆଣ ! ବିଞ୍ଚି ଦିଅ ! ଶିବ ଭରା ହୋଇଛନ୍ତି । କାନରେ ଶିବ-ମନ୍ତ୍ର କୁହ !

'ଯାଃ ! ଟୋକାଟା ରସଭଙ୍ଗ କରିଦେଲା । ଏଡ଼େ ସୁନ୍ଦର ପାଲାଟା ଶୁଣେଇ ଦେଲା ନାହିଁ !' ଅବଶୋଷ କରି କହିଲେ କେତେ ଜଣ ।

ଯାତ୍ରା ଭାଙ୍ଗିଗଲା । ଗଦାଧରକୁ କାନ୍ଧରେ ପକାଇ ନେଇ ଘରେ ପହଞ୍ଚେଇ ଦିଆଗଲା । ସେ ପର୍ଯ୍ୟନ୍ତ ସେ ଦେହଜ୍ଞାନ ବର୍ଜିତ । ସେ ପର୍ଯ୍ୟନ୍ତ ସେ ଶିବମୟ ।

ସାରା ରାତି ଘରେ କନ୍ଦାକଟା । ଯେତେ ଯାହା କଲେ ବି ଗଦାଧରର ଜ୍ଞାନ ଆସୁନାହିଁ ।

କାହାକୁ କହନ୍ତି ଜ୍ଞାନ ? କାହାକୁ ବା ଅଜ୍ଞାନ ? କିଏ ଜାଗ୍ରତ, କିଏ ବା ସୁଷୁପ୍ତ !

ରାତି ପାହି ସକାଳ ହେଲା । ଗଦାଧର ଆଖି ଖୋଲିଲା । ଆକାଶରେ ଆଖି ଖୋଲିଲେ ଦିନମଣି ।

ଏଇ ହେଲା ଗଦାଧର । ଦୁଇଟି ଆୟତ ଉଜ୍ଜ୍ୱଳ ଆଖି- ସେ ଆଖିରେ ଶାନ୍ତି ଆଉ ସରଳତା । ମଥାରେ ମଥାଏ ଅଲରା କେଶ - ସେଇ ଅଲରା କେଶରେ ଆନନ୍ଦ ମୟ ଔଦାସୀନ୍ୟ । ମୁହଁରେ ଅମିୟମଧୁର ହସ, ହସରେ ଅହେତୁକୀ କରୁଣା । କଣ୍ଠ ସ୍ୱରରେ ଅମୃତ ନିର୍ଝରର

ପ୍ରସନ୍ନତା- ଯାହାର ପ୍ରସାଦରେ ଅଶେଷ ଆଶ୍ୱାସ । ଯିଏ ଦେଖେ, ଭଲ ପାଏ । ଥରେ ଯାହାର ଆଖି ପଡ଼ିଯାଏ ତା' ଉପରେ, ଆଉ ଆଖି ଫେରେଇ ପାରେ ନା । ଭଲ ଚିଜଟିଏ କେହି ପାଇଗଲେ ମନ ହୁଏ ଗଦାଧରକୁ ଖୁଆନ୍ତି । ଇଚ୍ଛା ହୁଏ ତା'କଥା ଟିକିଏ ଶୁଣନ୍ତି । ସେ ଯେଉଁଠାକୁ ଯାଉଛି, ଯାଇ ସେଇଠି ଟିକିଏ ବସନ୍ତି ।

ଏଣେ କିନ୍ତୁ ଲେଖାପଢ଼ା ପ୍ରତି ତିଳେ ହେଲେ ଆଗ୍ରହ ନାହିଁ ଗଦାଧରର । ଚାଟଶାଳୀକୁ ଯିବାରେ ସିନା ଆପତ୍ତି । କିନ୍ତୁ ରାମାୟଣ କି ମହାଭାରତ ପଢ଼ିବାକୁ କୁହ, ଅନର୍ଗଳ ପଢ଼ିଯିବ, ପାଗଳ କରେଇ ଦେବ । ଧ୍ରୁବ-ପ୍ରହ୍ଲାଦ କଥା ଶୁଣିବାକୁ ଚାହୁଁଛ, ଆଖିରେ ଲୁହ ସମ୍ଭାଳି ପାରିବ ? ଖୋଲା ଜାଗାରେ, ମୁକ୍ତ ପବନରେ ବୁଲିବାକୁ ଛାଡ଼ିଦିଅ, ମହାଖୁସି । ଯାହା କିଛି ସୁନ୍ଦର, ମନ ଧାଉଁଛି ତାହାରି ଆଡ଼କୁ । ଭାବେ, କେଉଁ ଉପାୟରେ ଏହି ସୁନ୍ଦରକୁ ନିଜ ସୃଷ୍ଟି ମଧ୍ୟରେ ପ୍ରକାଶ କରାଇବ । ଗଦାଧର ତେଣୁ ମାଟିରେ ମୂର୍ତ୍ତି ଗଢ଼େ, ଗଳା ଛାଡ଼ି ଗୀତ ଗାଏ, ଦୁଇ ହାତ ଟେକି ନାଚେ । ଶିଳ୍ପରେ, ସଂଗୀତରେ, ନୃତ୍ୟରେ ସେ ସେହି - ଏକ-ଅନିର୍ବଚନୀୟଙ୍କୁ ଉଦ୍‌ଘାଟିତ କରିବାକୁ ଚାହେଁ । ଆଉ, କଥା ସେ ଯାହା କହେ, ତାହା ତ ସାହିତ୍ୟ - ସାହିତ୍ୟର ସାରବିନ୍ଦୁ । 'ମୋତେ ରସ-ବଶରେ ରଖିବୁ ମା, ମୋତେ ଶୁଖିଲା ସନ୍ନ୍ୟାସୀଟିଏ କରିଦେବୁ ନାହିଁ ।'— ଏହି ପ୍ରାର୍ଥନା ଦିନେ ଗଦାଧର କରିଥିଲା । ମୋତେ 'ରସ' ଦେ, କିନ୍ତୁ ତା' ସଙ୍ଗେ ସଙ୍ଗେ 'ବଶ'ରେ ରଖ । ମୋତେ ଉଚ୍ଛ୍ୱାସ ଦେ, ତା' ସହିତ ସଂଯମ ଦେ । ଭାବ ସହିତ ରୂପକୁ ମଧ୍ୟ ବିକଶିତ କରାଇ ଦେ । ମୁଁ ତୋର କବି ହେବାକୁ ଚାହେଁ । ତୁ ଯଦି ମା, ଆଦି ଦେବୀ, ମୁଁ ହେବି ତୋର ଆଦି କବି । କେତେ ଆଉ ମୂର୍ତ୍ତି ଗଢ଼ିବି, ମା, ଏଥର ମୁଁ ନିଜେ ନିଜକୁ ମୂର୍ତ୍ତି କରିବି !

୬

ଗଦାଧରର ଭାବ-ସମାଧି ଆଜିକାଲି ବହୁତ ବେଶୀ ହେଉଛି । ହରି-ହାଟ, ଶିବ-ପୂଜା ଅଥବା ମନସା-ପାଲା କିମ୍ବା କୋଉଠି ଟିକିଏ ଦେବ-ଦେବୀଙ୍କ ନାମକୀର୍ତ୍ତନ ଶୁଣି ପକାଇଲେ ହେଲା । କାନରେ ପଡ଼ିବା ମାତ୍ରେ ଭାବରେ ବିହ୍ୱଳ, ତନ୍ମୟ । ସେହି ତନ୍ମୟତା ଟିକିଏ ଗାଢ଼ ହୋଇଗଲେ ଭାବ-ସମାଧି । ଚନ୍ଦ୍ରମଣି ଆଗରୁ ଡରିଯାଉଥିଲେ । ଭାବୁଥିଲେ ପୁଅକୁ ବୋଧହୁଏ ଭୂତ ଲାଗୁଛି । ଏବେ ଦେଖୁଛନ୍ତି, ନିଜ ଭାବରେ ଯେଉଁ ଭଳି ବୁଡ଼ି ଯାଉଛି, ନିଜେ ପୁଣି ସେହି ଭାବରେ ଉଠି ଆସୁଛି । କୌଣସି ପ୍ରକାର ରୋଗର ଲକ୍ଷଣ ବି ଦେହରେ ନାହିଁ । ବରଂ ସାରା ଅଙ୍ଗରେ ଝଟକି ଉଠୁଛି ଦର୍ପଣର ଆଭା । ସେହି ଦର୍ପଣରେ ସତେ ଯେପରି ଦେଖା ଯାଉଛି ଆଉ ଏକ ମୂର୍ତ୍ତି- ଆଉ ଏକ ଦେହ । ଚିନ୍ମୟ ମୂର୍ତ୍ତି, ଚିନ୍ମୟ ଦେହ ।

କିନ୍ତୁ ଭାଇମାନଙ୍କର ଧାରଣା, ବାୟୁ ରୋଗ ହୋଇଛି । ସେଥିପାଇଁ ଲେଖା-ପଢ଼ା ଉପରେ ଆଉ ଜୋର ଦିଅନ୍ତି ନାହିଁ । କରୁ, ଯାହା ତା'ର ଇଚ୍ଛା । ତଥାପି ପାଠଶାଳାକୁ ଯିବା ତ ଦରକାର । ସଂସାର ଚଳେଇ ହେଉ ନାହିଁ ଦେଖି ରାମକୁମାର କଲିକତା ଗଲେ - ଯୋଗାଡ଼ଯନ୍ତ୍ର କରି ଟୋଲ ଗୋଟାଏ ଖୋଲିଲେ । ଗଦାଧରର ବୟସ ସେତେବେଳେ ବାର-ତେର ବର୍ଷ ।

ଚାଟଶାଳୀକୁ ଯାଉଛି । ପଢ଼ିବାକୁ ନୁହେଁ, ପିଲାଙ୍କ ସହିତ ଆଡ୍‌ଡା ଜମେଇବାକୁ । ଦଳ ବାନ୍ଧିବାକୁ । ଯେଉଁମାନେ ପାଠ ପଢ଼ି ପରେ ଜ୍ଞାନୀ-ଗୁଣୀ ହେବେ ସେମାନଙ୍କୁ ଚିହ୍ନି ରଖିବାକୁ । ଯେତେ ଯାହା କରୁ ପଛକେ, ରଘୁବୀରଙ୍କ ପୂଜାଟି ଠିକ୍ ସମୟରେ କରେ, ମା'ଙ୍କୁ ଦରକାରୀ କାମରେ ସାହାଯ୍ୟ କରେ । ରାମେଶ୍ୱରଙ୍କ ଉପରେ ସଂସାରର ଦାୟିତ୍ୱ । କିନ୍ତୁ ସେ ବି ରଘୁବୀରଙ୍କ ଉପରେ ଛାଡ଼ିଦେଇ ନିଶ୍ଚିନ୍ତ । ମନରେ ବିଶ୍ୱାସ, ଗଦାଧରର ଏ ଯେଉଁ ଅଦ୍ଭୁତ ଶକ୍ତି ପ୍ରକାଶ ପାଉଛି ବେଳେବେଳେ, ନିଶ୍ଚୟ କିଛି ଗୋଟାଏ ହେବ । ଯିଏ ଚିନ୍ତାମଣି ସେ ନିଜେ ଯେତେବେଳେ ନିଶ୍ଚିନ୍ତ, ସେତେବେଳେ ଚିନ୍ତା କରି ଲାଭ କଅଣ ?

ଘରେ ବସି ରହିଛି ଗଦାଧର, କାମ ଧନ୍ଦା ପ୍ରାୟ କିଛି ନାହିଁ । ଗାଁର ସ୍ତ୍ରୀଲୋକମାନଙ୍କ ସହିତ ତା'ର ଖୁବ୍ ଆତ୍ମୀୟତା । ଖରାବେଳେ ଝିଅ-ବୋହୂମାନେ ଦଳ ବାନ୍ଧି ଚନ୍ଦ୍ରମଣିଙ୍କ ଘରକୁ ଆସନ୍ତି, ଗଦାଧରକୁ ହରି-ନାମ ଗାଇ ଶୁଣାଇବାକୁ କହନ୍ତି । ଦିନେ ଦିନେ କହନ୍ତି, ଧର୍ମ ବିଷୟକ କୌଣସି ଉପାଖ୍ୟାନ କୁହ । ଏହା ଠାରୁ ଆଉ ଅଧିକ ପ୍ରିୟ କଥା କଅଣ ଅଛି ଗଦାଧରର ? ସଙ୍ଗେ ସଙ୍ଗେ ବସିପଡ଼େ କଥା ଶୁଣାଇବା ପାଇଁ । 'ମା, ତୁମେ ବି ବସ, ଶୁଣିବ ।' ''ନାଇଁରେ ବାପା, ମୋର ତେଣେ କେତେ କାମ ପଡ଼ିଛି ।'' 'କି କଥା ଇଏ ! ଆମେ ସବୁ ଆପଣଙ୍କ କାମ କରି ଦେଉଛୁଁ ।' କହି ଯେତେ ସ୍ତ୍ରୀଲୋକ ସେଠି ଥାଆନ୍ତି ସମସ୍ତେ ମିଶି ଚନ୍ଦ୍ରମଣିଙ୍କ କାମ ଚଟାପଟ ସାରି ଦିଅନ୍ତି । ଚନ୍ଦ୍ରମଣି ବସନ୍ତି ସ୍ଥିର ହୋଇ । ଗଦାଧର ଗୀତ ବୋଲିବା ଆରମ୍ଭ କରେ । ଦିନେ ଦିନେ ପୋଥି ପଢ଼ି ଶୁଣାଏ । ଗାଁରେ ଯେତେ ଯେଉଁଠି ଭାଗବତ ପାଠ ଅଥବା ହରି-କୀର୍ତ୍ତନ ହୁଏ ସବୁ ଶୁଣି ଶୁଣି ମୁଖସ୍ଥ ହୋଇଯାଇଛି ଗଦାଧରର । ତା'ଛଡ଼ା, ଯାହା ସେ କେବେ ଶୁଣିନାହିଁ, ସେ ଭଳି କଥା ବି ବାହାରେ ତା' ତୁଣ୍ଡରୁ । ସ୍ତ୍ରୀଲୋକମାନେ ତନ୍ମୟ ହୋଇ ଶୁଣୁଥାଆନ୍ତି । ସମୟ-ଜ୍ଞାନ ରହେ ନାହିଁ । ସଞ୍ଜ ଆଗରୁ ଆହୁରି ଯେ କେତେ କାମ ଘରେ ଅଛି, ଭୁଲି ଯାଆନ୍ତି । ଗଦାଧର ସହିତ ଏକ ମନରେ ନାମ କରୁଥାଆନ୍ତି ।

ନାମର ମୂଲ୍ୟ କଅଣ କମ୍ ? ଯାହା ନାମ ତାହା ହିଁ ତ ରାମ । ସତ୍ୟଭାମା ତୁଳାଯନ୍ତ୍ରରେ ସୁନା ପକାଇ ଠାକୁରଙ୍କୁ ଓଜନ କରୁଥିଲେ । ଯେତେ ପକାଇଲେ ବି କିଛି ହେଲା ନାହିଁ । ରୁକ୍ମିଣୀ ଆସି ତୁଳସୀ ପତ୍ରରେ କୃଷ୍ଣ-ନାମ ଲେଖି ରଖିଦେଲେ, ସଙ୍ଗେ ସଙ୍ଗେ ନିକିତି ତଳକୁ ଖସିଲା, ଓଜନ ସମାନ ହେଲା । ଏଇ ହେଉଛି ନାମର କରାମତି, ନାମର ମାହାତ୍ମ୍ୟ ! ତେବେ ନାମ ସହିତ ଅନୁରାଗ ଦରକାର । ଯେଉଁ ଲୋକ ତୁମର ପ୍ରିୟ ତାକୁ ଖାଲି ତା' ନାଁଟି ଧରି ଡାକିଲେ ଚଳିତ ନାହିଁ । ନାଁ ସହିତ ଦରକାର ଯିକିଏ ପ୍ରେମ । ଯଦି ନାମ କରୁ କରୁ ଦିନକୁ ଦିନ ଅନୁରାଗ ବଢ଼ୁଥିବ, ଆଉ ଅନୁରାଗ ସହିତ ଆନନ୍ଦ, ତେବେ ଆଉ ଭୟ ନାହିଁ । ବିକାର ଅବଶ୍ୟ କଟିବ । ବିକାର କଟିଲେ ସେ ଆକାରିତ ହେବେ ।

ଧର୍ମଦାସ ଲାହାଙ୍କ ଝିଅ ପ୍ରସନ୍ନ । ଗଦାଧରକୁ ସେ ଦେଖେ ଗୋପାଳ ରୂପରେ । ଅଥଚ ଗଦାଧର ନିଜେ ସ୍ତ୍ରୀଲୋକମାନଙ୍କ ଭଳି ଏମିତି ହାବ-ଭାବ ଦେଖାଏ ଯେ ସେମାନେ ତାକୁ କହନ୍ତି ରାଧାରାଣୀ ।

ସେଇ ଗାଁର ସୀତାନାଥ ପାଇନ । ବିରାଟ ପରିବାର ତାଙ୍କର । ଆଠ ପୁଅ ସାତ ଝିଅ ।

ତା'ଛଡ଼ା ଅଛନ୍ତି ଜ୍ଞାତି-କୁଟୁମ୍ବ । ଲୋକେ କହନ୍ତି ତାଙ୍କ ଘରେ ପ୍ରତିଦିନ ଦଶଟା ଶିଳରେ ବାଟଣ ବଟା ହୁଏ । ଘରର ଭିତର ଆଗଣାଟା ବହୁତ ବଡ଼ । ବହୁତ ଲୋକ ବସି ପାରିବେ । ଗଦାଧରକୁ ଡାକି ଆଣନ୍ତି ସୀତାନାଥ । କହନ୍ତି, ଆସ, ଆମ ଘରେ କୀର୍ତ୍ତନ ଗାଇବ । ସୀତାନାଥଙ୍କ ଘରର ଝିଅ-ବୋହୂମାନେ ବାହାରକୁ ବାହାରନ୍ତି ନାହିଁ, ସୂର୍ଯ୍ୟଙ୍କୁ ବି ଦେଖନ୍ତି ନାହିଁ । ସେମାନେ ତେବେ ଶୁଣିବେ ନାହିଁ ଏହି ସ୍ୱର-ତରଙ୍ଗ ? ଦେଖିବେ ନାହିଁ ସେହି ଅନିନ୍ଦ୍ୟ ସୁନ୍ଦରଙ୍କୁ ! ଏତେ ଲଜ୍ଜାଶୀଳା ଯେ ଚନ୍ଦ୍ରମଣିଙ୍କ ଆଗକୁ ବି ଆସନ୍ତି ନାହିଁ – ଅଥଚ ଗଦାଧର ପାଖରେ ତିଳେ ହେଲେ ସଂକୋଚ ନାହିଁ । ଗଦାଧର ସତେ ଯେପରି ତାଙ୍କ ଅନ୍ତରର ମଣିଷ । ଇହକାଳ ପରକାଳ ସର୍ବକାଳର ପରିଚିତ ।

ଦୁର୍ଗାଦାସ ପାଇନ କିନ୍ତୁ ଏଥିରେ ଘୋର ଆପତ୍ତି କରନ୍ତି । ଦୁର୍ଗାଦାସ ବି ସେଇ ବଣିଆ ସାହିର ଲୋକ । ସୀତାନାଥଙ୍କ ପ୍ରତିବେଶୀ । ଏତେ ବଡ଼ ପିଲାଟା, ଘର ଭିତରକୁ ଆସି ବୋହୂ ଭୂଆସୁଣୀଙ୍କ ମେଳରେ ବସି ଗୀତ ଗାଇବ, ଏଥିରେ ତାଙ୍କର ପ୍ରବଳ ଆପତ୍ତି । ହେଉ ପଛକେ ହରି-ନାମ; ହୋଇପାରେ, ପିଲା ହିସାବରେ ଗଦାଧର ହୀରା ପରି ସ୍ୱଚ୍ଛ ନିର୍ମଳ । ତଥାପି ସମାଜ ଭିତରେ ଥାଇ ସଂସାରରେ ସ୍ତ୍ରୀଲୋକମାନଙ୍କର ସମ୍ଭ୍ରମ ରକ୍ଷା ପାଇଁ ଯେଉଁ ନିୟମ ଅଛି ତାକୁ ତ ମାନିବାକୁ ପଡ଼ିବ । ମୋ ଘରର ଆଦବ୍ କିନ୍ତୁ ଅଲଗା । କୌଣସି ବାହାର ଲୋକ ପଶି ପାରିବ ନାହିଁ ମୋ ଘରର ଭିତର ଖଞ୍ଜାକୁ । ଖୁବ୍ ତୁମ୍ବି-ତୁଫାନ କରନ୍ତି ଦୁର୍ଗାଦାସ ଏଇ କଥାକୁ ନେଇ । କାଉ-କୋଇଲିଟାଏ ବି ଜାଣିପାରିବ ନାହିଁ ତାଙ୍କ ଘର ଭିତରର ଖବର । ଦେଖିପାରିବ ନାହିଁ ଘରର ସ୍ତ୍ରୀଲୋକମାନଙ୍କର ମୁହଁ । କଡ଼ା ନଜର କେମିତି ରଖିବାକୁ ହୁଏ, ଜାଣିବା ଦରକାର । ବୁଝିଲ ? ହରିନାମକୁ ଆଳ କରି ଦେହରେ ଧୂଳି ଲଗେଇବା ଠିକ୍ ନୁହେଁ ।

ସଂଧ୍ୟା ବେଳେ ଦାଣ୍ଡ ବଙ୍ଗଳା ଘରେ ବସି ବନ୍ଧୁମାନଙ୍କ ଆଗରେ ଏହି ଭଳି ବଡ଼ ବଡ଼ କଥା କହୁଛନ୍ତି ଦୁର୍ଗାଦାସ । ସ୍ତ୍ରୀ ଲୋକଟିଏ ଆସି ଠିଆ ହେଲା କବାଟ ପାଖରେ । ବେଶ-ଭୂଷା ଦେଖି ଜାଣିପାରିଲେ ଦୁର୍ଗାଦାସ ଆର ଗାଁ ତନ୍ତୀ ସାହିର କାହା ଘରର ବୋହୂ । ପିନ୍ଧିଛି ହାତ-ବୁଣା ମୋଟା ମଇଳା ଶାଢ଼ି, ହାତରେ ରୂପାର ଓଜନିଆ ବାହୁଟି । କାଖରେ ଗୋଟିଏ ଟୋକେଇ, ସେଥିରେ କେତେ କେରା ସୂତା ।

'କୋଉଠୁ ଆସିଲ ?' ପଚାରିଲେ ଦୁର୍ଗାଦାସ । 'ହାଟ'ରୁ । ଲାଜରେ ଜୁଡୁ ବୁଡୁ ହୋଇ ସ୍ତ୍ରୀ ଲୋକଟି ମୁହଁ ଉପରକୁ ଓଢ଼ଣା ଟାଣି ଆଣି କହିଲା ।

'କଅଣ ହୋଇଛି ? କଅଣ ଦରକାର ?'

ସ୍ତ୍ରୀ ଲୋକଟି ଅତି ସଂକୋଚରେ ସଂକ୍ଷେପରେ ଯାହା କହିଲା ସେଥିରେ ବିଚଳିତ ହେବାର କିଛି ନାହିଁ । ସାହି ସ୍ତ୍ରୀ ଲୋକଙ୍କ ସହିତ ହାଟକୁ ଯାଇଥିଲା ସୂତା ବିକିବା ପାଇଁ । ହାଟ କାମ ସାରି ଲେଉଟାଣି ବେଳକୁ ଦେଖିଲା ସାଙ୍ଗରେ ଯେଉଁମାନେ ଆସିଥିଲେ ସେମାନେ କେତେବେଳୁ ଚାଲିଗଲେଣି । ସଂଜ ଗଡ଼ିଗଲାଣି । ଏତେବେଳେ ଏକୁଟିଆ ଗାଁକୁ ଯିବାକୁ ସାହସ ପାଉ ନାହିଁ । ଯଦି ରାତିକ ପାଇଁ ଟିକିଏ ଆଶ୍ରୟ ପାଆନ୍ତା –

'ଏଇ କଥା ! ଯାଅ ଭିତରକୁ । ଯାଇ ସ୍ତ୍ରୀ ଲୋକମାନଙ୍କୁ କୁହ । ରାତିଟା ରହିଯିବ ।

ଏଇଟା ଏମିତି କୋଉ ବଡ଼ କଥା କି !' ଦୁର୍ଗାଦାସ ଆପଣାର ଉଦାରତାରେ ପ୍ରସାରିତ ହୋଇ ଯାଉଥିଲେ ।

ଶରଣାଗତା ପ୍ରଣାମ କଲା ଦୁର୍ଗାଦାସଙ୍କୁ । ଅନ୍ତଃପୁରକୁ ଯାଇ ସ୍ତ୍ରୀଲୋକମାନଙ୍କ ମହଲରେ ଜଣାଇଲା ସବୁ କଥା । ଆଗନ୍ତୁକା ଚାରିପଟେ ସମସ୍ତେ ଆସି ଘେରିଗଲେ । ଅଳ୍ପ ବୟସ, ସରଳ ମଧୁର କଥା, ବିପଦରେ ପଡ଼ିଛି । ସହାନୁଭୂତିରେ ତରଳି ଗଲେ ସମସ୍ତେ । କହିଲେ, ହଉ, ରୁହ ଏଇଠି, କିଛି ଅସୁବିଧା ହେବ ନାହିଁ । ଯାଅ, ହାତ ମୁହଁ ଧୋଇ ଆସ । କିଛି ଟିକିଏ ଖାଇ ଦିଅ । ସତେ କି କଅଣ ଗୋଟାଏ ବିଶେଷ ଆକର୍ଷଣ ରହିଛି ସେଇ ଝିଅର । ଯିଏ ଦେଖୁଛି ତା'ମନରେ ମମତା ଉଛୁଳି ଉଠୁଛି । ରହିବା ପାଇଁ ଜାଗା ଠିକ୍ କରି ଦେଲେ ଗୋଟାଏ ପାଖକୁ । ମୁଢ଼ି ଉଖୁଡ଼ା ଆଣି ଦେଲେ, ଖାଇଲା ମନଖୁସିରେ । ଘରର ଚାରିଆଡ଼େ ବୁଲି ତନ୍ନ ତନ୍ନ କରି ଦେଖିଲା ସବୁ । କଥା କହି ଭାବ ଜମେଇଲା ସ୍ତ୍ରୀଲୋକମାନଙ୍କ ସହିତ । ପଚାରି ବୁଝିଲା ଘରର ସବୁ ହାଲଚାଲ । ସତେ ଅବା କୁହୁକ ଜାଣେ । ମୁହୂର୍ତ୍ତକରେ ହୋଇଗଲା ଅନ୍ତରର ଅନ୍ତରଙ୍ଗ ।

ଅନ୍ଧାରରେ ବାଟ ଅଣ୍ଡାଳି ଅଣ୍ଡାଳି ଚାଲିଛନ୍ତି ରାମେଶ୍ୱର ।

କୁଆଡ଼େ ଯାଉଛନ୍ତି, ଏତେ ରାତିରେ ?

ସୀତାରାମଙ୍କ ଘରକୁ ।

କଅଣ କାମ ତାଙ୍କଠି ?

ଗଦାଧରକୁ ଖୋଜି ପାଉନାହିଁ । ରାତି ଆସି ପହରେ ହେଲାଣି । ଏତେବେଳ ଯାଏ ଫେରି ନାହିଁ ଘରକୁ । କୁଆଡ଼େ ଗଲା କିଛି ଜଣା ପଡୁ ନାହିଁ । ମା'ଙ୍କର ତେଣେ ବ୍ୟସ୍ତର ସୀମା ନାହିଁ । କୋଉଠି ଅଚେତ ହୋଇ ପଡ଼ି ଯାଇଥିବ ପରା !

ନା, ନା, କୁଆଡ଼େ ଆଉ ଯିବ । ନିଶ୍ଚୟ ସେଇ ସୀତାନାଥଙ୍କ ଘରେ ଥିବ । ରାତିଦିନ ତ ତାଙ୍କରି ଘରେ ପୋଥି ବୋଲେ, କୀର୍ତ୍ତନ ଗାଏ । ସେଇଠିକି ଯାଇ ପଚାରନ୍ତୁ ।

ନା, ସୀତାନାଥଙ୍କ ଘରକୁ ଆଜି ଆସି ନାହିଁ ଗଦାଧର । ରାମେଶ୍ୱରଙ୍କୁ ବୁଦ୍ଧି ଦିଶିଲା ନାହିଁ । ଏତେ ରାତିରେ, ଏଇ ଅନ୍ଧାର ଭିତରେ କୋଉଠି ତାକୁ ଖୋଜିବେ ! ବଣିଆ ସାହି ଦାଣ୍ଡରେ ପ୍ରତି ଘର ଆଗରେ ଡାକି ଡାକି ଚାଲିଲେ ଅସହାୟ ଭାବରେ - ଗଦାଇ ! ଗଦାଇ ! ଗଦାଇ ଅଛୁ କି ରେ ? ... ଗଦାଇ !

ତନ୍ତିଆଣୀ ତେଣେ ଦୁର୍ଗାଦାସଙ୍କ ଘରର ଭିତର ପରସ୍ତ ବାରନ୍ଦାରେ ଗୋଡ଼ ଲମ୍ବାଇ ବସି ସ୍ତ୍ରୀଲୋକମାନଙ୍କ ସହିତ ଖୁସିଗପରେ ମଜ୍ଜି ରହିଛି । ହଠାତ୍ କାନରେ ପଡ଼ିଲା ବାହାରେ କିଏ ବଡ଼ ପାଟିରେ ଡାକୁଛି । କାହାକୁ ଡାକୁଛି ? କାନ ଡେରି ଶୁଣିଲା ତନ୍ତିଆଣୀ । ଉଠି ପଡ଼ିଲା ବସିବା ଥାନରୁ ।

'ଯାଉଛି, ଯାଉଛି, ଭାଇ–, ମୁଁ ଏଇଠି ଅଛି !' କହି ତନ୍ତୀବୋହୂ ଏକା ଡ଼ିଆଁକେ ଘରୁ ବାହାରି ଦାଣ୍ଡକୁ ଚାଲିଗଲା ।

ଦୁର୍ଗାଦାସ ସବୁ ଶୁଣିଲେ । ଟିକିଏ ରହିଲେ ଗୁମ୍ ହେଇ । ତା'ପରେ କହିଲେ, 'ପ୍ରଭୁ ମୋ

ଅହଂକାର ଚୂର୍ଣ୍ଣ କରି ଦେଇଛନ୍ତି ।'

ଉତ୍ତର କାଳରେ ଠାକୁର ତେଣୁ କହିଥିଲେ, 'ନିଜ ଠାରେ ସ୍ତ୍ରୀ-ଭାବ ଆରୋପ କଲେ କାମାଦି ରିପୁ ଚାଲିଯାଆନ୍ତି । ଆଚାର ବ୍ୟବହାର ଅବିକଳ ସ୍ତ୍ରୀଲୋକମାନଙ୍କ ଭଳି ହୋଇଯାଏ । ସେଥିଲାଗି ମୁଁ ଅନେକ ଦିନ ପର୍ଯ୍ୟନ୍ତ ଶାଢ଼ି-ଗହଣା ପିନ୍ଧି ମୁଣ୍ଡରେ ଓଢ଼ଣା ଦେଇ ସଖୀ ଭାବରେ ରହିଥିଲି । ସେଇ ବେଶରେ ଆଳତି କରୁଥିଲି । ତା' ନ ହୋଇଥିଲେ, ପରିବାରକୁ ଆଣି ଆଠ ମାସ କାଳ ନିଜ ପାଖରେ ରଖି ପାରିଥାଆନ୍ତି ? ଆମେ ଦୁଇଜଣ ଯାକ ମା'ଙ୍କର ସଖୀ । ମୁଁ ନିଜକୁ କେବଳ ପୁରୁଷ ବୋଲି କେମିତି କହିବି ? ମୋର ଭାବାବସ୍ଥାରେ ଦିନେ ମୋ ସ୍ତ୍ରୀ ପଚାରିଲେ : ମୁଁ ତୁମର କିଏ ? ମୁଁ କହିଲି : ଆନନ୍ଦମୟୀ ।'

୭

ଗାଁରେ ରହି କିଛି ହେଉ ନାହିଁ ଗଦାଧରର । ତେଣୁ ରାମକୁମାର ତାକୁ କଲିକତା ନେଇ ଆସିଲେ । କିନ୍ତୁ ଗଦାଧରର ମନ ପଡ଼ି ରହିଥାଏ ସେଇ ଗାଁର ବାଟ-ଘାଟ ବିଲ-ବଣରେ । କେତେ ଚିହ୍ନା ମୁହଁ, କେତେ ସ୍ନେହ-ଆଦର । ଇଟା-କାଠର ଏଇ ଜଟିଳତା ଭିତରେ ମିଳିବ କି ସେଇ ସରଳ ମମତା ? ମିଳିବ କି ସେଇ ନୀରବତାର ନିଃସଙ୍ଗତାର ଶାନ୍ତି ?

ନିର୍ଜନ ନ ହେଲେ ଭକ୍ତିଲାଭ ହେବ କିପରି ? ତାଙ୍କୁ ଭାବିବି କେଉଁଠି ? ଚାଉଳ କାଣ୍ଡୁଛ,ଏକା ଏକା ବସି କାଣ୍ଡିବାକୁ ପଡ଼େ । ମଝିରେ ମଝିରେ ଚାଉଳ ହାତରେ ଧରି ଦେଖିବାକୁ ପଡ଼େ, ସଫା ହେଲା କି ନାହିଁ । କାଣ୍ଡିବା ସମୟରେ ଯଦି ପାଞ୍ଚ ଆଉ ପାଞ୍ଚ ଜଣଙ୍କର ଡାକ ଶୁଣିବାକୁ ପଡ଼େ, ଚାଉଳ କାଣ୍ଡିବା କାମ ଠିକ୍ ଠିକ୍ ହୋଇ ପାରିବ ତ ?

କେତେ ଲୋକଙ୍କ କଥା ମନେ ପଡୁଛି । ମନେ ପଡୁଛି ବୁରୁନ୍ଦା - ମା କଥା । ବୁରୁନ୍ଦା-ମା ଜାତିରେ ବ୍ରାହ୍ମଣ, ଗଦାଇକୁ କେତେ ଥର ନିଜ ହାତରେ ରାନ୍ଧି ଖୁଆଇଛି । କିନ୍ତୁ ଖେତି- ମା ଜାତିରେ ବଢ଼େଇ । ମନ ହେଉଥିଲେ ବି ଘରକୁ ଡାକି ଆଣି ଖୁଆଇ ପାରେ ନାହିଁ । ମନ ଭିତରଟା ଆଉଟି-ପାଉଟି ହେଉଥାଏ । ମନକଥା ମୁହଁ ଖୋଲି କହିପାରେ ନାହିଁ । ଧନୀ-କୁମାରୁଣୀର ଭଉଣୀ ଶଙ୍କରୀ ତାଙ୍କ ପଡ଼ିଶା । ତାକୁ ଦିନେ ପଚାରିଲା ଗଦାଧର : 'ତୁମେ କହି ପାରିବ, ଖେତି-ମା ମୋତେ କଅଣ କହିବ କହିବ ହେଉଛି, କହି ପାରୁନାହିଁ ? ଶଙ୍କରୀ ଅବାକ୍ । ମନ ଭିତରର କଥା ବି ଜାଣି ପାରିଛ ? ହଉ, ତେବେ କୁହ, କଅଣ ଖାଇବା ପାଇଁ ତୁମ ଶରଧା ? ମୁଁ ଆଣି ଦେବି ।

ଖାଇବି ଯେ, ଏଇ ବାଟ ମଝିଟାରେ ବସି ? ତା' ଘରକୁ ଯିବି, ଘର ଭିତରେ ଆସନ ପକେଇ ଚେକା ମାଡ଼ି ବସି ଖାଇବି । ଯାହା ସେ ତା' ନିଜ ହାତରେ ରାନ୍ଧି ଦେବ । ତା' ମନର ସାଧ ମେଣ୍ଟାଇବି ଷୋହୋଳ ଅଣା ।

ଗଲା ବଢ଼େଇ ଘରକୁ । ଖେତି-ମା ହାତର ରାନ୍ଧଣା ଖାଇ ଆସିଲା ପରମ ତୃପ୍ତିରେ ।

ଖେତିର ବାପ କିନ୍ତୁ ସ୍ତ୍ରୀର ଏ ଅନାଚାର ସହି ପାରିଲା ନାହିଁ । ଅନାଚାର ନୁହେଁ ତ ଆଉ

କଅଣ ? ଛୋଟ ଜାତିର ସ୍ତ୍ରୀଲୋକ ହୋଇ ଉଚ୍ଚ ବର୍ଣ୍ଣ ଲୋକର ଜାତି ମାରା କଲୁ ? ଦେବତା ଖାଇବାକୁ ଚାହିଁପାରେ, ତା' ବୋଲି ତୁ ତାକୁ ନିଜ ହାତରେ ରାନ୍ଧି ବାଢ଼ି ଦେବୁ : ରାଗରେ ହତଜ୍ଞାନ ହୋଇଗଲା । ପାଦରୁ କଠଉ ବାହାର କରି ଦୁମ୍ ଦାମ କଷି ଦେଇଗଲା ସ୍ତ୍ରୀର ପିଠିରେ । ଖେତି-ମା' ଟଳିବାର ଲୋକ ନୁହେଁ । କହିଲା : 'ମାର, ଯେତେ ପାରୁଛ, ମୋର ଆଉ କୌଣସି ଦୁଃଖ ନାହିଁ । ମୁଁ ଠାକୁରଙ୍କ ପ୍ରସାଦ ଖାଇଛି ।'

ମନେ ପଡୁଛି ପୁଣି ଚିନୁ ଶଙ୍ଖାରୀ କଥା । ଚିନୁ, ମାନେ, ଶ୍ରୀନିବାସ ।

ବୟସ ହେଲାଣି । ଛୋଟିଆ ଦୋକାନ ଖଣ୍ଡିଏ । କଷ୍ଟରେ ଗୁଜରାଣ ମେଣ୍ଟାଏ । କିନ୍ତୁ ଯେତେବେଳେ ଗଦାଧର ଆସି ବସି ପଡ଼େ ତା' ଦୋକାନରେ ତାକୁ ଜଣାଯାଏ ସତେ କି ଆଉ କୌଣସି କଷ୍ଟ ନାହିଁ, ଦୁଃଖ ନାହିଁ । ରାତ୍ରିର ଅନ୍ଧକାର ଯେତେ ଗାଢ଼ ହେଉ ପଛକେ, ଗଦାଧର ସତେ କି ଚିରନ୍ତନ ସୁପ୍ରଭାତ । ଯଦି କେଉଁଦିନ ଅଧିକ ଦି' ପଇସା ରୋଜଗାର ହୋଇଯାଏ, ସେଇ ବଳକା ପଇସାରେ ମିଠେଇ କିଣି ଆଣି ଗଦାଧରକୁ ଖୁଆଏ । ଗଦାଧର ଖାଉଥାଏ, ଚିନୁ ଚାହିଁ ଚାହିଁ ଦେଖୁଥାଏ । ଏଣେ ଦୋକାନ ପିଣ୍ଡାରେ ଗରାଖ ଆସି ଠିଆ ହେଲେଣି, ସେ ଆଡ଼କୁ ନଜର ନାହିଁ । ଗଦାଧରକୁ ସତେ ଅବା ଚିହ୍ନି ପାରିଛି ଚିନୁ । ତା' ନାଁ ପରା ଚିନୁ, ସେଇ ତ ଚିହ୍ନିବ ପ୍ରଥମେ ।

ଦିନକର କଥା । ଫୁଲ ତୋଳି ଆଣି ଅତି ଯତ୍ନରେ ହାରଟିଏ ଗୁନ୍ଥିଲା । ଅଣ୍ଟିରେ ଲୁଚେଇ ରଖି, ଦୋକାନକୁ ଯାଇ ମିଠା କିଣି ଆଣିଲା । ଗଦାଧରକୁ କହିଲା, 'ଆସ' ।

'କୁଆଡ଼େ ?'

'ପଡ଼ିଆକୁ । ଫାଙ୍କା ଜାଗାକୁ । ଯେଉଁଠି ଆଉ କେହି ନାହାନ୍ତି, କେବଳ ତୁମେ ଥିବ, ମୁଁ ଥିବି ।'

ଗଦାଧରକୁ ସାଙ୍ଗରେ ଧରି ଆସିଲା ଶ୍ରୀନିବାସ । ଛିଡ଼ା ହେଲା ପଡ଼ିଆ ମଝିରେ । କେହି କୁଆଡ଼େ ନାହାନ୍ତି । ଉପରେ ଆକାଶ-ବ୍ୟାପୀ ଶାନ୍ତିର ନୀଳିମା । ତଳେ ଅନନ୍ତ ପ୍ରସାରିତ ମାଟି ଆଉ ମାଟି । ସାଙ୍ଗରେ ଆଣିଥିବା ଜିନିଷତକ ତଳେ ରଖି, ଆଣ୍ଠୁ ମାଡ଼ି ହାତ ଯୋଡ଼ି ବସି ରହିଲା ଶ୍ରୀନିବାସ । ଆଗରେ ଗଦାଧର । କୃଷ୍ଣ-କିଶୋର ।

'ଏ କ'ଣ କରୁଛ, ଚିନୁଭାଇ ? ମିଠେଇ ଠୁଙ୍ଗଟା ଦଉନ ହାତକୁ ?'

'ଦଉଛି, ଦଉଛି ।'

ପ୍ରଥମେ ଗଳାରେ ଲମ୍ବାଇ ଦେଲା ଫୁଲମାଳ । କୃଷ୍ଣଙ୍କ ଗଳାରେ ଅତସୀ ଫୁଲର ମାଳା । ତା' ପରେ ଠୁଙ୍ଗାରୁ ମିଠେଇ ନେଇ ନିଜ ହାତରେ ଖୁଆଇ ଦେଲା ଗଦାଧରକୁ । ବ୍ରଜର ନନୀ ଗୋପାଳଙ୍କୁ

ଆଖିରୁ ଲୁହ ଝରୁଛି ଝର ଝର ହୋଇ ଶ୍ରୀନିବାସର । ହାତରେ ମିଠେଇ ଧରି ଖୁଆଉ ଖୁଆଉ ହାତ ଯାଇ କେତେବେଳେ ଲାଗି ଯାଉଛି ନାକରେ ତ କେତେବେଳେ କପାଳରେ । କେତେବେଳେ ଆଖିରେ ତ କେତେବେଳେ ଚିବୁକରେ । ଗଦାଧର ହସୁଛି ... ଏବଂ ଖାଉଛି ।

ଖୁଆଇ ସାରି ଆଣ୍ଠୁ ମାଡ଼ି ବସିଲା ସ୍ତବ କରିବାକୁ । କହିଲା, 'ବୁଢ଼ା ହେଲିଣି, ଆଉ ବେଶୀ

ଦିନ ନାହିଁ । ମର୍ତ୍ତ୍ୟରେ ତୁମେ କେତେ ଲୀଳା-ଖେଳା କରିବ । କିଛି ଦେଖି ପାରିବି ନାହିଁ । ତେବେ ଆଜି ଯେ ଦୟା କରି ତୁମକୁ ଟିକିଏ ଚିହ୍ନିବାକୁ ଦେଲ, ଏଇଟା ହିଁ ମୋର ଆରପାରି ପାଇଁ ଘାଟ କଉଡ଼ି ହେଇ ରହିଲା ।'

ଅସୁର ପରି ଲମ୍ବା ଚଉଡ଼ା ଦେହ ଶ୍ରୀନିବାସର । ଦୁଇ ହାତରେ ଗଦାଧରଙ୍କୁ ଟେକି ନେଇ କାନ୍ଧରେ ବସାଇ ବୀର ଦର୍ପରେ ନାଚିବାକୁ ଲାଗିଲା । କହିଲା, 'ତୁମେ ତ ମୋତେ ଭାଇ ବୋଲି ଡାକୁଛ – ଶ୍ରୀନିବାସ ଭାଇ ! ମୁଁ ଯଦି ସତରେ ତୁମ ଭାଇ, ତେବେ ମୁଁ ତ ବଳରାମ ।' କହି ପୁଣି ପରସ୍ତେ ନାଚିଗଲା ।

ତୁମେ ସମୁଦ୍ର, ମୁଁ ସାମାନ୍ୟ ଶଙ୍ଖକାର ।

ମନେ ପଡୁଛି, ଥରେ ଏଇ ଚିନୁ-ଶଙ୍ଖାରୀର ଗୋଡ଼ ଧରି ତଳେ ପଡ଼ିଯାଇଥିଲା ଗଦାଧର । କେବଳ ଚିନୁର ନୁହେଁ, ଯେତେ ସମବୟସୀ ସମସ୍ତଙ୍କର । କଅଣ ମନକୁ ଆସିଲା, ଜଣ ଜଣ କରି ସମସ୍ତଙ୍କ ପାଦ ଧରି ମିନତି କଲା, 'ତୋ ଗୋଡ଼ ତଳେ ପଡୁଛି, ଥରେ ହରିବୋଲ କହ ।'

ସମସ୍ତେ ଅବାକ୍ । ଯେତେ ନୀଚ୍ ଜାତିର ଲୋକ ଥିଲେ, ନଇଁ ପଡ଼ି ସମସ୍ତଙ୍କ ଗୋଡ଼ ଧରୁଥାଏ । କଥାଟାର ମର୍ମ ବୁଝିପାରିଥିଲା ଶ୍ରୀନିବାସ । କହିଥିଲା, 'ତୁମର ବର୍ତ୍ତମାନ ପ୍ରଥମ ଅନୁରାଗ । ତେଣୁ ସମସ୍ତେ ତୁମକୁ ସମାନ ଦିଶୁଛନ୍ତି । ଜାତି-ଅଜାତି ସାନ-ବଡ଼ ଭେଦ କିଛି ନାହିଁ । ଝଡ଼ ଯେତେବେଳେ ପ୍ରଥମେ ଆସେ, ଆମ୍ବ ନିମ୍ବ ସବୁ ଏକାକାର ହୋଇଯାଏ । କେଉଁଟା ଆମ୍ବ ଗଛ କେଉଁଟା ନିମ୍ବ ଗଛ, ବାରି ହୁଏ ନାହିଁ ।'

ନବାନୁରାଗର ବର୍ଷା । ନବାନୁରାଗ ଆସିଲେ ମାନ-ଅପମାନ ନ ଥାଏ : ଛାୟା-କାୟା ବିଚାର ନ ଥାଏ । ସବୁ ତୁମେ-ମୟ ।

ଗୋଟାଏ ମାତ୍ର ଅବଶୋଷ ଶ୍ରୀନିବାସର - ମରିଯିବ । ବୟସ ଖସିଲାଣି । ମରିଗଲେ ଆଉ ଦେଖି ପାରିବ ନାହିଁ ଏହି ନିତ୍ୟ ଲୀଳା ।

ରାବଣ-ବଧ ପରେ ରାମ ଲକ୍ଷ୍ମଣ ଲଙ୍କା ଗଡ଼ ଭିତରେ ପଶିଲେ । ଦେଖିଲେ, ରାବଣର ବୃଦ୍ଧା ମା' ନିକଷା ପଳେଇଯାଉଛି । ଲକ୍ଷ୍ମଣ ଥଟ୍ଟା କରି କହିଲେ, ଯାହାର ପୁଅ ନାତି ସମସ୍ତେ ମଲେଣି, ବଂଶରେ ବତୀ ଦେବା ପାଇଁ ଯାହାର ଆଉ କେହି ନାହିଁ, ତା'ର ପୁଣି ନିଜ ପ୍ରାଣ ପ୍ରତି ଏତେ ମମତା ! ରାମ ନିକଷାକୁ ପାଖକୁ ଡାକିଲେ । ପଚାରିଲେ, ତୁମେ ପଳାଉଛ କାହିଁକି ? କୋଉଥିପାଇଁ ଏତେ ଡର ? ନିକଷା କହିଲା, ମୋର ଆଉ କୋଉ କଥାକୁ ଡର ନାହିଁ, ଡର କାଳେ ମରିଯିବି । ମରିଗଲେ ତ ଆଉ ତୁମ ଲୀଳା ଦେଖିପାରିବି ନାହିଁ । ବଞ୍ଚିଥିଲି ବୋଲି ସିନା ତୁମକୁ ଦେଖିଲି । ତେଣୁ ବଞ୍ଚିବାର ଲୋଭ ଛାଡ଼ିପାରୁ ନାହିଁ ।

କିନ୍ତୁ, କଲିକତା ଆସି ଗଦାଧରର ଚୁପ୍ ଚାପ୍ ବସି ରହିଲେ ତ ଚଳିବ ନାହିଁ । ମନରେ କେତେ ଆଶା ରଖି ତାକୁ ନେଇ ଆସିଛନ୍ତି ରାମକୁମାର ।

ଅକ୍ଷୟ ଜନ୍ମ ହେବା ପରେ ପରେ ରାମକୁମାରଙ୍କ ସ୍ତ୍ରୀ ଆଖି ବୁଜିଲେ– ସେଇ ଅନ୍ତୁଡ଼ି

ଶେଯରେ । ସେହି ଦିନରୁ ଅଭାବ-ଅନଟନ ଲାଗି ରହିଛି ଘରେ । ଗର୍ଭରେ ପିଲା ରହିବା ଦିନୁଁ ସେ ଅନ୍ୟ ପ୍ରକାର ହୋଇ ଯାଇଥିଲେ । ଅଲକ୍ଷ୍ମୀ ଗ୍ରାସ କରିଥିଲା । ଘରର ନିୟମ ଥିଲା, କେବଳ ପଇତା ହୋଇ ନଥିବା ପିଲା ଓ ରୋଗୀ ଛଡ଼ା ଆଉ କେହି ରଘୁବୀରଙ୍କ ପୂଜା ଆଗରୁ ଜଳ-ସ୍ପର୍ଶ କରିବେ ନାହିଁ । ରାମକୁମାରଙ୍କ ସ୍ତ୍ରୀ ସେ ନିୟମ ମାନିଲେ ନାହିଁ । ବାଧା ଦେଲେ ଅବାଧ୍ୟତା ପ୍ରକାଶ ପାଇଲା । ରାମକୁମାର ମନେ ମନେ ବୁଝି ପାରୁଥିଲେ ସ୍ତ୍ରୀର ଦିନ ସରି ଆସୁଛି, ଏବଂ ତା' ସହିତ ଆସୁଛି ଅମଙ୍ଗଳର ଦିନ ।

ହେଲା ବି ସେଇଆ । ସ୍ତ୍ରୀ ଚାଲିଗଲେ । ସଂସାର ଉପରକୁ ମାଡ଼ି ଆସିଲା କଠିନ ଦୁର୍ଭାଗ୍ୟ ।

ଗଦାଧର ତଳେ ଆହୁରି ଗୋଟିଏ ଭଉଣୀ ଥିଲା, ସର୍ବମଙ୍ଗଳା । ଗୌରହାଟିର ରାମସଦୟ ବନ୍ଦୋପାଧ୍ୟାୟ ସହିତ ତାହାର ବିବାହ କରାଇଲେ - ସେତେବେଳେ ସେ ଆଠ ପୂରି ନ'ରେ ପଶିଛି । ରାମସଦୟର ଭଉଣୀଟିଏ ଥିଲା - ତାକୁ ବିଭା କରାଇଲେ ନିଜ ସାନ ଭାଇ ରାମେଶ୍ୱର ସହିତ । ରାମେଶ୍ୱର ଘରେ ରହି ଘର-ସଂସାର ଦେଖୁ, ଆଉ ତୁ, ଗଦାଧର, ମୋ ସହିତ କଲିକତା ଚାଲ । ସେଠି ମୋର ଟୋଲ ଚାଲିଛି, କିଛି ଗୋଟାଏ ବାଟ ତୋ ପାଇଁ ନିଶ୍ଚୟ ଫିଟିବ । କିଛି ନ ହେଲେ, ଶାନ୍ତି-ସ୍ୱସ୍ତ୍ୟୟନ କରିବାଟା ତ ଶିଖି ପାରିବୁ । କଲିକତାରେ କେତେ କେତେ ଧନୀ-ଶେଠ ଅଛନ୍ତି । ଯଦି ମଣିଷ ହେଇ ପାରିବୁ, ଟଙ୍କାର ଭାବନା ରହିବ ନାହିଁ । ସୁରୁଖୁରୁରେ ଚଳିଯିବ ସଂସାର — ।

ଟଙ୍କା ? ଟଙ୍କା ମୋର କଅଣ ହେବ ? ମୁଁ ତ ଅବିଦ୍ୟାର ସଂସାର କରିବାକୁ ଆସିନାହିଁ । ମୁଁ କ'ଣ ଏଶ୍ୱର୍ଯ୍ୟ-ଭୋଗ ଚାହେଁ ? ନା, ଦେହ-ସୁଖ ଚାହେଁ ? ନା, 'ଲୋକମାନ୍ୟ' ପାଇଁ ମୋର ଲୋଭ ଅଛି ?

ଆଉ, ତୁମେ ବା ଏତେ ବ୍ୟସ୍ତ ହେଉଛ କାହିଁକି ? ଯିଏ ଖାଣ୍ଟି ଭକ୍ତ, ସେ ଚେଷ୍ଟା ନ କଲେ ବି ଈଶ୍ୱର ତା' ପାଇଁ ସବୁ ଯୋଗାଇ ଦେବେ । ଯିଏ ପ୍ରକୃତରେ ରାଜା-ପୁଅ, ସେ ହାତ-ଖରଚ ପାଇଁ ମାସିକ ଭତ୍ତା ନିଶ୍ଚୟ ପାଇବ । ଯିଏ ସଦ୍-ବ୍ରାହ୍ମଣ, ଯାହାର କୌଣସି କାମନା ନାହିଁ, ହାଡ଼ି ଘରୁ ହେଉ ପଛେ, ତା' ପାଇଁ ନିଶ୍ଚୟ ସିଦା ଆସିବ । ଆସେ ଯେଉଁ ଭଳି, ଯାଏ ବି ସେଇ ଭଳି । ଏହି ଯଦୃଚ୍ଛାଲାଭ - ଏଇଟା ହିଁ ଭଲ । ପୋଲ ତଳ ଦେଇ ଜଳ ବାହାରିଯାଏ ସହଜରେ । ସଞ୍ଚୟ କରି ଲାଭ କଅଣ ? କେତେ କଷ୍ଟରେ ମହୁମାଛି ମହୁଫେଣା ତିଆରି କରେ, ଆଉ ଜଣେ କିଏ ଆସି ଭାଙ୍ଗି ନେଇଯାଏ । ଉପାର୍ଜନ କରିବାଟା କଅଣ ଜୀବନର ଉଦ୍ଦେଶ୍ୟ ? ମଣିଷ ଜନ୍ମ ପାଇଛ, ଈଶ୍ୱର-ଦର୍ଶନ କରିବ ନାହିଁ ?

ଲକ୍ଷ୍ମୀନାରାୟଣ ମାରୁଆଡ଼ି ଅନେକ ସମୟରେ ଦକ୍ଷିଣେଶ୍ୱର ଆସୁଥାଏ । ଠାକୁରଙ୍କ ଶୋଇବା ଶେଯ ମଇଳା ହୋଇଛି ଦେଖି ତା'ର ବହୁତ ଦୁଃଖ । କହିଲା, 'ମୁଁ ତୁମ ନାଁରେ ଦଶ ହଜାର ଟଙ୍କା ଲେଖି ଦେଉଛି । ସେଇଥିରୁ ତୁମ ସେବା ହେବ ।'

କଥାଟା କାନରେ ପଡ଼ିବା ମାତ୍ରେ ଠାକୁର ବାହ୍ୟଜ୍ଞାନଶୂନ୍ୟ ହୋଇପଡ଼ିଲେ । କିଏ

ଯେପରି ମୁଣ୍ଡ ଉପରେ ଟାଣ ପାହାରଟିଏ ବସେଇ ଦେଲା ।

ସଂଜ୍ଞା ଫେରିବା ପରେ ବିଷଣ୍ଣ କଣ୍ଠରେ କହିଲେ, 'ସେ ଭଳି କଥା ତୁଣ୍ଡରେ ଧର ନାହିଁ । ଯଦି ଏଭଳି କଥା କହିବ, ଏଠିକି ଆଉ ଆସିବ ନାହିଁ ।'

'କାହିଁକି ? କଅଣ ହେଲା ?'

'ତୁମେ ଜାଣି ନାହିଁ, ମୁଁ ଟଙ୍କା ଛୁଇଁ ପାରେ ନାହିଁ । ପାଖରେ ରଖିବାର ବି କ୍ଷମତା ନାହିଁ ।'

ଲକ୍ଷ୍ମୀନାରାୟଣ ଛାଡ଼ିବା ଲୋକ ନୁହେଁ । ସେ ବେଦାନ୍ତବାଦୀ । ତର୍କପଟୁ ।

'ତା' ହେଲେ, ଏ ଯାଏଁ ବି ଆପଣଙ୍କର ତ୍ୟାଜ୍ୟ-ଗ୍ରାହ୍ୟ ବିଚାର ରହିଛି ?' ହସିଲା ଲକ୍ଷ୍ମୀନାରାୟଣ: 'ମାନେ, ଜ୍ଞାନ ଉଦୟ ହୋଇନାହିଁ ?'

'ନା ବାବା, ଏତେ ବେଶୀ ହୋଇନାହିଁ ।'

ଯେଉଁମାନେ ପାଖରେ ବସିଥିଲେ, ହସି ଉଠିଲେ ।

ତଥାପି ଲକ୍ଷ୍ମୀନାରାୟଣ ହାର ମାନିବା ଲୋକ ନୁହେଁ । ଯାଇ ଧରିଲା ହୃଦୟକୁ – ହୃଦୟରାମ, ଠାକୁର ଯାହାକୁ ଡାକନ୍ତି ହୃଦୁ ବୋଲି । କ୍ଷୁଦିରାମଙ୍କ ଭଉଣୀ ରାମଶୀଳାର ଝିଅ ହେମାଙ୍ଗିନୀ । ସେଇ ହେମାଙ୍ଗିନୀର ପୁଅ ହୃଦୟ ।

ହୃଦୟ ଜରିଆରେ ଟଙ୍କାଟା ଦେବାକୁ ଚାହିଁଲା ଲକ୍ଷ୍ମୀନାରାୟଣ । କହିଲା, 'ମୁଁ ହୃଦୟକୁ ଦେଉଛି ।'

'ତା'ହେଲେ ବି ମୋତେ ହିଁ ତ କହିବାକୁ ପଡ଼ିବ ଯାକୁ ଦେ, ତାକୁ ଦେ । ନଦେଲେ ମନରେ ରାଗ ହେବ, ଅଭିମାନ କରିବ । ପାଖରେ ଟଙ୍କା ରହିବାଟା ହିଁ ଖରାପ । ଅଇନା ପାଖରେ କୌଣସି ଜିନିଷ ରଖିବା ଠିକ୍ ନୁହେଁ । ରଖିଲେ ପ୍ରତିବିମ୍ବ ଅବଶ୍ୟ ପଡ଼ିବ । ବୁଝିଲ, ସେ ସବୁ ଏଠି ଚଳିବ ନାହିଁ । ଠିକ୍ ଠିକ୍ ଯେ ରଜା ପୁଅ, ସେ ତା' ଭତ୍ତା ନିଶ୍ଚୟ ପାଇବ ।'

ଗଦାଧର କଅଣ ରଜା-ପୁଅ ନୁହେଁ ?

ବାପାଙ୍କ କଥା ମନେ ପଡୁଛି ଗଦାଧରର । ଗାଧୋଇବା ସମୟରେ ପାଣି ଭିତରେ ଛିଡ଼ା ହୋଇ 'ରକ୍ତବର୍ଣ୍ଣଂ ଚତୁର୍ମୁଖଂ...' ମନ୍ତ୍ର ପଢ଼ି ଧ୍ୟାନ କରନ୍ତି, ଆଖିରୁ ଝରି ପଡୁଥାଏ ଲୁହ । ପାଦରେ କଠଉ ପିନ୍ଧି ଯେତେବେଳେ ଯାଆନ୍ତି ଗାଁ ଦାଣ୍ଡରେ, ଗାଁର ଦୋକାନୀମାନେ ସମ୍ଭ୍ରମରେ ଛିଡ଼ା ହୋଇ ପଡ଼ନ୍ତି । କହନ୍ତି, ହେଇଟି, ସେ ଆସୁଛନ୍ତି ! ସେ ଯେତେବେଳେ ସ୍ନାନ କରୁଥାଆନ୍ତି ସେତେବେଳେ ଆଉ କେହି ଭରସି କରି ଯାଆନ୍ତି ନାହିଁ ସ୍ନାନ-ତୁଠକୁ । ଆଗରୁ ଖବର ନିଅନ୍ତି - 'ସେ' ଗାଧୋଇ ସାରି ଫେରିଲେଣି ? 'ରଘୁବୀର !' 'ରଘୁବୀର !' କହନ୍ତି, ଛାତି ଲାଲ ପଡ଼ିଯାଏ ।

ଏଇ ଭଳି ବାପାର ପୁଅ ଗଦାଧର ।

କେବଳ ଏତିକି ମାତ୍ର ତା'ର ପରିଚୟ ? କିଏ କହୁଛି ? ସେ ପରା ଜଗଦ୍‌ପିତାଙ୍କ ପୁଅ !

ସେ ପାଠ-ଶାଠ ଜାଣେ ନାହିଁ, ଶାସ୍ତ୍ର-ସଂହିତା ଛୁଇଁ ନାହିଁ । ହୁଏତ ପୂରା 'ବାପା' ବୋଲି ଡାକି ଶିଖି ନାହିଁ, ସଂପୂର୍ଣ୍ଣ ଉଚ୍ଚାରଣ କରି ଜାଣି ନାହିଁ, ଦରୋଟି ଭାଷାରେ ଖାଲି 'ବା' ବୋଲି କହେ । ବାପା କଅଣ 'ବାପା' ଡାକୁଥିବା ପୁଅକୁ ବେଶୀ ଆଦର କରିବେ ଖାଲି 'ବା' ଡାକୁଥିବା

ପୁଅ ଠାରୁ ? ନା, ବରଂ ବାପା କହିବେ, ଇଏ.ମୋର କଅଁଳା ପିଲା, ବାପା ବୋଲି କହିପାରୁନାହିଁ ସିନା, ହେଲେ ଡାକରେ ଠିକ୍ ଆକୁଳତା ଅଛି । ଏଇଆକୁ ଆଗ ନେବି କୋଳକୁ ।

କିନ୍ତୁ ବାପା ଯେ ସ୍ୱପ୍ନ ଦେଖିଥିଲେ ଗୟା ଯାଇଥିଲାବେଳେ– ରଘୁବୀର କହୁଛନ୍ତି ତୁମ ଘରେ ମୁଁ ପୁଅ ହୋଇ ଜନ୍ମ ନେବି – ସେ' କଥାର ଅର୍ଥ କଅଣ ? ତେଣୁ,ପ୍ରକୃତରେ ତା'ର କ'ଣ କେହି ପିତା ନାହାନ୍ତି ? ... ତେବେ ସେ କିଏ ? ଏହି ଆତ୍ମଦର୍ଶନ ହିଁ ଈଶ୍ୱର ଦର୍ଶନ ।

୮

ରାଣୀ ରାସମଣି କାଶୀ ଯିବେ । କୈବର୍ତ୍ତ କନ୍ୟା, ପ୍ରକୃତରେ କିନ୍ତୁ ଅଷ୍ଟ ସଖୀଙ୍କ ମଧ୍ୟରୁ ଜଣେ ସଖୀ ।

କଲିକତାର ଜାନବଜାରର ଜମିଦାର ରାମଚନ୍ଦ୍ର ଦାସଙ୍କ ସ୍ତ୍ରୀ । ମନଟି କିନ୍ତୁ ରହିଥାଏ ମା'କାଳୀଙ୍କ ପାଦପଦ୍ମରେ । ଚାରି ଝିଅ । ତୃତୀୟ ଝିଅ କରୁଣାମୟୀର ସ୍ୱାମୀ ମଥୁରା ମୋହନ ବିଶ୍ୱାସ । ସମସ୍ତେ ଡାକନ୍ତି ସାନ-ମଝିଆଁ ବାବୁ ।

ବିବାହର ଅଳ୍ପ ଦିନ ପରେ ହିଁ ମୃତ୍ୟୁ ହେଲା କରୁଣାମୟୀର । ରାସମଣି ଚତୁର୍ଥ କନ୍ୟା ଜଗଦମ୍ବା ସହିତ ମଥୁରାମୋହନଙ୍କର ପୁଣି ବିବାହ କରାଇଲେ । କିନ୍ତୁ ନାଁ ରହିଗଲା ସେଇ ସାନ ମଝିଆଁ ବାବୁ ।

ସ୍ୱାମୀ ରାମଚନ୍ଦ୍ରଙ୍କର ଦେହାନ୍ତ ହୋଇଯାଇଛି । ଘର ପାଖରେ ଗୋରା ସିପାହୀଙ୍କ ଛାଉଣୀ । ଦିନେ ମାତାଲ ଅବସ୍ଥାରେ ଦଳେ ସିପାହୀ ପଶି ଆସିଲେ ଘର ଭିତରକୁ । ଘରେ ପୁରୁଷ ଲୋକ କେହି ନଥିଲେ । ଦରୁଆନମାନେ ବାଧା ଦେଲେ, ମାଡ଼ ଖାଇ ପଳେଇଗଲେ । ସିପାହୀମାନେ ଘର ଭିତରେ ପଶି ଲୁଟ ତରାଜ ଆରମ୍ଭ କରିଦେଲେ । ରାସମଣି କଅଣ କରିବେ ? ନିଜେ ହାତରେ ଅସ୍ତ୍ରଧାରଣ କଲେ । ଥିଲେ ଲକ୍ଷ୍ମୀ, ହେଲେ ରୁଦ୍ରଚଣ୍ଡୀ ଚାମୁଣ୍ଡା । ସିପାହୀମାନେ ବାଟ ପାଇଲେ ନାହିଁ ପଳେଇବାକୁ ।

ରାଜେନ୍ଦ୍ରାଣୀ ରାସମଣି । ରାଜେନ୍ଦ୍ରାଣୀ ସତ, ମାତ୍ର ଅନ୍ତର ଭିତରେ ଭିଖାରୁଣୀ । ତେଜସ୍ୱିନୀ, ଅଥଚ ମମତାର ଗଙ୍ଗା-ମୃତ୍ତିକା । ସଂସାରରେ କିଛି ସେ ଚାହାନ୍ତି ନାହିଁ, ଏକମାତ୍ର କାମନା ସେହି ମହାଯୋଗେଶ୍ୱରୀ ମହାଡାମରୀ ସାଟ୍ଟହାସା ମହାକାଳୀଙ୍କର ରକ୍ତପାଦ ଦୁଇଟି । ସିରସ୍ତାରେ ଯେଉଁ ସିଲ-ମୋହର ଥିଲା ସେଥିରେ ନାମ ଅଙ୍କିତ ହୋଇଥିଲା – 'କାଳୀପଦ - ଅଭିଳାଷୀ ଶ୍ରୀମତୀ ରାସମଣି ଦାସୀ ।' ଏଶ୍ୱର୍ଯ୍ୟ ଶୟନରେ ଶୋଇଛନ୍ତି, ମାତ୍ର ଉପାଧାନ ବିଶ୍ୱେଶ୍ୱରୀଙ୍କ ଉତ୍ସଙ୍ଗ ।

୧୨୫୦ ସାଲ । ରାଣୀ କାଶୀ ଯିବା ପାଇଁ ମନସ୍ଥ କରେ । ଦର୍ଶନ କରିବେ ଅନ୍ନପୂର୍ଣ୍ଣାଙ୍କୁ, ମହାଭିକ୍ଷୁକ ବିଶ୍ୱନାଥଙ୍କୁ । ଅପର୍ଯ୍ୟାପ୍ତ ଟଙ୍କା ଏଥିପାଇଁ ଅଲଗା କରି ରଖା ହୋଇଛି । ଅଜସ୍ର ହାତରେ ତାହା ବ୍ୟୟ କରିବେ । ନଦୀ ଘାଟରେ ପ୍ରସ୍ତୁତ ହୋଇ ରହିଛି ସାରି ସାରି ନୌକା - ପ୍ରାୟ ଶହେ ସରିକି । ବିଭିନ୍ନ ସମ୍ଭାର-ସାମଗ୍ରୀରେ ସବୁ ନୌକା ପରିପୂର୍ଣ୍ଣ । ଦାସ-ଦାସୀ, ଆତ୍ମୀୟ-ସ୍ୱଜନ କେତେ ଯାଉଛନ୍ତି ହିସାବ ନାହିଁ । ସମସ୍ତେ ବିଶ୍ରାମ କରୁଛନ୍ତି ନୌକାରେ । ଜଣେ କେବଳ ଜାଗ୍ରତ । ସେ ହେଉଛନ୍ତି କୁବେର । ରାଣୀଙ୍କ କୋଷାଗାରର ଦ୍ୱାରପାଳ ।

ରାତ୍ରି ସମୟ । ନୌକା ଚାଲିଛି । ରାଣୀ ନିଦରେ ଶୋଇ ପଡ଼ିଛନ୍ତି । ଉତ୍ତରକୁ ଦକ୍ଷିଣେଶ୍ୱର ଗ୍ରାମ ପର୍ଯ୍ୟନ୍ତ ଆସିଛନ୍ତି, ସ୍ୱପ୍ନ ଦେଖିଲେ ରାସମଣି । ଦେଖିଲେ, ଦେବୀ ଭବତାରିଣୀ ନିଜେ ଆସି ଆଗରେ ଛିଡ଼ା ହୋଇଛନ୍ତି । କହୁଛନ୍ତି, 'କାଶୀ ଯିବାର ପ୍ରୟୋଜନ ନାହିଁ । ଏଇଠି, ଏଇ ଭାଗୀରଥୀ କୂଳରେ ମୋତେ ପ୍ରତିଷ୍ଠା କର । ମୋତେ ଅନ୍ନଭୋଗ ଦେ ।'

ଧଡ଼ପଡ଼ ହୋଇ ଉଠି ପଡ଼ିଲେ ରାସମଣି । ଆରେ, ଶୁଣୁଛ ? ନୌକା ଫେରାଅ । ଆଉ କାଶୀ ଯିବାକୁ ପଡ଼ିବ ନାହିଁ । ସ୍ୱୟଂ କାଶୀଶ୍ୱରୀ ଆସିଛନ୍ତି ଦକ୍ଷିଣେଶ୍ୱରକୁ ।

ପ୍ରଥମେ ଭାବିଥିଲେ ଗଙ୍ଗାର ପଶ୍ଚିମ କୂଳରେ ବାଲି-ଉତ୍ତରପଡ଼ା ନାମକ ସ୍ଥାନରେ ଜମି କିଣିବେ । କଥାରେ ଅଛି, ଗଙ୍ଗାର ପଶ୍ଚିମ କୂଳ, ବାରାଣସୀ ସମତୁଲ । କିନ୍ତୁ ସେଠାକାର ଯିଏ ଜମିଦାର ତାଙ୍କର ଅଜବ ବିଚାର । ଟଙ୍କା ନେଇ ଜମି ଦେବାକୁ ଆପତ୍ତି ନାହିଁ । କିନ୍ତୁ ସେହି ଜମି ଉପରେ ଅନ୍ୟର ଟଙ୍କାରେ ଯେଉଁ ଘାଟ ତିଆରି ହେବ ସେ ଘାଟରେ ସେମାନେ ଗଙ୍ଗା ସ୍ନାନ କରିବାକୁ ଓହ୍ଲାଇବେ ନାହିଁ । ନ ଯିବେ ତ ନ ଯିବେ - ଏ ଭଳି କଥା କହି ପାରିଲେ ନାହିଁ ରାସମଣି । ସେ ଆସିଲେ ପୂର୍ବ କୂଳକୁ ।

ପୂର୍ବ କୂଳରେ ଦକ୍ଷିଣେଶ୍ୱର । ଏକାଥରକେ ଷାଠିଏ ବିଘା (ପ୍ରାୟ କୋଡ଼ିଏ ମାଣ) ଜମି କିଣିଲେ ରାସମଣି । ଜମିର କିଛି ଅଂଶର ମାଲିକ ଥିଲା ହେଷ୍ଟି ନାମକ ଜଣେ ସାହେବ । ବାକି ଅଂଶ ଥିଲା ମୁସଲମାନମାନଙ୍କର କବରଖାନା ଓ ଗାଜୀ ପୀରଙ୍କ ଆସ୍ଥାନ । ଜମିର ଗଢ଼ଣଟି କଇଁଛ ପିଠି ପରି । ତନ୍ତ୍ର ମତରେ ଏହିଭଳି ସ୍ଥାନ ଶକ୍ତି ସାଧନା ପାଇଁ ଅନୁକୂଳ । ଆଉ ସନ୍ଦେହ ରହିଲା ନାହିଁ, ସେହି ପୂର୍ବ କୂଳର ଜାଗାକୁ ଦେବୀ ନିଜେ ନିର୍ବାଚିତ କରିଛନ୍ତି ପୂର୍ବରୁ ।

ନଅ ଲକ୍ଷ ଟଙ୍କାରେ ମନ୍ଦିର ଓ ମୂର୍ତ୍ତି ତିଆରି ହେଲା । ନବରତ୍ନ-ମଣ୍ଡିତ ସୁବୃହତ କାଳୀ-ମନ୍ଦିର, ଉତ୍ତର ପାଖକୁ ରାଧାଗୋବିନ୍ଦ ମନ୍ଦିର, ପଶ୍ଚିମକୁ ଦ୍ୱାଦଶ ଶିବ ମନ୍ଦିର, ଦକ୍ଷିଣକୁ ନାଟ-ମଣ୍ଡପ । ମଝିରେ ପ୍ରଶସ୍ତ ଅଗଣା । ଉତ୍ତର ଦକ୍ଷିଣ ଓ ପୂର୍ବରେ ଆହୁରି ତିନି ଧାଡ଼ି ଲମ୍ବା କୋଠା ଘର । ସବୁ ମିଶି ଏକ ଅତିକାୟ ଦେବାୟତନ । ସଂପୂର୍ଣ୍ଣ ହେବାକୁ ଲାଗିଲା ପ୍ରାୟ ଦଶ ବର୍ଷ ।

ଏହି ଦଶ ବର୍ଷ --ଆରମ୍ଭରୁ ଉଦ୍‌ଯାପନ ପର୍ଯ୍ୟନ୍ତ -ବ୍ରତଚାରିଣୀ ହୋଇ ରହିଥିଲେ ରାସମଣି, ଥିଲେ କଠୋର ନିୟମ-ସଂଯମରେ । ତ୍ରିସଂଧ୍ୟା ସ୍ନାନ, ହବିଷ୍ୟାନ୍ନ ଭୋଜନ, ଶୁଷ୍କ ଭୂମି ଶଯ୍ୟାରେ ଶୟନ । ଜପ କରନ୍ତି ଅବିଶ୍ରାନ୍ତ । କେଉଁଥିପାଇଁ ଏତେ ଅନୁଷ୍ଠାନ ? ଏହି ଦେହ-ମନକୁ ଯଦି ତାଙ୍କର ଉପଯୁକ୍ତ ବାହନ କରି ନ ପାରେଁ, ଦେବୀ ଶୁଣିବେ ମୋର ଆବାହନ ? ହୁଏତ ଆସିବେ ନାହିଁ, ଅଥବା, ଯଦି ଆସନ୍ତି, ଆସି ପୁଣି ଫେରିଯିବେ ।

ମନ୍ଦିର ତିଆରି ହେଲା । ଦେବୀ ମୂର୍ତ୍ତି ନିର୍ମାଣ ସରିଲା । ଏବେ ମନ୍ଦିର ପ୍ରତିଷ୍ଠା ହେବ । ପଣ୍ଡିତମାନେ ପଞ୍ଜିକା ଲେଉଟାଇଲେ ଶୁଭଦିନ ନିର୍ଣ୍ଣୟ କରିବା ପାଇଁ ।

ମୂର୍ତ୍ତିକୁ ରଖା ହୋଇଥିଲା ଗୋଟାଏ ବଡ଼ କାଠପେଟୀ ଭିତରେ । ଦିନେ ଦେଖାଗଲା ମୂର୍ତ୍ତି ଦେହରୁ ଝାଳ ବାହାରୁଛି ।

ରାତିରେ ସ୍ୱପ୍ନ ଦେଖିଲେ ରାସମଣି । କ୍ଳାନ୍ତ କାତର କଣ୍ଠରେ ଭବତାରିଣୀ କହୁଛନ୍ତି, 'ମୋତେ ଏଇଭଳି ବାକ୍ସ ଭିତରେ ବନ୍ଦୀ କରି ରଖି ଆଉ କେତେ ଦିନ କଷ୍ଟ ଦେବୁ ? ଚଞ୍ଚଳ ମୁକ୍ତି ଦେ

ମୋତେ-'

ରାଣୀଙ୍କର ମନ ଚଞ୍ଚଳ ହୋଇ ଉଠିଲା । ଅସ୍ଥିର ହୋଇ ପଡ଼ିଲେ । ଆଉ ବିଳମ୍ବ କରିବା ଉଚିତ ନୁହେଁ । ଆସନ୍ନ ଯେ କୌଣସି ଶୁଭ ଦିନରେ ଦେବୀଙ୍କର ପ୍ରତିଷ୍ଠା କରାଇବାକୁ ପଡ଼ିବ ।

ସ୍ନାନଯାତ୍ରା ଦିନଟି ହିଁ ନିକଟତମ ଶୁଭଦିନ । କିନ୍ତୁ ଏ ଦେବୀ ଯେ ଶକ୍ତି ସ୍ୱରୂପିଣୀ । ବିଷ୍ଣୁ-ପର୍ବାହରେ ଏହାଙ୍କର ପ୍ରତିଷ୍ଠା ହେବ କିପରି ? ନା, ହେଉ ପଛେ ବିଷ୍ଣୁ - ପର୍ବାହ, ଆଉ ଅପେକ୍ଷା କରି ହେବ ନାହିଁ - ମା ବିକଳ ହୋଇ ପଡ଼ିଲେଣି । ତା ଛଡ଼ା, ଯାହା ଶକ୍ତି ତାହା ହିଁ ମାଧୁରୀ । ସେଇଥିପାଇଁ ତ ସେ ''ପରମାସି ମାୟା'' । ଯିଏ କାଳୀ, ସେ ଲକ୍ଷ୍ମୀ, ସେ ପୁଣି ଲଜ୍ଜା । ଯେ ମୁଣ୍ଡମାଳିନୀ ସେ ପୁଣି ପଦ୍ମାଳୟା । ସର୍ବାର୍ଥସାଧିକା ।

ବାରଶହ ବାଷଠୀ ସାଲ ଜ୍ୟେଷ୍ଠ ବାରଦିନ ସ୍ନାନଯାତ୍ରା ଦିନ ମନ୍ଦିର ପ୍ରତିଷ୍ଠା ହେଲା ।

ଦେବୀ ଭବତାରିଣୀ । ପାଷାଣମୟୀ ଅଥଚ କରୁଣାଦ୍ରବା । ମୃତ୍ୟୁବର୍ଜିତା ଶିବସୁନ୍ଦରୀ । ତ୍ରିନୟନୀ, ତେଜୋରୂପୋଜ୍ଜ୍ୱଳା । ପୁରାତନୀ, ପରମାର୍ଥା । କାଳଲୋକବାସିନୀ କାଳୀ କପାଳିନୀ ।

ରୂପାର ସହସ୍ରଦଳ ପଦ୍ମ, ତା ଉପରେ ଦକ୍ଷିଣକୁ ମସ୍ତକ ରଖି ଶାୟିତ ଶବୀଭୂତ ଶିବ । ତାଙ୍କରି ବକ୍ଷରେ ପାଦ ସ୍ଥାପନ କରି ଦଣ୍ଡାୟମାନ ଭବତାରିଣୀ । ପରିଧାନ ଲାଲ ବନାରସୀ, ମସ୍ତକରେ ମୁକୁଟ, ଗଳାରେ ସୁନାର ମୁଣ୍ଡମାଳା । ନାନା ଅଳଙ୍କାରରେ ସର୍ବାଙ୍ଗ ବିଭୂଷିତ । କଟିତଟରେ ସାରି ସାରି ଖଣ୍ଡିତ ନରହସ୍ତ । ଦେବୀ ଚତୁର୍ଭୁଜା - ଦୁଇ ବାମ ହସ୍ତରେ ନୃମୁଣ୍ଡ ଆଉ ଅସି, ଦୁଇ ଦକ୍ଷିଣ ହସ୍ତରେ ବର ଓ ଅଭୟମୁଦ୍ରା ।

ଦେବୀ ଦକ୍ଷିଣାସ୍ୟା ।

ଏତିକିରେ କିନ୍ତୁ ସରିଲା ନାହିଁ । ଦୁଇ ଲକ୍ଷ ପଚିଶ ହଜାର ଟଙ୍କାରେ ଦିନାଜପୁର ଜିଲ୍ଲାର ଶାଳବାଡ଼ି ପ୍ରଗଣା କିଣା ହେଲା । ମାଆଙ୍କ ସେବା ପାଇଁ ଦାନ କଲେ ଶାଳବାଡ଼ି । ତଥାପି ସମ୍ପୂର୍ଣ୍ଣ ହେଲା ନାହିଁ । ମାଆ ଅନ୍ନଭୋଗ ଚାହିଁଛନ୍ତି, ସେଥିପାଇଁ କଅଣ ବ୍ୟବସ୍ଥା କରାଯିବ ?

ପଣ୍ଡିତମାନେ କହିଲେ, ସେଥିପାଇଁ ବିଧି ନାହିଁ ।

ମାଆଙ୍କୁ ମୁଠାଏ ଖାଇବାକୁ ଦେବି ଭକ୍ତିରେ, ସେଥିପାଇଁ ବିଧି ନାହିଁ ?

ନା, ନାହିଁ । ତୁମେ ରାଣୀ ହୋଇପାର, ମାତ୍ର ଶୁଦ୍ରାଣୀ । ଶୁଦ୍ରାଣୀର ଅଧିକାର ନାହିଁ ଦେବତାଙ୍କୁ ଭୋଗ ଦେବାର ।

ବେଦନାରେ ଭାଙ୍ଗି ପଡ଼ିଲେ ରାସମଣି । ଏହା ହୋଇପାରେ ନା । ବିଧି ଓ ଭକ୍ତି ମଧ୍ୟରେ ଏତେ ପ୍ରଭେଦ କଅଣ ସମ୍ଭବ ? ଛୋଟ ଜାତିରେ ଜନ୍ମ ହୋଇଛି ବୋଲି ମୁଁ କଅଣ ମାଆଙ୍କର ସନ୍ତାନ ନୁହେଁ ? ମାଆ କଅଣ ନୀଚ-ଅନ୍ନ ଗ୍ରହଣ କରନ୍ତି ନାହିଁ ?

ନା । ରାସମଣି ସ୍ଥିର କଲେ ପ୍ରଚଳିତ ପ୍ରଥାର ବ୍ୟତିକ୍ରମ କରିବେ । ଏହା ତ ବିଧି ନୁହେଁ, ବିଧି-ବିଡ଼ମ୍ବନା । ମୁଁ ଏହାକୁ କେବେହେଲେ ମାନି ନେଇ ପାରିବି ନାହିଁ । ଅଭୁକ୍ତ ରହିବାକୁ ଦେଇପାରିବି ନାହିଁ ମାଆଙ୍କୁ । ତାଙ୍କ ପାଇଁ ନିତ୍ୟ ଭୋଗର ବ୍ୟବସ୍ଥା ନିଶ୍ଚୟ କରାଇବି ।

ସାବଧାନ ! ଯଦି ସେ ଭଳି କିଛି କର, ବ୍ରାହ୍ମଣମାନେ ଏ ମନ୍ଦିରର ପ୍ରସାଦ ଗ୍ରହଣ କରିବେ ନାହିଁ । ତୁମର ଏ ଦେବାଳୟ ଅଧର୍ମାଶ୍ରିତ ହେବ ।

ତେବେ ଉପାୟ ? ରାଣୀ ଚାରି ଆଡ଼କୁ ଲୋକ ପଠାଇଲେ । କେଉଁଠି କୌଣସି ଟୋଲ ବା ଚତୁଷ୍ପାଠୀର କୌଣସି ପଣ୍ଡିତ କିଛି ବ୍ୟବସ୍ଥା କରାଇ ପାରିବେ କି ନା ? ସମସ୍ତେ ଏକ ବାକ୍ୟରେ କହିଲେ, କୈବର୍ତ୍ତ-କନ୍ୟା ଦେବୀଙ୍କୁ ଅନ୍ନଭୋଗ ଦେବାର ଅଧିକାରୀ ନୁହେଁ ।

ରାଣୀ ଅତ୍ୟନ୍ତ ଆକୁଳ ଭାବରେ କାନ୍ଦିବାକୁ ଲାଗିଲେ ।

କାହିଁକି ? ଏଥିରେ କାନ୍ଦିବାର କଅଣ ଅଛି ? ଏତେ ବଡ଼ ଗୋଟାଏ କୀର୍ତ୍ତି ସ୍ଥାପନ କଲ, ଦେଶ-ବିଦେଶରେ ତୁମ ନାଁ ପ୍ରଚାରିତ ହେଲା - ଏଇଟା କଅଣ କମ୍ କଥା ? ଯିଏ ସ୍ୱୟଂ ଅନ୍ନପୂର୍ଣ୍ଣା ତାଙ୍କ ପାଇଁ କଅଣ ସଂସାରରେ ଅନ୍ନର ଅଭାବ ଅଛି ?

ତଥାପି, ମାଆ ଯଦି ଝିଅ ଘରକୁ ଆସେ, ଝିଅ କଅଣ ମାଆକୁ ଉପବାସୀ ରଖିବ ? ମୁଁ ନାମ-ଯଶ ଚାହେଁ ନା । ମୁଁ ଚାହେଁ ଭକ୍ତି । ମୁଁ ଚାହେଁ ସନ୍ତୋଷ । ମାଆଙ୍କୁ ଅନ୍ନଭୋଗ ଦେଇ ନପାରିଲେ, ମୋର ସନ୍ତୋଷ କାହିଁ ?

ପୁଣି ବସି କାନ୍ଦିବାକୁ ଲାଗିଲେ ରାସମଣି ।

ହଠାତ୍ ଦିନେ ବିଧାନ ଆସି ପହଞ୍ଚିଲା ରାମକୁମାରଙ୍କ ଟୋଲରୁ । ପ୍ରତିଷ୍ଠା ପୂର୍ବରୁ ରାଣୀ ଯଦି ଦକ୍ଷିଣେଶ୍ୱରର ସମସ୍ତ ସମ୍ପତ୍ତି କୌଣସି ବ୍ରାହ୍ମଣଙ୍କୁ ଦାନ କରି ଦିଅନ୍ତି ତେବେ ଅନ୍ନଭୋଗ ହୋଇପାରିବ । ମନ୍ଦିରରେ ବ୍ରାହ୍ମଣମାନଙ୍କର ପ୍ରସାଦ ସେବନରେ ମଧ୍ୟ କୌଣସି ବାଧା ରହିବ ନାହିଁ ।

ଅନ୍ଧକାର ଭିତରେ ରାସମଣି ଦେଖିବାକୁ ପାଇଲେ ମାଆଙ୍କର ଆନନ୍ଦ-ଦୃଷ୍ଟି । ଅଭୟ ଦୃଷ୍ଟି ।

କିନ୍ତୁ ଏ ବ୍ୟବସ୍ଥାରେ ପଣ୍ଡିତମାନଙ୍କର ସନ୍ତୋଷ ଆସିଲା ନାହିଁ । ତଥାପି, ଉପାୟ ନାହିଁ । ସ୍ୱୟଂ ରାମକୁମାର ଭଟ୍ଟାଚାର୍ଯ୍ୟ ଏ ବ୍ୟବସ୍ଥା ଦେଇଛନ୍ତି । ଏହାକୁ ଖଣ୍ଡନ କରିବ କିଏ ? କାହାରି ଆଉ ସାଧ ନାହିଁ ଏହା ଉପରେ ବିତର୍କ କରିବାକୁ ।

ରାସମଣି ସ୍ଥିର କଲେ ତାଙ୍କ କୁଳଗୁରୁଙ୍କ ନାମରେ ମନ୍ଦିର ପ୍ରତିଷ୍ଠା କରିବେ । କିନ୍ତୁ ପୂଜକ-ପୁରୋହିତ କିଏ ହେବ ? ଗୁରୁ ବଂଶର କେହି ପୂଜା-ଅର୍ଚ୍ଚନା କରୁ, ରାଣୀ ତାହା ଚାହାନ୍ତି ନାହିଁ । ସେମାନେ ସମସ୍ତେ ଅଶାସ୍ତ୍ରଜ୍ଞ, ଆଚାର-ସର୍ବସ୍ୱ । ତେଣୁ ସେମାନଙ୍କୁ ଡାକିବା ପାଇଁ ତାଙ୍କ ମନ ଚାହିଁଲା ନାହିଁ । ତା'ହେଲେ କାହାକୁ ଡାକିବେ ? ଯାହାକୁ ଏଥିପାଇଁ ଡାକନ୍ତି ସେ ମନା କରେ । କହି ପଠାଏ, ପୂଜା ତ ଦୂରର କଥା, ଯେଉଁ ଦେବତାଙ୍କୁ ଶୂଦ୍ରାଣୀ ପ୍ରତିଷ୍ଠିତ କରିବ ତା ପାଦ ପାଖରେ ମୁଣ୍ଡ ସୁଦ୍ଧା ନୁଆଁଇବି ନାହିଁ । ମୁଁ ବ୍ରାତ୍ୟ ହୋଇପାରିବି ନାହିଁ ।

ଅବଶେଷରେ ରାଣୀ ରାମକୁମାରଙ୍କୁ ହିଁ ପତ୍ର ଲେଖି ନିବେଦନ କଲେ ତାଙ୍କୁ ଏ ସଂକଟରୁ ଉଦ୍ଧାର କରିବା ପାଇଁ । ରାମକୁମାର ଉତ୍ତର ଦେଲେ : 'ପୂଜକ ଅଭାବରୁ ମନ୍ଦିର ପ୍ରତିଷ୍ଠା ହୋଇପାରୁ ନାହିଁ ? ଉତ୍ତମ । ମୁଁ ନିଜେ ପୂଜକ ହେବି ।'

ମନ୍ଦିର ପ୍ରତିଷ୍ଠା ହେଲା । ପ୍ରତିଷ୍ଠାଦିନ ଗଦାଧର ଆସିଛି କାଳୀ ମନ୍ଦିରକୁ । ବିରାଟ ଉତ୍ସବ ।

ଯାତ୍ରା, କାଳୀ-କୀର୍ତ୍ତନ, ଭାଗବତ ପାଠ, ରାମାୟଣ ପାଠ, କେତେ ରକମ ଆୟୋଜନ । କେତେ ଆଉ କେତେ ଲୋକ ଆସୁଛନ୍ତି, ଯାଉଛନ୍ତି, ହିସାବ ନାହିଁ । ସଦାବ୍ରତ ଅନ୍ନସତ୍ର ଖୋଲା ହୋଇଛି । ଆହୂତ-ଅନାହୂତର ବିଚାର ନାହିଁ । କେବଳ 'ଦୀୟତାଂ ଭୁଜ୍ୟତାଂ ।' ଦିଅ, ଖାଅ । ନିଅ, ଧର । ଚାଲିଛି ଚର୍ବ୍ୟ-ଚୋଷ୍ୟ-ଲେହ୍ୟ-ପେୟର ଅବାରିତ ଉପଭୋଗ ।

ଗଦାଧରର ମନେ ହେଉଥିଲା ଯେପରି ଭଗବତୀ କୈଳାସ ଶୂନ୍ୟ କରି ଚାଲିଆସିଛନ୍ତି ମନ୍ଦିରକୁ । ଅଥବା, ସମଗ୍ର ରଜତ ଗିରିଟାକୁ ରାସମଣି ଉଠାଇ ଆଣି ବସାଇ ଦେଇଛନ୍ତି ଦକ୍ଷିଣେଶ୍ୱରରେ ।

ଏତେ ଆୟୋଜନ, ଏତେ ଅଜସ୍ରତା, ତଥାପି ଗଦାଧର ମନ୍ଦିରର ଅନ୍ନଭୋଗ ଗ୍ରହଣ କଲା ନାହିଁ । ବଜାରରୁ କିଣି ଆଣିଲା ପଇସାକର ମୁଢ଼ି-ଉଖୁଡ଼ା । ସେଇଆକୁ ଖାଇ ରହିଲା ସାରା ଦିନ । ବେଳ ଗଡ଼ିବାରୁ ଚାଲି ଚାଲି ଆସିଲା ଝାମାପୁକୁର ।

'କିଛି ଖାଇଲୁ ନାହିଁ କାହିଁକିରେ ଗଦାଇ ?' ପଚାରିଲେ ରାମକୁମାର ।

'ଭାଇ, କୈବର୍ତ୍ତର ଅନ୍ନ ମୁଁ ଖାଇପାରିବି ନାହିଁ ।'

ରାମକୁମାର ମନେ ମନେ ଭାବିଲେ, ଗଦାଧର ଏବେ ବଡ଼ ହେଲାଣି, ପଣ୍ଡିତ ହେଲାଣି । ପିଲାବେଳେ ଇଏ ତ ପୁଣି ଧନୀ-କମାରୁଣୀ ହାତରୁ ଭିକ୍ଷା ନେଇଥିଲା ।

ତହିଁ ଆରଦିନ ସକାଳେ ଉଠି ଗଦାଧର ଦେଖିଲା ଭାଇ ତଥାପି ଫେରିନାହାନ୍ତି । ମାନେ ? ଭାଇ କଅଣ ସବୁଦିନ ପାଇଁ ମନ୍ଦିରରେ ରହିଯିବେ ? ଅଭାବନୀୟ କଥା !

ଦିନେ ଗଲା, ଦି' ଦିନ ଗଲା- ସାତ ଦିନ ଚାଲିଗଲା, ଭାଇ ଫେରୁନାହାନ୍ତି । ଆଉ ଅପେକ୍ଷା କରିହେବ ନାହିଁ । ଗଦାଧର ବାହାରିଲା ଦକ୍ଷିଣେଶ୍ୱର ।

'ଘରକୁ ଯିବେ ନାହିଁ ?'

'ନା । ଭାବୁଛି ଜୀବନର ବାକି ଦିନ କେତେଟା ଏଇଠି କଟେଇ ଦେବି ।'

ଗଦାଧର ଆଶ୍ଚର୍ଯ୍ୟ ହେଲା । କହିଲା, 'ତେବେ କଅଣ -'

'ହଁ, ମୁଁ ଏଇ ମନ୍ଦିରର ପୂଜାର ଦାୟିତ୍ୱ ନେଇଛି । ଟୋଲ ଏଥର ବନ୍ଦ କରିଦେବି । ତୁ ବି ଚାଲିଆ ଏଇଠିକି, ମୋ ପାଖକୁ ।'

ଗଦଧରର ପ୍ରବଳ ଆପତ୍ତି । ଏହା କଅଣ ସମ୍ଭବ ? ବାପା ଜୀବନରେ କେବେ ହେଲେ ଶୁଦ୍ର-ଯାଜୀ ହୋଇନାହାନ୍ତି । ତାଙ୍କରି ପୁଅ ହୋଇ କେଉଁ ଯୁକ୍ତିରେ ତାଙ୍କ ପ୍ରଥା ଲଂଘନ କରିବେ ? ଆପଣ ସେ ବୁଦ୍ଧି ଛାଡ଼ନ୍ତୁ, ଭାଇ ।

ରାମକୁମାର ବହୁତ ବୁଝାଇଲେ । ବହୁତ ତର୍କଯୁକ୍ତି କଲେ । ଗଦାଧର ନିର୍ବିଚଳ । ନିଷ୍ଠାରେ ନିୟତସ୍ଥିତ ।

ତାହେଲେ ଧର୍ମପତ୍ର କରିବା - ପ୍ରସ୍ତାବ କଲେ ରାମକୁମାର । ଧର୍ମପତ୍ରରେ ଯାହା ଉଠିବ ତାହାକୁ ଦୈବାଦେଶ ବୋଲି ମାନିନେବେ ।

ଗଦାଧର ରାଜି ।

ଗୋଟାଏ ଛୋଟ ଘଟୀ ଭିତରେ କେତେଖଣ୍ଡ ସାନ ସାନ କାଗଜ ରଖାଯିବ ।

କେଉଁଟାରେ ହଁ ଲେଖାଥିବ, କେଉଁଟାରେ ଲେଖାଥିବ ନା । ଅନପେକ୍ଷ ଶିଶୁଟିଏ ଘଟୀ ଭିତରେ ହାତ ପୂରାଇ ତା ମନ ଇଚ୍ଛା ଖଣ୍ଡିଏ କାଗଜ ବାହାର କରିଆଣିବ । ଯଦି ହଁ ଥିବ ତେବେ ମନ୍ଦିର କାମକର, ଯଦି ନା ଉଠିବ, କର ନାହିଁ । ବୁଝିବାକୁ ହେବ ତାହା ହିଁ ଈଶ୍ୱରଙ୍କ ନିର୍ଦ୍ଦେଶ ।

ଧର୍ମପତ୍ରରେ ହଁ ଉଠିଲା ।

ଅର୍ଥାତ୍, ରାମକୁମାର ଯେଉଁଭଳି ପୂଜକ କାମ କରୁଛନ୍ତି, କରନ୍ତୁ ।

ଗଦାଧର ଏବେ କଅଣ କରିବ ? ଝାମାପୁକୁରର ଟୋଲ ବନ୍ଦ ହୋଇଗଲା । ସେ ଏବେ ରହିବ କେଉଁଠି ? ଖାଇବ କଅଣ ?

ରାମକୁମାର ପଚାରିଲେ, 'ମନ୍ଦିରର ପ୍ରସାଦ ଖାଇବୁ ନାହିଁ ?'

'ନା ।'

'କାହିଁକି ? ଗଙ୍ଗାଜଳରେ ଅନ୍ନ ପ୍ରସ୍ତୁତ ହେଉଛି । ମାଆଙ୍କୁ ନିବେଦନ କରାହେଉଛି । ଖାଇଲେ ଦୋଷ କଅଣ ?'

'ମୁଁ ନିଜ ହାତରେ ରାନ୍ଧି ଖାଇବି ।'

'ଭଲକଥା । ତେବେ ସିଦା ନେଇ ଚାଲି ଯା ଗଙ୍ଗାକୂଳକୁ । ରାନ୍ଧି ଖାଇବୁ । ଗଙ୍ଗାକୂଳରେ ସମସ୍ତ ପବିତ୍ର, ଏ କଥା ତ ମାନିବୁ ?'

ଗଙ୍ଗା ନାଁ ଶୁଣି ଗଦାଧର ତରଳିଲା । ସକଳ - କଳୁଷଭଙ୍ଗା ଗଙ୍ଗା । ''ତବ ତଟ-ନିକଟେ ଯସ୍ୟ ନିବାସଃ ଖଳୁ ବୈକୁଣ୍ଠେ ତସ୍ୟ ନିବାସଃ ।'' ସେହି ଭବଭୟଦ୍ରାବିଣୀ ଭାଗୀରଥୀ । ତାକୁ ପ୍ରତ୍ୟାଖ୍ୟାନ କରିବ କିପରି ଗଦାଧର ।

ସ୍ଥିର ହେଲା, ଗଦାଧର, ଦକ୍ଷିଣେଶ୍ୱରରେ ରହିବ, ଗଙ୍ଗା କୂଳରେ ସ୍ୱହସ୍ତରେ ରାନ୍ଧି ଖାଇବ ।

ଗଙ୍ଗା ଜଳରେ ରଂଧନ !

କାହିଁକି ? କାହିଁକି ଏପରି କଠୋର ନିଷ୍ଠା ?

ଠାକୁର କହିଲେ, 'ପାଦରେ ଗୋଟିଏ କଣ୍ଟା ପଶିଲେ ଆଉ ଗୋଟିଏ କଣ୍ଟା ଆଣି ତା ସାହାଯ୍ୟରେ ପାଦର କଣ୍ଟାକୁ ବାହାର କରାଯାଏ । ତାପରେ ଦୁଇଟି ଯାକ କଣ୍ଟା ଫୋପାଡ଼ି ଦିଆଯାଏ । ସେହିଭଳି ଅଜ୍ଞାନକଣ୍ଟା ବାହାର କରିବା ପାଇଁ ଜ୍ଞାନ କଣ୍ଟା ସଂଗ୍ରହ କର । ତାପରେ ଜ୍ଞାନ-ଅଜ୍ଞାନ ଉଭୟ କଣ୍ଟା ଫୋପାଡ଼ି ଦିଅ । ସେତେବେଳେ ବିଜ୍ଞାନ ଅବସ୍ଥା । ତ୍ରିଗୁଣାତୀତ ଅବସ୍ଥା ।'

ଗୀତାରେ ଶ୍ରୀକୃଷ୍ଣ କହିଲେ ଅର୍ଜୁନଙ୍କୁ, ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।

ନିଷ୍ଠା ନଥିଲେ ସତ୍ୟରେ ପହଞ୍ଚିବ କିପରି ? ନିୟମରେ ନ ରହିଲେ କିପରି ବା ହେବ ନିୟମାତୀତ ? ପ୍ରଥମେ ଦରକାର ଶାସନ, ଦରକାର ଶମ-ଦମ-ସାଧନ । ତେବେ ସିନା ପହଞ୍ଚିବ ନିର୍ବାଣରେ । ପ୍ରଥମେ କଠିନ ହୁଅ, ତେବେ ଯାଇ ସରଳ ହୋଇପାରିବ । ଆଗେ ବୁଡ଼ିବାକୁ ଶିଖ, ତା'ପରେ ଯାଇ ସନ୍ଧାନ ପାଇବ ଗଭୀରତାର।

ଚଣ୍ଡାଳ କାନ୍ଧରେ ମାଂସ ଭାର ନେଇ ଯାଉଛି । ଛୁଇଁ ପକାଇଲା ଶଙ୍କରାଚାର୍ଯ୍ୟଙ୍କୁ । ଚିହିଁକି

ଉଠିଲେ ଶଙ୍କରାଚାର୍ଯ୍ୟ : 'ମୋତେ ଛୁଇଁ ଦେଲୁ ?' ଚଣ୍ଡାଳ କହିଲା, 'ପ୍ରଭୁ, ମୁଁ ତୁମକୁ ଛୁଇଁ ନାହିଁ, ତୁମେ ବି ମୋତେ ଛୁଇଁ ନାହଁ । ଆତ୍ମା ପରା ନିର୍ଲିପ୍ତ ।'

ଏଇଟା ହେଉଛି ବିଜ୍ଞାନୀର ଭାବ । ସେ କେତେବେଳେ ବାଳକ, କେତେବେଳେ ଜଡ଼; କେତେବେଳେ ଉନ୍ମାଦ, କେତେବେଳେ ପୁଣି ପିଶାଚ । ଏଇ ଅବସ୍ଥାକୁ ଆସିଲେ ସେ ନିୟମାତୀତ । ତାହାର ସର୍ବତ୍ର ବ୍ରହ୍ମମୟ । ତାହାର ଲଜ୍ଜା-ଘୃଣା-ଭୟ-ଭାବନା କିଛି ନାହିଁ । କୌଣସି ଗୁଣର ବନ୍ଧନ ନାହିଁ । କେତେବେଳେ ବାବୁ ଭଳି ପରିପାଟୀ କରି ପୋଷାକ ପିନ୍ଧେ, ପର ମୁହୂର୍ତ୍ତରେ ପୁଣି ଲୁଗାପଟା ଦେହରୁ ବାହାର କରି ବୁଜୁଲା କରି କାଖରେ ଯାକି ଘୂରି ବୁଲୁଥାଏ । ଗାଡ଼ିଆ ଜଳ ଗଙ୍ଗା-ଜଳ ତା ଆଖିରେ ସମାନ ।

ଏଇଟା ହେଉଛି ନିତ୍ୟ ସତ୍ତ୍ୱସ୍ଥ ଅବସ୍ଥା । କିନ୍ତୁ ଏଇ ଅବସ୍ଥାକୁ ଆସିବା ପାଇଁ କେତେ ନିଷ୍ଠା-ନିୟମ, କେତେ ଶାସନ-ବନ୍ଧନ ଦରକାର ତାହାର ହିସାବ ନାହିଁ ।

ଦକ୍ଷିଣେଶ୍ୱରରେ ମନ୍ଦିର ପ୍ରତିଷ୍ଠା ହେବାର କିଛିଦିନ ପରେ ଗୋଟାଏ ପାଗଳ ଆସି ସେଠି ପହଞ୍ଚିଲା । ଗୋଟାଏ ହାତରେ ଧରିଛି ନଡ଼ିଆ କଞ୍ଚି, ଆର ହାତରେ ଗୋଟାଏ ଛେଲୁଆ । ପାଦରେ ଛିଣ୍ଡା ଯୋତା । ଗଙ୍ଗାରେ ବୁଡ଼ ପକାଇ ଉଠି ଆସି ଅଣ୍ଟିରୁ କଅଣ ବାହାର କରି ଖାଇଲା । ତାପରେ ମନ୍ଦିରକୁ ଯାଇ ସ୍ତବ ଆରମ୍ଭ କଲା । ଗମ୍ ଗମ୍ ଶବ୍ଦରେ କମ୍ପି ଉଠିଲା ମନ୍ଦିର । ଭାତ ପାଇଲା ନାହିଁ ଖାଇବାକୁ । ଅତିଥିଶାଳାର ଫୋପଡ଼ା ହୋଇଥିବା ଅଇଁଠା ପତ୍ର ସାଉଣ୍ଟି ଚାଟି ଚାଟି ଖାଇଲା । ରାସ୍ତାର ବୁଲା କୁକୁର ପରି । ଏପରିକି ସେଇଠି ପତ୍ର ଚାଟୁଥିବା ବୁଲା କୁକୁରଙ୍କୁ ଆଡ଼େଇ ଦେଇ । ହଳଧାରୀ ମନ୍ଦିର ଭିତରେ ଥିଲା, କାରବାର ଦେଖି ଧାଇଁ ଆସିଲା । ଲୋକଟା ପଛେ ପଛେ ଗଲା ଖଣ୍ଡେ ଦୂର । ପଚାରିଲା, 'ତୁମେ କିଏ ?'

ପାଗଳ କହିଲା, 'ଚୁପ୍ ! କାହାକୁ କହିବୁ ନାହିଁ । ମୁଁ ପୂର୍ଣ୍ଣ-ଜ୍ଞାନୀ ।'

ପୂର୍ଣ୍ଣ-ଜ୍ଞାନୀ ?

'ହଁ । ତୋତେ କହି ଦେଇଯାଉଛି, ଯେଉଁଦିନ ଏହି ଗାଡ଼ିଆ ଜଳ ଓ ଗଙ୍ଗା ଜଳରେ କୌଣସି ଭେଦ ବୁଦ୍ଧି ରହିବ ନାହିଁ, ସେହିଦିନ ଜାଣିବୁ ପୂର୍ଣ୍ଣ ଜ୍ଞାନ ହୋଇଛି । କହିଦେଇ ପାଗଳ ଚାଲିଗଲା ତା' ବାଟରେ ।

ଠାକୁର ସବୁ ଶୁଣିଲେ । ଭୟରେ ଜାବୁଡ଼ି ଧରିଲେ ହୃଦୟକୁ । ମାଆଙ୍କୁ କହିଲେ, 'ମୋର ବି ଏହିଭଳି ଅବସ୍ଥା ହେବ ?'

ଡରୁଛୁ କାହିଁକି ? ମାଆଙ୍କ ମୁଖମଣ୍ଡଳରେ ସେହି ଅଭୟଙ୍କର ପ୍ରସନ୍ନତା । ଚୁମ୍ବକ-ପାହାଡ଼ ପାଖ ଦେଇ ଜାହାଜ ଗଲେ ଜାହାଜର ଆଉ କଅଣ ରହେ ? ତାହାର କଳ-କବ୍‌ଜା, ନଟ୍-ବୋଲ୍‌ଟ, ଲୁହା-ଲକ୍କଡ ସବୁ ଅଲଗା ହୋଇ ଖୋଲିଯାଏ । ସେହିଭଳି, ଯେତେବେଳେ ତୋର ଈଶ୍ୱର ଦର୍ଶନ ହୋଇଯିବ, ସେତେବେଳେ ତୁ ଆଉ ତୁ ହୋଇ ରହିବୁ ନାହିଁ । ତୁ ତ କାଠ ନୋହୁଁ ଯେ ପୋଡ଼ିଗଲା ପରେ ପାଉଁଶ ହୋଇ ରହିଯିବୁ । ତୁ ହେଲୁ କର୍ପୂର, ପୋଡ଼ିଗଲା ପରେ ତୋର ଆଉ କିଛି ଅବଶିଷ୍ଟ ରହିବ ନାହିଁ । ଶେଷ ବିଚାର ପରେ ତୋର ସମାଧି ହୋଇଯିବ । ଲୁଣର ପ୍ରତିମା ହୋଇ ତୁ ପଶିଯିବୁ ଲବଣ ସମୁଦ୍ର ଭିତରକୁ ।

ତୋର ଭୟ କାହିଁକି ? ତୋ ପାଇଁ ପରା ମୁଁ ଅଛି । ମୃଣ୍ମୟ ଆଧାରରେ ଚିନ୍ମୟୀ ମା !

୯

'ଏ ପିଲାଟି କିଏ ?' ଟିକିଏ ଯେପରି ତନ୍ମୟ ହେଲା ପରି ପଚାରିଲେ ମଥୁରବାବୁ ।

ଉଦାର-ଦର୍ଶନ, ନବୀନ ବ୍ରହ୍ମଚାରୀ । କୁମାର-କୋମଳ । କିଏ ଇଏ ? ଆଗରୁ କେବେ ଦେଖିଛି ଏହାକୁ । କେଉଁଠି ? କେତେ ଦିନ ପୂର୍ବେ ?

କିଛି ମନେ ପଡୁ ନାହିଁ ମଥୁରବାବୁଙ୍କର । ତେବେ କଅଣ ପୂର୍ବ ଜନ୍ମରେ ଦେଖିଥିଲି ? ଅଥବା, ଜନ୍ମ-ମୃତ୍ୟୁର ପରପାରରେ ?

କିଏ ଏଇ ପିଲାଟି ?

ନା, ସ୍ୱଗତୋକ୍ତି ନୁହେଁ, ପ୍ରଶ୍ନ କରୁଛନ୍ତି ରାମକୁମାରଙ୍କୁ ।

'ମୋ ଭାଇ ।' ସ୍ନିଗ୍ଧ ବିନୟରେ କହିଲେ ରାମକୁମାର ।

କିନ୍ତୁ ମଥୁରା ମୋହନଙ୍କର କିଏ ? ଯଦି କେହି ନୁହେଁ, ତେବେ ତା ଆଡ଼କୁ ମନ ଏତେ ଟାଣି ହୋଇଯାଉଛି କାହିଁକି ?

'ଏଠି ରହି ମନ୍ଦିରରେ କାମ କରିବ ?'

'ପଚାରି ବୁଝିବି ।'

କହିଲେ ସିନା ରାମକୁମାର, କିନ୍ତୁ ପଚାରିବାକୁ ସାହସ ହେଉନାହିଁ । ଭାଇର ମତିଗତି ସେ ଜାଣନ୍ତି । ଦକ୍ଷିଣା ଲୋଭରେ ଠାକୁର ପୂଜା କରିବା ପିଲା ସେ ନୁହେଁ ।

ଏହି ସମୟରେ ହୃଦୟରାମ ଆସି ଦକ୍ଷିଣେଶ୍ୱରରେ ପହଞ୍ଚିଲା ।

'କିରେ ? ତୁ କୋଉଠୁ ଆସିଲୁ ?' ବିସ୍ମୟରେ ପଚାରିଲେ ରାମକୁମାର ।

'ବର୍ଦ୍ଧମାନ ଯାଇଥିଲି ଚାକିରି ସନ୍ଧାନରେ । କିଛି ସୁବିଧା ହେଲାନାହିଁ । ଖବର ପାଇଲି, ମାମୁଁମାନଙ୍କର ଆଜିକାଲି ବହୁତ ବଢ଼ନ୍ତି, ରାଣୀ ରାସମଣିଙ୍କ ମନ୍ଦିରରେ ପୂଜାରୀ ହୋଇ ରହିଛନ୍ତି । ଭାବିଲି, ତାଙ୍କୁ ଯାଇ କହିଲେ କିଛି ଗୋଟାଏ ବାଟ ଫିଟି ପାରେ -'

ଷୋହଳ ବର୍ଷର ବଳିଷ୍ଠ ବାଳକ । ଲମ୍ବା-ଚଉଡ଼ା ଚେହେରା । ସୁପୁରୁଷ, ସଦାନନ୍ଦ ।

'ଆରେ ? ହୃଦୁ ନା କିଏ ରେ ?' ଆନନ୍ଦରେ ଧାଇଁ ଆସିଲା ଗଦାଧର । ବୟସରେ ପ୍ରାୟ ଚାରି ବର୍ଷ ସାନ, ସମ୍ପର୍କରେ ଭଣଜା, ତଥାପି ନିକଟତମ ବନ୍ଧୁ । ପିଲା ଦିନର ଖେଳସାଥୀ । ସହଜ-ସ୍ନେହରେ କୁଣ୍ଢେଇ ପକାଇଲା । କହିଲା, 'କେମିତି, କଅଣ ଭାବି ଚାଲି ଆସିଲୁ କହ ତ ?' ହୃଦୟ କିଛି କହିଲା ନାହିଁ । ଚୁପ୍ ହୋଇ ରହିଲା । କିନ୍ତୁ ଅନ୍ତର ଭିତରେ ବସି ଅନ୍ତରବାସିନୀ କହିଲେ, 'ତୋରି ଲାଗି ଆଣିଲି ହୃଦୟକୁ ତୋ ପାଖକୁ । ସେ ନହେଲେ କିଏ ଆଉ ତୋ ହେପାଜତ କରିବ ? ତୋତେ ସମ୍ଭାଳି ରଖିବ ? ସାଧନାରେ ବସି ତୁ ଯେତେବେଳେ ସବୁ ଭୁଲିଯାଇଥିବୁ, ସେତେବେଳେ ତୋ ଦେହଟାକୁ କିଏ ଜଗିବ ? ତୁ ଶିବ ହେଲେ ସେ ତୋର ନନ୍ଦୀ । ତୁ ଯଦି ରାମ, ସିଏ ହେବ ତୋର ଲକ୍ଷ୍ମଣ ।'

ଗଛର ଯେପରି ଛାଇ, ଗଦାଧରର ସେହିପରି ହୃଦୁଦା ।

ଦୁହିଙ୍କ ଭିତରେ ଛାଡ଼ବାଡ଼ ନାହିଁ । ସର୍ବକ୍ଷଣ ସମଭାବ। କେବଳ ଖାଇବା ସମୟରେ ଅଲଗା । ହୃଦୟ ମନ୍ଦିରର ପ୍ରସାଦ ଖାଏ, ଗଦାଧର ଗଙ୍ଗା କୂଳରେ ନିଜ ହାତରେ ରାନ୍ଧେ ।

ମଥୁର ବାବୁଙ୍କ ନଜରରୁ ନିଜକୁ ଦୂରେଇ ରଖେ ଗଦାଧର । କାଳୀ ମନ୍ଦିରରେ କୌଣସି ଗୋଟାଏ ଚାକିରିରେ ତାକୁ ଲଗେଇ ଦେବେ - ତାଙ୍କର ଭାରି ଇଚ୍ଛା । ତାଙ୍କ ଆଖିର ଭାଷାକୁ ଗଦାଧର ବୁଝିପାରିଛି । ହେଲେ, ଚାକିରି-ଫାକିରି ଭିତରେ ମୁଁ ନାହିଁ, ଧରା ବନ୍ଧା ନିୟମ ଭିତରେ ରହିବା ଲୋକ ମୁଁ ନୁହେଁ । ମୁଁ ମୋର ମୋ ନିଜ ଖୁସିରେ ଶିବମୂର୍ତ୍ତି ଗଢ଼ିବି, ପୂଜା କରିବି ମୋ ମନ ଯେମିତି ଚାହିଁବ । ଏଇ କାମ ମୋ ପାଇଁ ଭଲ । ମୋ ଧ୍ୟାନର ଆରାମ ।

ଏଇ ଭଳି ଖିଆଲରେ ମୂର୍ତ୍ତିଟିଏ ଗଢ଼ିଛି ଗଦାଧର । ମୂର୍ତ୍ତି ଗଢ଼ି ବସି ପୂଜା କରୁଛି ଦିନେ । ପୂଜା କରିବାକୁ ବସି ଆବିଷ୍ଟ ହୋଇଯାଇଛି । ସୁଯୋଗ ପାଇ ମଥୁରବାବୁ କେତେବେଳେ ଚୁପ୍‌ଚାପ୍ ଚାଲି ଆସିଛନ୍ତି ପାଖକୁ । ତନ୍ମୟ ହୋଇ ଦେଖୁଛନ୍ତି ସେହି ଶିବମୂର୍ତ୍ତି । ତାର ଗଠନ ଲାବଣ୍ୟ । କେବଳ ଭାସ୍କର୍ଯ୍ୟ ନୁହେଁ, ଭାସ୍କର୍ଯ୍ୟ ଠାରୁ ଯାହା ବଡ଼ ତାହା ହିଁ ଯେପରି ଫୁଟି ଉଠିଛି ମୂର୍ତ୍ତିର ସର୍ବାଙ୍ଗରେ । ତାହା ହେଉଛି ଭକ୍ତି । ମନୋମାଧୁରୀ । ହସ୍ତର ପାଟବରୁ ଝରିଆସୁଛି ଅନ୍ତରର ଅନୁରାଗ ।

'ଏ ମୂର୍ତ୍ତି କିଏ ଗଢ଼ିଛି ?'

ହୃଦୟ ସେଇଠି ପାଖରେ ଥିଲା । କହିଲା, 'ଗଦାଧର ।'

ମୁହୂର୍ତ୍ତକ ପାଇଁ କଅଣ ଯେପରି ଭାବିଲେ ମଥୁରବାବୁ । କହିଲେ, 'ପୂଜା ସରିଗଲେ ମୋତେ ଦେବ ଏଇ ମୂର୍ତ୍ତିଟି ?'

ଆପତ୍ତି ନାହିଁ । ମନ କଲେ ଏଇ ଭଳି କେତେ କେତେ ମୂର୍ତ୍ତି ଗଢ଼ି ଦେଇପାରିବ ଗଦାଧର ।

ହୃଦୟ ସମ୍ମତି ଜଣାଇଲା ।

ହାତରେ ମୂର୍ତ୍ତି ଧରି ମନର ବ୍ୟାକୁଳତା ବଢ଼ିଗଲା ମଥୁର ବାବୁଙ୍କର । ଯାହାର ଚକିତ କଳ୍ପନାରୁ ସମ୍ଭବ ହୋଇଛି ଏହି ରୂପ, କି ଭଳି ହୋଇଥିବ ତାହାର ଅତଳତଳ ଧ୍ୟାନର ସ୍ୱରୂପ ! ଡକେଇଲେ ରାମକୁମାରଙ୍କୁ । ରାଜି କରାନ୍ତୁ ଗଦାଧରକୁ, ଯାହା ହେଲେ କିଛି କାମ ତାକୁ ଦିଅନ୍ତୁ ମନ୍ଦିରରେ । ଅସମ୍ଭବ - ରାମକୁମାର ଗମ୍ଭୀର ହୋଇ ରହିଲେ । ଚାକିରି ଆଡ଼କୁ ଗଦାଧରର ରୁଚି ନାହିଁ ।

ଜିଦ୍ ବଢ଼ିଲା ମଥୁର ବାବୁଙ୍କର । ଯେମିତି ହେଉ, କାଳୀଙ୍କ କୋଳ ପାଖକୁ ଟାଣି ଆଣିବାକୁ ପଡ଼ିବ ଗଦାଧରକୁ ।

'ବାବୁ ଡାକୁଛନ୍ତି ଆପଣଙ୍କୁ ।'

ଗଦାଧର ମୁହଁ ଟେକି ଚାହିଁଲା, ସାନ-ମଝିଆଁ ବାବୁଙ୍କ ଚାକର ।

ଖସିଯିବାର ଉପାୟ ନାହିଁ । ମଥୁରବାବୁ ସତେ କି ଆସି ଆଖି ଆଗରେ ଠିଆ ହୋଇଛନ୍ତି ।

'ଡାକୁଛନ୍ତି ଯଦି, ଯାଉ ନ କାହିଁକି ?' ଧମକ ଦେଲାପରି କହିଲା ହୃଦୟ । 'ଏତେ ଡରୁଛ କାହିଁକି ?'

'ଗଲେ ତ ସେ କହିବେ, ଏଇଠି ରୁହ, ଚାକିରି କର । ମୋ ଦେଇ ସେ କାମ ହେଇ ପାରିବ ନାହିଁ ।'

'ଦୋଷ କଅଣ ସେଥିରେ ? ଚାକିରି କଲେ କ୍ଷତି ଟା ବା କଅଣ ? ସେ ଲୋକ କେତେ ସତ୍, କେତେ ମହତ୍ । ଏଭଳି ଲୋକ ପାଖରେ ଚାକିରି କରିବାରେ ତ ସୁଖ ।'

'ତୁ ସବୁ ବୁଝି ପକେଇଲୁ ! ଆରେ, ଚାକିରି କଲେ ସବୁଦିନ ପାଇଁ ବାନ୍ଧି ହୋଇ ରହିବାକୁ ପଡ଼ିବ । ମୋତେ ସେ କଥା ପୋଷେଇବ ନାହିଁ । ତା ଛଡ଼ା -' କେବଳ ହୃଦୟ ଶୁଣିବା ଭଳି ଆସ୍ତେ କରି କହିଲା, ଗଦାଧର : 'କାଳୀ ପୂଜାର ଦାୟିତ୍ୱ ନେବା ସାମାନ୍ୟ କଥା ନୁହେଁ । ଦେବୀଙ୍କ ଦେହରେ ଏତେ ଅଳଙ୍କାର, ତାର ଭଲା ଦାୟିତ୍ୱ କିଏ ନେବ ?'

'ମୁଁ ନେବି ।'

'ତୁ ନବୁ ? ସତ କହୁଛୁ ?'

'ଚାକିରି କରିବା ପାଇଁ ତ ମୁଁ ଆସିଛି ଏଠିକି । ଯେଉଁ ଚାକିରି ହେଉ, କିଛି ଗୋଟାଏ ମିଳିଗଲେ ହେଲା ।'

'ତା ହେଲେ, ମୁଁ ଯାଉଛି, କହିବି ସାନ-ମଝିଆଁ ବାବୁଙ୍କୁ ।'

ହାତ ମୁଠାରେ ସ୍ୱର୍ଗର ଚାନ୍ଦ ପାଇଗଲେ ମଥୁରବାବୁ । ଗଦାଧରକୁ କହିଲେ, 'ତୁମେ ମାଆଙ୍କର ବେଶକାରୀ ହେଲ । ମାଆଙ୍କୁ ସଜେଇ ଦେବ ପ୍ରତିଦିନ ।' ହୃଦୟକୁ କହିଲେ, 'ତୁମେ ହେଲ ତା ସାହାଯ୍ୟକାରୀ ।'

ଏହି ସମୟର ଗୋଟିଏ ଘଟଣା ।

କ୍ଷେତ୍ରନାଥ ଚଟ୍ଟୋପାଧ୍ୟାୟ ରାଧାଗୋବିନ୍ଦଙ୍କ ପୂଜକ । ପ୍ରତିଦିନ ସକାଳେ ରାଧାରାଣୀ ଓ ଶ୍ରୀକୃଷ୍ଣଙ୍କୁ ଆଣି ମନ୍ଦିରର ସିଂହାସନ ଉପରେ ବସାନ୍ତି, ଉପର ଓଳି ପୁଣି ନେଇଯାଆନ୍ତି ଶୟନ-ଗୃହକୁ । ଜନ୍ମାଷ୍ଟମୀ ବାସି । ସେଦିନ ନନ୍ଦୋତ୍ସବ । ମଧ୍ୟାହ୍ନରେ ଭୋଗ-ରାଗ ହୋଇ ଯାଇଛି । ବର୍ତ୍ତମାନ ବିଶ୍ରାମ ପର୍ବ । ରାଧାରାଣୀଙ୍କୁ ନେଇ ସେ ପାଖ ଘରେ ଶୁଆଇଦେଇ ଆସିଛନ୍ତି । ଆସି ଗୋବିନ୍ଦଙ୍କୁ ନେଇ ଯାଉଛନ୍ତି । ହଠାତ୍ ଗୋଡ଼ ଖସି ପଡ଼ିଗଲେ କ୍ଷେତ୍ରନାଥ । ନିଜେ ଅବଶ୍ୟ ଆଘାତ ପାଇଲେ ନାହିଁ, ମାତ୍ର ଗୋବିନ୍ଦଙ୍କର ଗୋଟିଏ ଗୋଡ଼ ଭାଙ୍ଗିଗଲା । ପ୍ରବଳ ପାଟିଗୋଳ ଆରମ୍ଭ ହୋଇଗଲା ମନ୍ଦିର ଭିତରେ । କି ଅଘଟଣ ! ନିଶ୍ଚୟ ଅଶୁଭ- ସୂଚନା ।

ସଙ୍ଗେ ସଙ୍ଗେ କ୍ଷେତ୍ରନାଥଙ୍କୁ କାମରୁ ବରଖାସ୍ତ କରି ଦିଆଗଲା । ହେଲେ, କଅଣ ହେବ ? ସେତିକିରେ କଅଣ ବିଗ୍ରହ ଅଭଙ୍ଗ ହୋଇଯିବେ ?

ଅବଶ୍ୟ ହେବେ ନାହିଁ । ତେବେ ଉପାୟ ? ରାଣୀ ରାସମଣି ଅଧୀର ହୋଇ ପଡ଼ିଲେ । ମଥୁର ବାବୁଙ୍କୁ କହିଲେ, ସଭାର ଆୟୋଜନ କର, ପଣ୍ଡିତ ମାନଙ୍କୁ ଡକାଅ । ବ୍ୟବସ୍ଥା ଆଣ ।

ଆରମ୍ଭ ହେଲା ପଣ୍ଡିତ ସଭା । ଯେତେ ଯେଉଁଠି ନ୍ୟାୟ-ବାଗୀଶ ତର୍କ-ଚୂଡ଼ାମଣି ପଣ୍ଡିତ ଥିଲେ, ସମସ୍ତେ ଆସି ବସିଲେ । ବହୁ ଶାସ୍ତ୍ର ମନ୍ଥନ କରି, ବହୁତ ସଂସ୍କୃତ ଆବୃତ୍ତି କରି ଶେଷକୁ ନିଷ୍ପତ୍ତି ଦେଲେ -ଭଙ୍ଗା ବିଗ୍ରହକୁ ଗଙ୍ଗାରେ ବିସର୍ଜନ ଦିଅ, ସ୍ଥାପନ କର ନୂତନ ଦେବମୂର୍ତ୍ତି ।

ସଙ୍ଗେ ସଙ୍ଗେ ନୂତନ ବିଗ୍ରହ ପାଇଁ ବରାତ ଦିଆଗଲା ।

କିନ୍ତୁ ରାଣୀଙ୍କ ମନରେ ସୁଖ ନାହିଁ । ଅନ୍ତରର ଅନ୍ଧକାର ଭିତରେ ବସି ନିରନ୍ତର କ୍ରନ୍ଦନ କରିବାକୁ ଲାଗିଲେ । କହିଲେ ଗୋବିନ୍ଦଙ୍କୁ, ମୋ ପାଇଁ ତୁମେ କ'ଣ ଖାଲି ପଥର ନା ତମ୍ବା-ପିତଳ ଯେ ତୁମକୁ ପାଣିରେ ପକାଇ ଦେବି ? ତା' ଅପେକ୍ଷା, ତୁମେ ବରଂ ମୋତେ ଅଶ୍ରୁ-ଜଳରେ ବୁଡ଼ାଇ ଦିଅ ।

ମଥୁରବାବୁ ବୁଝିଲେ ରାଣୀଙ୍କ ମନର ଅସ୍ଥିରତା । ଭାବିଲେ, ଥରେ ଯାଇ ଗଦାଧରକୁ ପଚାରି ଦେଖେଁ । କାହିଁକି କେଜାଣି, ତାଙ୍କର ମନେ ହେଉଥିଲା, ନିଶ୍ଚୟ କିଛି ଗୋଟାଏ ସହଜ ସମାଧାନ ଅଛି । ସରଳ ମଧ୍ୟରେ ଯିଏ ସରଳ ସେ ନିଜେ ହୁଏତ ସବୁ ତରଳ କରିଦେବେ ।

ଗଦାଧରକୁ ଯାଇ ସବୁ କଥା କହିଲେ ମଥୁରବାବୁ । ଏବେ କୁହ, ତୁମେ କଅଣ କହୁଛ ? ତୁମ ମନ କଅଣ କହୁଛି ?

'ଯେଉଁ ଭଳି ପଣ୍ଡିତ ସେଇ ଭଳି ତାଙ୍କ ବ୍ୟବସ୍ଥା !' ଟିକିଏ ଉତ୍ତେଜିତ ଭାବରେ କହିଲା ଗଦାଧର : 'ଆଜି ଯଦି ରାଣୀଙ୍କ ଜୋଇଁର ଗୋଡ଼ଟା ଭାଙ୍ଗିଯାଇଥାଆନ୍ତା, ରାଣୀ କଅଣ କରିଥାଆନ୍ତେ ? ଜୋଇଁକୁ ଗଙ୍ଗାରେ ଫୋପାଡ଼ି ଦେଇ ନୂଆ ଜୋଇଁଟିଏ ଆଣିଥାଆନ୍ତେ ?'

ସମସ୍ତେ ସ୍ତବ୍ଧ ।

'କେବେ ନୁହେଁ । ରାଣୀ ଜୋଇଁର ଚିକିତ୍ସା, କରାଇଥାଆନ୍ତେ । ଚିକିତ୍ସା କରେଇ ତାଙ୍କୁ ଭଲ କରେଇ ଥାଆନ୍ତେ ।'

କାହାରି ତୁଣ୍ଡରେ କଥାନାହିଁ ।

'ହଁ, ହଁ, ଭଙ୍ଗା ଗୋଡ଼ ଯୋଡ଼ିବା କଥା କହୁଛି !' ଭଙ୍ଗା ଗୋଡ଼ଟି ଯୋଡ଼ି ଦେଲେ ଠାକୁର ପୁଣି ପୂର୍ଣ୍ଣ-ସୁସ୍ଥ ହୋଇଯିବେ । ତାଙ୍କ ସେବା-ପୂଜା ଚାଲିବ ଆଗ ଭଳି ।'

ସହଜ ସରଳ ଅନ୍ତରର କଥା । ମନ ଯେପରି ଚାହେଁ ଠିକ୍ ସେଇପରି । ଯେଉଁ କଥାଟି ମନରୁ ଆସେ, ବିବେକରୁ ଆସେ, ତାହା ଈଶ୍ୱରଙ୍କ ପାଖରୁ ଆସେ । ଯେଉଁଠି ସରଳ-ସ୍ୱଚ୍ଛ ସେହିଠାରେ ହିଁ ଈଶ୍ୱରଙ୍କ ପ୍ରତିବିମ୍ବ ।

ଏଭଳି ଗୋଟାଏ ସହଜ ମୀମାଂସା ହୋଇପାରେ - ଶୁଣି ପଣ୍ଡିତମାନେ ଅବାକ୍ । କେତେଜଣ ପୁଣି ଶାସ୍ତ୍ର-ବାଣୀ ଆଉଡ଼େଇ ଆପତ୍ତି ଉଠାଇଲେ । କିନ୍ତୁ ମନ ପାଖରେ ଶାସ୍ତ୍ର କଅଣ ? ମନର ଜୋର ପାଖରେ ଆଉ କାହାର ଜୋର ଖଟିବ ?

ରାଣୀଙ୍କ ହୃଦୟ ଆନନ୍ଦରେ ଉଚ୍ଛୁଳି ଉଠିଲା । ଦୁଇ ଆଖିରୁ ଧାରା ବହି ପଡ଼ିଲା । କେତେ ସହଜ ଭିତରେ ତୁମେ ଅଛ ! କେତେ ସହଜରେ ଧରା ଦେଲ ! ମନେ ମନେ କହିଲେ ଗୋବିନ୍ଦଙ୍କୁ ।

ଗଦାଧରକୁ କହିଲେ, 'ତୁମେ ନିଜେ ଯୋଡ଼ିଦିଅ ଭଙ୍ଗା ଗୋଡ଼ । ତୁମେ ପୋଖତ କାରିଗର, ତୁମେ ବୈଦ୍ୟନାଥ ।'

ଭଙ୍ଗା ଗୋଡ଼ ଯୋଡ଼ିଦେଲା ଗଦାଧର । ପୂରାପୂରି ନିଖୁଣ କରିଦେଲା । କାହାରି ସାଧ ନାହିଁ ଯୋଡ଼ା ଦାଗ ଖୋଜି ବାହାର କରିଦେବ । କାହାରି ସାଧ ନାହିଁ ଧରିଦେବ ଏହି ଯାଦୁକରର ବାହାଦୁରୀ ।

ବରାତି ମୂର୍ତ୍ତି ଆସି ପହଞ୍ଚିଲା । ମଥୁରବାବୁ କହିଲେ, 'ଦେଖିଲ, ଆଗ ଭଳି ହୋଇଛି କି ନାହିଁ ?'

ଗଦାଧର ଦେଖିଲା, ଆଖି ମେଲା କରି ନୁହେଁ, ଆଖି ବନ୍ଦ କରି । ଦେଖିଲା ଅନ୍ତର ମଧ୍ୟରେ ବୁଡ଼ିଯାଇ । ନା, ସେଭଳି ହୋଇନାହିଁ । ସେଭଳି ଆଉ ହୋଇପାରିବ ନାହିଁ ।

ନୂତନ ବିଗ୍ରହରେ ପ୍ରୟୋଜନ ନାହିଁ । ପୁରୁଣା ବିଗ୍ରହ ହିଁ ଭଲ । କେତେ ପ୍ରୀତି-ଭକ୍ତିର କୋମଳତା ବୋଳି ହୋଇ ରହିଛି ତା' ଅଙ୍ଗରେ । କେତେ ଅଶ୍ରୁରେ ତା'ର ସ୍ନାନ-ମାର୍ଜ୍ଜନ । କେତେ ପ୍ରାର୍ଥନାରେ ତା'ର ନିଦ୍ରାରୁ ଜାଗରଣ ! ତାକୁ କ'ଣ ବିଦାୟ ଦେବା ସମ୍ଭବ? ନା, ବିଦାୟ ଦେଇଦେଲେ ତା' ଦାୟରୁ ମୁକ୍ତି ମିଳିଯିବ ?

କିନ୍ତୁ ଯାହା କୁହ ପଛକେ, ଖୁଣ ତ ଟିକିଏ ରହିଲା । ଭଗ୍ନ -ଅଙ୍ଗ ବିଗ୍ରହର ପୂଜା ସିଦ୍ଧ ହେବ ତ ?

ନିଶ୍ଚୟ ହେବ । ପ୍ରିୟଜନ ଠାରେ ଯଦି କିଛି ଖୁଣ ଥାଏ, ସେହି ଖୁଣ ପାଇଁ ତ ସେ ପ୍ରିୟତର ।

ବରାନଗରର କୁଟିଘାଟା ଅଞ୍ଚଳ । ସେଇଠି ଗଙ୍ଗାନଦୀ କୂଳରେ ରତନ ରାୟଙ୍କ ଘାଟ । ସେଇ ଘାଟ ପାଖକୁ ଗଦାଧର ବୁଲି ଆସିଛି । ସେଇଠି ଭେଟ ହେଲା ପ୍ରତାପୀ ଜମିଦାର ଜୟନାରାୟଣ ବନ୍ଦୋପାଧ୍ୟାୟଙ୍କ ସହିତ । କଥା ପ୍ରସଙ୍ଗରେ ରାଣୀ ରାସମଣିଙ୍କ କାଳୀ ମନ୍ଦିର କଥା ଉଠିଲା । ରାଧାଗୋବିନ୍ଦଙ୍କ କଥା ।

'ହଇ ହେ ! ସେଠିକା ଗୋବିନ୍ଦ କାଳେ ଭଙ୍ଗା ?'

'ଏଇ ବୁଦ୍ଧି ତମର !' ହସି ଦେଲା ଗଦାଧର: 'ଯିଏ ଅଖଣ୍ଡମଣ୍ଡଳାକାର ସିଏକେବେ ଖଣ୍ଡିଏ ହୋଇ ପାରନ୍ତି ?'

ଜୟନାରାୟଣ ନିରୁତ୍ତର ।

ଭାବାବସ୍ଥାରେ ପଡ଼ିଯାଇ ଥରେ ଠାକୁରଙ୍କ ଦାନ୍ତ ଭାଙ୍ଗି ଯାଇଥିଲା । ଆଉ ଥରେ ପୁଣି ପଡ଼ିଯାଇ ହାତ ଭାଙ୍ଗିଗଲା ।

'ହାତ ଭାଙ୍ଗିଲା କାହିଁକି, କହି ପାରିବ ?' ଭକ୍ତମାନଙ୍କୁ ଲକ୍ଷ୍ୟ କରି ପଚାରିଲେ ଠାକୁର ।

କିଏ ବା କଅଣ କହିବ ? ଠାକୁରଙ୍କ ହାତ ଭାଙ୍ଗି ଯାଇଛି ଏଇଟା ଗୋଟାଏ ଦୈବ-ଦୁର୍ବିପାକ ଛଡ଼ା ଆଉ କଅଣ ?

କିନ୍ତ ଠାକୁର ନିଜେ କହିଲେ, 'ହାତ ଭାଙ୍ଗିଲା - ସବୁ ଅହଂକାର ନିର୍ମୂଳ କରିବା ପାଇଁ । ବର୍ତ୍ତମାନ ଏଇ ଖୋଳ ଭିତରେ ଆଉ 'ମୁଁ'କୁ ଖୋଜି ପାଉନାହିଁ । ଖୋଜିବାକୁ ଯାଇ ଦେଖୁଛି 'ସେ' । ସେ ରହିଛନ୍ତି ଏହା ଭିତରେ ।'

ରାଣୀ ରାସମଣି ଖୋଜିବାକୁ ଯାଇ ଦେଖିଲେ, ଭଙ୍ଗା ବିଗ୍ରହ ମଧ୍ୟରେ ଗୋବିନ୍ଦ ରହିଛନ୍ତି । ଜ୍ଞାନରେ ଯିଏ, ସତ୍ତାରେ ଯିଏ, ପ୍ରାପ୍ତିରେ ଯିଏ , ସେହି ହେଉଛନ୍ତି ଗୋବିନ୍ଦ ।

ଗଦାଧର ଏବେ ରାଧାଗୋବିନ୍ଦ ମନ୍ଦିରରେ ପୂଜକ । ହୃଦୟ ହୋଇଛି କାଳୀଙ୍କ ବେଶକାରୀ ।

କିନ୍ତୁ ଇଏ କି ପ୍ରକାର ପୂଜା ? ଆଖିର ପଲକରେ ସମସ୍ତ ବିଶ୍ୱ ସଂସାରରୁ ବିଲୁପ୍ତ ହୋଇଯାଉଛି । ଘଣ୍ଟା ଘଣ୍ଟା ଧରି ବସି ରହୁଛି ଧ୍ୟାନବିଲୀନ ହୋଇ । ମୂର୍ତ୍ତିକୁ ପ୍ରତୀକ ନ ଭାବି ଜାଗ୍ରତ ଜୀବନ୍ତ ପରି ତା' ସହିତ ବ୍ୟବହାର କରୁଛି । ଏ ପ୍ରକାର ପୂଜା ଜୀବନରେ ଦେଖିନାହାନ୍ତି ମଥୁରବାବୁ ।

ଏତେ ତନ୍ମୟ, ପୂଜା ଦେଖିବା ପାଇଁ କେତେ ଲୋକ ଆସି ଠିଆ ହୋଇ ଗଲେଣି, ସେ ଆଡ଼କୁ ନଜର ନାହିଁ । ଏପରିକି ସ୍ୱୟଂ ମଥୁରବାବୁ ବି ତା' ନଜରରେ ପଡୁନାହାନ୍ତି ।

ଦେଖୁଛନ୍ତି, ମନ୍ତ୍ର ଉଚ୍ଚାରଣ କରିବା ସମୟରେ କେମିତି ମନ୍ତ୍ରର ଉଜ୍ଜ୍ୱଳ ବର୍ଣ୍ଣ ତା' ଦେହ ସହିତ ମିଶିମିଶି ଯାଉଛି । କିପରି ସର୍ପିଣୀ କୁଣ୍ଡଳିନୀ ସୁଷୁମ୍ନା ମଧ ଦେଇ ଧୀରେ ଧୀରେ ଉଠି ଯାଉଛି ସହସ୍ରାରକୁ । ଶରୀରର ଯେଉଁ ଯେଉଁ ଅଂଶ ତ୍ୟାଗ କରି ଯାଉଛି ସେହି ଅଂଶଗୁଡ଼ିକ ନିସ୍ପନ୍ଦ ହୋଇ ଯାଉଛି । ଆଉ ଯେଉଁ ଅଂଶକୁ ଯାଇ ଭେଦ କରୁଛି, ସେଠି ଫୁଟି ଉଠୁଛି ବିକଚ ପଦ୍ମ । ପୂଜା-ସ୍ଥାନର ଚାରି ପାଖରେ ଜଳ ସିଞ୍ଚି ଦେଉଛି, ସଙ୍ଗେ ସଙ୍ଗେ ଜାତ ହେଉଛି ବହ୍ନି-ପ୍ରାକାର । ତନ୍ମନସ୍କ ହୋଇ ମନ୍ତ୍ର ପାଠ କରୁଛି ଏବଂ ସମଗ୍ର ଶରୀର ହୋଇ ଉଠୁଛି ଜ୍ୱଳିତ -ତେଜସ୍ୱାନ ।

ଯିଏ ଦେଖୁଛି ସିଏ ବି ତନ୍ମୟ ହୋଇ ପଡୁଛି ।

ଧ୍ୟାନ କରିବାବେଳର ଅବସ୍ଥା କିଭଳି ଜାଣ ? ମନଟା ହେବ ଠିକ୍ ତୈଳ-ଧାରା ପରି । ଏକମାତ୍ର ଈଶ୍ୱର-ଚିନ୍ତା ବିନା ଅନ୍ୟ କୌଣସି ଚିନ୍ତା ରହିବ ନାହିଁ । ପକ୍ଷୀ ଶିକାର କରିବା ପାଇଁ ଶିକାରୀ ଲାଖ ସଜାଡ଼ି ବସିଛି । ପାଖ ଦେଇ ବର ଯାଉଛି ପଟିଆର କରି, କେତେ ଲୋକ, ଗାଡ଼ି, ଘୋଡ଼ା, ବାଜା-ରୋସଣୀ । ଶିକାରୀର ନଜର ନାହିଁ । ଜାଣି ବି ପାରିଲା ନାହିଁ, ବର ଗଲା ଚଉଦ୍ୱୋଳରେ ବସି ।

ବୁଝି ପାରୁଛ ତ ? ସ୍ପର୍ଶବୋଧ ପର୍ଯ୍ୟନ୍ତ ରହେ ନାହିଁ । ଦେହ ଉପର ଦେଇ ସାପ ଚାଲିଯିବ, ସାପ ବୁଝିପାରିବ ନାହିଁ କେଉଁ ଜିନିଷ ଉପର ଦେଇ ଗଲା । ମନର ସଦର କବାଟ ବନ୍ଦ କରି ଦେଇ ବସ । କବାଟ ବାହାରେ ପଡ଼ି ଥାଉ ତୁମ ରୂପ,ରସ, ଗନ୍ଧ, ଶବ୍ଦ ଆଉ ସ୍ପର୍ଶ - ତୁମ ପଞ୍ଚ ଇନ୍ଦ୍ରିୟର ପଞ୍ଚ ଉପଚାର । ସେଇ ନିବୁଜ ଘର ଭିତରେ ତୁମେ ଆଉ ତୁମ ମନ । ପ୍ରତୀକ୍ଷା ଏବଂ ଅନ୍ଧକାର । ବିଶ୍ୱାସ ଓ ବ୍ୟାକୁଳତା । ବାରୁଦ ଏବଂ ବହ୍ନିକଣା ।

ପ୍ରଥମ ଅବସ୍ଥାରେ ଭୋଗର ସାମଗ୍ରୀମାନ ଆସି ପହଞ୍ଚିବ ଭାର ଭାର ହୋଇ । ପଞ୍ଚ ଇନ୍ଦ୍ରିୟର ପଞ୍ଚ ପ୍ରବଞ୍ଚନା । ବିଚଳିତ ହେବୁନାଇଁ, ଗଭୀରକୁ ଚାଲିଯିବୁ । ଆହୁରି ଗଭୀରକୁ । ଅନ୍ଧକାରରୁ ଚାଲି ଆସିବୁ ଶୁଭ୍ରତାକୁ । ଦେଖିବୁ, ସେମାନେ ଆଉ ଆସୁନାହାନ୍ତି । କାହା ପାଖକୁ ଆସିବେ ?

'ଧ୍ୟାନରେ ବସି ପ୍ରଥମେ ପ୍ରଥମେ ମୁଁ କଅଣ ସବୁ ଦେଖୁଥିଲି, ଜାଣ ?' ଦିନେ କହିଲେ

ଠାକୁର, 'ସ୍ପଷ୍ଟ ଦେଖିଲି ଆଗରେ ଟଙ୍କା - କୁଢ଼ କୁଢ଼ ଟଙ୍କା, ମଠା-ପାଟ, ଥାଳିରେ ଥାଳିଏ ସନ୍ଦେଶ, ଦୁଇ ଜଣ ସ୍ତ୍ରୀ ଲୋକ - ତାଙ୍କ ନାକରେ ନୋଥ । ମନକୁ ପଚାରିଲି,ମନ, ତୁ କଅଣ ଚାହୁଁ ? କୋଉଟା ତୋର ଦରକାର ? ମନ କହିଲା,କୌଣସିଟା ନୁହେଁ । ଈଶ୍ୱରଙ୍କ ପାଦପଦ୍ମ ଛଡ଼ା ଆଉ ମୋର କିଛି ଚାହିଁବାର ନାହିଁ ।'

ରାମକୁମାର ଏବେ ଖୁସି । ମନ୍ଦିର କାମରେ ଏଣିକି ମନ ଦେଉଛି ଗଦାଧର । କିନ୍ତୁ ପୂଜା-କାମ ତାକୁ ଧରେଇଥିଲେ ଯେଉଁ ଉଦ୍ଦେଶ୍ୟ ନେଇ- ମାନେ, କିଛି ରୋଜଗାର, କାହିଁ ? ଘରର ଅବସ୍ଥା ତ ବଦଳୁ ନାହିଁ । ଚାକିରିରେ ରହି ଟଙ୍କା ଆଡ଼କୁ ନଜର ନ ରଖିଲେ ଚଳିବ ? ଟଙ୍କା ବିନା ଉପାୟ କାହିଁ ?

ଡାକ୍ତରଙ୍କ ନାମ ଭଗବାନ ରୁଦ୍ର । ଠାକୁର ଦିନେ ତାଙ୍କୁ ପଚାରିଲେ, 'ଏଇଟା ମୋର କି ରୋଗ କହିଲ ? ଟଙ୍କା ଛୁଇଁ ପକାଇଲେ ହାତ ବଙ୍କେଇ ଯାଏ । ନିଃଶ୍ୱାସ ବନ୍ଦ ହୋଇ ଆସେ ।'

ବିଶ୍ୱାସ ହେଲା ନାହିଁ ଡାକ୍ତରଙ୍କର । ଗୋଟିଏ ଟଙ୍କା ବାହାର କରି ରଖିଲେ ଠାକୁରଙ୍କ ହାତରେ । ଆଶ୍ଚର୍ଯ୍ୟ କଥା - ଚାହୁଁ ଚାହୁଁ ଠାକୁରଙ୍କ ହାତଟା ବଙ୍କା ହୋଇଗଲା । ରୁଦ୍ଧ ହୋଇ ଆସିଲା ନିଃଶ୍ୱାସ - ।

ତା'ଛଡ଼ା - ଚିନ୍ତିତ ମନରେ ଭାବୁଛନ୍ତି ରାମକୁମାର - ପିଲାଟାର ସବୁବେଳେ କେମିତି ଗୋଟାଏ ଉଦାସିଆ ଭାବ । ପଞ୍ଚବଟୀ ବଣକୁ ଯାଇ ଏକୁଟିଆ ବସି ରହେ ଚୁପ୍ ଚାପ୍ ହୋଇ । ଦିନେ ଦିନେ, ସକାଳେ ଅଥବା ସଞ୍ଜରେ, ଗଙ୍ଗା କୂଳେ କୂଳେ ଚାଲୁଥାଏ ଏକ ଧ୍ୟାନରେ, କାହାରି ଆଡ଼କୁ ନଜର୍ ନାହିଁ, କାହାରି ସହିତ ମିଳାମିଶା ନାହିଁ, ହସ-ଖୁସି ନାହିଁ । କଅଣ ଚାହୁଁଛି, କଅଣ ଭାବୁଛି, କିଏ କହିବ ? ଘରେ ମା ଅଛନ୍ତି, ତାଙ୍କ ପାଇଁ ମନ ଗୋଳେଇ-ଘାଣ୍ଟି ହେଉଛି ପରା !

ଦିନେ ଡାକି ପଚାରିଲେ, 'ମା ପାଇଁ ମନ ବ୍ୟସ୍ତ ହେଉଛି କିରେ, ଗଦାଇ ? ଘରକୁ ଯିବୁ ?'

'ମା ପାଇଁ ?' ଗଦାଧର କଅଣ କହିବ ଠିକ୍ କରିପାରିଲା ନାହିଁ । କେବଳ କହିଲା, 'ନା, ଘରକୁ କାହିଁକି ଯିବି ?'

ତା' ହେଲେ ଏମିତି ବଣ-ଜଙ୍ଗଲରେ ଯାଇ ବୁଲୁଛୁ କାହିଁକି ? କାହିଁକି ଯାଇ ବସି ରହୁ ନିର୍ଜନରେ ?

ନିର୍ଜନ ନ ହେଲେ ଭଗବାନ-ଚିନ୍ତା ଆସିବ କେମିତି ମନକୁ ? ସୁନା ଆଉଟି ଅଳଙ୍କାର ଗଢ଼ିବାକୁ ଯାଉଛି, ଆଉଟିବାବେଳେ ଯଦି ପାଞ୍ଚଜଣ ପାଞ୍ଚ ଆଡୁ ଡାକୁଥିବେ, ଅଳଙ୍କାର ଗଢ଼ି ହେବ ? ଧ୍ୟାନ କରାଯାଏ ମନରେ, ବନରେ, କୋଣରେ, ମାନେ ଏକାନ୍ତରେ । ମନ ଭିତରର ଈଶ୍ୱର-ଚିନ୍ତା ଯେତେ କେହି ନ ଜାଣିବେ ସେତେ ଭଲ ।

ହଉ, ଯାଉ କିଛିଦିନ, ସବୁଦିନେ କ'ଣ ରହିଥିବ ଏହି ଭାବ ଗଦାଧରର । ହୁଏତ ବା ଏଇଟା ଗୋଟାଏ ସାମୟିକ ଔଦାସ୍ୟ । ରାମକୁମାର ନିଜ ମନକୁ ପ୍ରବୋଧ ଦେଲେ । କାଳୀଙ୍କୁ ଉଦ୍ଦେଶ୍ୟ କରି କହିଲେ, ଗଦାଧରକୁ ସଦ୍‌ବୁଦ୍ଧି ଦିଅ, ମା ।

ଦେହ ଦିନକୁ ଦିନ ଭାଙ୍ଗି ପଡୁଛି ରାମକୁମାରଙ୍କର । ଯିବା ଆଗରୁ ପିଲାଟାକୁ ମଣିଷ କରେଇଦେବା ଦରକାର । ନିଜ ଗୋଡ଼ରେ ଯେମିତି ଛିଡ଼ା ହୋଇପାରିବ । ଦି' ପଇସା ରୋଜଗାର କରି ଘରକୁ ଆଣିପାରିବ, ଭାତ ଗଣ୍ଡାକର ବ୍ୟବସ୍ଥା କରି ପାରିବ । ଅନ୍ତତଃ ପକ୍ଷେ, ସେ ନିଜେ ଯେଉଁ ଚାକିରିରେ ଅଛନ୍ତି ସେଇଟା ଧରି ନେଇ ପାରିବ, ସହଜରେ ।

ଏହିସବୁ କଥା ଭାବି ସେ ଗଦାଧରକୁ ଚଣ୍ଡୀ-ପାଠ ଶିଖାଇବାକୁ ଆରମ୍ଭକଲେ । ଶିଖାଇଲେ କାଳୀ-ପୂଜାର ବିଧି-ନିୟମ । ବିସର୍ଣ୍ଣ ଅନୁଶାସନର ରୀତି-ନୀତି ।

କିନ୍ତୁ ଶକ୍ତି-ମନ୍ତ୍ରରେ ଦୀକ୍ଷା ନ ନେଲେ କାଳୀ-ପୂଜା କରି ହେବନାହିଁ । ଦୀକ୍ଷା ନେବି, କିନ୍ତ, ଶକ୍ତି-ସାଧକ କାହାନ୍ତି ? ଅଛନ୍ତି - ବାବୁଙ୍କ ବୈଠକଖାନାର କିଣାରାମ ଭଟ୍ଟାଚାର୍ଯ୍ୟ । ଦକ୍ଷିଣେଶ୍ୱରକୁ ମଝିରେ ମଝିରେ ଆସନ୍ତି । ରାମକୁମାରଙ୍କ ସହିତ ପରିଚୟ ଅଛି । ବିଶିଷ୍ଟ ତାନ୍ତ୍ରିକ । ଗଦାଧରର ପସନ୍ଦ ହେଲା । ହଁ, ୟା'ଙ୍କୁ ହିଁ ଗୁରୁ କରିବି ।

ଶକ୍ତି-ମନ୍ତ୍ରରେ ଦୀକ୍ଷା ନେଲା ଗଦାଧର । କାନରେ ମନ୍ତ୍ର ପଡ଼ିବା ମାତ୍ରେ ଚିତ୍କାର କରି ଉଠିଲା, ବୁଡ଼ିଗଲା ଗଭୀର ସମାଧିରେ । ଗୁରୁ ହତବୁଦ୍ଧି ! ତାଙ୍କ ନିଜ ମନ୍ତ୍ରର ଏତେ ଶକ୍ତି, ତାହା ସେ ନିଜେ ବି ଜାଣି ନଥିଲେ !

'ଗୋଟାଏ କାମ କର, ଏଣିକି,' କହିଲେ ରାମକୁମାର : ' ତୁ କାଳୀ ମନ୍ଦିରକୁ ଆ, ମୁଁ ରାଧାଗୋବିନ୍ଦଙ୍କ ଦାୟିତ୍ୱ ନେଉଛି ।'

ମଥୁରବାବୁ ମଧ୍ୟ ସେଇ କଥା କହିଲେ ।

'ଶାସ୍ତ୍ରର ମୁଁ କଅଣ ଜାଣିଛି ? ନା ତନ୍ତ୍ର-ମନ୍ତ୍ର ନା , ନୀତି-ନିୟମ ? କଅଣ ଜାଣିଛି ମୁଁ ? କୋଉଠି କୋଉ ଭୁଲ କରି ବସିବି, ଠିକଣା ନାହିଁ ।'

'ତୁମକୁ ଶାସ୍ତ୍ର ମାନିବାକୁ ପଡ଼ିବ ନାହିଁ । ଜାଣିବାର ବି ଦରକାର ନାହିଁ ।' କହିଲେ ମଥୁରବାବୁ । 'ତୁମ ଭକ୍ତି, ତୁମ ଆନ୍ତରିକତା ହିଁ ଶାସ୍ତ୍ର ହୋଇଯିବ । ଭକ୍ତିରେ ଯାହା ତୁମେ ଅର୍ପଣ କରିବ ଦେବୀଙ୍କୁ ତାହା ସେ ଅବଶ୍ୟ ଗ୍ରହଣ କରିବେ ।'

ଛାତି ଭିତରଟା ଦୋହୋଲି ଗଲା ଗଦାଧରର । ଆଉ ପ୍ରତିବାଦ ନ କରି ରାଜି ହୋଇଗଲା ।

ଗୋଟାଏ ବଡ଼ ମଣିଷ ଆଣି ଜୁଟେଇ ଦିଅ ମୋତେ- ମା'ଙ୍କ ପାଖରେ ପ୍ରାର୍ଥନା କରିଥିଲେ ଠାକୁର । କେବଳ ବଡ଼ଲୋକ ନୁହେଁ, ବଡ଼ ମଣିଷ । ମା ଆଣି ପହଞ୍ଚେଇ ଦେଲେ ମଥୁରବାବୁଙ୍କୁ ।

ମା'ଙ୍କୁ କହିଲି, 'ମା, ଏ ଦେହ ରହିବ କେମିତି ? ସାଧୁ-ଭକ୍ତ ମେଳରେ ଚଳିବି କେମିତି ? ଗୋଟାଏ ବଡ଼ ମଣିଷ ମୋତେ ଆଣି ଦିଅ । ମା ପଠେଇ ଦେଲେ ସାନ ମଝିଆଁ ବାବୁଙ୍କୁ । ଚଉଦ ବର୍ଷ ଧରି ସିଏ ମୋ ସେବା କଲେ ।'

ରାମକୁମାର କହିଲେ, 'ଯାଏଁ, ଏବେ ଘରୁ ଥରେ ବୁଲି ଆସେଁ ।

ହୃଦୟ ରାମକୁମାରଙ୍କ ଜାଗାକୁ ଆସିଲା । ରାମକୁମାର ଛୁଟି ପାଇଲେ । ଘରକୁ ଯିବା ଆଗରୁ ମୂଳାଜୋଡ଼ ଯାଇଥିଲେ, କଅଣ ଗୋଟାଏ କାମରେ, ସେଇଠି ଆଖି ବୁଜିଲେ ।

ବାପା ଯାଇଥିଲେ, ଭାଇ ଥିଲେ । ଆଜି ଭାଇ ବି ଚାଲିଗଲେ । ଭାଇଙ୍କ ମୃତ୍ୟୁରେ ବିହ୍ୱଳ

ହୋଇ ପଡ଼ିଲା ଗଦାଧର । ସେତେବେଳେ ତା' ମନରେ ପ୍ରବଳ ଈଶ୍ୱର-ତୃଷ୍ଣା । ମୃତ୍ୟୁର ରହସ୍ୟ-ଛେଦନ ପାଇଁ ପ୍ରବଳ ବ୍ୟାକୁଳତା । ତେଣୁ ଭାଇଙ୍କ ମୃତ୍ୟୁଜନିତ ଶୋକ ପରିଣତ ହେଲା ଈଶ୍ୱରାକାଙ୍‌କ୍ଷାର ତୀବ୍ରତାରେ । ଯଦି ଈଶ୍ୱରଙ୍କୁ ବୁଝି ପାରିବି ତେବେ ମୃତ୍ୟୁକୁ ମଧ ବୁଝିପାରିବି । ଈଶ୍ୱର ଯଦି ଥିବେ, ତେବେ ଆଉ ମୃତ୍ୟୁ ନାହିଁ ।

କଚ ରହିଛନ୍ତି ନିର୍ବିକଳ୍ପ ସମାଧିରେ । ସମାଧି ଭାଙ୍ଗିବା ପରେ ଜଣେ ପଚାରିଲେ, ବର୍ତ୍ତମାନ କଅଣ ଦେଖୁଛ ? କଚ ଉତ୍ତର ଦେଲେ, ସେତେବେଳେ ଯାହା ଦେଖିଥିଲି, ବର୍ତ୍ତମାନ ବି ସେଇଆ ଦେଖୁଛି । ଦେଖୁଛି, ସମଗ୍ର ଜଗତ ତାଙ୍କ ସହିତ ଓତଃପ୍ରୋତ ଭାବରେ ମିଶି ରହିଛି । ଏକମାତ୍ର ସେ ପରିପୂର୍ଣ୍ଣ, ସେ ସର୍ବମୟ । ଯାହା କିଛି ହୋଇଛି, ସେ ହୋଇଛନ୍ତି । କିଛି ଗ୍ରହଣ କରିବାର ନାହିଁ, କିଛି ବର୍ଜନ କରିବାର ନାହିଁ । ମା ଚତୁର୍ଦ୍ଦିଗ ଆଲୋକମୟ କରି ବସି ରହିଛନ୍ତି ।

ମା'ଙ୍କ ପୂଜାର ଦାୟିତ୍ୱ ନେଇଛି ଗଦାଧର । ଦାୟିତ୍ୱ ନେଇ ନିଜକୁ ସଂପୂର୍ଣ୍ଣ ସମର୍ପଣ କରି ଦେଇଛି, ବିକି ଦେଇଛି । ମା'ଙ୍କ କୋଳ ଉପରେ ଯାଇ ବସି ଯାଇଛି । ନିଜ ହାତରେ ଧରି ନାହିଁ ମା'ଙ୍କ ହାତ - କହୁଛି, ତୁ ମୋ ହାତ ଧରି ନେଇ ଚାଲ । ମୁଁ ଯଦି ତୋ ହାତ ଧରିଥିବି, ହାତ ଫସକି ପଡ଼ି ଯାଇ ପାରେ, କିନ୍ତୁ ତୁ ଯଦି ଥରେ ମୋ ହାତଟା ଧରୁ, ମୋର ଆଉ ଭୟ ନାହିଁ ।

ଭଗବାନଙ୍କୁ କିଏ ଜାଣିବ ? ଜାଣିବାକୁ ଚେଷ୍ଟା ବି କରୁନାହିଁ । ମୁଁ ମା'ଙ୍କୁ ଜାଣେ; ତେଣୁ ମା ବୋଲି ଡାକେ । ମା ଯାହା ଭଲ ମନେ କରିବେ ସେଇଆ କରିବେ । ବିଲେଇ ଛୁଆ ଭଳି ହାଣ୍ଡିଶାଳରେ ରଖିବା କଥା ହେଲେ ସେ ରଖିବେ, ପୁଣି ବାବୁଙ୍କ ବିଛଣା ଉପରେ ଆଣି ଶୁଆଇବା କଥା ହେଲେ, ସେ ଶୁଆଇବେ । ମୁଁ କାହିଁକି କିଛି କହିବାକୁ ଯିବି ? ଇଚ୍ଛା ହେଲେ ଜଣେଇବେ, ନ ହେଲେ ନ -ଜଣେଇବେ । ମା ହୋଇ ସେ ବୁଝିବେ ନାହିଁ ସନ୍ତାନର ବ୍ୟାକୁଳତା ?

ସାନ ପିଲାଟିଏ, ମା'ର ଏଶ୍ୱର୍ଯ୍ୟ ବିଷୟରେ ସେ କଅଣ ବା ଜାଣେ ? ତା'ର ମା ଅଛନ୍ତି- ଏଇଟା ହିଁ ତା'ର ପରମ ଏଶ୍ୱର୍ଯ୍ୟ ।

ମା ! ତୁ ସତେ କି ତ୍ରିଭୁବନ ଆଲୁଅ କରି ବସି ରହିଛୁ ।

ପ୍ରତିଦିନ ମା'ଙ୍କ ମୂର୍ତ୍ତିକୁ ଫୁଲ, ଚନ୍ଦନରେ ସଜେଇ ଦିଏ ଗଦାଧର । ମୂର୍ତ୍ତି ଦେହରେ ହାତ ଲାଗିଯାଉଥାଏ । ସେ ଚମକି ଉଠେ । ମନେ ହୁଏ, ଏ ନିଶ୍ଚଳ ପାଷାଣ ନୁହେଁ, ପ୍ରାଣମୟୀ ଜନନୀ । ପାଷାଣରେ ତ କାହିଁ ଶୈତ୍ୟ ନାହିଁ, ଏ ଯେପରି ପ୍ରଫୁଲ୍ଲ ପ୍ରାଣତାପ । ସତେ ଅବା ଏଇ ମୁହୂର୍ତ୍ତରେ ଆଖିରେ ପଲକ ପଡ଼ିବ, କଥା କହିବେ, ହାତ ବଢ଼େଇ ଟାଣି ନେବେ କୋଳ ଭିତରକୁ ।

ଖାଲି ଅନୁଭବରେ କି ଅନୁମାନରେ ନୁହେଁ । ସତ୍ୟ ରୂପରେ ପ୍ରତ୍ୟକ୍ଷ ନ ହେବୁ କାହିଁକି ?

ରାତିରେ ସମସ୍ତେ ଶୋଇଗଲା ପରେ ବିଛଣାରୁ ଉଠି ଏକୁଟିଆ ବାହାରିଯାଏ ଗଦାଧର । ରାତି ପାହିଲେ ଫେରିଆସେ । ଆଖି ଦୁଇଟି ଫୁଲିଲା- ଫୁଲିଲା, ଜବା ଫୁଲ ପରି ଲାଲ । ଦେଖିଲେ ମନେ ହେବ, ରାତିସାରା ନିର୍ଜନରେ ବସି କାନ୍ଦିଛି । ମୁହୂର୍ତ୍ତକ ପାଇଁ ଆଖିରେ ପଲକ ପଡ଼ିନାହିଁ । ଉଦ୍‌ଭ୍ରାନ୍ତ, ଉନ୍ମାଦ ପରି ଚେହେରା ।

'କୁଆଡ଼େ ଯାଅ ନିତି ରାତିରେ ?' ପଚାରିଲା ଦିନେ ହୃଦୟ ।

'ନିଦ ହୁଏ ନା, ଯାଇ ବାହାରେ ଅଣ୍ଡାରେ ବୁଲେ ।' ଗଦାଧର ଏଡ଼େଇ ଯିବାକୁ

ଚାହୁଁଥିଲା ।

'ନିଦ ହୁଏ ନା, ମାନେ ? ନ ଶୋଇଲେ ଦେହ ଭାଙ୍ଗିପଡ଼ିବ ନାହିଁ ?'

ଶୁଷ୍କ ଜ୍ୟୋତିହୀନ ଆଖିରେ ଚାହିଁଲା ଗଦାଧର, 'ନିଦ ତ ଆସୁ ନାହିଁ, ମୁଁ କରିବି କଅଣ ?'

ସେତେବେଳେ ଆଉ କିଛି କହିଲା ନାହିଁ ହୃଦୟ । ନିଶ୍ଚୟ କିଛି ଗୋଟାଏ ରହସ୍ୟ ଅଛି ଏହା ପଛରେ । ହଉ, ମୋତେ ତୁମେ କଅଣ ବୋଲି ଭାବିଛ କି ? ଅଲବତ ବାହାର କରିବି କଥାର ଗୁମର ।

ଅଶ୍ୱତ୍ଥ, ବେଲ, ବଟ, ଧାତ୍ରୀ-ଅଁଅଳା ଏବଂ ଅଶୋକ - ଏହି ପାଞ୍ଚ ଜାତି ବୃକ୍ଷର ସମାରୋହରେ ପଞ୍ଚବଟୀ । ପଞ୍ଚବଟୀ ଚାରି ପାଖରେ ଘୋର ଜଙ୍ଗଲ, ବିକଟ ଅନ୍ଧକାର । ଦିନବେଳେ ବି ଚାଲିଗଲେ ସେଠିକି ଦେହ ଶୀତେଇ ଉଠେ । ଏକେ ତ ଜାଗାଟା କବର-ଖାନା, ପୁଣି ଅସଂଖ୍ୟ ଗଛଲଟାର ଛନ୍ଦାଛନ୍ଦି ଯୋଗୁଁ ବିକଟାଳିଆ ଅନ୍ଧାର । ରାତିରେ ସେଠି ଭୂତ-ପ୍ରେତଙ୍କ ରାଜତ୍ୱ । କାହାରି ସାହସ ପାଇବ ନାହିଁ ସେ ଆଡ଼କୁ ଯିବା ପାଇଁ ।

ରାତି ଗଭୀର ହୋଇ ଆସିଲା । ସବୁ ଦିନ ପରି ଘରୁ ବାହାରିଲା ଗଦାଧର । ପଛେ ପଛେ ଅତି ସନ୍ତର୍ପଣରେ ଯାଉଛି ହୃଦୟ । ଦେଖେଁ, କଅଣ କରୁଛି, କୁଆଡ଼େ ଯାଉଛି । ଆରେ ! ସର୍ବନାଶ ! ଇଏ ତ କ'ଅଣ ସେଇ ସର୍ବଗ୍ରାସୀ ଜଙ୍ଗଲ ଭିତରେ ପଶିଗଲା !

ମା ! ମନ୍ଦିର ବର୍ତ୍ତମାନ ବନ୍ଦ । କିନ୍ତୁ ତୋର ଏହି ଆକାଶ-ଅବନୀ ବ୍ୟାପ୍ତ ଚିର-ସୁନ୍ଦରର ମନ୍ଦିର କବାଟ ତ କେବେ ହେଲେ ବନ୍ଦ ହୁଏ ନାହିଁ । ମୁଁ ତେଣୁ ଲୁଚି ଲୁଚି ସମସ୍ତଙ୍କ ଅଗୋଚରରେ ପଳାଇ ଆସିଛି ତୋରି କୋଳ ପାଖକୁ । ଏଇ ଅନ୍ଧାରରେ ମୁଁ ପାଉଛି ତୋ ହାତର ସ୍ପର୍ଶ, ଏହି ସ୍ତବ୍ଧତାରେ ମୁଁ ବାରି ପାରୁଛି ତୋ ନିଃଶ୍ୱାସ, ଏହି ପ୍ରତୀକ୍ଷାରେ ମୁଁ ଶୁଣୁଛି ତୋ ପଦଧ୍ୱନି । ମୋତେ ଦେଖା ଦେ ।

ବାହାରେ ଛିଡ଼ା ହୋଇ ରହିଛି ହୃଦୟ । କାଠ ପାଲଟି ଯାଇଛି । ଡକାଡକି କଲେ ଶୁଣିବ ନାହିଁ ଗଦାଧର, ଗ୍ରାହ୍ୟ କରିବ ନାହିଁ, ହୁଏତ କେଉଁ ଉପାୟରେ ନିରସ୍ତ କରିବି ତାକୁ ? ବାହାର କରି ଆଣିବି ଏହି ଜଙ୍ଗଲ ଭିତରୁ ? ଶେଷକୁ ସର୍ପାଘାତରେ ପ୍ରାଣଟା ଦେବ ନା, କଅଣ ?

ତଳୁ ଉଠାଇଲା କେତେ ଗୁଡ଼ାଏ ଢେଲା-ପଥର । ଫୋପାଡ଼ିଲା ଗୋଟାକ ପରେ ଗୋଟାଏ । ଭୂତଙ୍କ ଆଡ୍‌ଡ଼ା ଏଇଟା, ଭୂତ ଢେଲା ଫିଙ୍ଗୁଛି ଭାବି ହୁଏତ ଡରିଯିବ,ପଳେଇ ଆସିବ ।

କା କସ୍ୟ ପରିବେଦନା । ପତ୍ରଟିଏ ବି ହଲିବାର ଶବ୍ଦ ନାହିଁ । ଅଖଣ୍ଡ ସ୍ତବ୍ଧତା, ନିରନ୍ଧ୍ର ଅନ୍ଧକାର । ଭୟରେ ହୃଦୟ ନିଜେ ପଳାଇ ଆସିଲା । ଆସି ଶୋଇଲା ନିଜ ବିଛଣାରେ । ନିଦ ଆସିଲା ନାହିଁ ।

ତହିଁ ଆର ଦିନ ନିରୋଳାରେ ପାଇ ପଚାରିଲା ଗଦାଧରକୁ, 'ରାତିରେ ଜଙ୍ଗଲ ଭିତରେ ପଶି କଅଣ କର ?'

'ଧ୍ୟାନ କରେଁ ।'

'ଧ୍ୟାନ କର ? କାହାର ଧ୍ୟାନ କର ?'

'ମା'ଙ୍କର । ଦିନ-ରାତି, କେତେବେଳେ ହେଲେ ବନ୍ଦ ହୁଏ ନା ମା'ଙ୍କ ମନ୍ଦିର ।'

'କିନ୍ତୁ ଜଙ୍ଗଲ ଭିତରେ କାହିଁକି ?'

'ନିର୍ଜନ ନ ହେଲେ ଧ୍ୟାନ କରିବାର ଶକ୍ତି ଆସେ ନାହିଁ ମନକୁ । ସେଠି ସେହି ଧାତ୍ରୀ-ଅଁଅଳା ଗଛ ମୂଳରେ ବସି ଧ୍ୟାନ କରେ । ଅଁଅଳା ଗଛ ତଳେ ବସି ଧ୍ୟାନ କଲେ କାମନା ସିଦ୍ଧ ହୁଏ ।'

'ତୁମର ପୁଣି କାମନା କଅଣ ?'

'ଏକ ମାତ୍ର କାମନା, ମା'ଙ୍କୁ ଦେଖିବି, ମା'ଙ୍କୁ ପାଇବି ? ମା'ଙ୍କ ଠାରେ ମିଶି ରହିବି ।'

ଯାହା କୁହ ପଛେ, ଭଲ କରୁ ନାହଁ ତୁମେ । ମନ୍ଦିରର ସେବା-ପୂଜା କାମରେ ଯେତିକି ପରିଶ୍ରମ ପଡୁଛି, ସେତିକିରେ ତ ହାଲିଆ ହୋଇ ପଡୁଛ । ଏଣେ ପୁଣି, ଖାଇବାରେ ଆଗ୍ରହ ନାହିଁ, ଦେହ-ସୁଖ ବୋଲି କିଛି ନାହିଁ । ଶେଷକୁ ରାତିରେ ଶୋଇବାଟା ବି ଯଦି ବନ୍ଦ କରି ଦିଅ, ପାଗଳ ହୋଇଯିବ ତୁମେ । ଛାଡ଼ ଏ ବୁଦ୍ଧି ।

ସେଇ କଥା ତ କହେ ମା'ଙ୍କୁ- ମୋତେ ପାଗଳ କରିଦିଅ । 'ଆମାୟ ଦେ ମା ପାଗଲ କରେ, ଆମାର କାଜ ନେଇ ଜ୍ଞାନ ବିଚାରେ ।' ମୋତେ ପାଗଳ କରି ଦେ ମା, ଜ୍ଞାନ ବିଚାର କିଛି ଆଉ ମୋର ଲୋଡ଼ା ନାହିଁ ।

କିନ୍ତୁ ଯେଉଁ ଜାଗାକୁ ତୁମେ ଯାଉଛ, ସେଇଟା ଭଲ ଜାଗା ନୁହେଁ । ସେଠି ପଲ ପଲ ଭୂତ । ରାତି ଦିନ ଡିଆଁ-କୁଦା ମାରୁଥାଆନ୍ତି । ଟେକା, ପଥର ଫିଙ୍ଗା ଫିଙ୍ଗି ହୁଅନ୍ତି । ତୁମେ କ'ଣ ଜାଣିପାର ନା ?

ଦେହ ଉପର ଦେଇ ସାପ ଚାଲିଗଲେ ବି ଜାଣିପାରେ ନାହିଁ ।

ଢେଲା ମାରି ମାରି କିଛି ଲାଭ ହେଲାନାହିଁ । ଗଦାଧରକୁ ନିବର୍ତ୍ତାଇ ହେଲା ନାହିଁ । ଦିନେ ମନକୁ ସାହସ ଆଣିଲା ହୃଦୟ । ଯେମିତି ମାମୁଁକୁ ସେମିତି ଭଣଜା - ଡରିବ କାହାକୁ ? ରାତି ଅଧରେ, ସେଇ ଘୋର ଅନ୍ଧକାର ଭିତରେ, ପଶିଗଲା ବଣ ଭିତରକୁ । ଆସି ପହଞ୍ଚି ଗଲା ସେଇ ଅଁଅଳା ଗଛ ପାଖରେ ।

କିନ୍ତୁ ଗଛ ପାଖରେ ପହଞ୍ଚି ଏ କଅଣ ଦେଖୁଛି ସେ ? ସର୍ବାଙ୍ଗ ଶିହରି ଉଠିଲା । ମାମୁଁ କଅଣ ସତରେ ପାଗଳ ହୋଇଗଲେ ?

ନିରବକାଶ ନଗ୍ନ ଦେହରେ ଧ୍ୟାନସ୍ଥ ହୋଇ ବସି ରହିଛି ଗଦାଧର । ନିର୍ବାତ ଦୀପଶିଖା ପରି ନିଷ୍କମ୍ପ । ଗିରିଶୃଙ୍ଗ ପରି ସମାହିତ ।

ଧ୍ୟାନ କରିବାକୁ ଚାହଁ, କର । କିନ୍ତୁ ଏଭଳି ପାଗଳାମି କାହିଁକି ? ପିନ୍ଧା ଲୁଗାଟା ଯେ କେବଳ ଖୋଲି ରଖିଛି ତା' ନୁହେଁ, କାନ୍ଧରୁ ପଇତାଟା ମଧ୍ୟ ବାହାର କରି ଦେଇଛି ।

ଅସହ୍ୟ ବୋଧ ହେଲା ହୃଦୟକୁ । ପାଖକୁ ଆସି ରୁକ୍ଷ ସ୍ୱରରେ କହିଲା, 'କଅଣ ହେଉଛି, ଏ ସବୁ, ମାମୁଁ ? ପଇତା, ଲୁଗା ସବୁ ଫୋପାଡ଼ି ଦେଇ, ଏମିତି ଲଙ୍ଗଳା ହୋଇ ବସିଛ କାହିଁକି ?'

'କିଏ ? ହୃଦୁ କିରେ ?'

'ହଁ । କାହିଁକି ଏଠି ଏମିତି ବସିଛ ଲୁଗା, ପଇତା ସବୁ ବାହାର କରି ଦେଇ ?'

'ଏଇ କଥା ! ଲୁଗା ପଇତା କାହିଁକି ଖୋଲି ପକେଇଛି ! ଆରେ, ବୁଝିଲୁ ? ଏ ଗୁଡ଼ାକ

ସବୁ ଛୁଆ ମୁହଁରେ ଚୁଚୁମା । ଛୁଆ ଯେତେବେଳେ ଯାଏ ଚୁଚୁମା ମୁହଁରେ ଧରି ଚୁଷିବାରେ ଲାଗିଯାଏ, ମା ତା' ପାଖକୁ ଆସେ ନାହିଁ । ଯେତେବେଳେ ହାତରୁ ଚୁଚୁମା ପକେଇ ଦେଇ କାନ୍ଦିବାକୁ ଆରମ୍ଭ କରେ, ସେତେବେଳେ ମା ଭାତହାଣ୍ଡି ଚୁଲିରୁ ଓହ୍ଲେଇ ରଖି ଛୁଆ ପାଖକୁ ଧାଇଁ ଆସେ । ଅହଂ-ର ଯେତେ ଆବରଣ, ମାୟାର ଯେତେ ରଙ୍ଗ ବେରଙ୍ଗ ଖୋଳ- ସେ ସବୁକୁ ମୁଁ ପୋଛି ପାଛି ଫୋପାଡ଼ି ଦେଇଛି । ଅନ୍ତରର ଅରଣ୍ୟ ଭିତରେ ବସି ମା'ଙ୍କୁ ଡାକୁଛି ଚିତ୍କାର କରି । ମା, ଭାତହାଣ୍ଡି ଓହ୍ଲେଇ ରଖି ଧାଇଁଆ, ମୋତେ କୋଳକୁ ନେ ।'

ଶୁଣିଲା ସବୁ କଥା ହୃଦୟ । ମନ ବୁଝିଲା ନାହିଁ । ଯେତେ ଇଚ୍ଛା ଡାକ, ମା'ଙ୍କୁ । କିନ୍ତୁ ସେଥିପାଇଁ ଦିଗ୍‌ବସନ ହେବା କଅଣ ଦରକାର ?

'କଅଣ ଜାଣୁ ତୁ ?' ଗର୍ଜି ଉଠିଲା ଗଦାଧର : 'ଅଷ୍ଟ ପାଶରେ ଆବଦ୍ଧ ହୋଇ ରହିଛି ମଣିଷ । ଘୃଣା, ଲଜ୍ଜା, ଭୟ, କୁଳ,ଶୀଳ, ମାନ, ଜାତି ଆଉ ଅଭିମାନ - ଏହି ଅଷ୍ଟ ପାଶ । ମା'ଙ୍କୁ ଡାକିବା ପାଇଁ ପାଶମୁକ୍ତ ହେବା ଦରକାର । ଅହଂର ସାମାନ୍ୟ ଟିକିଏ ଚିହ୍ନ ଥିଲେ ବି ସେ ଆସିବେ ନାହିଁ । ତେଣୁ ସେ ଗୁଡ଼ାକ ସବୁ ଖୋଲି ପକେଇଛି । ଧ୍ୟାନ ପରେ ଯେତେବେଳେ ଫେରିଯିବି ଅଜ୍ଞାନ ମେଳାକୁ ସେତେବେଳେ ପୁଣି ସେ ସବୁ ପିନ୍ଧି ପକେଇବି ।'

ଗୋପୀମାନଙ୍କର ବସ୍ତ୍ରହରଣ ହୋଇଥିଲା, ଜାଣୁ ତ ? ଏ କଥାର ଅର୍ଥ କଅଣ ? ଅର୍ଥ- ଗୋପୀମାନେ ସମସ୍ତ ପାଶରୁ ମୁକ୍ତ ହୋଇ ସାରିଥିଲେ, ରହି ଯାଇଥିଲା କେବଳ ଲଜ୍ଜା । ତେଣୁ ସେଇଟାକୁ ବି ସେ ଘୁଞ୍ଚାଇ ଦେଲେ ।

ପରିଧେୟ ଏବଂ ଉପବୀତ । କଅଣ ଏ ଦୁଇଟା ? କେବଳ ଗୋଟାଏ ଗୋଟାଏ ଉପାଧି । ଅଭିମାନର ଚିହ୍ନ । ମୁଁ ବ୍ରାହ୍ମଣ, ଜାତିରେ ସମସ୍ତଙ୍କଠାରୁ ବଡ଼, ଏଇ ଅହଂକାର । ଅହଂକାର ବର୍ଜନ ନ କଲେ ଦୀନତା ଆସିବ ନାହିଁ । ଦୀନତା ନ ଆସିବା ପର୍ଯ୍ୟନ୍ତ ସରଳତା ଆସି ପାରିବ ନାହିଁ । ମୋ ମା'ଙ୍କର ଆଉ ଗୋଟାଏ ନାମ ପରା ସରଳତା ।

ମୁଁ କଅଣ ? ମୁଁ କ'ଣ ବସ୍ତ୍ର, ନା, ଉପବୀତ ? ମୁଁ କ'ଣ ହାଡ଼ ନା, ମାଂସ ? ରକ୍ତ ନା, ଅନ୍ତନାଡ଼ି ? ଖୋଜ । ଅନୁସନ୍ଧାନ କର । ଖୋଜି ଦେଖ । କଅଣ ଦେଖୁଛ ? ମୁଁ ନାହିଁ, କେବଳ ସେ ।

ମୋର କୌଣସି ଉପାଧି ନାହିଁ । କେବଳ ତାଙ୍କରି ଐଶ୍ୱର୍ଯ୍ୟ ।

ହନୁମାନ କହିଲେ ରାମଚନ୍ଦ୍ରଙ୍କୁ, 'ରାମ, ବେଳେବେଳେ ଭାବେ ତୁମେ ପୂର୍ଣ୍ଣ, ମୁଁ ଅଂଶ । କେତେବେଳେ ଭାବେ ତୁମେ ସେବ୍ୟ, ମୁଁ ସେବକ । କେତେବେଳେ ପୁଣି ଭାବେ, ତୁମେ ପ୍ରଭୁ, ମୁଁ ଦାସ । କିନ୍ତୁ ରାମ, ଯେତେବେଳେ ତତ୍ତ୍ୱଜ୍ଞାନ ଆସିଯାଏ, ଦେଖେ,ତୁମେ ଯାହା ମୁଁ ବି ସେଇଆ । ତୁମେ ମୁଁ, ମୁଁ ତୁମେ ।

ଯାହା ସୋଽହଂ ତାହା ହିଁ ତତ୍ତ୍ୱମସି ।

ହୃଦୟ ଆସିଥିଲା ମାମୁଁଙ୍କୁ ତିରସ୍କାର କରି ଅବାଟରୁ ଫେରେଇ ନେବା ପାଇଁ, ସବୁ ଓଲଟ ପାଲଟ ହୋଇଗଲା । କହିଲା, 'ଅହଂକାର ଯାଉଛି କାହିଁ ? ଏଇ ମୁହୂର୍ତ୍ତରେ ଯାଉଛି, ଆର ମୁହୂର୍ତ୍ତକୁ ପୁଣି ଫେରି ଆସୁଛି ।'

ସେଇଥିପାଇଁ ପରା କହେ, 'ମୁଁ' ଯିବ ନାହିଁ; ଆଉ ପ୍ରକୃତରେ ଯଦି ନ ଯିବ, ଥାଉ ଶଳାଟା ଦାସ-ମୁଁ ହୋଇ । ମୁଁ ଈଶ୍ୱରଙ୍କ ଦାସ, ମୁଁ ଈଶ୍ୱରଙ୍କ ଭକ୍ତ, ମୁଁ ଈଶ୍ୱରଙ୍କ ସନ୍ତାନ - ଏ ପ୍ରକାର ଅହଂକାର ଭଲ । ଯେତେ ଯାହା କୁହ ପଛକେ, 'ମୁଁ' ଯିବ ନାହିଁ, ଯିବାକୁ ଚାହେଁ ନା । ମନେ ମନେ କଳ୍ପନା କର - ଚାରିଆଡ଼େ ଅନନ୍ତ ଜଳରାଶି; ତଳ-ଉପର, ଆଗ-ପଛ, ଡାହାଣ-ବାମ, ଚାରିଆଡ଼େ ଜଳ; ସର୍ବଦିଗ ଜଳମୟ । ସେହି ଜଳ ମଧ୍ୟରେ କୁମ୍ଭ । କୁମ୍ଭ ବାହାରେ ଜଳ, ଭିତରେ ବି ଜଳ । ଜଳ ମଧ୍ୟରେ ଜଳ । ତଥାପି କୁମ୍ଭଟି ତ ରହିଛି । ସେହି କୁମ୍ଭଟି ହେଉଛି 'ମୁଁ' - ମୁଁ ରୂପକ କୁମ୍ଭ । କୁମ୍ଭ ଥିବାଯାଏ ମୁଁ -ତୁମେ ବିଚାର ରହିଛି । ତୁମେ ଠାକୁର, ମୁଁ ଭକ୍ତ । ତୁମେ ପ୍ରଭୁ, ମୁଁ ଦାସ । ତୁମେ ଆକାଶ, ମୁଁ ପୃଥିବୀ ।

'କିନ୍ତୁ ଯେତେବେଳେ କୁମ୍ଭ ଆଉ ରହିବ ନାହିଁ ? ଭାଙ୍ଗିଯିବ ?'

ଗଦାଧର ପୁଣି ଧ୍ୟାନସ୍ଥ ହୋଇଗଲା ।

ସେତେବେଳେ ରାମ ଏବଂ ହନୁମାନ ଏକ । ସେତେବେଳେ - ସିଏ ଗୋଟାଏ ଭିନ୍ନ କଥା । ସେତେବେଳର କଥା ସେତେବେଳେ ।

## ୧୧

'ମା, ତୁ କେଉଁଠି ଅଛୁ ? ମୋ ପ୍ରତି କୃପା କର । ମୋତେ ଦେଖା ଦେ । ତୁ ରାମପ୍ରସାଦକୁ ଦେଖା ଦେଇଥିଲୁ, ମୋତେ ଦେଖା ନ ଦେବୁ କାହିଁକି ? ମୁଁ କି ଦୋଷ କରିଛି ମୋତେ କହି ଯା ।ଏତେ କାନ୍ଦିଲି, ତଥାପି ମୋ ଦୋଷ କଟିଲା ନାହିଁ ? ଧନ, ଜନ, ଭୋଗ, ବିଭବ କିଛି ମୁଁ ଚାହେଁ ନା । ମୁଁ କେବଳ ତୋତେ ଚାହେଁ । ତୁ ଦୟାକର, ମା । ଦେଖା ଦେ ।'

ଆଖିରୁ ଝର ଝର ହୋଇ ଲୁହ ଝରି ଛାତି ଉପର ଦେଇ ବହି ଯାଉଛି । ଲୁହ-ଭିଜା କଣ୍ଠରେ ଗୀତ ଆରମ୍ଭ କଲା ଗଦାଧର :

ଆଦିଭୂତା ସନାତନୀ ଶୂନ୍ୟରୂପା ଶଶୀଭାଲୀ
ବ୍ରହ୍ମାଣ୍ଡ ଛିଲ ନା ଯବେ ମୁଣ୍ଡମାଲା କୋଥା ପେଲି !'

ମା ତୁମେ ଆଦିଭୂତା, ସନାତନୀ, ଶୂନ୍ୟରୂପା । ତୁମ ଲଲାଟରେ ଶଶୀକଳା । ଏ ବ୍ରହ୍ମାଣ୍ଡ ଯେଉଁ ସମୟରେ ନ ଥିଲା ସେତେବେଳେ ତୁମେ ମୁଣ୍ଡମାଳା କେଉଁଠୁ ପାଇଲ ? ଅର୍ଥାତ୍, ତୁମେ ତ ସୃଷ୍ଟିର ପୂର୍ବରୁ ରହିଛ, ତେବେ ମୁଣ୍ଡମାଳା ଆସିଲା କେଉଁଠୁ ?

ତା'ପରଦିନ ପୁଣି ସେହି ଭଳି କାନ୍ଦୁଛି : 'ମା ଗୋ, ଆହୁରି ଗୋଟାଏ ଦିନ ଚାଲିଗଲା । ଏ ଦିନଟି ବି ବୃଥା ଗଲା । ତୁ ଆସିଲୁ ନାହିଁ । ଅଳ୍ପ କେଇଟା ଦିନର ଆୟୁ, ତା' ଭିତରୁ ଆହୁରି ଗୋଟାଏ ଦିନ ନେଇ ଗଲୁ, ମା । ମୁଁ ଏତେ କାନ୍ଦୁଛି । ତୋତେ ଶୁଭୁ ନାହିଁ ? ମୋ କାନ୍ଦଣାରେ କ'ଣ ଜୋର ନାହିଁ ? ମୁଁ କ'ଣ ଠିକ୍ ଭାବରେ କାନ୍ଦି ପାରୁ ନାହିଁ ?'

ନଇଁ ପଡ଼ି ଘାସରେ ମୁହଁ ଘଷୁଛି ଗଦାଧର । କହୁଛି, 'ମା, ତୁ କେଉଁଠି ? ତୁ କ'ଣ ସତରେ ଅଛୁ ? ନା, ସବୁ ଖାଲି ମାୟା ? ସବୁ ମିଛ ? ସବୁ କ'ଣ ତେବେ ମନର ଭ୍ରମ ? ତୁ ଯଦି

ସତରେ ଅଛୁ, ତୋ'ରି ପାଇଁ ଯଦି ଏତେ ଆଲୋକ, ଏତେ ଅନ୍ଧକାର, ତେବେ ତୋତେ ମୁଁ ଦେଖିପାରୁନାହିଁ କାହିଁକି ? ରାମପ୍ରସାଦ ତ ତୋତେ ଦେଖିଥିଲେ । ତେବେ ଛଳନା ବୋଲି କହିବି କେମିତି ? ତୁ ଆ, ଦେଖା ଦେ । ଛିଡ଼ା ହୋ' ଆସି ମୋ ଆଖି ଆଗରେ ।' ତଳେ ପଡ଼ି କାନ୍ଦୁଛି ଗଦାଧର । ମୁଣ୍ଡର ବାଳକୁ ଦୁଇ ହାତରେ ଟାଣି ଛିଣ୍ଡାଉଛି । ମାଟିରେ ମୁହଁ ଘଷୁଛି । ଆଖିର ଲୁହରେ ମାଟି ଓଦା ହୋଇ ଯାଉଛି ।

'ଆହା ! ପିଲାଟାର ମା ମରିଯାଇଛି ବୋଧହୁଏ ।' ବାଟ ଗଲା ଲୋକେ ତାକୁ ଦେଖି କୌତୁହଳୀ ହୋଇ ଅଟକି ଯାଆନ୍ତି । 'କେମିତି ମଲା ? କଅଣ ହୋଇଥିଲା ? କେବେ ? ମାକୁ ବହୁତ ଭଲପାଉଥିଲା, ନୁହେଁ ?'

ଚାରି ପାଖରେ ଲୋକ ଭିଡ଼, ମାତ୍ର ଗଦାଧରର ଲଜ୍ଜା-ସଂକୋଚ ନାହିଁ, ଲୌକିକତା ନାହିଁ । କାନ୍ଦୁଛିତ କାନ୍ଦୁଛି । ମୁହୂର୍ତ୍ତକ ପାଇଁ ବିରତି ନାହିଁ ।

'ଦିନ ପରେ ଦିନ ଚାଲିଯାଉଛି, ମା ପାହୁଣ୍ଡେ ପାହୁଣ୍ଡେ କରି ଆଗେଇ ଯାଉଛି ମରଣ ଆଡ଼କୁ । ଆଉ ବିଳମ୍ବ ସହି ହେଉ ନାହିଁ, ମା । ନର ଜନ୍ମ ଯେ ସରି ସରି ଆସୁଛି । ଶାସ୍ତ୍ର କହୁଛି, ତୁ ଏକମାତ୍ର ସତ୍ୟ, ତୁ ଏକମାତ୍ର ଅଧିଗମ୍ୟ। । ଶାସ୍ତ୍ର କ'ଣ ମିଛ ? ତୁ କ'ଣ ମିଛ ? ସବୁ କଥା ଖାଲି ଠକାମି ? ସମସ୍ତ ଜଗତର ମା ବୋଲି ତେବେ କେହି ନାହିଁ ? ଯଦି ଅଛି, ସେ କ'ଣ ମୋ ମା ନୁହେଁ ?'

ଯନ୍ତ୍ରଣାରେ ଛଟପଟ ହେଉଛି ଗଦାଧର ।

ଘର ଭିତରେ ଗଦାଏ ସୁନା ରହିଛି । ସେ ପାଖ ଘରେ ଚୋର ପଶିଛି । ଦୁଇ ଘର ମଝିରେ କେବଳ ଗୋଟାଏ ପତଳା ପରଦା । ସୁନା ଆଣିବା ପାଇଁ ଚୋର ବ୍ୟଗ୍ର ହେବ ନାହିଁ ? ସେ କ'ଣ ଚାହିଁବ ନାହିଁ ପରଦାଟାକୁ ଦୁଇ ହାତରେ ଟାଣି ଛିଣ୍ଡାଇ ପକାଇବାକୁ ?

ଗୁରୁ ନାହାନ୍ତି, ସାଧୁ ବା ସିଦ୍ଧ ପୁରୁଷ କେହି ନାହାନ୍ତି,ଯିଏ ରୀତି-ନୀତି ବା ପଦ୍ଧତି-ପ୍ରକରଣ ଶିଖାଇ ଦେବେ । ନିଜ ଅଭିଜ୍ଞତା କଥା କହିବେ - ଏଭଳି କୌଣସି ଆତ୍ମୀୟ ବନ୍ଧୁ ବି ନାହାନ୍ତି । ପୋଥି-ପୁରାଣରେ ତ ମୂଳରୁ ଡ଼ୋର ବନ୍ଧା ହୋଇସାରିଛି । କୌଣସି ଆଡ଼ୁ କୌଣସି ପ୍ରକାର ସହାୟ-ସମ୍ବଳ ନାହିଁ ଗଦାଧରର । ଅଛି କେବଳ ଉତ୍ତୁଙ୍ଗ ବିଶ୍ୱାସ ଏବଂ ଉଦ୍ଦାମ ବ୍ୟାକୁଳତା ।

ପୂଜା ଆଉ ଠିକ୍ ଭାବରେ କରି ପାରୁନାହିଁ ଗଦାଧର । କେମିତି ଗୋଟାଏ ଅବାଗିଆ ରକମ ହୋଇ ଯାଉଛି । ମୂର୍ତ୍ତି ଆଗରେ ବସିଛି - ବସିଛି ତ ବସିଛି, ନିଶ୍ଚଳ ପ୍ରତିମା ପରି । ବେଳେବେଳେ, ସାନ ପିଲା ଯେମିତି ନିଦରେ କାନ୍ଦେ, ସେଇଭଳି କାନ୍ଦି ପକାଏ । ପୂଜା କରୁ କରୁ ହଠାତ୍ କଅଣ ମନକୁ ଆସେ , ଫୁଲ ସବୁ ଉଠାଇ ଆଣିନିଜ ମୁଣ୍ଡ ଉପରେ ରଖିଦିଏ । ପୂଜା ଅଧାରୁ ବନ୍ଦ, ବୁଡ଼ିଯାଏ ସମାଧିରେ । ଫୁଲରେ ଦେବୀଙ୍କୁ ସଜାଉଛି ତ ସଜାଉଛି, ସଜେଇବା ସରୁ ନାହିଁ । ଆଳତି କରୁଛି ତ କରୁଛି, ଦୀପରୁ ଘଣ୍ଟା, ପୁଣି ଘଣ୍ଟାରୁ ଦୀପ । ଚାହିଁ ରହୁଛି, ପ୍ରତୀକ୍ଷା କରୁଛି । ମା ଏଇ ଉଠିବେ, କି କଅଣ !

'ମୋ କଥା ଶୁଣୁ ନାହୁଁ କାହିଁକି,ମା ? ମୁଁ ତୋର ଅଯୋଗ୍ୟ ପୁଅ; ତା' ବୋଲି ତୋ

ସ୍ନେହର ବି ଅଯୋଗ୍ୟ ? ମୁଁ ବେଦ-ବେଦାନ୍ତ ଜାଣିନାହିଁ, ଶାସ୍ତ୍ର ପୁରାଣ ପଢ଼ିନାହିଁ; ତା' ବୋଲି ତୋ ସ୍ନେହ ପାଇବି ନାହିଁ ... ?'

ସମସ୍ତେ ମୁହଁ ମୋଡୁଛନ୍ତି । ଥଟ୍ଟା କରି କହୁଛନ୍ତି, ଆହା, କି ସୁନ୍ଦର ପୂଜା !

ଗଦାଧରର ଭ୍ରୂକ୍ଷେପ ନାହିଁ । ଲୋକଙ୍କ ଆଡ଼କୁ ସେ ଅନାଉ ନାହିଁ । ସେ ଚାହିଁ ରହିଛି ମା'ଙ୍କ ମୁହଁକୁ ।

ଆଖିରେ ନିଦ ନାହିଁ । ଖାଇବା ଜିନିଷ ଗଳୁ ନାହିଁ ତଣ୍ଟି ଭିତରେ । ମୁହଁ, ଛାତି ସିନ୍ଦୂର-ଗୁଣ୍ଡି ପରି ଲାଲ ।

କିନ୍ତୁ ମା କାହାନ୍ତି ? କାହାନ୍ତି ଜଗଦୀଶ୍ୱରୀ । ?

ଓଦା ଗାମୁଛାରୁ ପାଣି ନିଗାଡ଼ିବା ପାଇଁ ଯେମିତି ତାକୁ ମୋଡ଼ି ମାଡ଼ି ଚିପୁଡ଼ି ଦିଆଯାଏ, ଛାତି ଭିତରଟା କିଏ ଯେପରି ସେହିଭଳି ଚିପୁଡ଼ି ଦେଉଛି । ମନକୁ ଆଶଙ୍କା ଆସୁଛି ହୁଏତ ବା ଇହ ଜୀବନରେ ମା'ଙ୍କ ଦର୍ଶନ ମିଳି ପାରିବ ନାହିଁ । ମା ଥାଉଁ ଥାଉଁ ଯଦି ମା'ଙ୍କୁ ଦେଖି ନପାରିଲି, ତେବେ କଅଣ ଲାଭ ଆଉ ବଞ୍ଚି ରହି ? କଅଣ ଆଉ ଏ ଜୀବନର ମୂଲ୍ୟ ?

କାଳୀ ମନ୍ଦିର ଭିତରେ ଝୁଲୁଥିଲା ଗୋଟାଏ ଧାରୁଆ ଖଣ୍ଡା । ନଜର ପଡ଼ିଗଲା ତାହାରି ଉପରେ । ଉନ୍ମତ୍ତ ପାଗଳ ପରି ଧାଇଁ ଯାଇ ଗଦାଧର ଟାଣି ଆଣିଲା । ସେହି ଖଣ୍ଡା ଏ ଜୀବନ ରଖି ଆଉ ଲାଭ କଅଣ ? ଏଇ ମୁହୂର୍ତ୍ତରେ ନିଜ ଜୀବନର ଅବସାନ ଘଟାଇ ଦେବ । ଆତ୍ମ-ରକ୍ତପାତରେ ପ୍ରତିଶୋଧ ନେବ ମା'ଙ୍କ ନିଷ୍ଠୁରତାର ।

ଖଣ୍ଡା ଉଠାଇ ଗଳାରେ ଚୋଟ ବସେଇବାକୁ ଯାଉଛି, ମା ଆସି ଛିଡ଼ା ହୋଇଗଲେ ଆଗରେ ।

ମା ! ତୁ ... ମା !! ଏତେଦିନେ ଆସିଲୁ ?

ସଂଜ୍ଞାହୀନ ହୋଇ ତଳେ କଚାଡ଼ି ହୋଇ ପଡ଼ିଲା ଗଦାଧର ।

ଦେଖିଲି - ଆହା, କି ଅପୂର୍ବ ସେ ଦର୍ଶନ । ଦେଖିଲି, ଘରଦ୍ୱାର, ଛାତ-କାନ୍ଥ, ଝରକା-କାବାଟ, ଦେଖା-ଅଦେଖା- ସବୁ କୁଆଡ଼େ ଉଭେଇଗଲା ଏକ ମୁହୂର୍ତ୍ତରେ । କେଉଁଠି ଆଉ କିଛି ନାହିଁ । କେବଳ ଗୋଟାଏ ସୀମାହୀନ ଉଜ୍ଜ୍ୱଳତାର ସମୁଦ୍ର । ଚୈତନ୍ୟର ସମୁଦ୍ର । ସେହି ସମୁଦ୍ରର ଜ୍ୱଳନ୍ତ ଢେଉ ଚାରିଆଡୁ ମାଡ଼ି ଆସି ମୋତେ ଗ୍ରାସ କରିପକାଇଲା । ଭାଙ୍ଗି, ଚୂନା କରି, ଏକାକାର କରି ମିଶେଇ ଦେଲା । ମୋର ଚିହ୍ନବର୍ଣ୍ଣ ବି ରହିଲା ନାହିଁ । କେଉଁଠି ଯେପରି ହଜିଗଲି, ମିଶିଗଲି, ନିଶ୍ଚିହ୍ନ ହୋଇ ମିଳେଇଗଲି ।

କିନ୍ତୁ ସେହି କ'ଣ ତୁମ ମା ? ତୁମ ମାତୃ -ରୂପ ? କେବଳ ଚୈତନ୍ୟମୟୀ ଜ୍ୟୋତି ? ତୁମ ମା ତେବେ ହସନ୍ତି ନାହିଁ ? କଥା କହନ୍ତି ନାହିଁ ? ଖାଆନ୍ତି ନାହିଁ ? ଚଲା-ବୁଲା କରନ୍ତି ନାହିଁ ?

କେ ଜାଣେ ! ଢେଉ ପରେ ଢେଉ ଆସି ହାବୁକା ମାରି ମୋତେ ବୁଡ଼ାଇ ଦେଲା ଅତଳ ଗର୍ଭରେ । ମୁଁ ଆନନ୍ଦରେ ମା ! ମା ! କହି କାନ୍ଦି ଉଠିଲି । ମନେ ହେଉଥାଏ, ତାହା ଢେଉ ନୁହେଁ, ମା ନିଜେ ଯେମିତି ମୋତେ ତାଙ୍କ କୋଳ ଭିତରକୁ ଟାଣି ନେଉଛନ୍ତି ।

ଜଳ ଆଉ ବରଫ । ବରଫ ଆଉ ଜଳ । ଯାହା ଜଳ ତାହା ହିଁ ପୁଣି ବରଫ । ଯାହା ବରଫ

ତାହା ହିଁ ପୁଣି ଜଳ ।

ନିର୍ଜନରେ ଗୋପନରେ ବସି କାନ୍ଦିବାକୁ ଲାଗିଲା ଗଦାଧର : 'ମା ଗୋ, ମା, ତୋ ରୂପ କିଭଳି ମୋତେ ଦେଖାଇ ଦେ । ତୁ ସାକାର କି ନିରାକାର, ମୁଁ ବୁଝି ପାରୁନାହିଁ । ତୁ କାଳୀ କି ବ୍ରହ୍ମ ତୁ ନିଜେ ଜାଣୁ । ତୁ ଯାହା ହୋଇଥା ପଛକେ, ମୋତେ କୃପା କର, ଆଖି ଆଗରେ ଦେଖା ଦେ । '

ଆକୁଳତାରେ ଅଧୀର ହୋଇ ପୁଣି କହେ : 'ତୋ ଭକ୍ତ ଆଗରେ ଥରେ ବ୍ୟକ୍ତି ରୂପରେ ଦେଖା ଦେ, ମା । ଥରକ ପାଇଁ ହେଲେ ବରଫ ହୋଇଯା । ତା'ପରେ ଯେତେବେଳେ ଜ୍ଞାନ-ସୂର୍ଯ୍ୟ ଉଦୟ ହେବ ସେତେବେଳେ ତରଳି ଯାଇ ପୁଣି ଆଗ ଭଳି ଜଳ ହୋଇଯିବୁ । ମୁଁ ତୋର ମା ରୂପଟିକୁ ଭଲ ପାଏଁ । ତୁ ମୋତେ ମାହୋଇ ଦେଖା ଦେ । ମୁଁ ତୋର ସନ୍ତାନ, ମା । ମୋର ଯେ ସନ୍ତାନ ଭାବ ।'

ଥରେ ମାତ୍ର ଦେଖି କଅଣ ତୃପ୍ତି ଆସୁଛି ଗଦାଧରର ? ସେ ବହୁ ଥର, ଅନନ୍ତ ଥର ଦେଖିବାକୁ ଚାହେଁ । ମା-ରେ ପୂର୍ଣ୍ଣ ହୋଇ ରହିବାକୁ ଚାହେଁ; ଲୀନ ହୋଇ ରହିବାକୁ ଚାହେଁ । ଯାହା ପୂର୍ଣ୍ଣ ତାହା ହିଁ ଲୀନ । ଦରକାର ସେହି ଅବିରାମ ଯୋଗ । ଅଭିଛିନ୍ନ ଆନନ୍ଦ ।

ଲୋକ ଘେରି ଥାଆନ୍ତି ଚାରି ପାଖରେ । କେତେ ରକମ କଥା କହନ୍ତି । ଗଦାଧର କିଛି ଶୁଣେ ନାହିଁ, କିଛି ଦେଖେ ନାହିଁ । ତାକୁ ଜଣାଯାଉଥାଏ, ଏମାନେ ସବୁ କାଛରେ ଅଙ୍କା ଛବି, ଛାୟାମୂର୍ତ୍ତି । ଅବସ୍ତୁ, ଅସତ୍ୟ । ମନେ ହେଉଥାଏ, ସଂସାରରେ କେବଳ ମା ଏବଂ ମା'ଙ୍କ ପାଇଁ ଏହି କାତର କାକୁତି ଛଡ଼ା ଆଉ ଯେପରି କିଛି ନାହିଁ । ତେଣୁ କିଏ କଅଣ କହୁଛି, କିଏ କଅଣ ଭାବୁଛି, ସେଥିରେ ତା'ର କିଛି ଯାଏ ଆସେ ନା । ତା'ର ଏକମାତ୍ର ଚିନ୍ତା, ମା ପୁଣି କେବେ ଆସି ଦେଖା ଦେବେ, କେବେ ଆସି ରହିବେ ଚିରଦ୍ୟୁତି ହୋଇ !

ଜଣେ କେବଳ ଚିନ୍ତାରେ ଘାରି ହେଉଛି, ସେ ହେଉଛି ହୃଦୟ ମାମୁଁଙ୍କୁ ରୋଗ ଗ୍ରାସିଲାଣି । ଧୀରେ ଧୀରେ ସବୁ କାମ ଅଚଳ ହୋଇ ଆସୁଛି । ସାଧନା କରୁ କରୁ ସ୍ନାୟୁ -ବିକାର ଆରମ୍ଭ ହୋଇଗଲା । ଚିକିତ୍ସା ପ୍ରୟୋଜନ । ଭୂକୈଳାସ ରାଜାଙ୍କର ଯେଉଁ କବିରାଜ ଥିଲେ - ନାମଜାଦା ବୈଦ୍ୟ -ତାଙ୍କ ପାଖକୁ ଖବର ପଠାଇଲା । କବିରାଜ ଆସି ନାଡ଼ି ପରୀକ୍ଷା କଲେ । ଔଷଧ ଦେଲେ । କିନ୍ତୁ ଏ ରୋଗର ଯେ ଔଷଧ ନାହିଁ, ସେ କଥା କବିରାଜେ କାହୁଁ ଜାଣିବେ ? ଏ ରୋଗର ଔଷଧ ମାତୃ-ଦର୍ଶନ ! ମାତୃ-ସ୍ପର୍ଶନ !

ହୃଦୟ ଭାବି ଚିନ୍ତି ସ୍ଥିର କଲା, କାମାରପୁକୁରକୁ ଖବର ପଠେଇବ । ମା'ର ପୁଅ, ଫେରିଯାଉ ତା' ମା ପାଖକୁ ।

## ୧୨

ଥରେ ମାତ୍ର ଦେଖା ଦେଇ ପଳେଇଗଲେ ଚଳିବ ନାହିଁ । ଆଖି ଆଗରେ ଛିଡ଼ା ହୋଇ ରହିବାକୁ ପଡ଼ିବ ସ୍ଥିର ହୋଇ । କେବଳ ଟିକିଏ ହାତ ବଢ଼େଇ ଦେଲୁ, ଅଥବା ଆଖି ଦି'ଟା ନଚେଇ ଦେଲୁ କିମ୍ବା ଦଉଡ଼ି ପଳେଇଗଲୁ ଆଗ ଦେଇ, କେଶ ମୁକୁଳା କରି - ଏତିକିରେ ଚଳିବ ନାହିଁ ।

ଶାନ୍ତ ଭାବରେ, ସର୍ବ-ସଂପୂର୍ଣ୍ଣ ରୂପରେ ଛିଡ଼ା ହୋଇ ରହିବାକୁ ପଡ଼ିବ । ମୋର ଉଠିବା - ବସିବା, ଚାଲିବା - ବୁଲିବା ସବୁ କାମରେ ରହିବାକୁ ହେବ ମୋ ପାଖେ ପାଖେ । ମୋ ପାଦରେ ପାଦ ମିଳାଇ, ମୋ ଆଖିରେ ଆଖି ରଖି, ମୋ ନିଃଶ୍ୱାସରେ ନିଃଶ୍ୱାସ ମିଳାଇ । ପୃଥିବୀକୁ ଯେଉଁ ଭଳି ଘେରି ରହିଛି ପବନର ପ୍ରାଣ-ସ୍ପର୍ଶ, ମୋତେ ସେହିଭଳି ଘେରି ରହିବ ତୋର ଅଚଞ୍ଚଳ ଅଞ୍ଚଳ ।

'ଆରେ ମନ, ହେଇଟି ଦେଖ୍ ।'

କଅଣ ଦେଖିବି ?

ଭୈରବକୁ ଦେଖ୍ । ମା'ଙ୍କ ନାଟ ମନ୍ଦିରର ଛାତ ତଳେ ଧ୍ୟାନମଗ୍ନ ହୋଇ ବସି ରହିଛି । ଠିକ୍ ସେହିଭଳି ନିଶ୍ଚଳ ଷଡ଼ଭାବ ଶୂନ୍ୟ ହୋଇ ବସିଥିବୁ, ଆଖି ରଖିଥିବୁ ମା'ଙ୍କ ପାଦପଦ୍ମ ଉପରେ । ଦେହ ଉପର ଦେଇ ଝଡ଼ ବହି ଯାଉଥିବ, ଘର ଦ୍ୱାର ଭାଙ୍ଗି ପଡୁଥିବ । ତୁ ବସିଥିବୁ ଅଟଳ ଅଚଳ ହୋଇ । ତୁ କାହିଁକି ବିଚଳିତ ହେବୁ ? ନାଡ଼ି ସଂପର୍କ ଯାହା ସହିତ, ବିଚଳିତ ହେବାର ଥିଲେ ସେ ହେଉ ।

ମୋର କଅଣ ହେଉଛି କିଛି ବୁଝି ପାରୁନାହିଁ । କିମ୍ବା ହୁଏତ କିଛି ବି ହେଉ ନାହିଁ । ମନ, ମା'ଙ୍କୁ ତୁ କାନ୍ଦି କାନ୍ଦି ସେଇଆ କହ । କହ,ମା ମୋତେ ଶିଖେଇ ଦେ, କଅଣ କଲେ ତୋତେ ଦେଖି ପାରିବି । ମୁଁ ନିପଟ ନିଦା-ମୂର୍ଖ, ତନ୍ତ୍ର-ମନ୍ତ୍ର ଜାଣେ ନାହିଁ, ଯାଗ ଯଜ୍ଞ ଜାଣେ ନାହିଁ । ତୁ କହି ନ ଦେଲେ କିଏ ଆଉ ମୋତେ କହିବ ? ତୁ ନିଜେ କହି ଦେ । ତୋ ଛଡ଼ା ମୋର ଆଉ କିଏ ଅଛି ?

ମନକୁ ଏଇ କଥା କହିବାକୁ ବତେଇ ଦେଇ ଆଖି ବୁଜି ବସି ରହିଲା ଗଦାଧର । ଧ୍ୟାନରେ ନିଶ୍ଚିହ୍ନ ଚେତନ ହୋଇଗଲା । କିଏ ଯେପରି ଦେହ ଭିତରର ହାଡ଼ ସବୁକୁ ଯୋଡ଼ି ଦେଇ ଖିଲ ଆଣ୍ଟି ଦେଇଛି । ଟିକିଏ ହଲଚଲ ହେବାର, କିମ୍ବା ଆସନ ବଦଳାଇବାର ବି ଶକ୍ତି ନାହିଁ । ପୁଣି ହାଡ଼ର ଖିଲ ଖୋଲି ନ ଦେବା ପର୍ଯ୍ୟନ୍ତ ସ୍ଥାଣୁ ହୋଇ ବସି ରହିଥାଅ ଜଡ଼-ପୁତ୍ତଳିକା ପରି । ବସି ଥା ମନ, ବସିଥା । ଯେ ତୋତେ ବସେଇ ରଖିଛି, ଦେଖାଯାଉ ସେ ନିଜେ କେତେ ସମୟ ପର୍ଯ୍ୟନ୍ତ ବସି ରହିପାରେ ।

କଅଣ ଦେଖୁଛୁ ?

ଜ୍ୟୋତି ବିନ୍ଦୁ ଦେଖୁଛି ।

ସୋରିଷ ଫୁଲ ଦେଖୁଛୁ ? ମାନେ, କିଛି ଦେଖୁ ନାହୁଁ ।

ନା, ଆଉ ବିନ୍ଦୁ ନାହିଁ, ପୁଞ୍ଜ ପୁଞ୍ଜ ହୋଇ ଯାଉଛି ।

ତା'ପରେ ?

ପୃଥିବୀରେ ବହି ଚାଲିଛି ତରଳ ରୂପାର ସ୍ରୋତ । ସବୁ କିଛି ଜ୍ୟୋତିର୍ମୟ ହୋଇଯାଉଛି । ଯାଉଛି ? ତେବେ ଧୈର୍ଯ୍ୟଧର । ଦେଖାଦେବେ ଜ୍ୟୋତିର୍ମୟୀ । ଜଗଦ୍‌ଭାସିନୀ ।

ଘର ଭିତରେ ସ୍ତବ୍‌ଧ ହୋଇ ଅପେକ୍ଷା କରୁଛି ଗଦାଧର । ସମାଧିମଗ୍ନ ହୋଇଯାଇଛି । ସମ୍ୟକ୍ ଭାବରେ ଧାରଣ କରିବାର ଭାବ ହିଁ ସମାଧି । ଆଗରୁ ମା ଆଂଶିକ ଥିଲେ, କେତେବେଳେ ପ୍ରସାରିତ ଗୋଟିଏ ହସ୍ତ, କେତେବେଳେ ସ୍ଥିର ସ୍ଥିତ ଦୁଇଟି ପାଦ, କେତେବେଳେ ଅବା ହସ୍-ଝଲମଲ ମୁହୂର୍ତ୍ତକର ଚକିତ ଚାହାଣି । ବର୍ତ୍ତମାନ ମା ହୋଇ ଉଠୁଛନ୍ତି ସମ୍ୟକସଂପୂର୍ଣ୍ଣ ।

ସମଗ୍ର, ସର୍ବାଙ୍ଗସଂପନ୍ନ । ଅଷ୍ଟ ଐଶ୍ୱର୍ଯ୍ୟରେ ସୌଷ୍ଟବାନ୍ୱିତ ।

ଝମ୍ ଝମ୍ ପାଉଁଜ ଶବ୍ଦ କରି ମନ୍ଦିର ପାହାଚରେ କିଏ ଉଠି ଆସୁଛି ଉପରକୁ ? ଗଭୀର ରାତ୍ରି । ମନ୍ଦିରର ଜନଶୂନ୍ୟ ଅଗଣାରେ କିଏ ଧାଁ-ଦଉଡ଼ କରୁଛି ? ତ୍ୱରିତ୍ ପାଦରେ ବାହାରି ଆସିଲା ଗଦାଧର । ଦେଖିଲା, ସ୍ପଷ୍ଟ ଦେଖିବାକୁ ପାଇଲା ଆଖି ଆଗରେ, ମା ମହାମାୟା ମୁକ୍ତ-କୁନ୍ତଳ ହୋଇ ମନ୍ଦିରର ଉପର ମହଲା ବାରନ୍ଦା ଉପରେ ଛିଡ଼ା ହୋଇ ରେହିଛନ୍ତି । ପ୍ରଳୟ ଘନଘଟା ଘୋରରୂପା ପ୍ରଚଣ୍ଡା । ଦ୍ଵିଗ୍‌ବସ୍ତ୍ରା ନବନୀଳ-ଘନଶ୍ୟାମା । ଥରେ ପୂର୍ବକୁ, କଲିକତା ଆଡ଼କୁ ଅନାଉଛନ୍ତି, ପୁଣି ବୁଲିପଡ଼ି ଅନାଉଛନ୍ତି ପଶ୍ଚିମକୁ, ଗଙ୍ଗା ଆଡ଼କୁ । ସର୍ବବର୍ଣ୍ଣମୟୀ, ପରବ୍ରହ୍ମସ୍ୱରୂପିଣୀ ।

ମା କାହିଁକି କଳା କହି ପାରିବୁ ? ଯାହାଙ୍କର ଆଦି ନାହିଁ କି ଅନ୍ତ ନାହିଁ ତାଙ୍କୁ କେଉଁ ରଙ୍ଗରେ ଧାରଣା କରିବୁ ? ଯାହାର କୌଣସି ରଙ୍ଗ ନାହିଁ, ସେ କଳା ଛଡ଼ା ଆଉ କଅଣ ?

ମା ଉଲଙ୍ଗିନୀ କାହିଁକି ? ମା ଯେ ଅଦ୍ୱିତୀୟା । ଯେଉଁଠାରେ ଦ୍ୱିତୀୟ ବୋଲି କେହି ନାହିଁ ସେଠାରେ ଆବରଣର ପ୍ରଶ୍ନ ଉଠେ ନାହିଁ । ଯେ ନିଜେ ଅନ୍ତହୀନ ତାଙ୍କୁ ଆବରଣରେ ଆବୃତ କରିବୁ କିପରି ?

ମନ୍ଦିର ଭିତରକୁ ଆସିଲା ଗଦାଧର । ମନ୍ଦିରରେ ମୂର୍ତ୍ତିନାହିଁ । ମୂର୍ତ୍ତି ବଦଳରେ ସ-ଶରୀରରେ ମା ବସି ରହିଛନ୍ତି । ଗଦାଧର ତାଙ୍କ ନାକ ତଳେ ହାତ ରଖିଲା, ହାତରେ ସ୍ପଷ୍ଟ ନିଃଶ୍ୱାସର ସ୍ପର୍ଶ । ମନ୍ଦିର ଭିତରେ ଭୋଗ ସଜା ହୋଇ ରଖା ହୋଇଥିଲା । ଦେଖିଲା, ନିଜ ଅଙ୍ଗର ଉଜ୍ଜ୍ୱଳତାରେ ଘର ଆଲୁଅ କରି ମା ଖାଇ ବସିଛନ୍ତି । ଦିନେଦିନେ ମନ୍ତ୍ର ବୋଲିବା ପର୍ଯ୍ୟନ୍ତ ବି ଫୁରୁସଦ୍ ଦିଅନ୍ତି ନାହିଁ, ନୈବେଦ୍ୟ ପାଇଁ ହାତ ବଢ଼େଇ ଦିଅନ୍ତି ।

ଗଦାଧର ପାଟି କରି ଉଠେ, 'ରହ, ଆଗେ ମନ୍ତ୍ରଟା ବୋଲି ଦିଏଁ, ତା' ପରେ ଖାଇବୁ ।'

ହୃଦୟ ଧାଇଁ ଆସିଲା । ଦେଖିଲା, ଜବା-ବେଲପତ୍ର ଆଦି କିଛି ନିବେଦନ କରା ହୋଇନାହିଁ, ତା' ଆଗରୁ ନୈବେଦ୍ୟର ଥାଳି ମାଙ୍କୁ ନିବେଦନ କରୁଛି ଗଦାଧର ।

'ମାମୁଁ, ଏ କଅଣ କରୁଛ ?'

'ମୁଁ କଅଣ କରିବି ? ଏ ରାକ୍ଷସୀ ତ ଆଉ ସମ୍ଭାଳି ପାରୁନାହିଁ । ଭୋକରେ ତା' ପେଟ ପୋଡ଼ି ଯାଉଛି ।'

କେବଳ ସେତିକି ନୁହେଁ । ହୃଦୟ ଦେଖିଲା, ନୈବେଦ୍ୟ ଥାଳିରୁ ଗୁଣ୍ଡାଏ ଭାତ ନେଇ ମାମୁଁ ସିଂହାସନ ଉପରକୁ ଉଠି ଯାଇ ମା'ଙ୍କ ପାଟିରେ ଲଗାଇ କହୁଛି, 'ଖା, ଖା, ମନ ବୋଧ କରି ଖା !'

ହଠାତ୍ ସ୍ୱର ବଦଳାଇ କହୁଛି, 'କଅଣ କହିଲୁ ? ମୋତେ ଖାଇବାକୁ ପଡ଼ିବ ? ମୁଁ ନ ଖାଇଲେ ତୁ ଖାଇବୁ ନାହିଁ ? .... ହଉ, ଖାଉଛି ।' କହି ହାତରେ ଧରିଥିବା ଭାତ-ଗୁଣ୍ଡାରୁ କିଛି ନିଜ ପାଟିରେ ପୂରାଇଲା । ତା'ପରେ ଉଚ୍ଛିଷ୍ଟାଂଶ ମା'ଙ୍କ ପାଟିରେ ଦେଇ କହିଲା, 'ହେଲା ? ଖା, ଏଥର । ମୁଁ ତ ଖାଇଲି ।'

ହୃଦୟ ସମ୍ବିତ । ଆଉ ସନ୍ଦେହ ନାହିଁ, ମାମୁଁ ପାଗଳ ହୋଇଯାଇଛନ୍ତି । ବଦ୍ଧ ପାଗଳ ।

ଫୁଲ, ବେଲପତ୍ର ମା'ଙ୍କ ପାଦରେ ନଦେଇ ନିଜ ପାଦରେ ରଖୁଛି । ମା'ଙ୍କୁ ପୂଜା କରିବା ପରିବର୍ତ୍ତେ ନିଜକୁ ନିଜେ ପୂଜା କରୁଛି । ସର୍ବନାଶ ! ମଥୁର ବାବୁ ଯଦି ଦେଖିଦେବେ, ଆଉ ରକ୍ଷା ନାହିଁ । ଏକାଥରକେ ଚାକିରିରୁ ବରଖାସ୍ତ କରିଦେବେ । ମାମୁଁ ତ ଯିବେ, ତାଙ୍କ ସହିତ ସେ ବି ଯିବ ।

କେବଳ ପାଗଳ ନୁହନ୍ତି, ମଥାରେ ଭୂତ ଚଢ଼ିଛି ମାମୁଁଙ୍କର । ତା' ନ ହୋଇଥିଲେ ଠାକୁର ଦେବତାଙ୍କୁ ନେଇ ଏମିତି ପିଲାଖେଳ କେହି କରିପାରେ ? ମା'ଙ୍କ ଚିବୁକ ଧରି ଆଦର କରୁଛନ୍ତି, କଥା କହୁଛନ୍ତି, ଥଟ୍ଟା-ତାମସା ହେଉଛନ୍ତି । ମା ଯେମିତି ତାଙ୍କ ପାଇଁ ସସମ୍ଭ୍ରମ ଦୂରତ୍ୱର ଜିନିଷ ନୁହନ୍ତି, ସତେ ଅବା ସେ ଏଭଳି ଏକ ଜିନିଷ ଯାହା ଉପରକୁ ଚଢ଼ି ଯାଇ କୋଳରେ ବସିହେବ । ଅନମ୍ୟ - ପ୍ରଣମ୍ୟ ନୁହନ୍ତି, ସ୍ନେହ କାଙ୍ଗାଳ । କୌଣସି ବିଧି-ବନ୍ଧନ ପ୍ରୟୋଜନ ନାହିଁ, ଆବଶ୍ୟକତା ବି ନାହିଁ କୌଣସି ନିୟମ-ନିଷେଧର । ସନ୍ତର୍ପଣରେ ଧୀର ପାଦରେ ଯିବାର ପ୍ରୟୋଜନ ନାହିଁ ତାଙ୍କ ପାଖକୁ । ମନରେ ଭୟ ରଖି ମା'ଙ୍କୁ ସିଂହାସନରେ ବସାଇ ଚଉକାଠ ଆର ପାଖରୁ ସାଷ୍ଟାଙ୍ଗ ପ୍ରଣିପାତ କରିବା ଦରକାର ନାହିଁ । ସିଧା ସିଂହାସନ ଉପରକୁ ଉଠିଯାଇ କୋଳରେ ବସି ପଡ଼ । ସେହି ମା- ଯେ ତ୍ରିଜଗତ-ପ୍ରସବିନୀ - ସେହି ମା'ଙ୍କ କୋଳରେ ଶିଶୁଟିଏ ହୋଇ ବସିଯିବି । ମୁଁ ଭାଗ-ଚାଷୀ ହେବାକୁ ଚାହେଁ ନା । ମୁଁ ହେବି କ୍ଷେମଙ୍କରୀଙ୍କ ଖାସ-ମାହାଲର ପ୍ରଜା । 'କ୍ଷେମାର ଖାସେ ଆଛି ବସେ, ଆମାର ମାହାଲେ ନାଇଁ ଶୁଖା-ହାଜା ।' ଦେବୀ କ୍ଷେମଙ୍କରୀଙ୍କ ଖାସ- ଇଲାକାରେ ରହିଛି; ଏଠି ଧୋଇ-ମରୁଡ଼ି କିଛି ନାହିଁ । ମୁଁ ନିଶ୍ଚିନ୍ତ, ନିର୍ଭୟ ! ଯେ ସ୍ୱୟଂ ଜଗତ୍-ରଙ୍ଗିଣୀ ତାଙ୍କ ସହିତ ଘରୋଇ ଭାଷାରେ ରଙ୍ଗ-ରହସ୍ୟ ହେବି ।ମୋ ମା ପରା ସହଜ ମଣିଷ । ନିଜେ ସହଜ ନ ହେଲେ ସହଜ ମଣିଷକୁ ଚିହ୍ନିବି କିପରି ?

ଗଦାଧରର ମୁହଁ ଆଖି ସବୁ ଲାଲ । ସତେ ଅବା ଆକଣ୍ଠ ମଦ ପିଇଛି । ଟଳ-ମଳ ପାଦରେ ନଚୁଛି, ଗୀତ ବି ଗାଉଛି ବଡ଼ ପାଟିରେ ।

'ସୁରାପାନ କରି ନା ରେ, ସୁଧା ଖାଇ ଯେ କୁତୁହଲେ,
ଆମାର ମନ- ମାତାଲେ ମେତେଛେ ଆଜ୍,
ମଦ-ମାତାଲେ ମାତାଲ ବଲେ ।

(ମୁଁ ମଦ ପିଏ ନାହିଁ, ମନ ଖୁସିରେ ସୁଧା ପାନ କରେ । ମୋର ମନ ଆଜି ମାତାଲ ହୋଇ ଉଠିଛି । ମଦ ପିଇ ଯିଏ ମାତାଲ ହୋଇଛି ସେଇ ଲୋକ ମୋତେ ମାତାଲ କହୁଛି ।)

ମନ ହେଲେ କେତେବେଳେ ନାଚି ଯାଉଛି ମା'ଙ୍କ ହାତ ଧରି । କେତେବେଳ ପୁଣି ଗୀତ ଗାଉଛି ମା'ଙ୍କ ମୁହଁକୁ ଅନେଇ :

'ଆର ଭୁଲାଲେ ଭୁଲବ ନା ଗୋ,
ହେଲବ ନା ଗୋ, ଦୁଲବ ନା ଗୋ -
ପ୍ରସାଦ ବଲେ, ଦୁଧ ଖେୟେଛି,
ଘୋଲେ ମିଶେ ଘୁଲବ ନା ଗୋ ।'

(ଆଉ ଭୁଲେଇଲେ କି ଭଣ୍ଡେଇଲେ ଭୁଲିବି ନାହିଁ । ଭୟରେ ଥରିବି ନାହିଁ କି ଟଳିବି

ନାହିଁ । ମୁଁ ଦୁଧ ପିଇଛି, ଆଉ ଘୋଳକୁ ମନ ବଳେଇବି ନାହିଁ ।)

ରାତିରେ ନିଦ ହୁଏନାହିଁ । ଭାବାବସ୍ଥାରେ କାହା ସହିତ କଥା କହେ । କେତେବେଳେ ପୁଣି ଗୀତ ଗାଏ ।

'ମାମୁଁ, ଶୋଇବ, ନାହିଁ ?'

ଧାର ଧାର ହୋଇ ଲୁହ ବହି ଯାଉଛି ଦୁଇ ଆଖିରୁ । ଗୀତ ଗାଉଛି :

'ଘୁମ ଛୁଟେଛେ, ଆର କି ଘୁମାଇ,
ଯୋଗେ ଯାଗେ ଜେଗେ ଆଛି ।
ଏବାର ଯାର ଘୁମ ତାରେ ଦିୟେ
ଘୁମେରେ ଘୁମ ପାଡ଼ିୟେଛି ।
ଯେ ଦେଶେ ରଜନୀ ନାଇ
ସେଇ ଦେଶେର ଏକ ଲୋକ ପେୟେଛି ।'

(ମୋର ନିଦ ଭାଙ୍ଗିଯାଇଛି । ଆଉ ଶୋଇବି ନାହିଁ । ମୁଁ ବର୍ତ୍ତମାନ ଯୋଗରେ ଜାଗ୍ରତ ରହିଛି । ଏଥର ସମସ୍ତ ନିଜର ଯେ କାରୟିତ୍ରୀ ତାଙ୍କରି ଠାରେ ନିଦକୁ ସମର୍ପଣ କରି ଦେଇ ନିଦକୁ ଶୁଆଇ ପକାଇଛି । ଯେଉଁ ଦେଶରେ ରାତ୍ରି ନାହିଁ, ସେହି ଦେଶର ଜଣେ ଲୋକର ସାକ୍ଷାତ ପାଇଛି ।)

ଦିନେ ଦିନେ ମନ୍ଦିରରେ ମା'ଙ୍କର ପହଡ଼ ପକାଉଛି, ହଠାତ୍ ସେହି ଶୂନ୍ୟରୂପାଙ୍କୁ ଉଦ୍ଦେଶ୍ୟ କରି କହେ, 'କଅଣ ? ମୋତେ ତୋ ପାଖରେ ଶୋଇବାକୁ କହୁଛୁ ? ହଉ, ଶୋଉଛି ।' ଚାହିଁ ଦିଏ । ମା'ଙ୍କର ସର୍ବାଙ୍ଗରେ ବାତ୍ସଲ୍ୟ, ଆଖିରେ ସ୍ନେହ-ସିଞ୍ଚିତ ଲାବଣ୍ୟ । ଗୋଡ଼ ହାତ ଜାକି ଜୁକି ଛୋଟ ଶିଶୁଟି ପରି ମା'ଙ୍କ ରୂପା ଖଟୁଲି ଉପରେ ଶୋଇ ପଡ଼ିଲା ଗଦାଧର । ନୀଳ-ନିବିଡ଼ ମେଘ କୋଳରେ କ୍ଷୀଣ ଶଶିକଳା ।

ମା'ଙ୍କୁ ଭୋଗ ନିବେଦନ କରୁଛି । ହଠାତ୍ କାଳୀ-ମନ୍ଦିର ଭିତରକୁ ପଶି ଆସିଲା । ବିଲେଇଟିଏ । ଏ-ପାଖ ସେ-ପାଖ ବୁଲି ମିଉଁ- ମିଉଁ କରୁଛି । କିଏ, ମା ? ମା ଆସିଲୁ ? ଖାଇବୁ ମା ? ... ନେ, ଖା । ଭୋଗର ଅନ୍ନ ବିରାଡ଼ିକୁ ଖୁଆଇବାକୁ ଲାଗିଲା ଗଦାଧର ।

ଗଣେଶ ଥରେ ଗୋଟାଏ ବିରାଡ଼ିକୁ ମାରିଥିଲେ । ଭଗବତୀ କହିଲେ, ତୁ ମୋତେ ମାରିଛୁ, ମୋର ସର୍ବାଙ୍ଗରେ ଯନ୍ତ୍ରଣା ହେଉଛି । କଥା ଶୁଣି ଗଣେଶ ହତବୁଦ୍ଧି ! ମା'ଙ୍କୁ ମୁଁ ମାରିଛି ! ଏଇ ଦେଖ୍ । ଦେଖୁନୁ ? ତୋ ମାଡ଼ର ଦାଗ ମୋ ଦେହରେ ରହିଛି । ଲଜ୍ଜାରେ, ଅନୁଶୋଚନାରେ ଗଣେଶଙ୍କ ମୁହଁ ତଳକୁ ହୋଇଗଲା । ଯେ ମାର୍ଜାରୀ ସେ ଭଗବତୀ ।

ରାତିରେ ତ ମନ୍ଦିର ଭିତରେ ଆଲୁଅ ଜଳୁଥାଏ । ମା ଯଦି ଆସୁଛନ୍ତି, ଘର ଭିତରେ ବୁଲୁଛନ୍ତି, କାନ୍ଥରେ ତାଙ୍କ ଛାଇ ପଡୁନାହିଁ କାହିଁକି ? ହୃଦୟ ଭାବେ ଏଇ କଥା । ମା'ଙ୍କୁ ଆଖିରେ ଦେଖିବା ଭଳି ପୁଣ୍ୟ ମୋର ନାହିଁ ସିନା, କିନ୍ତୁ କାନ୍ଥରେ ତାଙ୍କ ଛାଇ ଦେଖିବାରେ ବାଧା କେଉଁଠି ?

ଦିବ୍ୟ ଅଙ୍ଗର କ'ଣ ଛାୟା ଥାଏ ? ସେ ଅଚକ୍ଷୁ, କିନ୍ତୁ ଦେଖି ପାରନ୍ତି; ଅକର୍ଣ୍ଣ, କିନ୍ତୁ ଶୁଣି

ପାରନ୍ତି; ଅସ୍ପର୍ଶ, କିନ୍ତୁ କୋଳକୁ ନେଇପାରନ୍ତି ।

ପାଗଳାମି ନିଶ୍ଚୟ । କିନ୍ତୁ ଏତେ ହାଲୁକା ଭାବରେ ନେଲେ ଚଳିବ ନାହିଁ । ଦେବ-ଦେବୀଙ୍କୁ ନେଇ ପିଲାଳିଆ କଣ୍ଢେଇ ଖେଳ ! ପ୍ରଥମେ ନିଜ ପାଦରେ ଛୁଆଇଁ ତା' ପରେ ଫୁଲ ଦେଉଛି ମା'ଙ୍କ ପାଦରେ । ନିଜେ ଖାଇ ଉଚ୍ଛିଷ୍ଟ ଖୁଆଉଛି ମା'ଙ୍କୁ । ଖଟ ଉପରେ ଶୋଇ ଯାଉଛି, ମା'ଙ୍କ ପାଖରେ । ମା'ଙ୍କ ଚିବୁକ ଧରି ଆଦର କରୁଛି । ଅସମ୍ଭବ, ଅସହ୍ୟ ଏ ପ୍ରକାର ଅନାର୍ଯ୍ୟତା । ଗୋଟାଏ କିଛି ପ୍ରତିକାର କରିବାକୁ ପଡ଼ିବ । ଜଣାଇବାକୁ ପଡ଼ିବ ସାନ-ମଝିଆଁ ବାବୁଙ୍କୁ ।

କାଳୀ ମନ୍ଦିରର କବାଟ ପାଖରେ ଆସି ଠିଆ ହୋଇ ରହିଲେ ମନ୍ଦିରର ସମସ୍ତ କର୍ମଚାରୀ । ଖାଜାଞ୍ଚି, ଗୋମସ୍ତା, ନାଏବ - ସମସ୍ତେ । ସମସ୍ତେ ଚାହିଁ ରହିଛନ୍ତି ଆବିଷ୍ଟ ହେଲା ଭଳି । ଗଦାଧରର ଆଚାର ବ୍ୟବହାର ସବୁ କିମ୍ଭୂତ, ସନ୍ଦେହ ନାହିଁ, କିନ୍ତୁ ଆନ୍ତରିକତା ରହିଛି ପୂରା ମାତ୍ରାରେ । ଯାହା କିଛି କରୁଛି,ଅକପଟ ଭାବରେ କରୁଛି । ବିଶ୍ୱାସ ପ୍ରବଳ, ବୋଧହୁଏ ସେହି କାରଣରୁ ଏତେ ସାହସ । ଉନ୍ମନା ନିଶ୍ଚୟ, କିନ୍ତୁ ଉନ୍ମାଦ ପରି ତ ମନେ ହେଉନାହିଁ ।

ଆସିଥିଲେ ସମସ୍ତେ ଆକଟ କରିବାକୁ, ହେଲେ କଥା ବାହାରିଲା ନାହିଁ କାହାରି ତୁଣ୍ଡରୁ । ସିରସ୍ତାକୁ ଫେରି ଯାଇ ନିଜ ନିଜ ଭିତରେ ପରାମର୍ଶ କଲେ- କଅଣ କରାଯିବ ? କଅଣ ଆଉ କରାଯିବ ! ଜାନବଜାରକୁ ଖବର ପଠାଅ - କର୍ତ୍ତାଙ୍କ ପାଖକୁ । ନା ହଉଛି ବିଧିବିଧାନ ଅନୁଯାୟୀ ପୂଜା ନା ହଉଛି ଭୋଗ -ରାଗ ! ଆଶାସ୍ତ୍ରୀୟ ଅକର୍ମ ଦୋଷରୁ ଶେଷକୁ କିଛି ଗୋଟାଏ ଅଘଟଣ ଯଦି ଘଟିଯାଏ ?

ମଥୁର ବାବୁଙ୍କ ପାଖରେ ଖବର ପହଞ୍ଚିଲା । ଲେଖି ପଠାଇଲେ, ବ୍ୟସ୍ତ ହୁଅ ନାହିଁ, ମୁଁ ନିଜେ ଯାଇ ସବୁ ବ୍ୟବସ୍ଥା କରି ଦେଇ ଆସିବି ।

ପେଡ଼ି-ପେଟରା ବାନ୍ଧ ଏଥର । ଘର-ପୁଅ ଘରକୁ ଯାଅ । ଏତେ ଅନାଚାର ! ଦଣ୍ଡ ନ ପାଇ ଯିବ କୁଆଡ଼େ ?

ମଥୁରବାବୁ ଆସିଲେ, କାହାକୁ କିଛି ନ ଜଣାଇ । କାଳୀ-ମନ୍ଦିର ଭିତରେ ଗଦାଧର ପୂଜା କରୁଛି, ସିଧା ପଶିଗଲେ ମନ୍ଦିର ଭିତରକୁ । ପଶି ଯାଇ ଯାହା ଦେଖିଲେ, ନର-ଦେହରେ ସେପରି ଦେଖିବେ ବୋଲି ସ୍ୱପ୍ନରେ ବି ଭାବି ନଥିଲେ । ତନୁମନୋମୟ ହୋଇ ପୂଜା କରୁଛି ଗଦାଧର । କୌଣସି ଆଡ଼କୁ ଲକ୍ଷ୍ୟ ନାହିଁ । ଲଜ୍ଜା ନାହିଁ, ସଂକୋଚ ନାହିଁ । ଯେଉଁ ମଥୁରବାବୁଙ୍କ ଉପସ୍ଥିତିର ସାମାନ୍ୟ ସୂଚନା ପାଇଲେ ଅନ୍ୟମାନେ ସଂତ୍ରସ୍ତ ହୋଇ ଉଠନ୍ତି, ସେହି ମଥୁରବାବୁ ନିଜେ ମନ୍ଦିର ଭିତରେ, ତାହାରି ପାଖରେ - ସେ ଆଡ଼କୁ ଭ୍ରୂକ୍ଷେପ ନାହିଁ ଗଦାଦରର । ତା'ର ସମସ୍ତ ନିବେଶ-ନିକ୍ଷେପ କେବଳ ମା'ଙ୍କ ଉପରେ । କେତେବେଳେ କାନ୍ଦି ପକାଉଛି ଆକୁଳ ହୋଇ, କେତେବେଳେ ଚିତ୍କାର କରି ଉଠୁଛି ଆନନ୍ଦରେ । କେତେବେଳେ ତନ୍ମୟ ଭାବରେ ଗୀତ ଗାଉଛି, କେତେବେଳେ ପୁଣି ଧ୍ୟାନରେ ନିଃସଂଜ୍ଞ ହୋଇ ଯାଉଛି । ନିର୍ଭୟରେ କଥା କହୁଛି ମା'ଙ୍କ ସହିତ । ରାଗ ରୋଷ ଅଭିମାନ କରୁଛି, ପୁଣି ଗେହ୍ଲା ପୁଅ ପରି ଅଲିଅଳି-ପଣ କରୁଛି ।

ଏ କଅଣ ଦେଖୁଛନ୍ତି ମଥୁର ବାବୁ !

ଦୁଇ ହାତରେ ତାଙ୍କର ଥିଲା ଶାସନର ଉଦ୍ୟତି । ହଠାତ୍ ସେହି ଶାସନୋଦ୍ୟତ ହାତ

ଦୁଇଟି ଅଞ୍ଜଳିବଦ୍ଧ ହୋଇଗଲା କାହିଁକି ?

ନିଦ ଭାଙ୍ଗିବ ଏ ଥର ମା'ଙ୍କର । ପାଷାଣୀ ହେବ ପ୍ରାଣମୟୀ । ଆଉ ଚିନ୍ତା ନାହିଁ । ମିଳି ଯାଇଛି ଓସ୍ତାଦ ବାଜୀକର । ନିଦ ଭଙ୍ଗାଇବାର ନିପୁଣ ବଂଶୀବାଦକ ।

ଅଲକ୍ଷ୍ୟରେ ଆସିଥିଲେ, ଅଲକ୍ଷ୍ୟରେ ଫେରିଗଲେ । ଜ୍ଞାନବଜାରରୁ ଆଦେଶ ପଠାଇଲେ, ଗଦାଧରକୁ ବାଧା ଦିଅନାହିଁ । ନିଜ ଖୁସିରେ ଯେମିତି ପୂଜା କରୁଛି ମା'ଙ୍କୁ, କରୁଥାଉ ।

ସୀମା ଅତିକ୍ରମ କରି ଚାଲି ଆସିଛି ଅସୀମାକୁ । ମୃତ୍ତିକାର ସୁନିର୍ଦ୍ଦିଷ୍ଟ ଚଲାପଥ ଛାଡ଼ି ଚାଲି ଆସିଛି ଆକାଶର ଅନାବୃତିକୁ । ଚାଲି ଆସିଛି କ୍ରିୟା-କର୍ମର ଶାସ୍ତ୍ରରୁ ସର୍ବାର୍ପଣର ଆଶାସନକୁ । ବୈଧୀ ଭକ୍ତିରୁ ପରମପ୍ରେମରୂପା ଭକ୍ତିକୁ । କେବଳ ସନ୍ତରଣ ନୁହେଁ, ନିମଜ୍ଜନକୁ । ଇନ୍ଦ୍ରିୟ ବିଷୟରେ ଅବିବେକୀର ଆଗ୍ରହ ପରି ସେହି 'ପରାନୁରକ୍ତିରୀଶ୍ୱରେ'କୁ । ସର୍ବବନ୍ଧନ ବିମୋଚନ ଅବସ୍ଥାକୁ ।

'ସବୁବେଳେ ତ ମା-ମା କହୁଛ, ମା'ଙ୍କୁ ଦେଖି ପାରୁଛ ?' ନରେନ୍ଦ୍ରନାଥ ପଚାରିଲା ଠାକୁରଙ୍କୁ । ପଚାରିବା ଭଙ୍ଗୀରେ ମିଶି ରହିଛି ଅବିଶ୍ୱାସର ଇଙ୍ଗିତ ।

'ଖାଲି ଦେଖୁଛି ମା'ଙ୍କ ସହିତ କଥା କହୁଛି, ଖାଉଛି, ମା'ଙ୍କ ପାଖରେ ଶୋଉଛି -'

ନରେନ୍ଦ୍ରର କଣ୍ଠରେ ତଥାପି ପ୍ରଚ୍ଛନ୍ନ ବିଦ୍ରୂପ: 'ଈଶ୍ୱରଙ୍କୁ ଦେଖି ହୁଏ ? କେଉଁଠି ଅଛନ୍ତି ସେ ?'

ତଳେ, ଉପରେ, ଆଗରେ, ପଛରେ, ଦକ୍ଷିଣରେ, ଉତ୍ତରରେ - ସ ଏବେଦଂ ସର୍ବମିତି । ଭିତରେ, ବାହାରେ - ବହିରନ୍ତଶ୍ଚ ଭୂତାନାମ୍ । ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ଏକମାତ୍ର ସେ । ଅଶରୀରଂ ଶରୀରେଷ୍ୱ ଅନବସ୍ଥେଷ୍ୱ ଅବସ୍ଥିତଂ । ହଁ, ଦେଖିବୁ ନାହିଁ କାହିଁକି ? ଅବଶ୍ୟ ଦେଖିବୁ । ତୋର ଏ-ଭଳି ଆଖି, ତୁ ଦେଖିବୁ ନାହିଁ ?

ପ୍ରତାପ ହାଜରା ଆସି ରହିଛି ଦକ୍ଷିଣେଶ୍ୱରରେ । ସେ ହେଉଛି ନଗଦ-ବିଦାୟୀ ସାଧୁ । ଅର୍ଥାତ୍ ଧର୍ମ-କର୍ମ କରେ, କିନ୍ତୁ ସବୁ ସମୟରେ ପ୍ରତ୍ୟାଶା ରଖେ କିଛି ନଗଦ ପୁରସ୍କାରର । ଯଦି କୌଣସି ପାର୍ଥିବ ଉପକାର ସାଧିତ ନ ହେଲା, ତେବେ ଏ ଜପ -ତପ କରି ଲାଭ କଅଣ ? ସବୁ କାମର ତ ମଜୁରି ଅଛି, ଖାଲି ଜପ-ତପ ବେଳକୁ ଫୁସ୍ ! ଜପ-ତପ ଦ୍ୱାରା ଯଦି କିଛି ସିଦ୍ଧି ଆୟତ୍ତ ହୋଇପାରେ, ତେବେ ହୁଏତ ଘର-ସଂସାରର ଅବସ୍ଥା ଟିକିଏ ସୁଧାରି ହେବ । ମନ ଭିତରେ ଏହି କାମନା ଧରି ପୂଜାର୍ଚ୍ଚନାରେ ବସେ ।

'ହାଜରା ଶଳାଟାର ଭାରି ବେପାରୀ ବୁଦ୍ଧି !' ଭକ୍ତମାନଙ୍କୁ ସତର୍କ କରାଇ ଦେଇ କହିଲେ ଠାକୁର: 'ତା' କଥା ତୁମେ କେହି ଶୁଣିବନାହିଁ ।'

କିନ୍ତୁ ହାଜରାର କଥା ଗୁଡ଼ାକ ନରେନ୍‌କୁ ମନ୍ଦ ଲାଗେ ନାହିଁ । ହାଜରା କହେ, ଲାଭ-କ୍ଷତି ହିସାବ କରି ଦେଖିବା ଦରକାର । ଯୁକ୍ତି ତର୍କ ଭିତରେ ଦେଇ ସ୍ୱର୍ଣ୍ଣସହ ସିଦ୍ଧାନ୍ତରେ ପହଞ୍ଚିବା ଉଚିତ । ସ୍ତବ ସହିତ ମିଳାଇ ନିଅ ବାସ୍ତବର ହିସାବ । ଦେହ ଯେତେବେଳେ ଯାଏ ଅଛି, ସନ୍ଦେହ ତ ରହିବ ।

ନା, ହାଜରାର କଥା ସଂପୂର୍ଣ୍ଣ ମୂଲ୍ୟହୀନ ନୁହେଁ । ଭାବେ ନରେନ୍ ।

'ଯୋ କୁଛ ହ୍ୟାୟ୍ ସୋ ତୁ ହି ହ୍ୟାୟ୍ - ଏଇ ଗୀତଟା ଗାଇଲୁ, ନରେନ୍ ?' -ଠାକୁର ଫରମାସ କଲେ ।

ନରେନ୍ ଗାଇଲା । ତାକୁ ଗୀତ ବୋଲେଇ ଛାଡ଼ିଲେ ଠାକୁର ।

ସର୍ବଂ ଖଲ୍ୱିଦଂ ବ୍ରହ୍ମ । ଯାହା କିଛି ଦେଖୁଛୁ ତୋ ଆଖି ଆଗରେ, ସବୁ ସେ । ସମସ୍ତ ବ୍ରହ୍ମ । ମଣିଷ, ପଶୁ, ପକ୍ଷୀ, ଗଛ,ଲତା - ସବୁ । ଆକାଶ, ମାଟି, ପବନ, ଅଗ୍ନି, ଜଡ଼, ଚେତନ - ସମସ୍ତ ।

ନିତ୍ୟୋ ନିତ୍ୟାନାଂ ଚେତନଶ୍ଚେତନାନାମ୍ । ସେ ସର୍ବବ୍ୟାପୀ । ସର୍ବାତୀତ। ସ୍ୱୟଂ-ପ୍ରକାଶ । କିଏ ଈଶ୍ୱର ?

ଈଶ୍ୱର କିଏ ! ଅଳ୍ପତାର ଶେଷ ସୀମା ପରମାଣୁ, ବୃହତର ଶେଷ ସୀମା ଆକାଶ । ସେହିଭଳି ଜ୍ଞାନ-କ୍ରିୟାଶକ୍ତିର ଅଳ୍ପତାର ପରାକାଷ୍ଠା କ୍ଷୁଦ୍ର ଜୀବ, ଏବଂ ଆତିଶଯ୍ୟର ପରାକାଷ୍ଠା ଈଶ୍ୱର ।

ସହଜ କରି କହନ୍ତୁ ।

ସହଜ କରି କହିବି ! ଈଶ୍ୱର କିଏ ଜାଣିବାକୁ ଚାହୁଁଛୁ ? ହଉ, ସହଜ କରି କହୁଛି । ''ତତ୍ତ୍ୱମସି'' । ଅର୍ଥାତ୍ ତୁ ହେଉଛୁ ସେହି । ଠାକୁରଙ୍କ ମୁହଁରେ ହସ ।

ତଥାପି ସଂଶୟ ଯାଉ ନାହିଁ ନରେନ୍ଦ୍ରର ।

ସଂଶୟ ଥିଲେ ତେବେ ସିନା ମୀମାଂସା । ନିର୍ଣ୍ଣୟ ତ ସଂଶୟ-ସାପେକ୍ଷ । ସଂଶୟ ଅଛି ବୋଲି ସଂସାରବିଚାର । ଆତ୍ମ-ବିଚାର । ଥା, ଥା ତୁ ସଂଶୟ ଭିତରେ ।

ଘରୁ ବାହାରି ଆସିଲା ନରେନ୍ । ଆସି ବସିଲା ହାଜରା ପାଖରେ । ହାଜରା ହୁକା ସଜ କରୁଥିଲା ଟାଣିବ ବୋଲି । ବଢ଼େଇ ଦେଲା ନରେନ୍ ହାତକୁ । ହୁକା ଟାଣି କଳେ ଧୂଆଁ ଛାଡ଼ି ନରେନ୍ କହିଲା, 'କି ଅସମ୍ଭବ କଥା କହୁଛି ! ଏହା କ'ଣ କେବେ ସତ ହୋଇପାରେ ?'

'କଅଣ କହୁଛି ?' ହାଜରା ପଚାରିଲା ମୁରୁକି ହସା ଦେଇ ।

'କହୁଛି କଅଣ ନା ଲୋଟା ଡାଟିଆ ଥାଳି କଂସା ସବୁ ଈଶ୍ୱର । ଯାହା କିଛି ଦେଖୁଛ, ଆଖିରେ ସବୁ କାଳେ ଈଶ୍ୱର । ଏପରି କି ଆପଣ ମୁଁ - ଆମେ ସମସ୍ତେ -'

ହୋ ହୋ ହୋଇ ହସିଲା ହାଜରା । ପାଗଳ କହନ୍ତି ଆଉ କାହାକୁ ହସରେ ହସ ମିଶେଇ ନରେନ୍ ମଧ୍ୟ ହସି ଉଠିଲା ।

ଘର ଭିତରେ ଠାକୁର ବସିଥିଲେ । ସେତେବେଳ ପର୍ଯ୍ୟନ୍ତ ତାଙ୍କର ଅର୍ଦ୍ଧବାହ୍ୟଦଶା । ସେହି ବିଦ୍ରୂପ ହସର ଶବ୍ଦ ତାଙ୍କ କାନରେ ଆସି ପଡ଼ିଲା । ମୁହୂର୍ତ୍ତକ ଭିତରେ ବାଳକ ପରି ହୋଇଗଲେ । ପିନ୍ଧା ଲୁଗାଟା କାଖରେ ଯାକି ଧରି ବାହାରି ଆସିଲେ ବାରନ୍ଦାକୁ ।

'କଅଣ କହୁଥିଲୁରେ, ନରେନ୍ ?' ହସି ହସି ପାଖକୁ ଚାଲି ଆସି ଛୁଇଁ ଦେଲେ ନରେନ୍କୁ । ଛୁଇଁ ଦେଇ ନିଜେ ସମାଧିସ୍ଥ ହୋଇଗଲେ ।

ଆଉ ନରେନ୍ ? ନରେନ୍‌ର କଅଣ ହେଲା ?

କଅଣ ଯେ ହେଲା କିଏ କହିବ ? ଆଖି ଆଗରୁ ଗୋଟାଏ ପରଦା ଅପସରି ଗଲା । ସତେ ଅବା ଚେତନାନ୍ତର ଘଟିଗଲା । ନିମ୍ନସ୍ଥ ଆଖି ଦୁଇଟି ବନ୍ଦ ହୋଇ ଖୋଲିଗଲା ଲଲାଟୋର୍ଦ୍ଧ୍ୱରେ ତୃତୀୟ ନୟନ । ଚାହିଁ ଦେଖିଲା ବିଶ୍ୱ ବ୍ରହ୍ମାଣ୍ଡରେ ଈଶ୍ୱର ଛଡ଼ା ଆଉ କିଛି ନାହିଁ । ଧୂଳିକଣା ଠାରୁ ଆରମ୍ଭ କରି ଆକାଶ-ବିକାଶ ସୂର୍ଯ୍ୟ ପର୍ଯ୍ୟନ୍ତ ସମସ୍ତ ଈଶ୍ୱର ।

ଏ' କଅଣ ? ଦୃଷ୍ଟିଭ୍ରମ ହେଲା ନା କଅଣ ? ଆଖି ବନ୍ଦ କଲା ନରେନ୍ । ଅନ୍ଧକାର ଭିତରେ ବି ସେହି ଈଶ୍ୱର ।

ବ୍ୟସ୍ତ ବିବ୍ରତ ହୋଇ ଘରକୁ ଫେରି ଆସିଲା ନରେନ ।

ଘରେ ପହଞ୍ଚିଲା ପରେ ମଧ୍ୟ ସେହି ଭାବ । ଇଟା କାଠ କାଛ ଚୌକାଠ ସବୁ ପ୍ରାଣମୟ । ଖାଇବାକୁ ବସିଲା । ମନେ ହେଲା, ଥାଳି- ତାଟିଆ, ଭାତ-ତରକାରୀ- ସବୁ ଜିନିଷ ମଧ୍ୟରେ ଈଶ୍ୱର ବସି ରହିଛନ୍ତି । ଯେ ବାଢ଼ି ଦେଉଛନ୍ତି ଏବଂ ଯେ ଖାଉଛନ୍ତି ଉଭୟେ ଈଶ୍ୱର । ଭାତ-ଥାଳି ପାଖରେ ନିସ୍ପନ୍ଦ ହୋଇ ବସିରହିଲା । 'କି ରେ ? କଅଣ ହେଲା ? ବସି ରହିଲୁ କାହିଁକି ? ଖାଉନୁ ? ଖା -' ମା ମନେ ପକେଇ ଦେଲେ । ନରେନ୍ ଖାଇବାକୁ ଆରମ୍ଭ କଲା । କିନ୍ତୁ ଯିଏ ଖାଉଛି ସେ କିଏ ? ଯାହା ଖାଉଛି ତାହା ବା କଅଣ ?

ରାତି ପାହି ସକାଳ ହେଲା, ତଥାପି ଆଚ୍ଛନ୍ନ ଭାବ ଯାଇ ନାହିଁ । କଲେଜକୁ ଯାଉଛି । ରାସ୍ତାରେ ଚାଲୁ ଚାଲୁ ସେହି ବିଚିତ୍ର ଅନୁଭୂତି । ସର୍ବାନନ୍ଦପ୍ରଦାତା ଈଶ୍ୱର ସମସ୍ତ-କିଛି ମଧ୍ୟରେ ଜାଗ୍ରତ ହୋଇ ରହିଛନ୍ତି । ଗାଡ଼ି ସହିତ ଧକ୍କା ଲାଗିବାର ଉପକ୍ରମ, କିନ୍ତୁ ଘୁଞ୍ଚି ଯିବାକୁ ବା ଆଡ଼େଇ ହୋଇ ଯିବାକୁ ପ୍ରବୃତ୍ତି ହେଉ ନାହିଁ । ମନେ ହେଉଛି, ଗାଡ଼ି ଯାହା ସେ ନିଜେ ମଧ୍ୟ ସେଇଆ । ଉଭୟ ଈଶ୍ୱରପୂର୍ଣ୍ଣ ! ଉପର ଓଳି ହ୍ରଦ କୂଳକୁ ବୁଲିଯାଇଛି । ହ୍ରଦ କଡ଼ର ଲୁହା ରେଲିଂରେ ମୁଣ୍ଡ ପିଟୁଛି ଏବଂ କହୁଛି, 'କହ, ତୁ କିଏ ? ତୁ କ'ଣ ଈଶ୍ୱର ?'

କୌଣସି ଠାରେ ହେଲେ ରନ୍ଧ୍ର ନାହିଁ ? ଅନ୍ତ ନାହିଁ ? ଜାଗରଣରେ ଯିଏ ଅଛି ସେ କ'ଣ ସ୍ୱପ୍ନରେ ବି ଅଛି ? ସୁଷୁପ୍ତିରେ ବି ଅଛି ? ସମସ୍ତ-କିଛିର ଅନ୍ତରାଳରେ ସେହି ଏକ ଅଖଣ୍ଡ ସ୍ୱରୂପ ?

ସବୁ ସେହି ଏକ । ସାପ ଯେତେବେଳେ ଚୁପ୍ ଚାପ କୁଣ୍ଡଳୀ କରି ଶୋଇ ରହିଥାଏ ସେତେବେଳେ ସାପ, ପୁଣି ଯେତେବେଳେ ତିର୍ଯ୍ୟକ୍ ଗତିରେ ଚାଲୁଥାଏ ସେତେବେଳେ ବି ସାପ । ଯିଏ ନିତ୍ୟରେ ସେ ପୁଣି ଲୀଳାରେ । ସମସ୍ତ ଏକାକାର ।

ଈଶ୍ୱରଙ୍କୁ ଦେଖୁଛି - କେବଳ ଏତିକିରେ ଚଳିବ ନାହିଁ । ତାଙ୍କୁ ନିଜ ଘରକୁ ଡାକି ଆଣିବାକୁ ପଡ଼ିବ । ତାଙ୍କ ସହିତ ଆଳାପ କରିବାକୁ ହେବ । ରାଜାଙ୍କୁ ତ ବହୁତ ଲୋକ ଦେଖନ୍ତି ରାସ୍ତା କଡ଼ରେ ଠିଆ ହୋଇ । ମାତ୍ର ଘରକୁ ଡାକି ଆଣି ଖୁଆଇ ପାରନ୍ତି ଜଣେ- ଅଧେ ମାତ୍ର ।

ନରେନର ମନ ଭିତରେ ଆକୁଳତା ବଢ଼ିବାକୁ ଲାଗିଲା । ମୁଁ କଅଣ ରାସ୍ତା କଡ଼ରେ ଠିଆ ହୋଇ ରାଜାଙ୍କୁ ଦେଖିବି ? ମୁଁ କ'ଣ ଟାଣି ଆଣି ପାରିବି ନାହିଁ ତାଙ୍କୁ ମୋ ଘର ଭିତରକୁ ?

ଗଦାଧରର ସର୍ବାଙ୍ଗରେ ଭୟଙ୍କର ଜ୍ୱାଳା ଯନ୍ତ୍ରଣା ହେଉଛି । ପ୍ରାୟ ଛ' ମାସ ଧରି ସେ କଷ୍ଟ ପାଉଛି ।

ନାନା ଆଡୁ ନାନା ପ୍ରକାର କବିରାଜି ତୈଳ ଆଣି ଦେଲା ହୃଦୟ । ମାଲିସ କଲା ଦେହରେ ମୁଣ୍ଡରେ । ଫଳ କିଛି ହେଲା ନାହିଁ ।

ପଞ୍ଚବଟୀରେ ବସି ଧ୍ୟାନ କରୁଛି ଗଦାଧର । ହଠାତ୍ ତା' ଦେହ ଭିତରୁ କିଏ ଜଣେ ବାହାରି ଆସିଲା । ଘୋର କୃଷ୍ଣ ବର୍ଣ୍ଣ, ଆଖି ଦୁଇଟି ଲାଲ, ରୂପ ଭୟଙ୍କର । ମାତାଲ ଭଳି ପାଦ ଟଳ-ମଳ, ଠିକ୍ ଭାବରେ ପଡୁ ନାହିଁ । ତା' ପଛକୁ ଆହୁରି ଜଣେ ବାହାରି ଆସିଲା । ପିନ୍ଧିଛି ଗୈରିକ ବସ୍ତ୍ର, ହାତରେ ତ୍ରିଶୂଳ, ପ୍ରଶାନ୍ତ ମୂର୍ତ୍ତି । ପ୍ରଥମେ ବାହାରି ଥିବା ଘୋର-ଦର୍ଶନ ପୁରୁଷକୁ ଆକ୍ରମଣ କଲା । ଦ୍ୱିତୀୟ ବ୍ୟକ୍ତି ଏବଂ ଶେଷରେ ତାକୁ ନିପାତ କରିଦେଲା । ପାପ-ପୁରୁଷ ଭସ୍ମ ହୋଇଗଲା ।

ମଥୁର ବାବୁଙ୍କ ପାଖରୁ ରାଣୀ ଶୁଣିଲେ ସମସ୍ତ ଘଟଣା । ମନେ ମନେ ସ୍ଥିର କଲେ ଦିନେ ଆସି ସ୍ୱଚକ୍ଷୁରେ ଦେଖିବେ ଗଦାଧରକୁ । ତେଣୁ ଆଜି ଆସିଛନ୍ତି ।

ଗଙ୍ଗା-ସ୍ନାନ କରି ସାରି ପଶିଲେ ମନ୍ଦିର ଭିତରକୁ । ମା'ଙ୍କ ମୂର୍ତ୍ତି ପାଖରେ ବସିଲେ ଶାନ୍ତ ଭାବରେ । ଗଦାଦରର ଗୀତ ଶୁଣିବାକୁ ଭଲ ଲାଗେ । କହିଲେ, ଗୋଟାଏ ଗୀତ ଗାଅ ।

ଗଦାଧର ଗୀତ ଗାଇବାକୁ ଆରମ୍ଭ କଲା । ରାଣୀ ଆଖି ବନ୍ଦ କରି ଧ୍ୟାନରେ ବସିଲେ ।

ଅଚାନକ ଗଦାଧର ରାଣୀଙ୍କ ଦେହରେ ଗୋଟାଏ ଚାପଡ଼ ବସାଇଦେଲା । ଧମକ ଦେଇ କହିଲା, 'ଏଠି ବି ସେଇ ଚିନ୍ତା !'

ରାଣୀ ଚମକି ପଡ଼ିଲେ । ଜମିଦାରୀ ଇଷ୍ଟେଟ ସଂପର୍କରେ ଗୋଟାଏ ଅତି ଜଟିଳ ମୋକଦ୍ଦମା ଚ.ଲିଛି । ଧ୍ୟାନରେ ବସି ରାଣୀ ସେହି କଥା ଚିନ୍ତା କରୁଥିଲେ । କିନ୍ତୁ, ଯାହା ହେଲେ ବି, ମନ୍ଦିରର ଜଣେ ସାମାନ୍ୟ ପୂଜକ ତାଙ୍କ ଦେହରେ ହାତ ଦେବ ?

ମନ୍ଦିରର ଖାଜାଞ୍ଚି, ଗୋମସ୍ତା ସମସ୍ତେ ଉତ୍କଣ୍ଠିତ ହୋଇ ଅପେକ୍ଷା କଲେ ଏହା ପରେ କଅଣ ଘଟିବ ଦେଖିବାକୁ । ଏଥର ନିଶ୍ଚୟ ବରଖାସ୍ତ ହେବ !

କଥାଟା ମଥୁରବାବୁଙ୍କ କାନକୁ ଗଲା । ଭୟଙ୍କର ବିରକ୍ତ ହେଲେ । ଏଇଟା ଅତ୍ୟନ୍ତ ଅଶୋଭନ ବ୍ୟବହାର ।

ହୃଦୟ ଧାଇଁ ଆସିଲା ମାମୁଁ ପାଖକୁ । ଭୟମିଶା କଣ୍ଠରେ କହିଲା, 'ଏ ତୁମେ କଅଣ କଲ ?'

ଗଦାଧରର ମୁଖ ମଣ୍ଡଳରେ ନିର୍ମଳ ପ୍ରଶାନ୍ତି । 'ମୁଁ କଅଣ ଜାଣେ ? ମା କହିଲେ, ଏଠି ବସି ସେ ବିଷୟ-ସଂପତ୍ତି କଥା ଭାବୁଛି, ତା' ପିଠିରେ ଗୋଟାଏ ବିଧା ବସେଇ ଦେ । ମୁଁ ବସେଇ ଦେଲି । ମା'ଙ୍କ କଥା ଅମାନ୍ୟ କରି ଥାଆନ୍ତି କେମିତି ?'

ମଥୁରବାବୁଙ୍କୁ ଡକେଇଲେ ରାସମଣି । କହିଲେ, 'ଗଦାଧର ଉଚିତ କାମ କରିଛି । ତା' ହାତରେ ମା ନିଜେ ମୋତେ ଶାସନ କରିଛନ୍ତି ।'

ସତ୍ୟ ?

'ହଁ,ଏବଂ ସେହି ଆଘାତରେ ମୋ ହୃଦୟ ଆଲୋକିତ କରି ଦେଇଛନ୍ତି ।'

ଭକ୍ତି-ଭାବର ପାଞ୍ଚଟି ପ୍ରଦୀପ । ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଏବଂ ମଧୁର । ଏହି ପଞ୍ଚ ଭାବରେ ହିଁ ସାଧନା କରୁଛି ଗଦାଧର ।

ଶାନ୍ତ-ଭାବ ହେଉଛି ଐକାତ୍ମଜ୍ଞାନ । ନିର୍ଗୁଣ ସାଧନା । ସ୍ୱଚ୍ଛ, ନିର୍ଲିପ୍ତ ବ୍ରହ୍ମନିଷ୍ପନ୍ନ ହୋଇ ବସିଥାଅ । ଅନ୍ୟ ଭାବ ଗୁଡ଼ିକ ଗୁଣାତ୍ମକ, ରାଗ-ରଂଜିତ । ଦାସ୍ୟ ହେଉଛି ଶ୍ରୀ ରାମଚନ୍ଦ୍ରଙ୍କ ପ୍ରତି ହନୁମାନଙ୍କ ଭାବ । ବାସୁଦେବଙ୍କ ପ୍ରତି ଅର୍ଜୁନଙ୍କର ଯେଉଁ ଭାବ ତାହା ହେଉଛି ସଖ୍ୟ । ବାତ୍ସଲ୍ୟ ଗୋପାଳଙ୍କ ପ୍ରତି ଯଶୋଦାଙ୍କ ଭାବ । ଆଉ ମଧୁର ଭାବ ହେଉଛି ଶ୍ରୀକୃଷ୍ଣଙ୍କ ପ୍ରତି ଗୋପିନୀମାନଙ୍କର ଭାବ ।

ଯାହାର ଯେଉଁ ପରି ଭାବ ସେ ସେହିପରି ଦେଖେ । ତମୋଗୁଣୀ ଭକ୍ତ ନିଜେ ମାଂସ ଖାଏ, ତେଣୁ ସେ ଭାବେ ମା ମାଂସ ଖାଇବେ, ସେଥିପାଇଁ ଛାଗ ବଳି ଦିଏ । ରଜୋଗୁଣୀ ଆଡ଼ମ୍ବର ପ୍ରିୟ, ବିଳାସ-ବିସ୍ତାର ପ୍ରିୟ; ତେଣୁ ସେ ନାନା ବ୍ୟଞ୍ଜନ, ନାନା ଉପଚାରରେ ଭୋଗ ସଜାଏ । ସତ୍ତ୍ୱଗୁଣୀ ବ୍ୟକ୍ତିର କୌଣସି ଆଡମ୍ବର ନାହିଁ, ଜାକ-ଜମକ ନାହିଁ । ତାହାର ପୂଜାନୁଷ୍ଠାନ ବିଷୟରେ କେହି ଜାଣି ବି ପାରନ୍ତି ନାହିଁ । ଫୁଲ ନାହିଁ ଯଦି, କେବଳ ବେଲପତ୍ର ଓ ଗଙ୍ଗା ଜଳରେ ସେ ପୂଜା ସାରିଦିଏ । ଭୋଗ ଦିଏ ସାମାନ୍ୟ ଦି'ଟା ଉଖୁଡ଼ା କିମ୍ବା ଗୋଟାଏ ଲଡୁ ।

ଏମାନଙ୍କ ବ୍ୟତୀତ ଅଛନ୍ତି ତ୍ରିଗୁଣାତୀତ ଭକ୍ତ । ସେମାନେ କେବଳ ନାମ ଜପ କରୁଥାଆନ୍ତି । ଈଶ୍ୱରଙ୍କ ନାମ-ଜପ ହିଁ ଈଶ୍ୱରଙ୍କ ପୂଜା ।

ଶାନ୍ତ ହେଉଛି ଋଷିମାନଙ୍କର ଭାବ । ସାନନ୍ଦ ଭାବରେ ପରିତୁଷ୍ଟ । ସାମାନ୍ୟ ଭିକ୍ଷାନ୍ନରେ ପେରିତୃପ୍ତ । ଛିଣ୍ଡା କନ୍ଥା ତାଙ୍କ ପାଇଁ ଲକ୍ଷ୍ମୀଙ୍କ ଏଶ୍ୱର୍ଯ୍ୟ । କେବଳ ତରୁ ମୂଳରେ ଆଶ୍ରୟ । କେବଳ ଆଦିକୁ ନେଇ ରହିଥାଆନ୍ତି, ଅନ୍ତ-ମଧ୍ୟର ଖବର ରଖନ୍ତି ନାହିଁ । 'ଅହର୍ନିଶଂ ବ୍ରହ୍ମଣି ଯେ ରମନ୍ତଃ' - ଦିବା-ନିଶି ବ୍ରହ୍ମ-ସ୍ୱାଦରେ ମତ୍ତ, ବିଭୋର । ଯୋଗୀର ଭାବ ।

ଆଉ, ଦାସ୍ୟ ହେଉଛି ବଳବାନର ଭାବ । ରାମଙ୍କ କାମ କରୁଛି ହନୁମାନ । ଦେହରେ ଶତ ସିଂହର ବଳ । କିଏ ଆଉ ଏତେ ଖୋଜା ଖୋଜି କରୁଛି ! ପୂରା ଗନ୍ଧମାର୍ଦ୍ଦନ ଟା ଟେକି ନେଇ ଚାଲି ଆସିଲା । ଦ୍ୱାରକାରେ ପହଞ୍ଚି ହନୁମାନ କହିଲା, 'ସୀତା ରାମଙ୍କୁ ଦେଖିବି ।' ଶ୍ରୀକୃଷ୍ଣ କହିଲେ, ଏଠି ସୀତା ନାହାନ୍ତି । ସେ କଥା ମୁଁ ଜାଣେନା । ତୁମେ ଯେତେବେଳେ ଅଛ, ସୀତା ବି ଅଛନ୍ତି । ଉପାୟ ନ ପାଇ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ କହିଲେ, 'ତୁମେ ସୀତା ହୋଇ ପାଖରେ ବସ । ନ ହେଲେ ହନୁମାନ ଛାଡ଼ିବନାହିଁ ।' ପୁଣି ସୀତାଙ୍କ ପାତାଳ-ପ୍ରବେଶ ସମୟରେ ସେହି ହନୁମାନ ତ ରାମଙ୍କୁ ମାରେ କି ନ-ମାରେ !

ଧନମାନ, ଦେହସୁଖ - କିଛି ସେ ଚାହେଁ ନା, କେବଳ ଚାହେଁ ଈଶ୍ୱରଙ୍କୁ । ସ୍ଫଟିକ-ସ୍ତମ୍ଭରୁ ବ୍ରହ୍ମାସ୍ତ୍ର ନେଇ ପଳେଇ ଆସୁଥିଲା, ମନ୍ଦୋଦରୀ ନାନା ପ୍ରକାର ଫଳ ଆଣି ତାକୁ ଲୋଭ ଦେଖେଇଲେ । ଭାବିଥିଲେ, ହୁଏତ ଫଳ ଲୋଭରେ ବ୍ରହ୍ମାସ୍ତ୍ରଟି ତଳେ ପକେଇ ଦେବ । କିନ୍ତୁ

ହନୁମାନ କ'ଣ ଭୁଲିବା ପିଲା ? କହିଲା, ଶ୍ରୀରାମ ମୋର କଳ୍ପତରୁ । ମୋତେ କଅଣ ଫଳ ଅଭାବ ହୋଇଛି ? ଲଙ୍କା ଜୟ କରି ସାରି ଅଯୋଧ୍ୟାକୁ ଫେରି ଆସିଛନ୍ତି ରାମ ସୀତା । କେତେ ମିଳନ-ଉତ୍ସବ, କେତେ ଆନନ୍ଦ-କୋଳାହଳ । ପରିତ୍ୟକ୍ତା ଭାବରେ ଗୋଟାଏ କୋଣରେ ପଡ଼ି ରହିଛନ୍ତି କୈକେୟୀ । କାହାନ୍ତି ମୋ କୈକେୟୀ-ମା, କେଉଁଠି ଅଛନ୍ତି ? ହନୁମାନ ଆସି ତାଙ୍କୁ ପ୍ରଣାମ କଲା । ଭାଗ୍ୟକୁ ତୁମେ ରାମଙ୍କୁ ବଣକୁ ପଠାଇଥିଲ । ପଠାଇଥିଲ ବୋଲି ସିନା ବନର ମଣିଷ ହୋଇ ପାଇ ପାରିଲ ମୋ ମନର ମଣିଷକୁ !

ଈଶ୍ୱର-ଆନନ୍ଦରେ ମଗ୍ନ ହୋଇଗଲେ ଭକ୍ତର ଆଉ କୌଣସି ହିସାବ ରହିପାରେ ନା । କିଏ ଜଣେ ଆସି ହନୁମାନଙ୍କୁ ପଚାରିଲା, ଆଜି କି ତିଥି ? ହନୁମାନ ଉତ୍ତର ଦେଲେ, ତିଥି-ବାରର ହିସାବ କିଏ ରଖୁଛି ? ରାମ ଛଡ଼ା ଆଉ କିଛି ମୋତେ ଜଣା ନାହିଁ ।

ଆଉ ସଖ୍ୟ-ଭାବ କେଉଁ ଭଳି, ଜାଣ ? ଆସ, ଭାଇ, ଆସ । ବସ୍, ଏଇଠି ମୋ ପାଖରେ । ବହୁତ ଦୂରରୁ ଆସୁଛ ନିଶ୍ଚୟ, ଝାଳ ବହି ପଡୁଛି; ବସ, ମୁଁ ତୁମକୁ ବିଞ୍ଚି ଦେଉଛି । ଗୋଡ଼ ହାତ ଧୁଅ, ଖିଆପିଆ କର । ଗପ-ସପ ହେବା ।

ବାତ୍ସଲ୍ୟ- ଭାବରେ ଯଶୋଦା ହାତରେ ସର-ଲବଣୀ ଧରି ବୁଲୁଥିଲେ । କେତେବେଳେ ମୋ ଗୋପାଳ ଖାଇବାକୁ ଚାହିଁବ । କହୁଥିଲେ, ଗୋପାଳ କଥା ମୁଁ ନ ବୁଝିଲେ ଆଉ ବୁଝିବ କିଏ ? ତା' ଦେହ ଖରାପ ହୋଇଯିବ । ଉଦ୍ଧବ କହିଲେ, 'ମା, ତୁମ କୃଷ୍ଣ ସାକ୍ଷାତ-ଭଗବାନ, ଜଗତ ଚିନ୍ତାମଣି ।' ଯଶୋଦା କହିଲେ, 'ଉଦ୍ଧବ, ତୁମ ଚିନ୍ତାମଣିକୁ ମୁଁ ଚିହ୍ନେ ନା, ମୋ ଗୋପାଳ କେମିତି ଅଛି କୁହ ।'

କାହା ପାଇଁ କଅଣ ମୁଁ ଜାଣେ ନା, ମୋ ପାଇଁ କେବଳ ଗୋପାଳ ।

ମଧୁର ଭାବ ହେଉଛି ଶ୍ରୀମତୀଙ୍କ ଭାବ, ଗୋପିନୀମାନଙ୍କର ଭାବ । ଆକାଶରେ କଳା ମେଘ ଦେଖି ପକେଇଲେ, କିମ୍ବା ମୟୂର-କଣ୍ଠ ଉପରେ ନଜର ପଡ଼ିଗଲା । ସଂଗେ ସଂଗେ କୃଷ୍ଣମୟ ହୋଇଗଲେ । ଚୈତନ୍ୟ ଦେବ ମେଢ଼-ଗାଁ ଭିତର ଦେଇ ଯାଉଥିଲେ, ଶୁଣିଲେ ଏ ଗାଁର ମାଟିରେ ଭଲ ମୃଦଙ୍ଗ ହୁଏ । ଶୁଣିବା ମାତ୍ରେ ଭାବାବେଶରେ ସଂଜ୍ଞାହୀନ । ଏ ଭାବ ହେଉଛି ମହାଭାବ ।

କେତେ ନିଷ୍ଠା ଗୋପିନୀମାନଙ୍କର ! ମଥୁରାରେ ପହଞ୍ଚି ଦ୍ୱାରପାଳକୁ ବହୁତ କାକୁତି ମିନତି କରି ସଭାଗୃହକୁ ପଶିଲେ । କିନ୍ତୁ, କୃଷ୍ଣ କାହାନ୍ତି ? ଦ୍ୱାରପାଳ ସେମାନଙ୍କୁ କୃଷ୍ଣଙ୍କ ପାଖକୁ ନେଇଗଲା । କୃଷ୍ଣ ମଥାରେ ମୁକୁଟ ପିନ୍ଧି ବସିଛନ୍ତି । ଗୋପିନୀମାନେ ମୁହଁ ତଳକୁ କରି ଛିଡ଼ା ହୋଇ ରହିଲେ । ଇଏ କିଏ ? ଏ-ଲୋକଟି ସହିତ କଥା କହି ଆମେ କ'ଣ ଶେଷକୁ ଦୋଚାରୁଣୀ ହେବୁ ? ଚାଲ, ଫେରିଯିବା । ଆମର ସେହି ପୀତଧଡ଼ା ମୋହନଚୂଡ଼ା କୃଷ୍ଣଙ୍କୁ ଦରକାର । ସେ କାହାନ୍ତି ? ଆମେ ତ ତାଙ୍କୁ ଭେଟିବାକୁ ଆସିଥିଲୁଁ ।

ଦକ୍ଷିଣେଶ୍ୱରକୁ ଅନେକ ସମୟରେ ଗୋଟାଏ ପାଗଳୀ ଆସୁଥିଲା । ନାଁ କଅଣ, ଘର କେଉଁଠି, କେହି ଜାଣନ୍ତି ନାହିଁ । ଆସି ପହଞ୍ଚିଲେ ତା'ର ଏକା ଜିଦ୍, ସେ ଗୀତ ଗାଇବ, ଠାକୁର ଶୁଣିବେ । ବାଧା ଦେଲେ ପାଟି-ଗୋଳ କରେ । ଭକ୍ତମାନେ ସେଥିପାଇଁ ଖୁବ୍ ସଂତ୍ରସ୍ତ ହୋଇ ରହନ୍ତି

ସେତେବେଳେ । ଦିନେ ଆସି ଠାକୁରଙ୍କ ପାଖରେ ବସି ପଡ଼ିଲା, ବସି କାନ୍ଦିବା ଆରମ୍ଭ କରିଦେଲା । ଠାକୁର ପଚାରିଲେ, 'କାନ୍ଦୁଛୁ କାହିଁକି ?'

ପାଗଳୀ କହିଲା, 'ମୁଣ୍ଡ ବିନ୍ଧୁଛି ।' କହି ପାଖରେ ସେଇଭଳି ବସି ରହିଲା ।

ଆଉ ଦିନେ ଠାକୁର ଖାଇ ବସିଛନ୍ତି, ହଠାତ୍ କୁଆଡ଼ୁ ଆସି ପାଗଳୀ ପହଞ୍ଚିଗଲା । ପାଖକୁ ଯାଇ କହିଲା, 'ଦୟା କଲ ନାହିଁ ? ମନରେ ଟିକିଏ ସ୍ଥାନ ଦେଲ ନାହିଁ ? କାହିଁକି ? କି ଦୋଷ କଲି ?'

ଠାକୁର ପଚାରିଲେ, 'ତୋର କେଉଁ ଭାବ ?'

ପାଗଳୀ ଉତ୍ତର ଦେଲା, 'ମଧୁର ଭାବ ।'

'ଆରେ, ମୋର ପରା ସନ୍ତାନ ଭାବ ! ସବୁ ସ୍ତ୍ରୀ ଲୋକ ମୋ ମା ।'

'ସେ କଥା ମୁଁ ଜାଣେ ନା । ସେ ଖବରରୁ ମୋତେ କଅଣ ମିଳିବ ?'

ଠାକୁର ଦିନେ କହୁଥିଲେ ସେଇ କଥା, ପାଖରେ ବସି ଶୁଣୁଥିଲେ ଗିରୀଶ ଘୋଷ* । କହିଲେ, 'ପାଗଳୀ ଧନ୍ୟ । ପାଗଳ ହେଇ ଥାଉ, ଅଥବା ଭକ୍ତଙ୍କ ହାତରୁ ପାହାର-ଖାଉଥାଉ, ସବୁବେଳେ ତ ଆପଣଙ୍କୁ ଚିନ୍ତା କରୁଛି । ଆପଣଙ୍କୁ ଚିନ୍ତା କରି - ମୁଁ ନିଜେ କଅଣ ଥିଲି, ଆଉ, କଅଣ ହେଲି !'

ଗଦାଧରର ବର୍ତ୍ତମାନ ଦାସ୍ୟ ଭାବ । ହନୁମାନର ଭାବ । ରଘୁବୀରଙ୍କ ସେବକ - ମହାବୀର ।

ଅହଂ ତ ସହଜରେ ଯିବ ନାହିଁ । ତେଣୁ କହେ, ଅଛି ତ ଥାଉ । ପଡ଼ି ଥାଉ ଦାସ-ମୁଁ ହୋଇ । ତୁମେ ପ୍ରଭୁ, ମୁଁ ତୁମ ଦାସ । ତୁମେ ସେବ୍ୟ, ମୁଁ ସେବକ । ତୁମେ ରାଜାଧିରାଜ, ମୁଁ ଅକିଞ୍ଚନ ।

ହନୁମାନଙ୍କୁ ଧ୍ୟାନ କରୁ କରୁ ହନୁମାନ ପରି ହୋଇଗଲା ଗଦାଧର । ପିନ୍ଧା ଲୁଗାଟାକୁ ଅଣ୍ଟାରେ ଗୁଡ଼େଇ ଦେଇ ପଛ ଆଡ଼କୁ ଲାଙ୍ଗୁଳ କରି ଝୁଲେଇ ଦେଇଛି । ଚାଲୁ ନାହିଁ, ମର୍କଟ ପରି ଡିଆଁ ମାରି ମାରି ଚାଲୁଛି । ଅଧ ବେଳେ ଚଢ଼ି ବସିଥାଏ ଗଛ ଉପରେ । ଅଛଡ଼ା ଅକଟା ଫଳ ଗୋଟା ଗୋଟା ଖାଏ । ଆଉ ତୁଣ୍ଡରେ ଶବ୍ଦ କରେ, 'ରଘୁବୀର ! ରଘୁବୀର !'

ଏଇ ହନୁମାନ ସାଧନା ସମୟରେ ମେରୁଦଣ୍ଡର ଶେଷ ଭାଗ ତଳ ଆଡ଼କୁ ପ୍ରାୟ ଏକ ଇଞ୍ଚ ମାପର ବଢ଼ି ଯାଇଥିଲା । ହନୁମାନ-ଭାବ କଟି ଗଲା ପରେ ବଢ଼ିଥିବା ଅଂଶଟି ଆପେ ଆପେ କମିଯାଇ ପୁଣି ସ୍ୱାଭାବିକ ହୋଇଯାଇଥିଲା ।

ଦିନେ ପଞ୍ଚବଟୀରେ ଉଦାସ ମନରେ ଚୁପ୍ ଚାପ୍ ବସିଛି ଗଦାଧର । ହଠାତ୍ ସ୍ଥାନଟି ଆଲୁଅରେ ଝଲମଲ କରି ଉଠିଲା । ଚାହିଁ ଦେଖିଲା ବେଳକୁ ଜଣେ ଅପୂର୍ବ ସୁନ୍ଦରୀ ସ୍ତ୍ରୀ-ଲୋକ

---

* ଗିରୀଶ ଚନ୍ଦ୍ର ଘୋଷ - ଊନବିଂଶ ଶତାବ୍ଦୀର ଶ୍ରେଷ୍ଠ ବଙ୍ଗୀୟ ନାଟ୍ୟକାର, ଅଭିନେତା ଓ ମଞ୍ଚ-ନିର୍ଦ୍ଦେଶକ । ଜୀବନର ପ୍ରାୟ ମଧ୍ୟାହ୍ନ ପର୍ଯ୍ୟନ୍ତ ସେ ଅତ୍ୟନ୍ତ କଳୁଷିତ ଜୀବନ ଯାପନ କରିଥିଲେ । ପରେ ଶ୍ରୀ ରାମକୃଷ୍ଣଙ୍କ ସଂସ୍ପର୍ଶରେ ଆସି ତାଙ୍କର ମାନସିକ ପରିବର୍ତ୍ତନ ହୋଇଥିଲା ।

ଆଗରେ ଠିଆ ହୋଇଛନ୍ତି । ମୁଖ-ମଣ୍ଡଳରେ ଅପରୂପ ଲାବଣ୍ୟ; ବେଦନା କରୁଣା କ୍ଷମା ଓ ଧୃତିର ସ୍ନିଗ୍ଧତା । କିଏ ତୁମେ ? ଉତ୍ତର ଦିଗରୁ ଆସୁଛନ୍ତି ଦକ୍ଷିଣକୁ, ଗଦାଧର ଆଡ଼କୁ । ଚାହାଣିରେ ପ୍ରସନ୍ନ ଦାକ୍ଷିଣ୍ୟ । କିଏ ତୁମେ !

ହଠାତ୍, କେଉଁଠି ଥିଲା ଗୋଟାଏ ହନୁ-ମାଙ୍କଡ଼, ହୁପ୍ କରି ସେଇଠି ତଳକୁ ଡେଇଁ ପଡ଼ିଲା ।

ଚିହ୍ନିବାକୁ ଆଉ ବିଳମ୍ବ ହେଲା ନାହିଁ । ରାମମୟଜୀବିତା ସୀତା ଦେବୀ ।

'ମା ! 'ମା ! କହି ପାଦରେ ଲୋଟିପଡ଼ିବାକୁ ଯାଉଛି ଗଦାଧର, ଚକ୍ଷୁର ପଲକରେ ସେହି ମୂର୍ତ୍ତି ପ୍ରବେଶ କଲା ତା' ଦେହ ଭିତରକୁ । ଗଦାଧର କଚାଡ଼ି ହୋଇ ତଳେ ପଡ଼ିଗଲା ।

ପଞ୍ଚବଟୀ ପାଖରେ ହଂସ ପୋଖରୀ । ପୋଖରୀରୁ ପଙ୍କ ଓଝାଳିବା ସମୟରେ ମାଟି ପକା ହୋଇଥିଲା ଏଇ ପଞ୍ଚବଟୀ ଭିତରେ । ଫଳରେ ଅଁଳା ଗଛଟି ଆଉ ରହିପାରିଲା ନାହିଁ, ମରିଗଲା ।

ଆରେ ହୃଦୁଦା, ମୋ ପାଇଁ ଗୋଟାଏ ବସିବା ଜାଗା ଠିକ୍ କର ।

ଗଦାଧର ନିଜ ହାତରେ ଆଣି ଲଗେଇଲା ଅଶ୍ୱତ୍‌ଥ-ଚାରା । ହୃଦୟ ଆଣିଲା ବର, ବେଲ, ଅଶୋକ ଆଉ ଅଁଳା । ସବୁ ଗଛ ଲଗା ହେଲା । ତୁଳସୀ ଆଉ ଅପରାଜିତା ଗଛ ଲଗେଇ ଚାରି ପାଖରେ ବାଡ଼ ପରି କରି ଦେଲା । ଗଛସବୁ ବଢ଼ି ଯାଇ ଦିନ କେତେଟା ଭିତରେ ଘନ ଜଙ୍ଗଲ ପରି ହୋଇଗଲା । ଭିତରେ ବସି ଧ୍ୟାନ କଲେ ବାହାରୁ କାହାରି ନଜର ପଡ଼ିବ ନାହିଁ ।

ହୃଦୁଦା ରେ, ସ୍‌ବୁ ଖାଇଗଲେ ରେ ଗୋରୁ-ଛେଳି । ନୂଆ ଚାରା ଗଛଗୁଡ଼ାକ ବି ଖାଇ ଯାଉଛନ୍ତି । କାଠ-ବାଉଁଶ ଦେଇ ଶକ୍ତ କରି ବାଡ଼ ବସା । -କାଠ ବାଉଁଶ କାହିଁ ? ଦଉଡ଼ି-ପିରିଖ ବା କାହିଁ ? ହୃଦୟ ଚିନ୍ତାରେ ପଡ଼ିଲା ।

କଅଣ କେମିତି ହେଲା କେହି ଜାଣି ପାରିଲେ ନାହିଁ । କାଠ-ବାଉଁଶ ଦଉଡ଼ି ପିରିଖ ସବୁ ଏକାଠି ବନ୍ଧା ହୋଇ ଭେଳା ପରି ଗଙ୍ଗାରେ ଭାସି ଭାସି ଆସି ମନ୍ଦିରର ଘାଟ ପାଖରେ ଲାଗିଲା ।

ଯିଏ ପ୍ରକୃତ ରଜା ପୁଅ ତା' ପାଇଁ ଭତ୍ତା ଖଞ୍ଜା ହୋଇ ରହିଥାଏ ।

ତେବେ ମୁହଁରେ ରାମ ନାମ କହୁଥିବୁ ଏଣେ ହାତରେ ଲୁଗା ସମ୍ଭାଳୁଥିବୁ, ସେମିତି କଲେ ହେବ ନାହିଁ । ଜାଣିଛୁ ସେଇ ଗପଟା ?

ଚାରିଆଡ଼େ ମେଘ ଢାଙ୍କି ଅନ୍ଧାର କରି ରହିଛି । ମୂଷଳ ଧାରାରେ ବର୍ଷା ହେଉଛି, ବାଟ ଘାଟ ଦିଶୁ ନାହିଁ । ବୁଢ଼ୀ ଗଉଡୁଣୀ ନଈ ପାର ହୋଇ ଦୁଧ ଦେବାକୁ ଯାଏ । ସେଦିନ ବର୍ଷା ଯୋଗୁଁ ନଈ ଘାଟରେ ଡଙ୍ଗା ନଥିଲା । କଅଣ କରିବ ? କେମିତି ଯିବ ? ହଠାତ୍ ରାମ-ନାମ ମନେ ପଡ଼ିଗଲା । ଭାବିଲା ରାମ ନାମ ତୁଣ୍ଡରେ ଧରି ଲୋକେ ସଂସାର-ସମୁଦ୍ର ପାର ହୋଇ ଯାଉଛନ୍ତି, ମୁଁ ଏଇ ସାମାନ୍ୟ ନଈଟା ପାର ହୋଇ ପାରିବି ନାହିଁ ? ନିଶ୍ଚୟ ପାରିବି । ରାମ-ନାମ କହି କହି ପଶିଗଲା ନଈ ଭିତରକୁ, ଅକ୍ଳେଶରେ ପାର ହୋଇ ଚାଲିଗଲା । ଯାହାଙ୍କ ଘରେ ଦୁଧ ଦିଏ ସେ ଜଣେ ବଡ଼ ପଣ୍ଡିତ । ପଣ୍ଡିତେ ଆଶ୍ଚର୍ଯ୍ୟ ହୋଇଗଲେ । ଏ ଭଳି ଦୁର୍ଯୋଗରେ ବୁଢ଼ୀ ନଈ ପାର ହେଲା କେମିତି ! କାହିଁକି, ଠାକୁରେ, ରାମ-ରାମ କହି କହି ଚାଲି ଆସିଲି । ନଈ ଏ ପାଖରେ

ପଣ୍ଡିତଙ୍କର କଅଣ ଗୋଟାଏ ଜରୁରୀ କାମ ଥିଲା । ଏଭଳି ବର୍ଷାରେ କେମିତି ଯିବେ ଚିନ୍ତାରେ ପଡ଼ି ଯାଇଥିଲେ । କହିଲେ, କଅଣ କହୁଛୁ ତୁ ? ରାମ-ରାମ କହି ନଈ ଭିତରେ ପଶି ଚାଲି ଆସିଲୁ ? ମୁଁ ବି ସେଇ ଭଳି ରାମ-ରାମ କହି ନଈ ପାର ହୋଇ ପାରିବି ? କାହିଁକି ପାରିବ ନାହିଁ ? ନିଶ୍ଚୟ ପାରିବ । ଦୁଇ ଜଣ ଯାକ ଆସି ପହଞ୍ଚିଲେ ନଈ ପାଖରେ । ବୁଢ଼ୀ ରାମ-ରାମ କହି ପଶିଲା ନଈ ଭିତରେ । ପଣ୍ଡିତେ ବି ରାମ-ରାମ କହି ପଶିଲେ ପାଣି ଭିତରେ । ମାତ୍ର ପାଣିକି ଓହ୍ଲେଇଲା ମାତ୍ରେ ହାତରେ ଲୁଗା ଟେକି ଧରିଲେ । ବୁଢ଼ୀ କହିଲା, ଠାକୁରେ, ରାମ ରାମ କହିବ, ପୁଣି ଦୁଇ ହାତରେ ଲୁଗାପଟା ସମ୍ଭାଳୁଥିବ ! ସେମିତି କଲେ ହେବ ନାହିଁ । ପଣ୍ଡିତେ ପଛରେ ପଡ଼ି ରହିଲେ, ବୁଢ଼ୀ ନିଶ୍ଚିନ୍ତ ମନରେ ନଈ ପାର ହୋଇ ଚାଲିଗଲା । ଯଦି ଧରିବୁ, ଏଇ ଭଳି ଜାବୁଡ଼ି ଧର । ବିଶ୍ୱାସ ଦରକାର । ସରଳ ବିଶ୍ୱାସ । ଅନ୍ଧ ବିଶ୍ୱାସ ।

ହାଜରା ଶିଆଣା-ପଣ ଦେଖେଇ କହିଲା : ଅନ୍ଧ ବିଶ୍ୱାସ ?

ହଁ, ଅନ୍ଧ ବିଶ୍ୱାସ ! ବିଶ୍ୱାସ ତ ପୂରାପୂରି ଅନ୍ଧ ! ବିଶ୍ୱାସର ଆଖି କାହିଁ ? ଛିଦ୍ର କାହିଁ ? ହୁଏ ତ ବିଶ୍ୱାସ, ନ ହେଲେ ଜ୍ଞାନ । ଜ୍ଞାନ ଦୁରୂହ, ବିଶ୍ୱାସ ସହଜ । ମା'ଙ୍କ ପାଖରେ କାନ୍ଦି କାନ୍ଦି କହ : ମା, ମୋତେ ଭକ୍ତି ଦେ, ବିଶ୍ୱାସ ଦେ ।

## ୧୪

ପାଗଳାମି ଦିନକୁ ଦିନ ବଢ଼ୁଛି ଗଦାଧରର ।

ମଥୁର ବାବୁ ମଧ୍ୟ ଚିନ୍ତିତ ହୋଇ ପଡ଼ିଲେ । ନିଶ୍ଚୟ କିଛି ସ୍ନାୟୁ-ବିକାର ଘଟିଛି । ଆଉ ସନ୍ଦେହ ନାହିଁ ।

କଲିକତାର ସବୁ ଠାରୁ ବଡ଼ କବିରାଜ ଗଙ୍ଗା ପ୍ରସାଦ ସେନ । ଖବର ଦେଇ ତାଙ୍କୁ ଡକେଇ ଆଣିଲେ ।

କାକସ୍ୟ ପରିବେଦନା । ଗଙ୍ଗା ପ୍ରସାଦ ଔଷଧ ଦେଲେ, ଫଳ କିଛି ହେଲା ନାହିଁ । ତଥାପି ଠାକୁର କହୁଥିଲେ, ଗଙ୍ଗା ପ୍ରସାଦ ହେଉଛନ୍ତି ସାକ୍ଷାତ ଧନ୍ୱନ୍ତରୀ । ଈଶ୍ୱରଙ୍କ ବିଭୂତି ନଥିଲେ କେହି କ'ଣ ଏତେ ବଡ଼ ବୈଦ୍ୟ ହୋଇପାରେ? ଯେଉଁଠାରେ ଗୁଣର ବିକାଶ ସେହିଠାରେ ହିଁ ଈଶ୍ୱରଙ୍କ ବିଭୂତି । ସେଇଠି ମୁଣ୍ଡ ନୁଆଁଇବୁ ।

'ଗଙ୍ଗା ପ୍ରସାଦ କହି ଯାଇଥିଲେ, ରାତିରେ ପାଣି ପିଇବ ନାହିଁ । ମୁଁ ସେ କଥାକୁ ବେଦ ବାକ୍ୟ ପରି ମାନି ନେଇଛି । ମୁଁ ଜାଣେ ସେ ସାକ୍ଷାତ ଧନ୍ୱନ୍ତରୀ ।'

ଧନ୍ୱନ୍ତରୀ ତ କିଛି କରି ପାରିଲେ ନାହିଁ, ଏଥର ନିଜକୁ ନିଜେ ସମ୍ଭାଳନ୍ତୁ । ନୀତି-ନିୟମ ଭିତରକୁ ଆଣନ୍ତୁ ଏଥର ନିଜକୁ । ଛାଡ଼ନ୍ତୁ ଏ ସବୁ ଖିଆଲିଆ ବୁଦ୍ଧି ।

'ଈଶ୍ୱର - ସ୍ୱୟଂ ଈଶ୍ୱର ମଧ୍ୟ ତାଙ୍କ ନିଜ ନିୟମ ମାନି ଚଳନ୍ତି ।' କହିଲେ ମଥୁର ବାବୁ । 'ନିଜ ନିୟମକୁ ଲଂଘନ କରିବାର ଶକ୍ତି ତାଙ୍କର ନିଜର ମଧ୍ୟ ନାହିଁ ।'

ଗଦାଧରର ମନକୁ ଟିକିଏ ଦବକ ଆସିଲା । କି ଭଳି କଥା ଇଏ ? ଯେଉଁ ଲୋକ ଆଇନ

ତିଆରି କରିଛି, ସେ ଇଚ୍ଛା କଲେ ତା' ଆଇନଟାକୁ ବଦଳେଇ ପାରିବ ନାହିଁ ? ସେ କ'ଣ ସ୍ୱାଧୀନ ନୁହେଁ ?

କେମିତି ହେବ ? ନିଜେ ନିୟମ କରି ନିଜେ ପୁଣି ସେଇ ନିୟମ ଲଂଘନ କଲେ ନିଜ ପାଖରେ କୈଫିୟତ କଅଣ ଦେବେ ?

ଭଲା କଥା ! ସବୁ ପରା ତାଙ୍କରି ଖେଳ ? ଭାଙ୍ଗିବା- ଗଢ଼ିବାର ଖେଳ । ତାଙ୍କ ପାଇଁ ପୁଣି ନିୟମ କଅଣ ? ସେ ସମସ୍ତ ନିୟମର ବାହାରେ ।

କୌଣସି ଯୁକ୍ତି ଗ୍ରହଣ କଲେ ନାହିଁ ମଥୁର ବାବୁ । କହିଲେ, 'ଲାଲ ଫୁଲ ଫୁଟୁଛି ଯେଉଁ ଗଛରେ ସେ ଗଛରେ ଲାଲ ଫୁଲ ହିଁ ଫୁଟିବ । ଧଳା ଫୁଲ ଫୁଟିବ ନାହିଁ । ଫୁଟିବ ? କାହିଁ, କେମିତି ଫୁଟିବ ଫୁଟୁ ଦେଖି, ଧଳା ଫୁଲ ।'

ଇଚ୍ଛାମୟଙ୍କ ଇଚ୍ଛା ହେଲେ ତାହା ବି ସମ୍ଭବ ହୋଇପାରିବ । ଯେ ଅଖିଳଲୋକନାଥ ତାଙ୍କ ହାତ ଗୋଡ଼ କ'ଣ ନିୟମରେ ବନ୍ଧା ? ସେ କ'ଣ ଖର୍ବ ନା ପଙ୍ଗୁ ?

ତହିଁ ଆର ଦିନ ସକାଳେ ଗଦାଧର ଯାଇଛି ମନ୍ଦିରର ବଗିଚାକୁ ଫୁଲ ତୋଳିବା ପାଇଁ । ଆଶ୍ଚର୍ଯ୍ୟ ଘଟଣାଟିଏ ଆଖିରେ ପଡ଼ିଲା । ବଗିଚାରେ ଥିଲା ଗୋଟାଏ ରକ୍ତମନ୍ଦାର ଗଛ । ସେଇ ଗଛର ଗୋଟାଏ ଡାଳରେ ଦୁଇଟି ଡେମ୍ଫରେ ଦୁଇଟି ଫୁଲ ଫୁଟିଛି - ଗୋଟିଏ ରକ୍ତ ପରି ଲାଲ, ଆଉ ଗୋଟିଏ ସଂପୂର୍ଣ୍ଣ ଧଳା ।

ଆନନ୍ଦରେ ଆତ୍ମହରା ହୋଇ ପଡ଼ିଲା ଗଦାଧର । ହାତ ବଢ଼େଇ ଡାଳଟା ଭାଙ୍ଗି ଆଣିଲା । ହାତରେ ଧରି ଧାଇଁଲା ମଥୁର ବାବୁଙ୍କ ପାଖକୁ । ଏଇ, ଦେଖ ! ଈଶ୍ୱର କ'ଣ ଅନ୍ଧ ନା ଅକ୍ଷମ ନା ଆବଦ୍ଧ ? କୃପାନିଧି କେବେହେଲେ କୃପଣ ହୋଇ ପାରନ୍ତି ?

ମଥୁର ବାବୁ ହାର ମାନିଲେ । ଚାହିଁ ଦେଖିଲେ, ଆଖି ଆଗରେ ଠିଆ ହୋଇଛନ୍ତି ତାଙ୍କ ଗୁରୁ । ଅନ୍ଧକାରରୁ ଆଲୋକକୁ ଯେ ନେଇ ଯାଆନ୍ତି ସେ ତ ନିଶ୍ଚୟ ଗୁରୁ । ଅନ୍ଧକାର ଦେଶକୁ ଯେ ଅଲୋକର ବାର୍ତ୍ତା ଆଣି ପାରନ୍ତି, ସେ ମଧ୍ୟ ଗୁରୁ ।

ଯଦି ଉତ୍ତାପ ଅଥବା ଆଲୋକ ପ୍ରୟୋଜନ, ତେବେ ଉଦ୍ଦୀପିତ ଆଲୋକର ହିଁ ଆଶ୍ରୟ ନେବାକୁ ପଡ଼ିବ । ଯେଉଁ ଆଧାରରେ ଜ୍ଞାନର ଜ୍ୟୋତି ଉଜ୍ଜ୍ୱଳ ଭାବରେ ଜ୍ୱଳମାନ, ସେହି ତ ଗୁରୁ । ଗଦାଧର ପ୍ରଜ୍ୱଳିତ ଅଗ୍ନି ।

କିନ୍ତୁ ଯାହା କୁହ ପଛକେ, ଟିକିଏ ପରୀକ୍ଷା କରି ଦେଖାଯାଉ ।

ସ୍ୱାସ୍ଥ୍ୟ ଭାଙ୍ଗି ପଡୁଛି ଗଦାଧରର; ଇନ୍ଦ୍ରିୟ ନିଗ୍ରହ ଏହାର କାରଣ ହୋଇପାରେ । ନିବୃତ୍ତିର କାଠିନ୍ୟରୁ କ୍ଷଣିକ ମୁକ୍ତି ପାଇଲେ ହୁଏତ ସେ ଟିକିଏ ସୁସ୍ଥ-ସ୍ୱସ୍ଥ ହୋଇପାରେ । କିନ୍ତୁ ପ୍ରସ୍ତାବଟା ସିଧା ସଳଖ ତା' ପାଖରେ ଉଠେଇଲେ ସେ ରୋକ୍‌ଠୋକ୍ ମନା କରିଦେବ । ଏଥିରେ କୌଣସି ଭୁଲ ନାହିଁ । ତେଣୁ ଗୋପନରେ ଜାଲ ବିଛାଇ ତାକୁ ବାନ୍ଧିବାର ଆୟୋଜନ କଲେ ମଥୁର ବାବୁ ।

ସହରରୁ ଅଣେଇଲେ ଦୁଇ ଜଣ ପତିତା ସ୍ତ୍ରୀଲୋକ । ଗୋପନରେ ସେମାନଙ୍କୁ ପଠାଇ ଦେଲେ ଗଦାଧରର ଘର ଭିତରକୁ ।

ଗଦାଧର ମୁଗ୍ଧ ନେତ୍ରରେ ଚାହିଁ ରହିଲା ସେମାନଙ୍କ ଆଡ଼କୁ । ସରଳ ଆନନ୍ଦରେ ଉଚ୍ଛ୍ୱସିତ

ହୋଇ ଉଠିଲା । କହିଲା, 'ମା ! ମା ଆସିଲ ?' କହି ସେମାନଙ୍କ ପାଦ ତଳେ ଲୋଟିଗଲା । ସ୍ତ୍ରୀଲୋକ ଦୁଇ ଜଣ ପଳାଇ ଆସିବାକୁ ବାଟ ପାଇଲେ ନାହିଁ ।

ଆଉ ଥରେ ପୁଣି ସେହି ଭଳି ଚେଷ୍ଟା କଲେ ମଥୁର ବାବୁ । ବୁଲିଯିବା ବାହାନାରେ ଗଦାଧରକୁ ସାଙ୍ଗରେ ନେଇ କଲିକତା ଗଲେ । ମାଛୁଆ ବଜାର ଷ୍ଟ୍ରିଟ୍‌ରେ ଯାଉଛନ୍ତି, ଅଟକିଲେ ଗୋଟିଏ ଘର ଆଗରେ । ଘରର ସଦର ଦୁଆର ପାଖରେ କେତେ ଜଣ ସ୍ତ୍ରୀ ଲୋକ ସୁନ୍ଦର ବେଶ-ଭୂଷା ହୋଇ ଠିଆ ହୋଇଛନ୍ତି । ସେଇ ଘର ଭିତରକୁ ପଶିଗଲେ ଗଦାଧରର ହାତ ଧରି । ବେଶ-ଭୂଷା ହୋଇଥିବା ସ୍ତ୍ରୀଲୋକମାନେ ବି ଆସିଲେ ଭିତରକୁ ତାଙ୍କ ପଛେ ପଛେ । ଗୋଟାଏ କୋଠରୀ ଭିତରେ ସେଇ ସ୍ତ୍ରୀ ଲୋକମାନଙ୍କ ମେଳରେ ଗଦାଧରକୁ ଛାଡ଼ି ଦେଇ କୌଶଳରେ ଖସି ଚାଲିଆସିଲେ । ଆସି ବାହାରେ ଛିଡ଼ା ହୋଇ ରହିଲେ । ଦେଖେଁ, କଅଣ କରୁଛି ।

ଆଉ ଗଦାଧର ?

''ସ୍ତ୍ରିୟଃ ସମସ୍ତାଃ ସକଳା ଜଗତ୍‌ସୁ - '' ସମସ୍ତ ସ୍ତ୍ରୀଲୋକଙ୍କ ମଧ୍ୟରେ ଅଛନ୍ତି ସେ, ଜଗଜ୍ଜନନୀ । ଗଦାଧରର ସେହି ବାରାଙ୍ଗନାମାନଙ୍କୁ ଉଦ୍ଦେଶ୍ୟ କରି ମାତୃସ୍ତବ ଆରମ୍ଭ କଲା । ଶିଶୁ ପରି ସହଜ, ସରଳ । ଲୋପ ପାଇଲା ତା'ର ବାହ୍ୟ ସଂଜ୍ଞା । ସ୍ତ୍ରୀଲୋକମାନେ ହତ-ଚକିତ ହୋଇ କୋଳାହଳ ଆରମ୍ଭ କରିଦେଲେ । କ୍ରନ୍ଦନର କୋଳାହଳ । ଆତ୍ମ-ତିରସ୍କାର । ପାଦ ତଳେ ପଡ଼ିଯାଇ କାତର କଣ୍ଠରେ କହିଲେ, 'ଆମକୁ କ୍ଷମା କର । ଆମେ ଅଭାଜନ, ଅକିଞ୍ଚନ -'

ଗଦାଧର ତୁଣ୍ଡରେ କେବଳ ମାତୃନାମ । ମା ହିଁ ଏଇ ସବୁ ରୂପ ହୋଇଛନ୍ତି । ସେ ଯେ ଭଳି ହୋଇଛନ୍ତି ରାଜେଶ୍ୱରୀ, ସେହି ଭଳି ପୁଣି ହୋଇଛନ୍ତି ପଣ୍ୟାଙ୍ଗନା । ସମସ୍ତଙ୍କ ଭିତରେ ସେହି ମା ।

ପାଟି ଗୋଳ ଶୁଣି ଭିତରକୁ ଅନାଇଲେ ମଥୁର ବାବୁ । ଦେଖିଲେ, ଗଦାଧର ବସିଛି, ଶମ-ଦମ-ଶୌଚ-ମୌନର ସୌମ୍ୟ ପ୍ରତିମୂର୍ତ୍ତି । ଆଗରୁ ଦିନେ ଯାହା ଦେଖିଥିଲେ ଅବିକଳ ସେହି ରୂପ । ଧୂମସ୍ପର୍ଶହୀନ ପ୍ରଜ୍ୱଳିତ ବହ୍ନି ।

ସ୍ତ୍ରୀଲୋକମାନେ ମଥୁର ବାବୁଙ୍କ ଉପରେ ଭୀଷଣ ଅସନ୍ତୁଷ୍ଟ ହେଲେ । କହିଲେ, 'ବାବାଙ୍କୁ ଆପଣ ଏଇ ଜାଗାକୁ ଆଣିଲେ ? ଏଇ ନର୍କ ଭିତରକୁ ? ଆଣଙ୍କର ଟିକିଏ କାଣ୍ଡଜ୍ଞାନ ନାହିଁ ?'

ଲଜ୍ଜାରେ ମ୍ଳାନ ହୋଇଗଲେ ମଥୁରବାବୁ । ମାତ୍ର ଗୁରୁ-ପ୍ରାପ୍ତିର ଗରିମାରେ ଅନ୍ତର ଭିତରେ ଲାଲ ହୋଇଗଲେ ।

ପାଣିହାଟିରେ ପ୍ରତି ବର୍ଷ ମହୋତ୍ସବ ହୁଏ । ଗଦାଧର ଯାଇଛି ସେଠିକି । ସେତେବେଳେ ତା'ର ବୟସ ବାଇଶ ବର୍ଷ । ସେଇଠି ପ୍ରଥମ ସାକ୍ଷାତ ବୈଷ୍ଣବ ଚରଣ ଗୋସ୍ୱାମୀଙ୍କ ସହିତ । ବୈଷ୍ଣବ ଚରଣ ଯେଉଁ ଭଳି ପଣ୍ଡିତ ସେହିଭଳି ସାଧକ । ଗଦାଧର ଠାକୁର-ଘରେ ବସିଥିଲା, ବୈଷ୍ଣବ ଚରଣଙ୍କ ଆଖି ପଡ଼ିଗଲା ତା' ଉପରେ । ସଂଗେ ସଂଗେ ଆନନ୍ଦରେ ବିଭୋର ହୋଇ ପଡ଼ିଲେ ବୈଷ୍ଣବ ଚରଣ । ଚିହ୍ନି ନେଲେ ମୁହୂର୍ତ୍ତକ ଭିତରେ । ଅଲୋକସୁନ୍ଦର ଦିବ୍ୟ ପୁରୁଷ ।

ସଂଗେ ସଂଗେ ପାଞ୍ଚଟି ଟଙ୍କା ବାହାର କରି ଭେଟି ଦେବାକୁ ଚାହିଁଲେ ଗଦାଧରକୁ । ମନର ଆନନ୍ଦକୁ ଜଣାଇବାର ବାଟ ଯେପରି ସେ ଖୋଜି ପାଉ ନାହାନ୍ତି । କହିଲେ, 'ନିଅ, ଆମ୍ବ କିଣି ଖାଇବ ।'

ନା, ନା । ଟଙ୍କାରେ କଅଣ ହେବ ? ଆମ୍ବ ନଖାଇଲେ ବା କଅଣ ହେବ ?

ବୈଷ୍ଣବ ଚରଣ ଛାଡ଼ିବା ଲୋକ ନୁହନ୍ତି । ହୃଦୟ ହାତରେ ଟଙ୍କା ଧରେଇ ଦେଇ କହିଲେ, 'ଆମ୍ବ କିଣି ଆଣି ଭୋଗ କରାଅ ।'

ତା' ପରେ ଗଦାଧରଙ୍କୁ ମଝିରେ ବସାଇ କୀର୍ତ୍ତନ ଆରମ୍ଭ କଲେ । ଚାହୁଁ ଚାହୁଁ ସମାଧି ଭିତରେ ବୁଡ଼ିଗଲା ଗଦାଧର ।

ସମାଧି-ଭଙ୍ଗ ପରେ ଭୋଗ-ସାମଗ୍ରୀ ତାକୁ ଖାଇବାକୁ ଦିଆଗଲା । କିନ୍ତୁ, ଆଶ୍ଚର୍ଯ୍ୟ କଥା, କୌଣସି ଜିନିଷ ତାହାର ଗଳା ଭିତର ଦେଇ ପଶିଲା ନାହିଁ ।

ଗଙ୍ଗା କୂଳରେ ବସିଛି ଗଦାଧର । ଗୋଟାଏ ହାତରେ ଟେଳାଏ ମାଟି, ଆଉ ଗୋଟାଏ ହାତରେ ଟଙ୍କା । ଦୁଇ ହାତ ନଚେଇ ମନେ ମନେ ଯେପରି ଓଜନ କଲୁଛି, କେଉଁଟା ଭାରି ! କେଉଁଟାର ଦାମ ବେଶୀ । ଟଙ୍କା ନା ମାଟି, ମାଟି ନା ଟଙ୍କା ! ଭାବୁ ଭାବୁ ମନକୁ ଧାରଣା ଆସିଲା ଦୁଇଟି ଯାକର ମୂଲ୍ୟ ସମାନ, ଦୁଇଟି ଯାକ ସମାନ ଅସାର । ମାଟି ଓ ଟଙ୍କା ଦୁଇଟି ଯାକ ଏକ ସଙ୍ଗରେ ଫିଙ୍ଗି ଦେଲା ଗଙ୍ଗା ଭିତରକୁ । ନିଃଶେଷ ଭାବରେ ନିର୍ମୁକ୍ତ ହୋଇଗଲା ।

ତାଙ୍କୁ ଯଦି ଥରେ ପାଏଁ, ତେତେ ସବୁ ପାଇଯିବି ।

'ସବୁ ପାଇଯିବି !' ଠାକୁର କହିଲେ: 'ଟଙ୍କା ମାଟି, ମାଟି ଟଙ୍କା । ସୁନା ମାଟି, ମାଟି ସୁନା ଏଇଆ କହି ଗଙ୍ଗାରେ ପକାଇ ଦେଲି । କିନ୍ତୁ ମନକୁ ଭୟ ଆସିଲା, ମା-ଲକ୍ଷ୍ମୀ ଯଦି ରାଗି ଯାଆନ୍ତି ? ଲକ୍ଷ୍ମୀଙ୍କ ଐଶ୍ୱର୍ଯ୍ୟକୁ ଅବଜ୍ଞା କଲି ! ଯଦି ପଡ଼ି ବନ୍ଦ କରି ଦିଅନ୍ତି ? ପୁଣି କହିଲି, ମା, ମୁଁ ଆଉ କିଛି ଚାହେଁ ନା, କେବଳ ତୁମକୁ ଚାହେଁ । ତୁମକୁ ପାଇଲେ ସବୁ ପାଇଯିବି ।'

ଭବନାଥ ଚାଟାର୍ଯୀ ପାଖରେ ବସିଥିଲେ । ହସି ହସି କହିଲେ, 'ଏଇଟା ହେଲା ବ୍ୟବସାୟୀ ବୁଦ୍ଧି ।' ଠାକୁର ମଧ୍ୟ ହସିଲେ । କହିଲେ, 'ହଁ ଅବଶ୍ୟ ବ୍ୟବସାୟୀ ବୁଦ୍ଧି । ତେବେ ଈଶ୍ୱରାନନ୍ଦ ପାଇଗଲା ପରେ ଆଉ କିଏ ପଚାରେ ବିଷୟାନନ୍ଦକୁ ବା ରମଣାନନ୍ଦକୁ ! ଭକ୍ତ ଭଗବାନଙ୍କୁ ତପସ୍ୟା କରୁଥିଲା । ପ୍ରସନ୍ନ ହୋଇ ଭଗବାନ ଦେଖା ଦେଲେ । କହିଲେ, 'ବର ମାଗ ।' ଭକ୍ତ କହିଲା, 'ବର ଦିଅ ଯେପରି ନାତି ସହିତ ବସି ସୁନା-ଥାଳିରେ ଭାତ ଖାଇବି ।' ବ୍ୟବସାୟୀ ବୁଦ୍ଧି ଥିଲା ଭକ୍ତର । ଗୋଟାଏ ବରରେ କେତେ ଜିନିଷ ନେଇଗଲା ? ଐଶ୍ୱର୍ଯ୍ୟ ହେଲା, ପୁଅ-ଝିଅ ହେଲେ, ନାତି ହେଲା, ଆୟୁ ମଧ୍ୟ ପାଇଲା ଯଥେଷ୍ଟ ଦୀର୍ଘ ।

ସେହିଭଳି, ଏପରି ବସ୍ତୁର ସନ୍ଧାନ କର ଯାହା ଚରମ, ଯାହା ଚୂଡ଼ାନ୍ତ, ଯାହାର ଆଉ ପରତର ନାହିଁ ।

ବଡ଼ ଲୋକ ଘରର ପିଲା ନାରାୟଣ । ଅଳ୍ପ ବୟସ, ଛାତ୍ର, କିନ୍ତୁ ଭଗବାନଙ୍କ ଠାରେ ଅର୍ପିତଚିତ୍ତ । ଲୁଚି ଲୁଚି ଦକ୍ଷିଣେଶ୍ୱରକୁ ଆସେ । ଦକ୍ଷିଣେଶ୍ୱର ଆସିଛି ବୋଲି ଜାଣିଲେ ଅଭିଭାବକମାନେ ମାରନ୍ତି । ତଥାପି ନ ଆସି ରହିପାରେ ନାହିଁ । ଠାକୁରଙ୍କ କୋଳ ନିକଟରେ ତା'ର ସ୍ଥାନ ।

ମହେନ୍ଦ୍ର ଗୁପ୍ତଙ୍କୁ ଲକ୍ଷ୍ୟ କରି କହିଲେ ଠାକୁର, 'ମାଷ୍ଟର, ଗୋଟାଏ ଟଙ୍କା ଦେବ ?'

'କାହାକୁ ?'

'ନାରାୟଣକୁ । ... କଅଣ ଦବ, ନା କାଳୀଙ୍କୁ କହିବି ?'

'ହଁ ଆଜ୍ଞା, ଦେବି ।'

ଈଶ୍ୱରଙ୍କ ପ୍ରତି ଯେଉଁମାନଙ୍କର ଅନୁରାଗ ଅଛି ସେମାନଙ୍କୁ ଦେବା ଭଲ । ତାଙ୍କୁ ଦେଲେ ଟଙ୍କାର ସଦ୍‌ବ୍ୟବହାର ହୁଏ । ସବୁ ଟଙ୍କା ଆଣି କେବଳ ନିଜର ଘର-ସଂସାର ପାଇଁ ଖରଚ କଲେ ଲାଭ କଅଣ ?'

ଅଧର ଚନ୍ଦ୍ର ସେନ ଡେପୁଟି ମାଜିଷ୍ଟ୍ରେଟ୍ । ଦରମା ତିନି ଶହ ଟଙ୍କା । କଲିକତା ମିଉନିସିପାଲିଟିର ଭାଇସ୍-ଚେଆରମ୍ୟାନ୍ ହେବା ପାଇଁ ଦରଖାସ୍ତ କରିଛନ୍ତି । ବେତନ ହେବ ହଜାରେ ଟଙ୍କା । ଅନେକ ରକମ ଚେଷ୍ଟା କରୁଛନ୍ତି ଚାକିରିଟା ଯେମିତି ମିଳିଯିବ । ସୁପାରିଶ-ପତ୍ର ସାର୍ଟିଫିକେଟ୍ ବି ଯୋଗାଡ଼ କରିଛନ୍ତି ବହୁତ ଗୁଡ଼ାଏ ।

ତଥାପି ଲାଗୁ ନାହିଁ ହୋଇପାରିଲା ଭଳି । ପ୍ରତାପ ହାଜରା ଆସି ଠାକୁରଙ୍କୁ କହିଲା, 'ଅଧରର କାମଟା କେମିତି ହୋଇଯିବ, ତୁମେ ଟିକିଏ ମା'ଙ୍କୁ କୁହ ।'

ଅଧର ନିଜେ ବି କହିଲେ, 'ଥରେ ଦୟା କରି କହନ୍ତୁ ।'

ଠାକୁର ଅନୁରୋଧ ରଖିଲେ । ଥରେ, ମାତ୍ର ଥରେ ଖୁବ୍ ଅଳ୍ପରେ କହିଲେ, 'ମା, ଅଧର ତୁମ ପାଖକୁ ଯିବା ଆସିବା କରୁଛି । ତା' କାମଟା ଯଦି ହେବ ତ ହୋଇଯାଉ ।' ଏତକ କହିଦେଇ ସଙ୍ଗେ ସଙ୍ଗେ ପୁଣି କହିଲେ, 'କେଡ଼େ ହୀନ ବୁଦ୍ଧି ମା, ଲୋକଟାର ! ଜ୍ଞାନ ଭକ୍ତି ଏ ସବୁ କିଛି ନ ମାଗି ତୁମକୁ ସେ ମାଗୁଛି ଚାକିରି !'

ଗଙ୍ଗାରେ ଟଙ୍କା ପକେଇ ଦେଇ ସାରିବା ପରେ ସଂପୂର୍ଣ୍ଣ ଶୂନ୍ୟ ହୋଇଗଲା ଗଦାଧର । 'ସମଲୋଷ୍ଟ୍ରଶ୍ମକାଞ୍ଚନ' ହୋଇଗଲା । ତଥାପି ସନ୍ଦେହ, କାଳେ ଆହୁରି କିଛି ଅଭିମାନ ରହିଥିବ । ମନ ଭିତରେ । କାଙ୍ଗାଳ-ଭୋଜନ ହୋଇଗଲା ପରେ ସେମାନଙ୍କ ଅଇଁଠା ପତ୍ର ନିଜ ହାତରେ ଗୋଟାଇ ମୁଣ୍ଡରେ ନେଇ ପକାଇଲା ବାହାରେ । ହାତରେ ଝାଡୁ ଧରି ନିଜେ ପରିଷ୍କାର କଲା ଖାଇବା-ଜାଗା । ଯେଉଁ କାମ ମେହେନ୍ତରର, ସେଇ କାମ କଲା ସ୍ୱଚ୍ଛନ୍ଦ ମନରେ ।କେବଳ କ'ଣ ସେତିକି ? କାଙ୍ଗାଳମାନେ ଖାଇଥିବା ପତରରେ ଯେଉଁ ଅଇଁଠା ଟିକେ' ଅଧେ ଲାଗିଥିଲା ତାକୁ ଆଣି ଖାଇଲା ପ୍ରସାଦ ରୂପେ । ସେତିକି ? - ଜିଭରେ ଆଣି ଲଗାଇଲା ଚନ୍ଦନ ଓ ବିଷ୍ଠା ! ସର୍ବତ୍ର ବ୍ରହ୍ମସ୍ୱାଦ !

ସବୁ ସମୟରେ ଭାବାବେଶରେ ବିଭୋର । ପୂଜା-ସେବାର ନୀତି-ନିୟମ ତ ଦୂରର କଥା, ବେଳ କାଳର ବି ଠିକ୍-ଠିକଣା ରହିଲା ନାହିଁ । ପୂଜା ହୁଏତ ଆଦୌ ହୋଇନାହିଁ, ଭୋଗ ଲଗେଇ ଦେଲା । ପୂଜା ପାଇଁ ଫୁଲ ଚନ୍ଦନ ସଜଡ଼ା ହୋଇ ରହିଛି,ଦେବୀଙ୍କୁ ସଜେଇବ କଅଣ, ଫୁଲ ଚନ୍ଦନରେ ନିଜକୁ ନିଜେ ସଜେଇ ବସିଲା । ବେଳେ ଗଡ଼ି ଯାଉଛି, ଧ୍ୟାନ ଭାଙ୍ଗୁ ନାହିଁ । ଧୀରେ ଧୀରେ ଯେପରି କର୍ମତ୍ୟାଗ ହୋଇ ଯାଉଛି ଗଦାଧରର । ଆସନ୍ନପ୍ରସବା ଗର୍ଭିଣୀ ନାରୀ ପରି ।

ଦିନେ ଭାବାବେଶରେ ମଥୁର ବାବୁଙ୍କୁ କହିଲା ଗଦାଧର, 'ଆଜି ଠାରୁ ହୃଦୁଦା ପୂଜା କରିବ ।'

ମଥୁର ବାବୁଙ୍କ ସତେ ଅବା ଦୈବାଦେଶ ମିଳିଗଲା । ପୂଜା ଆସନରେ ବସିଲା ହୃଦୟ ।

ଗଦାଧରର ଛୁଟି ! ଛୁଟି, ଅର୍ଥାତ୍ ମା'ଙ୍କ ପାଇଁ ନିରନ୍ତର ବ୍ୟାକୁଳତା । ମା'ଙ୍କ ପାଇଁ ଅବିରତ କ୍ରନ୍ଦନ !

ମା'ଙ୍କୁ ଦେଖିବାରେ ଟିକିଏ ବିଳମ୍ବ ହୋଇଗଲେ ପାଗଳଙ୍କ ପରି ଛାଟିପିଟି ହୁଏ ଗଦାଧର । କଚାଡ଼ି ହୋଇ ତଳେ ପଡ଼ିଯାଏ । କେଉଁଠି ପଡୁଛି, ନିଆଁରେ କି ପାଣିରେ,ସେ ଖିଆଲ ନଥାଏ । ନିଃଶ୍ୱାସ ବନ୍ଦ ହୋଇ ଆସିଲା ପରି ଲାଗେ । କଟା ହେଉଥିବା ଛେଳି ପରି ଗୋଡ଼ ହାତ ବାଡ଼େଇ ଛଟପଟ ହୁଏ । ସର୍ବାଙ୍ଗ କ୍ଷତ ବିକ୍ଷତ ହୋଇଯାଏ । ଭ୍ରୂକ୍ଷେପ ନାହିଁ ସେ ଆଡ଼କୁ । ତାକୁ ଜଣା ବି ପଡ଼େ ନାହିଁ, ଦେହ-ମୁଣ୍ଡର ଅବସ୍ଥା କଅଣ ହେଉଛି । ତଳେ ପଡ଼ି ମାଟିରେ ମୁହଁ ଘଷେ, କାନ୍ଦେ, ଚିତ୍କାର କରେ : ମା ! ମା ଗୋ !

ବାଟ-ଗଲା ଲୋକଙ୍କ ମନ ବି ତରଳିଯାଏ । କହି ପକାନ୍ତି : 'ଆହା, ବିଚରାର ଶୂଳ-ବେମାରି । ପେଟକୁ ମାରୁଛି ବୋଧହୁଏ !'

## ୧୫

ନୂଆ ଲୋକଟିଏ ଆସି ପହଞ୍ଚିଲା ଦକ୍ଷିଣେଶ୍ୱରରେ । କିଏ ଇଏ ?

ଗଦାଧରର କକା-ପୁଅ ଭାଇ, ରାମତାରକ ଚାଟାର୍ଜୀ । ଗଦାଧର ତା' ନାଁ ଦେଇଥିଲା ହଳଧାରୀ । ହୃଦୟ ଭଳି ଚାକିରି ଆଶାରେ ଆସିଛି । ତେବେ ହୃଦୟ ଭଳି ମୂର୍ଖ ନୁହେଁ । ଖୁବ୍ ବଡ଼ ପଣ୍ଡିତ । ଗୀତା, ଭାଗବତ, ବେଦାନ୍ତ, ଆଧ୍ୟାତ୍ମ ରାମାୟଣ ସବୁ ତା' ନଖ-ଦର୍ପଣରେ । ଅତି ଉଚ୍ଚକୋଟୀର ବୈଷ୍ଣବ ।

'ଯଦି କିଛି ଚାକିରି ବାକିରି ଦେଇ ପାରନ୍ତେ -' ହଳଧାରୀ ଭିତରେ ଲୁଚା ଛପା କିଛି ନାହିଁ । ସିଧାସଳଖ ଯାଇ ଜଣାଇଲା ମଥୁର ବାବୁଙ୍କ ଆଗରେ ।

ପରିଚୟ ପାଇ ମୁଗ୍ଧ ହେଲେ ମଥୁରବାବୁ । ଭାବିଲେ, ଠିକ୍ ଯେଉଁ ଭଳି ଚାହୁଁଥିଲି ସେହିଭଳି ପାଇଗଲି । ଗଦାଧର ତ ସବୁ ସମୟରେ ଈଶ୍ୱର-ନିଶାରେ ମାତାଲ ହୋଇ ରହୁଛି । ପୂଜା-ଫୂଜା ସବୁ କୁଆଡ଼େ ଗଲାଣି । କଅଣ କରୁଛି, କଅଣ ନକରୁଛି, ସିଏ ଜାଣେ, ତା' ମା ଜାଣନ୍ତି । 'ଭଲ ହେଲା।' ସହଜ ଭାବରେ କହିଲେ ମଥୁର ବାବୁ : 'ତୁମେ କାଳୀ ମନ୍ଦିରରେ ପୂଜାର ଦାୟିତ୍ୱ ନିଅ ।'

ପ୍ରଥମ ଶ୍ରେଣୀର ବୈଷ୍ଣବ, ସେ ପୁଣି ଶକ୍ତି ପୂଜାର ଦାୟିତ୍ୱ ନେବ ! ଦ୍ୱିଧା ବୋଧ କଲା ହଳଧାରୀ । ମାତ୍ର, ମୁହୂର୍ତ୍ତକ ପାଇଁ । ଆପତ୍ତି କଅଣ ? ଯାହା ଶକ୍ତି ତାହା ହିଁ ତ ମଧୁରତା । "ତ୍ୱଂ ବୈଷ୍ଣବୀ ଶକ୍ତିରନନ୍ତବୀର୍ଯ୍ୟା, ବିଶ୍ୱସ୍ୟ ବୀଜଂ ପରମାସି ମାୟା ।"

କେବଳ ସେତିକି ? ଆହୁରି ଶୁଣ -

"ଶଂଖଚକ୍ରଗଦାଶାର୍ଙ୍ଗଂଗୃହୀତ ପରମାୟୁଧେ,
ପ୍ରସୀଦ ବୈଷ୍ଣବୀ ରୂପେ ନାରାୟଣି ନମୋଽସ୍ତୁତେ ।"

ଅରାଜି ହେବାର କୌଣସି କାରଣ ନାହିଁ ।

କିନ୍ତୁ, ଗୋଟାଏ କଥା, ଗଙ୍ଗା କୂଳରେ ନିଜ ହାତରେ ରାନ୍ଧି ଖାଇବି ।

'କାହିଁକି ? ଗଦାଧର ନିଜେ ତ ଏବେ ମା'ଙ୍କ ପ୍ରସାଦ ଖାଉଛି । ତୁମର ଆଉ ଆପତ୍ତି କରିବାର କଅଣ ଅଛି ?' ପଚାରିଲେ ମଥୁରବାବୁ ।

ହସିଲା ହଳଧାରୀ । କାହା ସହିତ କାହାର ତୁଳନା ! ମନେ ପକାନ୍ତୁ, ପ୍ରଥମେ ପ୍ରଥମେ ଗଦାଧର ମଧ୍ୟ ଗଙ୍ଗାକୂଳରେ ସ୍ୱପାକରେ ଖାଉଥିଲା । ବର୍ତ୍ତମାନ ସେ ଉଠି ଆସିଛି ସାଧନାର ଉଚ୍ଚ ସ୍ତରକୁ । ବର୍ତ୍ତମାନ  ସେ ମନ କଲେ, ମନ୍ଦିରର ପ୍ରସାଦ କାହିଁକି, ନୀଚ ଜାତିର ବୁଲା ଭିକାରୀଙ୍କ ଅଇଁଠା ମଧ୍ୟ ଖାଇପାରେ । ସେ ସହି ପାରିବ, ସେ ବର୍ତ୍ତମାନ ସହିଷ୍ଣୁତାର ସମୁଦ୍ର । ମୋର କିନ୍ତୁ ଏତେଟା ଦେହରେ ଯିବ ନାହିଁ, ବରଂ ଯାହା ଟିକିଏ ନିଷ୍ଠା ଅଛି ସେତକ ବି ନଷ୍ଟ ହୋଇଯିବ ।

ତାହାର ଏହି ସ୍ପଷ୍ଟତାର ସାରଲ୍ୟରେ ଖୁସି ହେଲେ ମଥୁର ବାବୁ ।

ଯା' ହେଉ, ଗୋଟାଏ ଅଡୁଆ ତୁଟିଲା । କିନ୍ତୁ ହଳଧାରୀ ଜିଦ୍ ଧରି ବସିଲା ବଳି ବନ୍ଦ କରିବାକୁ  ହେବ । କେତେ କାଳର ପ୍ରଥା, ବନ୍ଦ କରିଦିଅ କହିଦେଲେ କ'ଣ ବନ୍ଦ କରି ହେବ ? ହଳଧାରୀ ମନେ ମନେ କ୍ଷୁଣ୍ଣ ହେଲା । ପୂଜା କରୁଛି ସତ, କିନ୍ତୁ ପୂଜାରେ ପ୍ରାଣ-ସମର୍ପଣର ଆନନ୍ଦ ପାଉ ନାହିଁ । ଖୋଲା ପବନରେ ନ ରହିଲେ ମନ ଖୋଲା ରହିବ କିପରି ?

ଦିନେ ହଳଧାରୀ ବସି ସାଂଧ୍ୟ ଆହ୍ନିକ କରୁଛି, ଦେବୀ ଭବତାରିଣୀ ଆସି ଛିଡ଼ା ହେଲେ ତା' ଆଗରେ । ମା' କ୍ରୁଦ୍ଧ ହୋଇଛନ୍ତି, ଉଲ୍ଲାସିନୀ ମୂର୍ତ୍ତିରେ ଆସି ନାହାନ୍ତି, ଆସିଛନ୍ତି ପ୍ରଚଣ୍ଡିକା ରୂପରେ । କହିଲେ, 'ତୁ ଆଉ ମୋ ପୂଜା କରିବୁ ନାହିଁ । ଯଦି ଏଇ ଭଳି ଅଧା-ପନ୍ତରିଆ ପୂଜା କରୁ, ପୁଅର ମଡ଼ା ଦେଖିବୁ ।'

କଥାଟା ଉପରେ ଗୁରୁତ୍ୱ ଦେଲା ନାହିଁ ହଳଧାରୀ । ଭାବିଲା, ବୋଧହୁଏ ଆଖିର ଭ୍ରମ । ହୁଏତ ବା ମୁଣ୍ଡ ଠିକ୍ କାମ କରୁ ନଥିଲା ।

କିନ୍ତୁ, ଆଶ୍ଚର୍ଯ୍ୟ କଥା, ଦିନେ କେତଟା ପରେ  ଖବର ଆସିଲା ହଳଧାରୀର ପୁଅ ମରିଛି ।

ହଳଧାରୀ ଯାଇ ଗଦାଧରର ଶରଣାପନ୍ନ ହେଲା । ଗଦାଧର କହିଲା, 'ଆପଣ ଆଉ ଦେବୀ ପୂଜା କରନ୍ତୁ ନାହିଁ । ହୃଦୟ ଯେଉଁଭଳି କରୁଥିଲା ସେଇଭଳି ସେ କରୁ । ଆପଣ ବରଂ ଯାଆନ୍ତୁ ରାଧାଗୋବିନ୍ଦ ମନ୍ଦିରକୁ ।'

ହଳଧାରୀ ଆସିଲା ରାଧାଗୋବିନ୍ଦ ଜୀଉଙ୍କ ମନ୍ଦିରକୁ । ଏଠି କିନ୍ତୁ ସେ ମଧୁର ଭାବରେ ପରିଚର୍ଯ୍ୟା କରୁ କରୁ ପରକୀୟାରେ ମାତିଗଲା । ବୈଷ୍ଣବ ମତ ଅନୁସାରେ ଏଇଟା ବି ସାଧନାର ଗୋଟାଏ ମାର୍ଗ, କିନ୍ତୁ ଅପକୃଷ୍ଟ ମାର୍ଗ, ଅଧୋଗତ ସାଧନା । ଅଳ୍ପ ଦିନ ଭିତରେ ନାନା କଥା ରଟନା ହେଲା ହଳଧାରୀ ନାଁରେ, ଲୁଚାଛପାରେ କିଏ କେତେ ରକମ କହିବାକୁ ଲାଗିଲେ । ଅବଶ୍ୟ ମୁହଁ ଉପରେ କେହି କିଛି କହିବାକୁ ସାହସ କରନ୍ତି ନାହିଁ, ଅଥବା ତାହାର ବିରୁଦ୍ଧ ଆଚରଣ କରନ୍ତି  ନାହିଁ । ସମସ୍ତେ ଡରନ୍ତି ତାକୁ, ତା' ମୁହଁ ଭାରି ଖରାପ । କଥା କଥାକେ ଅଭିସଂପାତ ଦିଏ ଏବଂ ତା' ଅଭିଶାପ ଫଳିଯାଏ ମଧ୍ୟ । ହଳଧାରୀ ବାକ୍‌ସିଦ୍ଧ ।

କିନ୍ତୁ କଥାଟା ଯେତେବେଳେ ଗଦାଧରର କାନକୁ ଆସିଲା ସେ ବରଦାସ୍ତ କରି ପାରିଲା ନାହିଁ । ବଡ଼ ଭାଇ ହୁଅନ୍ତୁ ବା ଯିଏ ହୁଅନ୍ତୁ, ଏଭଳି କଦାଚାର ଏଠି ଚାଲି ପାରିବ ନାହିଁ । ଯାଇ

ଶୁଣେଇ ଦେଲା ଦି' ପଦ କଡ଼ା କଡ଼ା ।

'କଅଣ ? ଭାରି ତ ବଡ଼ ବଡ଼ କଥା କହୁଛୁ ?' ଗର୍ଜି ଉଠିଲା ହଳଧାରୀ । 'ମୋ'ରି ଭାଇ ତୁ, ମୋ ଠାରୁ ପୁଣି ବୟସରେ ସାନ, ତୁ ପୁଣି ଆସୁଛୁ ମୋତେ ଶାସନ କରିବା ପାଇଁ ? ତୁ ରକ୍ତ ବାନ୍ତି କରିବୁ !'

'ଆପଣ ଅକାରଣରେ ରାଗୁଛନ୍ତି । ମୁଁ ଆପଣଙ୍କ ଭଲ ପାଇଁ କହୁଥିଲି । ବାର ଲୋକେ ବାର କଥା କହୁଛନ୍ତି, ଏଇ ଅପବାଦରୁ ଆପଣଙ୍କୁ ବଞ୍ଚେଇବା ପାଇଁ - ।'

ହଳଧାରୀ ଗୁମ୍ ହୋଇ ରହିଲା । କଥା କିନ୍ତୁ ଫେରାଇ ନେଲା ନାହିଁ । ଯା' କହିଛି, କହିଛି ।

କିଛି ଦିନ ପରେ, ଦିନେ ସଂଧ୍ୟା ବେଳେ ହଠାତ୍ ଦେଖାଗଲା ଗଦାଧରର ମୁହଁରୁ ରକ୍ତ ପଡୁଛି । ଗାଢ଼ କଳା ରକ୍ତ । କିଛି ବାହାରି ଆସୁଛି, କିଛି ଅଟକି ରହୁଛି ମୁହଁ ଭିତରେ, ଗଳା ପାଖରେ । କିଛିଅଂଶ ପୁଣି ଦାନ୍ତ ମୂଳରୁ ଝୁଲି ରହୁଛି ସୂତା-ଖିଅ ପରି ।

କଅଣ ଏମିତି ହେଲା ? ରକ୍ତ ବନ୍ଦ ହେଉ ନାହିଁ, ଝଲକା ଝଲକା ହୋଇ ବାହାରି ଆସୁଛି ।

ମୁହଁ ଭିତରେ ଲୁଗା ମେଞ୍ଚା କରି ପୂରାଇ ଦେଲା ଗଦାଧର । ତଥାପି ରକ୍ତ ବନ୍ଦ ହେଉ ନାହିଁ । ଇଏ କଅଣ ହେଲା ? ଇଏ ତୁ କଅଣ କଲୁ, ମା !

ଆଖ ପାଖରେ ଯେତେ ଯିଏ ଥିଲେ ସମସ୍ତେ ଧାଇଁ ଆସିଲେ । ହଳଧାରୀ ମଧ ।

'ଭାଇ, ଅଭିସଂପାତ ଦେଇ କଅଣ ତୁମେ କଲ ମୋର, ଦେଖ ।' କଇଁ କଇଁ ହୋଇ କାନ୍ଦି ପକାଇଲା ଗଦାଧର ।

ଆଖିରେ ଦେଖି ହଳଧାରୀ ସହିପାରିଲା ନାହିଁ ସେ ଦୃଶ୍ୟ । କାନ୍ଦି ପକାଇଲା । କିନ୍ତୁ ଆଉ ତ କଥା ଫେରେଇ ନେଇ ହେବ ନାହିଁ । ତୀର ଥରେ ହାତରୁ ବାହାରି ଗଲେ ଆଉ କ'ଣ ଫେରି ଆସେ ହାତକୁ ? କାନ୍ଦି ପକାଇଲା ସିନା, କିନ୍ତୁ ସେଇ କାନ୍ଦିବା ଭିତରେ ବି ମିଶିରହିଛି ଟିକିଏ ଗର୍ବ । ମୁଁ ଅବ୍ୟର୍ଥବାକ୍ !

ଯେତେ ଯୁଆଡ଼େ ଯିଏ ଥିଲେ ସମସ୍ତେ ହାୟ ହାୟ କରି ଉଠିଲେ । ଗଦାଧର କଅଣ ଆଜି ସମସ୍ତ ବଳିଦାନର ରକ୍ତ ପରିଶୋଧ କରୁଛି ?

'ତୁମେ କ'ଣ ହଠ ଯୋଗ ସାଧନ କରୁଛ ?'

ମୁହଁ ଟେକି ଚାହିଁଲା ଗଦାଧର । ଆଜିକୁ କେତେ ଦିନ ହେବ ଜଣେ ଅତି ପ୍ରାଚୀନ ସାଧୁ ଆସି ଦକ୍ଷିଣେଶ୍ୱରରେ ରହିଛନ୍ତି, ସେଇ ସାଧୁ ଛିଡ଼ା ହୋଇଛନ୍ତି ଆଗରେ ।

'ରକ୍ତର ରଙ୍ଗଟା କି ଭଳି ଦେଖେଁ ? ପାଟି ଭିତରେ କେଉଁ ଜାଗାରୁ ରକ୍ତ ଆସୁଛି ? ... ନିଶ୍ଚୟ !' ସାଧୁ ଜୋର ଦେଇ କହିଲେ, 'ନିଶ୍ଚୟ ତୁମେ ହଠ ଯୋଗ କରୁଛ । କରୁ ନ ?'

'କରୁଛି ।'

ତେବେ ଆଉ ଡରିବାର କିଛି ନାହିଁ । ସାଧନା କରିବା ଦ୍ୱାରା ସୁଷୁମ୍ନା-ଦ୍ୱାର ଖୋଲିଯାଇଛି । ଦେହର ସମସ୍ତ ରକ୍ତ ମଥାକୁ ଉଠି ଯାଇଥିଲା । ଆପେ ଆପେ ପୁଣି ମୁହଁ ଭିତର ଦେଇ ବାଟ କରି ବାହାରି ଯାଉଛି । ଏଇଟା ସୌଭାଗ୍ୟର କଥା । ତୁମେ ଜାଣିଥିବ, ହଠ ଯୋଗରେ

ଜଡ଼-ସମାଧି ହୋଇ ଯାଇପାରେ । ରକ୍ତ ମଥାକୁ ଉଠି ଯାଇ ଯଦି ସେଇଠି ଜମି ରହି ଥାଆନ୍ତା, ତେବେ ତୁମ ସମାଧି ଆଉ ଭାଙ୍ଗି ନଥାଆନ୍ତା । ହଉ, ସବୁ ମା'ଙ୍କ ଇଚ୍ଛା ।

'ଠିକ୍ କଥା, ମା'ଙ୍କ ଇଚ୍ଛା ! ମା'ଙ୍କ ଇଚ୍ଛାରେ ହିଁ ତୁମେ ଆଜି ବଞ୍ଚିଗଲ । ତୁମ ହାତରେ ମା ଯେ କେତେ କଅଣ କାମ କରେଇବେ, ତୁମେ କ'ଣ ଜାଣିଛ ?'

ହୃଦୟକୁ ପାଖକୁ ଡାକିଲା ହଳଧାରୀ । କହିଲା, ଅତି ଅପଣାର ପରି, 'ଆଚ୍ଛା, ତୁ କହିଲୁ, ହୃଦୁ, ଏଇଟା କ'ଣ ଠିକ୍ ହେଉଛି ?'

ଏଇଟା, ମାନେ କେଉଁଟା ?

'ଲୁଗାପଟା ଖୋଲି ପକାଇ କାନ୍ଧରୁ ପଇତା ବାହାର କରି ଦେଇ ସାଧନାରେ ବସିବା ?'

ହଳଧାରୀକୁ ହୃଦୟ ଡରେ । ଚଟାପଟ ଉତ୍ତର ଦେଲା, 'କଦାପି ନୁହେଁ । ବ୍ରାହ୍ମଣ ହୋଇ ବ୍ରାହ୍ମଣତ୍ୱ ବିସର୍ଜନ ଦେଲେ ଚଳିବ ?'

'କହ ତେବେ!' ଖୁସି ହୋଇ କହିଲା ହଳଧାରୀ : ' କେତେ ଜନ୍ମର ପୁଣ୍ୟ ଫଳରେ ବ୍ରାହ୍ମଣ ଘରେ ଜନ୍ମ ! ସେଇ ବ୍ରାହ୍ମଣତ୍ୱକୁ ସେ ପଦେ କଥାରେ ଉଡ଼େଇ ଦେବେ ?'

ହୃଦୟ ମଧ ପଦେ କଥାରେ ଆଉ ସମସ୍ତଙ୍କ ପରି ଉଡ଼େଇ ଦେଲା । 'ପାଗଳ ! ବଦ୍ଧ ପାଗଳ ।'

'ତେବେ , ଯା' ହେଉ, ତୋ'ରି କଥା ଟିକିଏ ମାନେ । ତା' ଉପରେ ଆଖି ରଖିଥିବୁ । ତାକୁ ଟିକିଏ ଆକଟ କରିବାକୁ ଚେଷ୍ଟା କରିବୁ । ଏତେ ବେଶୀ ଅନାଚାର ସେ ଯେମିତି କରି ନପାରେ । ଦରକାର ହେଲେ, ଦଉଡ଼ିରେ ତାକୁ ବାନ୍ଧି ରଖିବୁ ।'

ପାଗଳ ବୋଲି କହି ଦେଇ କୌଣସି ମତେ ଖସି ପଳେଇ ଆସିବାକୁ ଚାହୁଁଥିଲା ହୃଦୟ ।

ଆଉ ହଳଧାରୀ ? ମୁହଁରେ ଯାହା କହୁ ପଛକେ, କଥାଟାକୁ ଫୁଟ୍କିରେ ଉଡ଼େଇ ଦେଇ ପାରୁନାହିଁ । ଅନ୍ତତଃ ଯେତେବେଳେ ଗଦାଧରକୁ ପୂଜା କରୁଥିବାର ଦେଖେ । ଦେଖେ ତା'ର ଉତ୍ସର୍ଗର ଉନ୍ମାଦନା । ଈଶ୍ୱରଙ୍କ ଆବେଶ ନ ହେଲେ କେହି କ'ଣ ଏ ଭଳି ବିଭୋର ହୋଇ ପୂଜା କରିପାରେ ?

ଧାଇଁ ଆସିଲା ହୃଦୟ ପାଖକୁ । 'ନାଁରେ, ହୃଦୁ, ପାଗଳ ନୁହେଁ, ଅଲୌକିକ ।'

ସତେ ! - ଯେମିତି କି କିଛି ଜାଣି ନାହିଁ ହୃଦୟ; ବୋକାଟିଏ ।

'ଅଲୌକିକ ନ ହେଲେ ଏପରି କ'ଣ ସମ୍ଭବ ? ଏଭଳି ପୂଜା କେହି କରିପାରେ ? ସତ କହିଲୁ, ତା' ଭିତରେ ତୁ କିଛି ଆଶ୍ଚର୍ଯ୍ୟ-ଦର୍ଶନ ପାଇଛୁ ?'

ମୋର କଅଣ ଦର୍ଶନ ହେବ ! ଦର୍ଶନର ମୁଁ କଅଣ ଜାଣେଁ !

'ସେକଥା କହ ନା । ତା' ନ ହୋଇଥିଲେ ରାତି ଦିନ ତୁ ଏମିତି ଚାକର ଭଳି ତା' ସେବା କରୁଛୁ କାହିଁକି ?'

'ତଥାପି ବେଳେ ବେଳେ ଭାବେଁ, ଆହୁରି ଅଧିକ ସେବା କାହିଁକି କରିପାରୁ ନାହିଁ !' ହୃଦୟରେ ମୁହଁରେ ତୃପ୍ତିର ତନ୍ମୟତା ।

ଚିହ୍ନି ପାରିଛି ହଳଧାରୀ । ଆଉ ତା'ର ଭୁଲ ହେବ ନାହିଁ ।

'ଏଥର ମୁଁ ତୋତେ ଠିକ୍ ଚିହ୍ନିଛି । ତୋ ଭିତରେ ନିଶ୍ଚୟ ଦିବ୍ୟାବେଶ ହୋଇଛି । ଆଉ ହିସାବରେ ଭୁଲ କରିବି ନାହିଁ ।'

ଗଦାଧର ଶୁଣେ, କିଛି କହେ ନା, ହସେ । ପୁଣି କେତେବେଳେ କେଉଁ ବିଭ୍ରାଟ ଘଟିବ, କିଏ ଜାଣେ ?

ମନ୍ଦିରର କାମ ଶେଷ କରି ପୋଥି-ପତ୍ର ଧରି ପଢ଼ିବାକୁ ବସେ ହଳଧାରୀ । ମୁଣ୍ଡଟାକୁ ପରିଷ୍କାର କରି ନେବା ପାଇଁ ଟିପେ ନାସ ଶୁଂଘି ନିଏ । ସେଇ ନାସ ଟିପାକରେ ସତେ ଅବା ବୁଦ୍ଧି ଖୋଲିଯାଏ । ମନେ ମନେ ପୁଣି ଭାବେ, ଏତେ ଶାସ୍ତ୍ର- ଶାସନ, ଏତେ ବିଧି-ବିଧାନ, ଏସବୁ କିଛି ପଢ଼ିଛି ଗଦାଧର ? କିଛି ବୁଝିଛି ?

ଡାକ ଗଦାଧରକୁ ।

'ତୁ ଏ ସବୁ କିଛି ଜାଣୁ ? ବୁଝି ପାରିବୁ ?'

'ହଁ, ନିଶ୍ଚୟ ପାରିବି ।'

'କେମିତି ପାରିବୁ ? ତୁ ତ ଗଣ୍ଡମୂର୍ଖ -'

'ମୁଁ ସିନା ମୂର୍ଖ, ହେଲେ ମୋ ଭିତରେ ଯିଏ ଅଛନ୍ତି, ସେ ସର୍ବଜ୍ଞାନ । ସବୁକଥା ସେ ନିଜେ ମୋତେ ବୁଝେଇ ଦିଅନ୍ତି ।'

'ଏଃ ! ଆସିଗଲେ ମହା ପଣ୍ଡିତ ! ସବୁ ତୁ ବୁଝି ପକେଇବୁ ! ତୁ କଅଣ ଅବତାର ?'

ହଳଧାରୀର ମନରେ କ୍ରୋଧର ସଂଚାର ହୋଇ ଆସୁଥିଲା ।

'କହିଥିଲ ପରା, ହିସାବରେ ଆଉ ଭୁଲ ହବ ନାହିଁ- ?' ମନେ ପକାଇ ଦେଲା ଗଦାଧର ।

'ଚୁପ୍ ରହ ! ତୋ କଥା ଶୁଣି ମୋ ଦେହରେ ନିଆଁ ଚରି ଯାଉଛି । ଶାସ୍ତ୍ର ତ ପଢ଼ିନାହୁଁ, ମୋ ସହିତ ଆଉ କେବେ କଥା କହିବାକୁ ଆସିବୁ ନାହିଁ । କଳି ଯୁଗରେ କଳ୍କି ଛଡ଼ା ଆଉ କେହି ଅବତାର ନାହାନ୍ତି । ଯା, ଯା ତୁ ଏଠୁ । ଠିକ୍ ଚିହ୍ନିଛି ମୁଁ ତୋତେ । ଆଉ ଭୁଲ ହେବନାହିଁ । ତୁ ଗୋଟାଏ ନିପଟ -'

ଧାଇଁ ଯାଇ, ହୃଦୟ କେଉଁଠି ଥିଲା, ତାକୁ ଧରି ଟାଣି ଟାଣି ନେଇ ଆସିଲା ହଳଧାରୀ । ହେଇଟି, ଅନା, ଦେଖ, ତୁ କହୁଥିଲୁ ପାଧଳ ବୋଲି । ମୁଁ କହୁଛି, ପାଗଳ ନୁହେଁ ସେ, ତାକୁ ବ୍ରହ୍ମଦୈତ୍ୟ ଗ୍ରାସିଛି । ତା' ନହେଲେ ଏଭଳି ହୁଅନ୍ତା ?'

ଚାହିଁ ଦେଇ ଦେଖିଲା ହୃଦୟ । ପିନ୍ଧା ଲୁଗା ବାହାର କରି ଦେଇ ଗୋଟାଏ ଗଛର ଅଗ ଡାଳରେ ଯାଇ ବସିଛି ଗଦାଧର ସ୍ତବ୍ଧ ହୋଇ ।

ପୁଅ ମରିବା ପରଠାରୁ କାଳୀଙ୍କୁ ହଳଧାରୀ ତମୋମୟୀ ବୋଲି ମନେ କରୁଥିଲା । ତମୋମୟୀ, ଅର୍ଥାତ୍ ତମୋଗୁଣାନ୍ୱିତା, ତମୋଗୁଣଯୁକ୍ତା । ଯେଉଁ ତାମସିକ କର୍ମ ଫଳରେ ମୂଢ଼ତା ଆସେ ତାହାରି ଅଧିଷ୍ଠାତ୍ରୀ । ଅବିବେକ ବା ପ୍ରମାଦ-ମୋହର ଉତ୍ପାଦିକା । 'ଜଘନ୍ୟ ଗୁଣବୃତ୍ତିସ୍ଥା' ।

ଦିନେ ସରାସରି ମୁହଁ ଉପରେ କହିଲା ଗଦାଧରକୁ, 'ତୁ ସେହି ତାମସୀ ମୂର୍ତ୍ତିର ପୂଜା କରୁଛୁ କାହିଁକି ? ସେଥିରେ କଅଣ କେବେ ଆଧ୍ୟାତ୍ମିକ ଉନ୍ନତି ଆସି ପାରିବ ? ବରଂ, ସିଏ ତୋତେ

ହିଁ ଅଧୋଗାମୀ କରାଇବ । ଜାଣି ନାହୁଁ, ଗୀତାରେ କଅଣ କୁହାହୋଇଛି ? ଅଧୋ ଗଚ୍ଛନ୍ତି ତାମସାଃ ।'

ଇଷ୍ଟ ନିନ୍ଦା ଶୁଣି ମନରେ ଆଘାତ ପାଇଲା ଗଦାଧର । କିନ୍ତୁ, ତା'ର ବା ଶକ୍ତି କାହିଁ, ହଳଧାରୀ ସହିତ ତର୍କ କରିବ ? ଶାସ୍ତ୍ର-ପୁରାଣରୁ ଉଦ୍ଧାର କରି କହିବା ଭଳି ବିଦ୍ୟା କାହିଁ ତାର ? ସେ କେବଳ ଯାଇ ପଚାରି ପାରେ ମା'ଙ୍କୁ, ମା, ତୁ କଅଣ ? ତୋ ରୂପରେ ଫୁଟି ଉଠୁଛି ଏତେ ଯେ ଅନ୍ଧକାରର ଐଶ୍ୱର୍ଯ୍ୟ, ଏହା କଅଣ କେବଳ ଅଜ୍ଞାନର ଅନ୍ଧକାର ?

ଯାଇ ମା'ଙ୍କୁ ସେଇ କଥା କହିଲା ସରଳ ଭାବରେ । କହ, ତୁ କଅଣ ? ତୁ କିଏ ? ତୁ ନ କହିଲେ ମୁଁ ବୁଝିବି କେମିତି ? ମୁଁ କଅଣ ଶାସ୍ତ୍ର ଜାଣେ, ନା ବ୍ୟାକରଣ ଜାଣେ ? ତୁ ତ ମୋତେ ଶିଖାଇ ନାହୁଁ କିଛି, ଏବେ ନିଜେ ସବୁ ଦେଖା ମୋତେ । ନ ହେଲେ ହଳଧାରୀ ସହିତ ମୁଁ ଲଢ଼ିବି କେମିତି ? ସିଏ ଶାସ୍ତ୍ର-ପଢୁଆ ପଣ୍ଡିତ, ଶହ ଶହ ଶ୍ଲୋକ ତା' ଜିଭ ଅଗରେ । ତା' ସହିତ ମୁଁ ପାରିବି ? ତୁ ଯଦି ମୋତେ କିଛି ବୁଝେଇ ନଦେଉ, ତେବେ ଜାଣିବି, ହଳଧାରୀର କଥା ଠିକ୍ । ତୁ ତାମସୀ, ତୁ -

ମା ଦେଖେଇ ଦେଲେ । ବୁଝେଇ ଦେଲେ ।

କହିଲେ, ମୁଁ ତ୍ରିଗୁଣାତୀତ, ପୁଣି ସର୍ବଗୁଣାଶ୍ରୟୀ । ସ୍ୱରୂପରେ ନିର୍ଗୁଣ, ପୁଣି ମାୟା ରୂପରେ ସଗୁଣ । ନିର୍ଗୁଣ ସଗୁଣର ଅଧିଷ୍ଠାନ । ସଗୁଣ ହେଉଛି ନିର୍ଗୁଣର ଉଦ୍‌ଘାଟନ । ସମୁଦ୍ରକୁ ଆଶ୍ରୟ କରି ତରଙ୍ଗର ଲୀଳା । ତରଙ୍ଗକୁ ଆଶ୍ରୟ କରି ସମୁଦ୍ରର ଉନ୍ମୋଚନ । ପୁଣି, ମୁଁ ଆକାଶ । ସମସ୍ତଗୁଣର ଅତୀତ । ପ୍ରବୃତ୍ତି-ନିବୃତ୍ତି-ଶୂନ୍ୟ ।

'ତେବେ ? ... ଗଲା କୁଆଡ଼େ ?' ଧାଇଁ ଧାଇଁ ଯାଇ ପହଞ୍ଚିଲା ଗଦାଧର । ହଳଧାରୀ ପୂଜା କରୁଥିଲା । ସିଧା ସଳଖ ଯାଇ ପଚାରିଲା, 'କଅଣ ? ତୁମେ ପରା ମୋ ମା'ଙ୍କୁ ତାମସୀ ବୋଲି କହୁଥିଲ ? ଶୁଣ ! ମା ମୋର ସର୍ବବର୍ଣ୍ଣମୟୀ ପୁଣି ତ୍ରିଗୁଣାତୀତା ! ଏତେ ଶାସ୍ତ୍ର ପଢୁଛ, ଏତିକି କଥା ଜାଣି ନାହଁ ?'

ହଳଧାରୀର ମୁହଁରେ ଝାଉଁଳି ପଡ଼ିବାର ଲକ୍ଷଣ, ଚାହିଁ ରହିଲା ବିମୂଢ଼ ଭାବରେ । କଅଣ ହୋଇଗଲା, କିଛି ବୁଝିପାରିଲା ନାହିଁ । ତାକୁ ଜଣାଗଲା, ଆଗରେ ଯିଏ ଛିଡ଼ା ହୋଇଛି, ସେ ଗଦାଧର ନୁହେଁ, ତା' ଭିତରେ ସାକ୍ଷାତ ଜଗଦମ୍ବାଙ୍କ ଆବିର୍ଭାବ । ହାତରେ ଫୁଲ, ବେଲପତ୍ର ଧରିଥିଲା, ହଠାତ୍ ଅଂଜଳି ଦେଇଦେଲା ଗଦାଧରର ପାଦରେ ।

ହୃଦୟ ଥିଲା ସେଇଠି ପାଖରେ । ଶୁଣେଇ ଦେଲା ରୋକ୍‌ଠୋକ୍, 'କଅଣ, ମାମୁଁ ? କହୁଥିଲ ପରା ଗଦାଧର ପାଗଳ ହୋଇଯାଇଛି ? ଆଉ ବର୍ତ୍ତମାନ ? ବର୍ତ୍ତମାନ ଯେ ନିଜେ ତୁମେ ତା' ପାଦରେ ଫୁଲ ଦେଇ ପୂଜା କରୁଛ ?'

'କଅଣ କେଜାଣି ! ମୁଁ ନିଜେ ବୋଧହୁଏ ପାଗଳ ହୋଇଯାଇଛି ।' ହଳଧାରୀ କହିଲା ବିହ୍ୱଳ ଭାବରେ : 'ତା ଭିତରେ ମୁଁ ସ୍ପଷ୍ଟ ଈଶ୍ୱର ଦର୍ଶନ ପାଇଲି ।'

କର୍ମତ୍ୟାଗ ହୋଇ ଯାଉଛି ଗଦାଧରର ।

ଗଙ୍ଗା ଜଳରେ ତର୍ପଣ କରିବାକୁ ଯାଇଥିଲା । ଦେଖିଲା, ଆଙ୍ଗୁଳି ସନ୍ଧିରେ ଜଳ ତଳକୁ ଖସି ପଡୁଛି । ଧାଇଁଗଲା ହଳଧାରୀ ପାଖକୁ । ପଚାରିଲା, 'ଭାଇ, ଇଏ କଅଣ ହେଲା ମୋର ?'

'ଏହାକୁ କହନ୍ତି ଗଳିତହସ୍ତ,' ବୁଝେଇ ଦେଲା ହଳଧାରୀ : 'ତୋର ଈଶ୍ୱର ଦର୍ଶନ ହୋଇସାରିଛି । ଈଶ୍ୱର ଦର୍ଶନ ପରେ ଆଉ ତର୍ପଣ ନାହିଁ ।'

କୌଣସି କର୍ମ ନଥାଏ ସମାଧି ହେଲା ପରେ ।

ଶିବନାଥ ଶାସ୍ତ୍ରୀଙ୍କୁ କହିଲେ ଠାକୁର, 'ଯେତେବେଳ ଯାଏ ତୁମେ ଆସି ସଭାରେ ପହଞ୍ଚିନାହଁ,ସେ ପର୍ଯ୍ୟନ୍ତ ତୁମ ବିଷୟରେ କେତେ ଚର୍ଚ୍ଚା, କେତେ କଥା, କେତେ ଗୁଣଗୁଞ୍ଜନ । ତୁମେ ଆସି ପହଞ୍ଚିଗଲ । ସଙ୍ଗେ ସଙ୍ଗେ ସବୁ କଥା ବନ୍ଦ । ସେତେବେଳେ ତୁମକୁ ଦେଖିବାରେ ହିଁ ଆନନ୍ଦ । କେବଳ ଦର୍ଶନାନନ୍ଦ ।'

ପବନ ଯେତେ ବେଳ ଯାଏ ନାହିଁ ସେତେ ବେଳ ପର୍ଯ୍ୟନ୍ତ ବିଞ୍ଚଣା ବିଞ୍ଚିବା ଦରକାର । ପବନ ଯେତେବେଳେ ଆପେ ଆସି ପହଞ୍ଚିଯାଏ, ଆଉ ବିଞ୍ଚଣା ବିଞ୍ଚିବା ଦରକାର କି ? ସେତେବେଳେ ତାହାର ସ୍ପର୍ଶନରେ ହିଁ ଆନନ୍ଦ ।

## ୧୬

ରାସମଣିଙ୍କ କାଳୀ ମନ୍ଦିରରେ ଗଦାଧର ଆଉ ପୂଜା କରୁ ନାହିଁ - ଖବର ଯାଇ ପହଞ୍ଚିଲା କାମାରପୁକୁରରେ ଚନ୍ଦ୍ରମଣିଙ୍କ ପାଖରେ ।

ପୂଜା କରୁ ନାହିଁ ? କାହିଁକି ରେ ? କଅଣ ହେଇଛି ମୋ ଗଦାଧରର ?

ମୁଣ୍ଡ ବିଗିଡ଼ି ଯାଇଛି । ମାତ୍ରାଜ୍ଞାନ ନାହିଁ । ଏ ଭଳି ଅଦ୍‌ଭୁତ କାଣ୍ଡ ସବୁ କରୁଛି, ପାଗଳ ବି ସେଭଳି କରିବ ନାହିଁ । ତୁମ ପୁଅକୁ ଘରକୁ ଆସିବାକୁ କୁହ ।

ଅସ୍ଥିର ହୋଇପଡ଼ିଲେ ଚନ୍ଦ୍ରମଣି । ରାମେଶ୍ୱର ହାତରେ ଚିଠି ପରେ ଚିଠି ଲେଖେଇ ପଠେଇଲେ - ତୁ ଚାଲି ଆ ମୋ ପାଖକୁ । ପିଲା ବେଳେ ତୋର ଯେଉଁ ରକମ ବେମାରି ହେଉଥିଲା ବୋଧହୁଏ ସେଇ ବେମାରି ବାହାରିଛି । ତୁ ଚାଲି ଆ ଗାଁକୁ । ଏଠିକା ପାଣିପବନରେ ତୋ ଦେହ ଭଲ ରହିବ । ମୁଁ ବି ତୋର ଦେଖା-ଶୁଣା କରିବି । ଘର-ପୁଅ, ଘରକୁ ଫେରିଆ । ତୋତେ ନ ଦେଖି ମୋ ଆଖି ଫୁଟିଯିବାକୁ ବସିଲାଣି ।

ଗଦାଧର ଫେରି ଆସିଲା କାମାରପୁକୁର - ମାର ପଣତ-ଆଶ୍ରୟକୁ ।

କିନ୍ତୁ, କଅଣ ଏ ହେଇଛି ସେ ! କେତେବେଳେ ଜଡ଼ ଭରତ ପରି ମଉନ ହୋଇ ବସି ରହୁଛି ତ ପୁଣି କେତେବେଳେ ମନକୁ ମନ ହସି ଚାଲିଛି । କେତେବେଳେ ପୁଣି ମା ମା ବୋଲି କାନ୍ଦି କାନ୍ଦି ଅସ୍ଥିର । ଏଇ ମା ଡାକ ସହିତ କାନ୍ଦଣା ଦେଖିଲେ ବେଶୀ କାତର ହୋଇ ପଡ଼ନ୍ତି ଚନ୍ଦ୍ରମଣି । କଅଣ କଲେ ପୁଅ ଭଲ ହେବ, କିଛି ଭାବି ପାରନ୍ତି ନାହିଁ । ପ୍ରାଣର ସମସ୍ତ ସ୍ନେହ, ସମସ୍ତ ଆଶୀର୍ବାଦ ଢାଳି ପୁଅର ଛାତି ପିଠି ଆଉଁସି ଦିଅନ୍ତି । ଟିକିଏ ଶାନ୍ତ ହୁଏ ଗଦାଧର । ସ୍ୱାଭାବିକ ଭାବରେ ସମସ୍ତଙ୍କ ସହିତ କଥା କହେ, ହସ ଖୁସି ବି ହୁଏ ।

କିନ୍ତୁ କେତେ ସମୟ ଏହି ସ୍ୱଭାବ-ସ୍ଥିତି ? ଦଣ୍ଡକ ପରେ ପୁଣି ସେହି ଭାବାବେଶ । ସେହି ବହିର୍ଜ୍ଞାନ ଶୂନ୍ୟତା । ଆଚରଣରେ ଲଜ୍ଜା ନାହିଁ, ଘୃଣା ନାହିଁ, ଭୟ-ଭ୍ରାନ୍ତି ନାହିଁ । ଏକାବେଳକେ ନିର୍ମୁକ୍ତ, ନିଃସୀମ । ଘର ସଂସାର ବୋଲି ଯେ କିଛି ଗୋଟାଏ ଅଛି,ସେ ଆଡ଼କୁ ଖିଆଲ ରହେ ନାହିଁ । ନାହିଁ କୌଣସି ଲୋକଲଜ୍ଜାର ସଂକୀର୍ଣ୍ଣ ସଂସ୍କାର ।

ନା, ପାଗଳ ତ ନୁହେଁ । ପାଗଳ ହୋଇଥିଲେ ମା'ଙ୍କୁ ଅର୍ଥାତ୍ ଚନ୍ଦ୍ରମଣିଙ୍କୁ ଏତେ ଭଲ ପାଆନ୍ତା କେମିତି ? ପୁରୁଣା ସାଙ୍ଗ-ସାଥୀ ମେଳରେ ଏତେ ଥଟ୍ଟା-ତାମସା କେମିତି ହୁଅନ୍ତା ? ନିଶ୍ଚୟ କୌଣସି ଉପଦେବତା ଆଶ୍ରୟ କରିଛି । ଗୁଣିଆ ଡାକ ।

ପାଞ୍ଚ ଲୋକଙ୍କ ପରାମର୍ଶରେ ଗୁଣିଆ ଡକେଇଲେ ଚନ୍ଦ୍ରମଣି । ଗୁଣିଆ ଆସି ବହୁତ ଝାଡ଼-ଫୁଙ୍କ କଲା, ବହୁତ ମନ୍ତ୍ର ପଢ଼ିଲା । ଶେଷକୁ ଗୋଟାଏ ସଳିତା ପୋଡ଼ି ଶୁଂଘାଇଲା । କହିଲା, ଯଦି ଭୂତ ହେଇଥିବ, ଏଇଥିରେ ଛାଡ଼ି ପଳେଇବ । ଆଉ, ଯଦି ନହୋଇଥିବ ? ମନେ ମନେ ହସୁଥିଲା ଗଦାଧର ।

ନାଃ, ଝଡ଼ା-ଫୁଙ୍କାରେ କିଛି ହେବ ନାହିଁ । ଚଣ୍ଡ ଅଣେଇବାକୁ ପଡ଼ିବ ।

ଆସିଲା ଚଣ୍ଡ-ସାଧକ । ବହୁତ ବଡ଼ ଗୁଣିଆ । ତନ୍ତ୍ର-ମନ୍ତ୍ରରେ ଧୁରନ୍ଧର ।

ଚଣ୍ଡ ଆସିବ - ଗାଁର ଲୋକମାନେ ଆସି ରୁଣ୍ଡ ହୋଇଛନ୍ତି ଦେଖିବା ପାଇଁ । ଏଥର ନିଶ୍ଚୟ ରୋଗ ଛାଡ଼ିବ ଗଦାଧରର । ଯଥାବିଧି ପୂଜା ହେଲା, ବଳି ଦିଆହେଲା ଚଣ୍ଡ ଉଦ୍ଦେଶ୍ୟରେ । ଚଣ୍ଡ ଆସି ଅଧିଷ୍ଠାନ କଲା ଶୂନ୍ୟରେ । ଗୁଣିଆକୁ ଲକ୍ଷ୍ୟ କରି କହିଲା, 'ତାକୁ ଭୂତ ଲାଗି ନାହିଁ, ତା'ର କୌଣସି ରୋଗ-ବ୍ୟାଧି ନାହିଁ -'

ଟିକିଏ ରହି ଗଦାଧରଙ୍କୁ ସମ୍ବୋଧନ କରି କହିଲା, 'ହଇ ହେ, ସାଧୁ, ଯଦି ପ୍ରକୃତରେ ତୁମେ ସାଧୁ, ଏତେ ଗୁଆ ଖାଉଛ କାହିଁକି ?'

ଗୁଆ ଗାଇବାର ଅଭ୍ୟାସ ଥିଲା ଗଦାଧରର । ବେଳ-କାଳ ନାହିଁ, ସବୁବେଳେ ପାଟିରେ ଗୁଆ ରହିଛି । ଚଣ୍ଡର କଥା ଶୁଣି ସେ ଆଶ୍ଚର୍ଯ୍ୟ ହେଲା ।

'ବେଶୀ ଗୁଆ ଖାଇଲେ କାମ ଭାବ ବଢ଼େ । ଖାଇବ ନାହିଁ ।'

ଗଦାଧର ଗୁଆ ଖାଇବା ଛାଡ଼ି ଦେଲା ।

ଗାଁର ଦୁଇ ପ୍ରାନ୍ତରେ ଦୁଇଟା ମଶାଣି । 'ଭୂତିର ଖାଲ' ଆଉ 'ବୁଧୁଇ ମୋଡ଼ଲ' । ଦିନରାତିର ଅଧିକାଂଶ ସମୟ ସେହି ଶ୍ମଶାନରେ ରହେ ଗଦାଧର । ହାଣ୍ଡିରେ ଖାଇବା ଜିନିଷ ପୂରେଇ ନେଇ ଯାଏ, ଶିବା ଓ ପ୍ରମଥମାନଙ୍କୁ ଭୋଗ ଦିଏ । ଯେଉଁ ହାଣ୍ଡିଟି ଶିଆଳମାନଙ୍କ ପାଇଁ, କେଉଁଠୁ କେଜାଣି, ପଲ ପଲ ଶିଆଳ ଆସି ଖାଇ ଯାଆନ୍ତି ସବୁ ଚାଟି ଚୁଟି । ଆଉ ଯେଉଁ ହାଣ୍ଡିଟି ଭୂତ-ପ୍ରେତମାନଙ୍କ ପାଇଁ, ସେଇଟା ହଠାତ୍ ଶୂନ୍ୟକୁ ଉଠିଯାଇ ଅଦୃଶ୍ୟ ହୋଇଯାଏ । ଆଧାର ବା ଆଧେୟ କୌଣସିଟିର ଚିହ୍ନ-ବର୍ଣ୍ଣ ଦେଖିବାକୁ ମିଳେ ନାହିଁ । ଦିନେ ଦିନେ ସ୍ପଷ୍ଟ ସାକ୍ଷାତ ହୁଏ ପିଶାଚମାନଙ୍କ ସହିତ । କଥା-ବାର୍ତ୍ତା, ହସ-ଥଟା ବି ହୁଏ କିଛି କିଛି ।

ଦିନେ ରାତି ଦି'ପହରକୁ ଗଡ଼ିଗଲାରି, ଗଦାଧର ଘରକୁ ଫେରିନାହିଁ । ମା ଆଖିରେ ତା' ପୁଅ ସବୁ ଦିନେ ସାନ ଛୁଆଟି ପରି । ଚନ୍ଦ୍ରମଣି ବ୍ୟସ୍ତ ହୋଇ ପଡୁଥାଆନ୍ତି । ଶେଷକୁ ରାମେଶ୍ୱରଙ୍କୁ

କହିଲେ, 'ତୁ ଯିବୁଟି, ତାକୁ ଧରି ନେଇ ଆସିବୁ ମଶାଣି ପଦାରୁ । ସିଏ କ'ଣ ଭାବୁଛି, ତା' ମା-ଘରକୁ ଶ୍ମଶାନ କରି ଦେଇ ସେଇ ଶ୍ମଶାନରେ ଘର କରି ରହିବ ?'

ରାମେଶ୍ୱର ଆସି ପହଞ୍ଚିଲେ ଶ୍ମଶାନ ପାଖରେ । ଆଉ ଟିକିଏ ଆଗକୁ ଶ୍ମଶାନ ସୀମା । ଘୋର ଅନ୍ଧାର । ରାମେଶ୍ୱର ସେଇଠି ଥାଇ ଡାକିଲେ, 'ଗଦାଇ ! ରେ .. ଗଦାଇ ! ... ଗଦାଇ ଅଛୁ ? ...'

'ହଁ, ହଁ - ଯାଉଛି ଭାଇ' ବଡ଼ ପାଟିରେ ଜବାବ ଦେଲା ଗଦାଧର । ପୁଣି ଆଉ ଟିକିଏ ଜୋର ଗଳାରେ କହିଲା, 'ଇଆଡ଼କୁ ଆଉ ଆସନା, ଭାଇ । ମୋର ସିନା ଏମାନେ କିଛି କରି ପାରିବେ ନାହିଁ, କିନ୍ତୁ ତୁମର ଅନିଷ୍ଟ କରିପାରନ୍ତି । ତୁମେ ଆଉ ଆଗକୁ ଆସ ନା, ସେଉଠୁ ଫେରିଯାଅ ।'

ଶ୍ମଶାନରେ ଯାଇ ବସିବା ଫଳରେ ଗଦାଧର ଆଗ ଅପେକ୍ଷା ଅନେକ ଶାନ୍ତ ହୋଇ ଆସିଲା । ଠାଏ ଗୋଟାଏ ବେଲ ଗଛ ଲଗାଇଲା । ଗୋଟାଏ ପୁରୁଣା ଅଶ୍ୱତ୍ଥ ଗଛ ଥିଲା, ତା' ଡାଳପତ୍ର କାଟି ସଫା କରି ତାହାରି ମୂଳରେ ନିଜ ପାଇଁ ଆସନ କଲା । ସେଇଠି ବସିଥିବା ସମୟରେ ତା'ର ଘନ ଘନ କାଳୀ-ଦର୍ଶନ ହେବାକୁ ଲାଗିଲା । ଦେଖିଲା ସେହି କର୍ତ୍ତ୍ରୀ କାରୟିତ୍ରୀ ସଂସାରୈକସାରା-ଙ୍କୁ, ଯେ ସାକାରଶକ୍ତିସ୍ୱରୂପା ଦିଗନ୍ତବସନା ଖଡ଼ଗମୁଣ୍ଡାଭିରାମା । ଆଗମ-ନିଗମ-ଫଳମୟୀ, ବାଞ୍ଛିତାର୍ଥପ୍ରଦାୟିନୀ ।

ଶାନ୍ତ ଅବଶ୍ୟ ହୋଇଛି, ମାତ୍ର ଉଦାସୀନ ଭାବ ଯାଉନାହିଁ । ଯାଉ ନାହିଁ ସଂସାର-ନିସ୍ପୃହା । ଲୁଗାଟା ତ ଠିକ୍ ଭାବରେ ପିନ୍ଧି ପାରୁ ନାହିଁ, ଆଉ କୋଉ କଥାଟା ତା'ର ଠିକ୍ ହେବ ? କଅଣ କଲେ ମନ ଫେରିବ ସଂସାରକୁ ? କି ଉପାୟରେ ମନକୁ ଆସିବ ଟିକିଏ ମୋହ-ମମତା ?

ବିଭା କରେଇ ଦିଅ ଗଦାଧରର ।

ରାମେଶ୍ୱର ଓ ଚନ୍ଦ୍ରମଣି ଗୋପନରେ ପରାମର୍ଶ କରିବାକୁ ଲାଗିଲେ । କାରଣ ଗଦାଧର ଜାଣି ପାରିଲେ ସବୁ ଭଣ୍ଡୁର କରିଦେବ । କିନ୍ତୁ ଯେତେ ତାକୁ ଲୁଚେଇ ଲୁଚେଇ ପରାମର୍ଶ କଲେ ମଧ୍ୟ ସେ ଶୁଣି ପକାଇଲା କଥାଟା ।

ଶୁଣି ପକାଇ କିନ୍ତୁ ଗୋଟାଏ ଅଦ୍‌ଭୁତ ଭାବ ଆସିଲା ତା' ମନକୁ ।

'ଆରେ ! ମୋ ବିଭାଘର ହେବ ରେ !' ଆନନ୍ଦରେ ଉଛୁଳି ପଡ଼ିଲା । ଶିଶୁ ପରି ଉଲ୍ଲାସ । ଶିଶୁ ପରି ନୃତ୍ୟାନନ୍ଦ । ଘରେ କୌଣସି ପର୍ବ-ପର୍ବାଣି ହେଉଥିଲେ, ଅଥବା ମାମୁଁ ମଉସା ଭଳି କୌଣସି ପ୍ରିୟ ଆତ୍ମୀୟ ଘରକୁ ଆସୁଛନ୍ତି ବୋଲି ଜାଣିଲେ ସାନ ପିଲାଟିଏ ଯେଉଁ ଭଳି ଡିଆଁ-କୁଦା ମାରେ, ଠିକ୍ ସେହି ଭଳି । ସତେ ଅବା ସବୁଠାରୁ ପ୍ରିୟ, ସବୁଠାରୁ ପ୍ରୟୋଜନୀୟ କିଏ ଜଣେ ଆସୁଛି ତା' ଘରକୁ । ତାହାର ସମସ୍ତ ପ୍ରାର୍ଥନାର ପ୍ରତୀକ, ପ୍ରତ୍ୟକ୍ଷ ମାହେଶ୍ୱରୀ ।

ବିଭାଘର ପାଇଁ ତେବେ ମନ ଅଛି ଗଦାଧରର । ଚନ୍ଦ୍ରମଣି ନିଶ୍ଚିନ୍ତ ହେଲେ । ରାମେଶ୍ୱର ମଧ୍ୟ । ମଧ୍ୟସ୍ଥ ଜରିଆରେ କଥାବାର୍ତ୍ତା ଆରମ୍ଭ ହେଲା । ମଧ୍ୟସ୍ଥ ପୁଣି ଆଉ କେହି ନୁହନ୍ତି, ହୃଦୟର ବଡ଼ଭାଇ ଲକ୍ଷ୍ମୀ ମୁଖାର୍ଜୀ ।

ହୃଦୟର ନିଜ ଘର ଶିୟଡ଼ ଗ୍ରାମରେ । ଗଦାଧର ଯାଉଛି ସେଠିକି ବୁଲିବା ପାଇଁ - ଯାଉଛି

ସବାରୀରେ ବସି । ଉପରେ ଅନନ୍ତ ନୀଳାକାଶ, ଆଗରେ ଯେତେ ଦୂର ଯାଏ ଆଖି ପାଉଛି, କେବଳ ତରଙ୍ଗାୟିତ ଶ୍ୟାମଳ ଶସ୍ୟ-କ୍ଷେତ୍ର । ଦେଖୁ ଦେଖୁ ଗଦାଧରର ଭାବବେଶ ଆରମ୍ଭ ହେଲା । ତା' ଭିତରେ ଯେଉଁ ଆଦିକବି ଧ୍ୟାନସ୍ଥ ରହିଥିଲେ ସେ ଯେପରି କି ତାଙ୍କର ପ୍ରଜ୍ଞାନମୟ ତୃତୀୟ ନୟନ ଉନ୍ମୀଳନ କଲେ । ଗଦାଧର ଦେଖିଲା, ତା' ଦେହ ଭିତରୁ ଦୁଇଟି କିଶୋର-ବୟସ୍କ ବାଳକ ବାହାରି ଆସି ଉନ୍ମୁକ୍ତ ପ୍ରାନ୍ତର ଉପରେ ନାଚି କୁଦି ଖେଳୁଛନ୍ତି । କେତେବେଳେ ଚାଲି ଯାଉଛନ୍ତି ଦୂରକୁ, କେତେବେଳେ ପୁଣି ଖେଳୁ ଖେଳୁ ଚାଲି ଆସୁଛନ୍ତି ସବାରି ପାଖକୁ । କେବଳ ଛାୟାମୂର୍ତ୍ତି ରୂପରେ ନୁହେଁ, ବାସ୍ତବ ରୂପରେ । ହସୁଛନ୍ତି, କଥା କହୁଛନ୍ତି, ଗୀତ ଗାଉଛନ୍ତି । କିଏ ଏ ପିଲା ଦୁଇଟି ? ଘର କେଉଁଠି ? ତା' ଦେହ ଭିତରେ ରହିଥିଲେ କିପରି ?

ବହୁ ଦିନ ପର୍ଯ୍ୟନ୍ତ ଏ ପ୍ରଶ୍ନର ମୀମାଂସା ଗଦାଧର କରିପାରି ନଥିଲା । ପ୍ରାୟ ଦେଢ଼ବର୍ଷ ପରେ ଦକ୍ଷିଣେଶ୍ୱରରେ ବ୍ରାହ୍ମଣୀକୁ ଦିନେ ପଚାରିଲା ଗଦାଧର, 'ସେଇ ପିଲା ଦୁଇଟି କିଏ କହି ପାରିବ ? ମୁଁ ଭୁଲ ଦେଖି ନଥିଲି ତ ?'

'ନା, ବାପା, ଭୁଲ ଦେଖି ନାହଁ । ଏଥର ନିତ୍ୟାନନ୍ଦଙ୍କ ଦେହରେ ଚୈତନ୍ୟଙ୍କ ଆବିର୍ଭାବ । ତୁମ ଭିତରେ ଚୈତନ୍ୟ ଓ ନିତ୍ୟାନନ୍ଦ ଦୁଇ ଜଣ ଯାକ ଆସି ଅବିର୍ଭାବ ହୋଇଛନ୍ତି । ସେହି ଦୁଇ ଜଣ ସେଦିନ ତୁମ ଶରୀରରୁ ବାହାରି ଆସି ଖେଳୁଥିଲେ ।'

ଶିୟଡ଼ରେ ହୃଦୟ ଘରେ କୀର୍ତ୍ତନ ହେଉଛି । ଗଦାଧର ବସି କୀର୍ତ୍ତନ ଶୁଣୁଛି । ବହୁତ ଲୋକ ଜମା ହୋଇଛନ୍ତି । ସ୍ତ୍ରୀ, ପୁରୁଷ ଏବଂ ସର୍ବତ୍ରଗାମୀ ଅନୁଷଙ୍ଗ, ସାନ ସାନ ପିଲା ମଧ୍ୟ ଅନେକ । ଜଣେ ସ୍ତ୍ରୀ ଲୋକର କୋଳରେ ବସିଛି ତିନି-ଚାରି ବର୍ଷର ଝିଅଟିଏ । ବଡ଼ ବଡ଼ ଆଖିରେ ଚାରିଆଡ଼କୁ ଅନାଇ ଦେଖୁଛି । ସ୍ତ୍ରୀ-ଲୋକଟି ଝିଅର ଭାବ-ଭଙ୍ଗୀ ଦେଖି ଗେଲ କରୁ କରୁ ପଚାରିଲା, କିଲୋ ? ବାହା ହବୁ ? ଝିଅଟି ମୁଣ୍ଡ ହଲାଇ ହଁ କଲା । ଏଠି ଏତେ ଲୋକ ବସିଛନ୍ତି, ଦେଖିଲୁ ୟା'ଙ୍କ ଭିତରୁ କାହାକୁ ତୋର ପସନ୍ଦ ? ସହଜ ଭାବରେ ହାତ ଟେକି ଝିଅଟି ଆଙ୍ଗୁଠିରେ ଦେଖେଇ ଦେଲା ଅଳ୍ପ ଦୂରରେ ବସିଥିବା ଗଦାଧରକୁ ।

ଯେଉଁ ସ୍ତ୍ରୀଲୋକ ଜଣକ କୋଳରେ ଝିଅଟିକୁ ଧରି ବସିଥିଲେ ସେ ହେଉଛନ୍ତି ଶିୟଡ଼ର ହରିପ୍ରସାଦ ମଜୁମଦାରଙ୍କ କନ୍ୟା ଶ୍ୟାମାସୁନ୍ଦରୀ । ତାଙ୍କର ବିବାହ ହୋଇଛି ଜୟରାମବାଟି ଗ୍ରାମର ରାମଚନ୍ଦ୍ର ମୁଖାର୍ଜୀଙ୍କ ସହିତ । ବାପ ଘରକୁ ଆସିଛନ୍ତି, ବୁଲି ଯିବା ପାଇଁ । କୋଳରେ ତାଙ୍କର ପ୍ରଥମ ସନ୍ତାନ ସାରଦା ।

କେତେ ଦିନ ଆଗର କଥା । ବାପ ଘରକୁ ଆସିଛନ୍ତି ଶ୍ୟାମାସୁନ୍ଦରୀ । ଦେହ ସେତେ ଭଲ ନାହିଁ । ଦିନେ ଯାଇଛନ୍ତି ଏଲ୍ଲା-ପୋଖରୀ ହୁଡ଼ାକୁ ଶୌଚ କର୍ମ ପାଇଁ । ଖିଆଲ ନାହିଁ, ବସି ପଡ଼ିଲେ ଗୋଟାଏ ବେଲ ଗଛ ପାଖରେ । ଅଳ୍ପ ଦୂରରେ ଗାଁର କୁମ୍ଭାର ସାହି । ହାଣ୍ଡି ଆଟିକା ପୋଡ଼ା ହୁଏ ସେଠି । ହଠାତ୍ ଟିକି ପାଦରେ ରୁଣୁ ଝୁଣୁ ନୂପୁର ବାଜିବାର ଶବ୍ଦ ହେଲା । ଟିକିଏ ପରେ ଗୋଟିଏ ସାନ ଝିଅ ଚଞ୍ଚଳ ପାଦରେ ନାଚି ନାଚି ଆସିଲା । ଶ୍ୟାମାସୁନ୍ଦରୀଙ୍କ କୋଳକୁ ଡେଇଁ ପଡ଼ି ଗଳାରେ ବାହୁ ଛନ୍ଦି ଦେଲା । ଶ୍ୟାମାସୁନ୍ଦରୀଙ୍କ ମୁଣ୍ଡ ବୁଲାଇ ଦେଲା, ନିଜକୁ ସମ୍ଭାଳି ନପାରି ତଳେ ପଡ଼ିଗଲେ । ମନେ ହେଲା ସେହି ଝିଅଟି ତାଙ୍କ ପେଟରେ ପଶିଗଲା ।

ଠିକ୍ ସେହି ଭଳି, ଆଉ ଦିନେ ଖରା ବେଳେ ରାମଚନ୍ଦ୍ର ଖାଇସାରି ଶୋଇଛନ୍ତି, ସ୍ୱପ୍ନ ଦେଖିଲେ, ଟିକି ଝିଅଟିଏ ତାଙ୍କ ପିଠି ଉପରେ ଚଢ଼ିଯାଇ ଗଳାରେ ବାହୁଛନ୍ଦି ଦେଇଛି । ନାନା ଅଳଙ୍କାରରେ ରୂପ ଝଲସି ଉଠୁଛି । ଏ ଗରିବ ଘରେ ତୁମେ, କିଏ ମା ? କାହିଁକି ଆସିଲ ଏଠିକି ? ଝିଅଟି ହସିଲା-ଭଙ୍ଗୀରେ କହିଲା, ଆସିଲି ତୁମ ପାଖକୁ ।

୧୨୬୦ ସାଲ, ପୌଷ ୮ ଦିନ, ଗଦାଧର ଜନ୍ମ ହେବାର ପ୍ରାୟ ଅଠର ବର୍ଷ ପରେ, ଜୟରାମବାଟିରେ ଶ୍ୟାମାସୁନ୍ଦରୀଙ୍କ ଝିଅ ଜନ୍ମହେଲା । ନାଁ ରଖାଗଲା ସାରଦା ।

ଠାକୁର କହିଲେ, 'ସେ ସରସ୍ୱତୀ । ସାରଦା । ଜ୍ଞାନଦାନ କରିବା ପାଇଁ ଆସିଛି ।'

ଭକ୍ତିର ପଥ ସତ୍ୟ, ଜ୍ଞାନର ପଥ ମଧ୍ୟ ସତ୍ୟ । ଭକ୍ତିର ଅର୍ଥ ଈଶ୍ୱରଙ୍କ ଠାରେ ପରାନୁରକ୍ତି । 'ସୁଖାନୁଶୟୀ ରାଗଃ' । ବିଷୟ ଯେତେ ସୁଖକର ସେଥିରେ ଅନୁରାଗ ସେତେ ତୀବ୍ର । ଆଉ ଯହିଁରେ ଅନୁରାଗ ପରମ ବା ନିରତିଶୟ ତାହା ହିଁ ଈଶ୍ୱର । ଅନୁରାଗର ଧର୍ମ ହେଉଛି ସ୍ମରଣ-ଚିନ୍ତନ-ଅନୁଧ୍ୟାନ । ତେଣୁ ଅନୁରାଗର ବସ୍ତୁରେ ନିୟତଚିତ୍ତ ହୋଇ ରହିବା ହିଁ ଭକ୍ତି । ଯୋଗ-ଶାସ୍ତ୍ରର ଭାଷାରେ ତାହା ହିଁ ସମାଧି । ତେଣୁ ଭକ୍ତି ଓ ଯୋଗ ମଧ୍ୟରେ ପ୍ରଭେଦ ନାହିଁ । ଜ୍ଞାନ ମଧ୍ୟ ଅଭିନ୍ନ । ଯେତେବେଳେ ପରମାତ୍ମବୋଧ ଜାଗ୍ରତ ରହିଥିବ ସେତେବେଳେ ଜ୍ଞାନ । ଯୋଗ-ଶାସ୍ତ୍ରରେ ଏହାକୁ କୁହାଯାଏ 'ଅବିପ୍ଲବା ବିବେକଖ୍ୟାତି' । ଅନ୍ୟ ସମସ୍ତ ବିଷୟ ତ୍ୟାଗ କରି ଏକମାତ୍ର ପରମାଙ୍କୁ ନିୟତ ବୋଧଗମ୍ୟ ରଖିବା ହିଁ ପ୍ରକୃତ ଜ୍ଞାନର ଲକ୍ଷଣ ।

ଭକ୍ତି କୁହ, ଯୋଗ କୁହ ଅଥବା ଜ୍ଞାନ କୁହ - ଅଭୀଷ୍ଟ ବସ୍ତୁରେ ଅନନ୍ୟଚିତ୍ତତା ହିଁ ମୁଖ୍ୟବୃତ୍ତି ।

କିନ୍ତୁ ଯେତେ ବିଚାର-ବିତର୍କ କର, ମା'ଙ୍କ କୃପା ନ ହେଲେ କିଛି ହୋଇ ପାରିବ ନାହିଁ । ମଣିଷର ଶକ୍ତି କେତେ ? କେତେ ଚେଷ୍ଟା ବା ସେ କରି ପାରିବ ? କାମ-କାଞ୍ଚନ ପ୍ରକୃତରେ ମିଥ୍ୟା, ଜଗତ ଭୂତ-ଭବିଷ୍ୟ-ବର୍ତ୍ତମାନ ତିନି କାଳପାଇଁ ଯଥାର୍ଥରେ ଅ-ସତ୍, ସଜ୍ଞାନରେ ଏ ଧାରଣା ମନକୁ ଆଣିବା କଅଣ ସହଜ କଥା ? ମା'ଙ୍କ ଦୟା ନ ହେଲେ, ହୋଇ ପାରିବ ନାହିଁ । କଥାରେ କହନ୍ତି ପରା, ଗୋଟିଏ ଜୁଆଣି ଦାନାରେ ଗୋଟିଏ ଭାତ ହଜମ ହୁଏ, କିନ୍ତୁ ଯେତେବେଳେ ପେଟ ଖରାପ ହୁଏ, ସେତେବେଳେ ଶହେଟି ଜୁଆଣି ଦାନା ବି ଗୋଟିଏ ଭାତ ହଜମ କରାଇ ପାରିବ ନାହିଁ । ଏକମାତ୍ର ଉପାୟ, ମା'ଙ୍କୁ ପ୍ରସନ୍ନ କର, ମା'ଙ୍କ କୃପା ପାଇଁ ଅପେକ୍ଷା କର । ''ସୈଷା ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ'' ।

ଜୟରାମ ମୁଖାର୍ଜୀଙ୍କ ଝିଅ କାଳୀ ପାଇଁ ବିବାହ-ପ୍ରସ୍ତାବ ଧରି ଆସିଲେ ମଧ୍ୟସ୍ଥ । କିନ୍ତୁ ଜୟରାମ ରାଜି ନୁହନ୍ତି । ନିଶାଖୋର ନ ହେଉ, ଆଡ଼ବାୟା ତ ! ତାକୁ ଜୋଇଁ କରି ପାରିବି ନାହିଁ । ଆହୁରି କେତେ ଜାଗାରେ ବି ପ୍ରସ୍ତାବ ପଡ଼ିଲା । ରାମେଶ୍ୱର ନିଜେ ପଛେଇଲେ । ସେ କାଳରେ କନ୍ୟା-ପିତାମାନେ କନ୍ୟା-ସୁନା ବା ପଣ ନେଉଥିଲେ । କନ୍ୟା-ସୁନା ପାଇଁ ସମ୍ବଳ ନାହିଁ ରାମେଶ୍ୱରଙ୍କର । ତେଣୁ ପ୍ରସ୍ତାବ ଭାଙ୍ଗିଲା । କଅଣ କରାଯିବ ଏବେ ? ଉପାୟ କଅଣ ?

ଉପାୟ ଅତି ସହଜ । ଚାଷୀମାନଙ୍କର କାକୁଡ଼ି-କିଆରୀ ଦେଖିଛ ?

ମୁହଁ ଶୁଖେଇ ବସିଥିଲେ ଚନ୍ଦ୍ରମଣି । ପାଖରେ ରାମେଶ୍ୱର । ଦୁଇଜଣ ଯାକ ଚମକି

ପଡ଼ିଲେ ।

ଯେଉଁ କାକୁଡ଼ିଟି ହୃଷ୍ଟ-ପୁଷ୍ଟ ହୋଇ ବଢ଼ିଥାଏ ଚାଷୀ ତା' ଉପରେ ଖଣ୍ଡିଏ କୁଟା ବାନ୍ଧି ଦିଏ । କୁଟା ବାନ୍ଧି ସନ୍ତକ ଦେଇ ରଖେ ସେ ଗୋଟିକ ଠାକୁରଙ୍କ ପାଖରେ ଭୋଗ ଲଗେଇବ ବୋଲି । କାଳେ କେତେବେଳେ କିଏ ଭୁଲ ଭଟକାରେ ଛିଣ୍ଡେଇ ପକେଇବ, ସେଥିପାଇଁ ଏଇ କୁଟା-ସନ୍ତକ । ସେଇଭଳି -

ସେଇ ଭଳି, କଅଣ ? ମା ଏବଂ ଭାଇ ଚାହିଁ ରହିଲେ କିଛି ବୁଝି ନପାରି ।

'ସେଇ ଭଳି, ମାନେ, ମୋ ବିବାହ ପାଇଁ ପାତ୍ରୀ ଜୟରାମବାଟି ଗାଁର ରାମ ମୁଖାର୍ଜୀଙ୍କ ଘରେ କୁଟା-ବନ୍ଧା ହୋଇ ରହିଛି । କହିଲା ଗଦାଧର । 'ତୁମେ ସବୁ ମିଛଟାରେ ଏଣେ ତେଣେ ଖୋଜୁଛ । ଏତେ ଚିନ୍ତା କରିବାର, ଏତେ ଆଡ଼େ ଯିବାର କୌଣସି ପ୍ରୟୋଜନ ନାହିଁ ।'

ଚନ୍ଦ୍ରମଣି ଲୋକ ପଠେଇଲେ ଜୟରାମବାଟି ଗାଁକୁ । କିନ୍ତୁ ଖବର ଯାହା ମିଳିଲା, ତାହା ସେତେ ଉତ୍ସାହଜନକ ନୁହେଁ । ସବୁ ଠିକ୍, କେବଳ ପାତ୍ରୀର ବୟସ ମାତ୍ର ପାଞ୍ଚ ବରଷ ।

ହେଉ ପଛେ ପାଞ୍ଚ ବରଷ । ଗୁପ୍ତ ଭାବରେ ହିଁ ଆପ୍ତଲୀଳା ଚାଲେ ଜଗନ୍ମାତାଙ୍କର । କେଜାଣି ବା ଇଏ ସେହି ଜନକ ନନ୍ଦିନୀ ସୀତା । ସେହି କୃଷ୍ଣ-ଉନ୍ମାଦିନୀ ରାଧିକା । ଶିବଭାବଭାବିନୀ ଭଗବତୀ । ଚନ୍ଦ୍ରମଣି ସମ୍ମତି ଦେଲେ ।

କନ୍ୟାଘର ପକ୍ଷରୁ ପଣ ଦାବି ହେଲା ତିନିଶହ ଟଙ୍କା । ରାମେଶ୍ୱର ଯୋଗାଡ଼ କଲେ ସେତକ ଟଙ୍କା । ବିବାହର ଦିନ ଧାର୍ଯ୍ୟ ହେଲା । ୧୨୬୬ ସାଲ ବୈଶାଖ ମାସ ଶେଷ ଲଗ୍ନ । ଗଦାଧରର ବୟସ ସେତେବେଳେ ଚବିଶ, ସାରଦା ଛ'ରେ ପଶିଛି ।

ବିଭାଘର ହେବ ଜୟରାମବାଟିରେ । କାମାରପୁକୁରରୁ ପ୍ରାୟ ଚାରି ମାଇଲ ପଶ୍ଚିମକୁ । ବର-ବେଶରେ ବାହାରିଛି ଗଦାଧର । ଆଣ୍ଠୁ କରି ପିନ୍ଧେଇ ଦିଆହୋଇଛି ଖଣ୍ଡିଏ ସୁନ୍ଦର ଧୋତି । ଦେହରେ କୁରୁତା, ଗଳାରେ ଗଜରା ହାର, କପାଳରେ ଚନ୍ଦନ ପାଟି । ପଡ଼ିଶା ଘରର ବୋହୂମାନେ ଆସି ସଜେଇ ଦେଇଛନ୍ତି ଗଦାଧରକୁ । କିନ୍ତୁ ଭାଉଜଙ୍କ ମନରେ ଗୋଟାଏ ଦୁଃଖ ବାଜା ନାହିଁ । ଅନ୍ତତଃ ଢୋଲ ଆଉ କଂସାଟା ପିଟା ନହେଲେ କି ବାହାଘର !

ରୁହ, ରୁହ, ମୁଁ ଢୋଲ ବଜେଇ ଦଉଛି ।

ଦୁଇ ହାତରେ ନିଜର ପିଚା ଚାପୁଡ଼େଇ ନାଚିଗଲା ଗଦାଧର । ମୁହଁରେ ଢୋଲର ବୋଲ । ହସି ହସି ସମସ୍ତେ ବେଦମ । ଭାଉଜଙ୍କ ମନରେ ବି ଆଉ ଦୁଃଖ ନାହିଁ ।

ବିବାହ କରିବାକୁ ଯାଉଛି - ଏଣେ ନିଜ ପିଚାରେ ଢୋଲ ପିଟା ଚାଲିଛି !

ବାଲ୍ୟଭାବ ମନକୁ ନ ଆଣିଲେ ଗଦାଧରକୁ ବୁଝି ହେବ ନାହିଁ ।

ଖାଲି ପାଦରେ, ଖୋଲା ଦେହରେ ଚାଲିଛନ୍ତି ବରଯାତ୍ରୀମାନେ । ଅଣ୍ଟାରେ ଚାଦର, କାନ୍ଧରେ ଗାମୁଛା, ହାତରେ ଲାଠି । ଏହା ଠିକ୍ ଶିବଙ୍କ ବିବାହ-ଯାତ୍ରା ପରି -ସାଙ୍ଗରେ ଚାଲିଛନ୍ତି ତାଳ-ବେତାଳ, ଭୂତ-ପ୍ରେତ, ଦଳବାନ୍ଧି , ମଝିରେ ଚାଲୁଛନ୍ତି କନ୍ଦର୍ପ-ଦର୍ପନାଶୀ ବ୍ୟୋମକେଶ ।

ସାରଦା ସହିତ ଶୁଭଦୃଷ୍ଟି ହେଲା ଗଦାଧରର । କିଭଳି ହୋଇଥିବ କେଜାଣି ! ଯେଉଁ ଭଳି ହୋଇଥିଲା । ଅପର୍ଣ୍ଣାଙ୍କ ସହିତ ମହାଦେବଙ୍କର । ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀମତୀଙ୍କର । ସେହିଭଳି ?

ରାଧା-କୃଷ୍ଣ ଯୁଗଳ-ମୂର୍ତ୍ତିର ଅର୍ଥ କଅଣ ? ପୁରୁଷ ଓ ପ୍ରକୃତି ଅଭେଦ । କୌଣସି ପାର୍ଥକ୍ୟ ନାହିଁ ତାଙ୍କ ମଧ୍ୟରେ । ପୁରୁଷ-ପ୍ରକୃତିର ଯୋଗ ହିଁ ଯୋଗମାୟା । ବଙ୍କିମ ଠାଣି ସେହି ଯୋଗ ନିମନ୍ତେ । ଏହି ଯୋଗ ଦେଖିବା ପାଇଁ ଶ୍ରୀକୃଷ୍ଣଙ୍କ ଦୃଷ୍ଟି ଶ୍ରୀମତୀଙ୍କ ଆଡ଼କୁ, ଶ୍ରୀମତୀଙ୍କ ଦୃଷ୍ଟି ଶ୍ରୀକୃଷ୍ଣଙ୍କ ଆଡ଼କୁ । ଶ୍ରୀମତୀଙ୍କ ନାସାରେ ନୀଳ-ମଣି, କାରଣ ଶ୍ରୀକୃଷ୍ଣ ଶ୍ୟାମ ବର୍ଣ୍ଣ । ଶ୍ରୀକୃଷ୍ଣଙ୍କ ନାକରେ ମୁକ୍ତାର ବସଣି, କାରଣ ଶ୍ରୀମତୀ ଗୌର ବର୍ଣ୍ଣ, ମୁକ୍ତା ପରି ଉଜ୍ଜ୍ୱଳ । ଶ୍ରୀମତୀଙ୍କ ବସନ ନୀଳ, ତେଣୁ ଶ୍ରୀକୃଷ୍ଣ ପୀତାମ୍ବର । ଶ୍ରୀମତୀଙ୍କ ପାଦରେ ନୂପୁର, ତେଣୁ ଶ୍ରୀକୃଷ୍ଣଙ୍କ ପାଦରେ ମଧ୍ୟ ନୂପୁର । ଏହାର ଅର୍ଥ- ପ୍ରକୃତି ସହିତ ପୁରୁଷର ଭିତରେ ବାହାରେ ସର୍ବତ୍ର ମେଳ । ଅଥବା ମନେ ପକାଅ, ଶିବ-କାଳୀଙ୍କ ମୂର୍ତ୍ତି । ଶିବଙ୍କ ଉପରେ ଛିଡ଼ା ହୋଇଛନ୍ତି କାଳୀ, ଶିବ ଶବହୋଇ ପଡ଼ି ରହିଛନ୍ତି ପାଦ ତଳେ । କାଳୀ ଚାହିଁ ରହିଛନ୍ତି ଶିବଙ୍କ ଆଡ଼କୁ । ପ୍ରକୃତି କର୍ତ୍ତ୍ରୀ, ପୁରୁଷ ଅକର୍ତ୍ତା । ତେଣୁ ଶିବ ଶବ ହୋଇ ରହିଛନ୍ତି । କିନ୍ତୁ ପୁରୁଷ ସଂଯୋଗରେ ହିଁ ପ୍ରକୃତିର ଲୀଳା - ସୃଷ୍ଟି-ସ୍ଥିତି-ଲୟର ରାସୋତ୍ସବ । ଶିବ ଓ ଶକ୍ତି -ଏହା ଭିନ୍ନ ଆଉ କିଛି ନାହିଁ ସଂସାରରେ ।

ଶିବ-ଶକ୍ତିଙ୍କର ଚାରି ଚକ୍ଷୁର ମିଳନ ହେଲା ।

ସତେଇଶ କାଠି ଜଳେଇ ସଧବା-ସ୍ତ୍ରୀଲୋକମାନେ ବରକୁ ପ୍ରଦକ୍ଷିଣ କରୁଛନ୍ତି, ହଠାତ୍ ଜଳନ୍ତା କାଠି ଲାଗି ଯାଇ ଗଦାଧରର ହାତରେ ବନ୍ଧା ହୋଇଥିବା ହଳଦୀ-ମଖା ମଙ୍ଗଳସୂତ୍ର ପୋଡ଼ିଗଲା ।

ଏ କଅଣ ହେଲା ?

ଅବିଦ୍ୟାର ବନ୍ଧନ ଛିନ୍ନ ହୋଇଗଲା । ଅବିଦ୍ୟା-ମୁକ୍ତ ଶକ୍ତିକୁ ଗ୍ରହଣ କଲା ଗଦାଧର ।

ଠାକୁର କହିଲେ, 'ଏହି ଅବିଦ୍ୟାକୁ ଜୟ କରିବା ପାଇଁ ହିଁ ଶକ୍ତିର ପୂଜା-ପଦ୍ଧତି । ତାହାକୁ ପ୍ରସନ୍ନ କରିବା ପାଇଁ ତ ଦାସୀ-ଭାବରେ, ବୀର-ଭାବରେ, ସନ୍ତାନ-ଭାବରେ ତାଙ୍କର ଆରାଧନା । ରମଣ ଦ୍ୱାରା ପ୍ରସନ୍ନ କରିବାକୁ କୁହାଯାଏ ବୀର ଭାବ । ତାହା ଅତି ଉତ୍କଟ ସାଧନା । ମୋର କିନ୍ତୁ ସନ୍ତାନ-ଭାବ । ସମସ୍ତ ନାରୀ-ସ୍ତନ ମୋ ପାଇଁ ମାତୃସ୍ତନ । ମା'ଙ୍କ ସଖୀ ଭାବରେ, ଦାସୀ ଭାବରେ ବି ରହିଥିଲି ଦୁଇ ବର୍ଷ । ପ୍ରତ୍ୟେକ ସ୍ତ୍ରୀଲୋକ ଗୋଟିଏ ଗୋଟିଏ ଶକ୍ତିର ରୂପ । ବିବାହ ସମୟରେ ବଙ୍ଗ ଦେଶରେ ବର ହାତରେ ଖିଲିକାତି ରହେ, ପଶ୍ଚିମାଞ୍ଚଳରେ ରହେ ଛୁରି । ଏହାର ଅର୍ଥ ସେହି ଶକ୍ତି-ରୂପା କନ୍ୟା ସାହାଯ୍ୟରେ ବର ମାୟାଜାଲ ଛେଦନ କରିବ । ଏଇଟା ମଧ୍ୟ ବୀର ଭାବ । କନ୍ୟା ଶକ୍ତିରୂପା । ବିବାହ ସମୟରେ ବର ବୋକାଟି ପରି ପଛରେ ବସିଥାଏ । କନ୍ୟା କିନ୍ତୁ ନିଃଶଙ୍କ ।

ଚଉଠି ରାତିରେ ମଧୁଶଯ୍ୟା ପାଇଁ ଆୟୋଜନ କରୁଛନ୍ତି ସ୍ତ୍ରୀଲୋକମାନେ । ନିମନ୍ତ୍ରିତ ଅତିଥିମାନଙ୍କର ଭୋଜି ଚାଲିଛି ।

ରଙ୍ଗିନୀମାନେ ଆସି ଘେରିଗଲେ ଗଦାଧରକୁ । ଗୋଟାଏ ଗୀତ ଗାଅ ।

କେତେ ରଙ୍ଗ-ରହସ୍ୟ କରୁଛନ୍ତି ସ୍ତ୍ରୀଲୋକମାନେ, କେତେ ଲୀଳା-ଚାପଲ୍ୟ । ଦେଖୁ ଦେଖୁ ଗଦାଧରର ମନେ ପଡ଼ିଗଲା ଭୁବନ-ରଙ୍ଗିନୀଙ୍କ କଥା । ହଁ, ଗୀତ ସେ ନିଶ୍ଚୟ ଗାଇବ । ମୁକ୍ତ

ଉଦାର କଣ୍ଠରେ ଆରମ୍ଭ କଲା ଶ୍ୟାମାଗୁଣଗାନ ।

ଯେଉଁମାନେ ଖାଇ ବସିଥିଲେ, ଖାଇବା ଭୁଲି ଯାଇ ସ୍ତବ୍ଧ ହୋଇ ଶୁଣିବାକୁ ଲାଗିଲେ । ରଙ୍ଗିନୀ ମାନେ ରଙ୍ଗ ଭୁଲିଗଲେ, ପାଷାଣ-ପ୍ରତିମା ପରି ଚାହିଁ ରହିଲେ ମୁହଁକୁ । ଗଦାଧର ତନ୍ମୟ, ବିଭୋର, ବାହ୍ୟ ଜ୍ଞାନଶୂନ୍ୟ । ତଳେ ମୁଣ୍ଡ ଲଗାଇ ପ୍ରଣାମ କରୁଛି ରଙ୍ଗିନୀମାନଙ୍କୁ । ମା, ମା ଗୋ, ସବୁଠାରେ ତୁ । ସବୁଠି ଲାଗିଛି ତୋରି ଆନନ୍ଦର ହାଟ ।

ମଧୁର କଣ୍ଠରେ ନାମୋଚ୍ଚାରଣ କରୁଛନ୍ତି ଠାକୁର । ମା'ଙ୍କୁ କହୁଛନ୍ତି, 'ମା, ବ୍ରହ୍ମଜ୍ଞାନ ଦେଇ ମୋତେ ବେ-ହୋସ କରି ପକାଇବୁ ନାହିଁ । ବ୍ରହ୍ମଜ୍ଞାନ ମୋର ଲୋଡ଼ା ନାହିଁ, ମା । ମୁଁ ଆନନ୍ଦ ଚାହେଁ, ବିଳାସ ଚାହେଁ । ଶୁଖିଲା ସନ୍ୟାସୀଟିଏ ହେବା ଲାଗି ମୋର ଅଭିଳାଷ ନାହିଁ ।'

## ୧୭

ଘର ଆଲୁଅ କରି ବୋହୂ ଆସିଛି ।

ବୋହୂକୁ ଦେଖିବା ପାଇଁ କେତେ ଲୋକ ଆସୁଛନ୍ତି । କେତେ ଆନନ୍ଦ । ଚନ୍ଦ୍ରମଣିଙ୍କ ମନରେ ଅପାର ଶାନ୍ତି । କିନ୍ତୁ ଏତେ ଆନନ୍ଦ ଭିତରେ ଗୋଟାଏ ଦୁଃଖ ରହି ରହି କଣ୍ଟା ପରି ଫୋଡ଼ି ହୋଇଯାଉଛି ତାଙ୍କ ମନରେ । ବୋହୂ ଦେହରୁ ଗହଣାଗୁଡ଼ିକ ଖୋଲି ଆଣିବାକୁ ପଡ଼ିବ ।

ବୋହୂ ପାଇଁ ଗହଣା ଗଢ଼େଇ ଦେବା ଭଳି ସମ୍ବଳ ତାଙ୍କର ନଥିଲା । ତେଣୁ ବିବାହ ଦିନ ଲାହା ବାବୁଙ୍କ ଘରୁ ମାଗି ଆଣି ବୋହୂକୁ ପିନ୍ଧାଇଥିଲେ । ଆଜି ସେ ସବୁ ଫେରାଇ ଦେବାର ଦିନ । ନ ଦେଲେ କଥା ରହିବ ନାହିଁ, ଲାହା ବାବୁଙ୍କ ଘରେ ମୁହଁ ଦେଖାଇ ହେବ ନାହିଁ । କିନ୍ତୁ କେମିତି ଖୋଲିବି ଗହଣାଗୁଡ଼ିକ ସେହି କୋମଳ ଶିଶୁ ଅଙ୍ଗରୁ ? ହାତ ଯାଉ ନାହିଁ ।

ମା'ଙ୍କ ମନ କଥା ବୁଝି ପାରିଲା ଗଦାଧର । କହିଲା, ତୁମେ ବ୍ୟସ୍ତ ହୁଅ ନାହିଁ, ମା । ମୁଁ ଖୋଲି ଆଣିବି ।

ନିଦରେ ଶୋଇଛି ସାରଦା । ଶୋଇଛି ଶୈଶବ-ଶାନ୍ତିରେ ନିଶ୍ଚେତନ ହୋଇ ।

ଡାହାଣ ହାତଟି ଟେକି ଧରି ଅନାୟାସରେ ଖୋଲି ଆଣିଲା ସେଇ ହାତରେ ପିନ୍ଧିଥିବା ସମସ୍ତ ଅଳଙ୍କାର । ସେହିପରି ପୁଣି ବାଁ ହାତରୁ । ଧୀରେ ଧୀରେ ଖୋଲି ଆଣିଲା ଦେହର ସମସ୍ତ ଅଳଙ୍କାର । ସାରଦା ଶୋଇଛି, କିଛି ଜାଣି ପାରିଲା ନାହିଁ ।

ଜାଗିଲା, ନିଦ ଭାଙ୍ଗିଲା ପରେ । ଆରେ ! ମୋ ଗହଣା ସବୁ ଗଲା କୁଆଡ଼େ ! କିଏ ନେଲା ? ବସି କାନ୍ଦିଲା ଆଖିରୁ ଲୁହ ଗଡ଼େଇ ।

ଚନ୍ଦ୍ରମଣିଙ୍କ ଛାତି ଦୁଃଖରେ କରତି ହୋଇ ଯାଉଛି । ସାରଦାକୁ କୋଳରେ ବସାଇ ଆଦର କଲେ । କହିଲେ, ଯାଇଛି ଯାଉ । କାନ୍ଦନା । ତା' ଠାରୁ ଆହୁରି ବଢ଼ିଆ ଗହଣା ତୋ ପାଇଁ ଗଢ଼େଇ ଦେବ ଗଦାଧର ।

ସାରଦା ଅବଶ୍ୟ ଶାନ୍ତ ହେଲା । କିନ୍ତୁ ତା' କକେଇ କଥାଟାକୁ ସହଜ ଭାବରେ ଗ୍ରହଣ କରି ପାରିଲେ ନାହିଁ । ଭାରି ବାଧିଲା ତାଙ୍କୁ । ପିଲା-ବୋହୂ, ନୂଆ ହେଇ ଆସିଛି । ତାକୁ ଏକାବେଳକେ

ବୈରାଗିନୀ କରେଇ ଦେଲ ? ଏତେ ରକମ କରି ତାକୁ ସଜେଇ ଥିଲ, ପୁଣି ଲୁଚେଇ ଲୁଚେଇ ସବୁ ଖୋଲି ନେଲ ? ପ୍ରବଞ୍ଚନା ନୁହେଁ ତ ଆଉ କଅଣ ? ରାଗରେ ଗର ଗର ହୋଇ ସାରଦାକୁ ସାଙ୍ଗରେ ଧରି ସିଧା ଫେରି ଆସିଲେ ଜୟରାମବାଟି ।

'କୁଆଡ଼େ ଆଉ ଯିବ ?' ହସି ହସି ମା'ଙ୍କୁ ସାନ୍ତ୍ୱନା ଦେଲା ଗଦାଧର : 'ସିଏ ନ ଆସିବ ତ ନ ଆସୁ, ହେଲେ ବିଭାଘର ତ ଆଉ ବଦଳିବ ନାହିଁ ।'

ଶ୍ରୀ ମା ଯେତେବେଳେ ଦକ୍ଷିଣେଶ୍ୱରରେ ଥିଲେ, ଠାକୁର ତାଙ୍କ ପାଇଁ ସୁନା-ଅଳଙ୍କାର ଗଢ଼େଇ ଦେଇଥିଲେ । ବାହୁରେ ତାବିଜ ଏବଂ ହାତକୁ କଙ୍କଣ ।

ଆରେ, କଙ୍କଣଗୁଡ଼ିକ ଡାଇମଣ୍ଡ-କଟା ହେବ ।

ଅଳଙ୍କାର ନକ୍ସା କିଭଳି ହେବ ସେ ଆଡ଼କୁ ବି ଠାକୁରଙ୍କ ନଜର ।

ଜାଣିଛୁ ? ପଞ୍ଚବଟୀରେ ଯେତେବେଳେ ସୀତା ଦେବୀଙ୍କ ଦର୍ଶନ ପାଇଥିଲି, ତାଙ୍କ ହାତରେ ଡାଇମଣ୍ଡ-କଟା କଙ୍କଣ ଥିଲା । ସେଇଭଳି କଙ୍କଣ ପିନ୍ଧେଇବି ତାକୁ ।

ବିଷ୍ଣୁ ମନ୍ଦିରରୁ ଅଳଙ୍କାର ଚୋରି ହୋଇଗଲା । ମଥୁରା ବାବୁ ପରିହାସ କରି ଠାକୁରଙ୍କୁ କହିଲେ, 'ଇଏ କଅଣ ହେଲା ଠାକୁର ? ତୁମେ ତୁମ ଅଳଙ୍କାରଗୁଡ଼ିକ ରଖି ପାରିଲନାହିଁ ? ଚୋର ହାତରେ ଟେକି ଦେଲ ?'

ଠାକୁର କହିଲେ, 'କଅଣ ଆଉ କହିବି ତୁମକୁ ? ସ୍ୱୟଂ ଲକ୍ଷ୍ମୀ ଯାହାଙ୍କର ଦାସୀ ତାଙ୍କର କ'ଣ ଐଶ୍ୱର୍ଯ୍ୟର ଅଭାବ ଅଛି ? ତୁମେ ଭଲା କେଉଁ ଐଶ୍ୱର୍ଯ୍ୟ ତାଙ୍କୁ ଦେଇପାରିବ ? ଯେଉଁ ଅଳଙ୍କାରଗୁଡ଼ିକ ଗଲା, ସେ ଗୁଡ଼ାକ ତୁମ ପାଇଁ ମୂଲ୍ୟବାନ, ତୁମ ପାଇଁ ବଡ଼ । କିନ୍ତୁ ଈଶ୍ୱରଙ୍କ ଆଖିରେ ସେ ଗୁଡ଼ାକ ମାଟି ପିଣ୍ଡୁଳା ।'

ଠିକ୍ ଏଇ କଥା ପୁଣି କହିଥିଲେ କେଶବ ସେନଙ୍କୁ* । 'ତୁମେ ସବୁ ଏତେ ଐଶ୍ୱର୍ଯ୍ୟ ବର୍ଣ୍ଣନା କର କାହିଁକି ? ହେ ଈଶ୍ୱର, ତୁମେ ଚନ୍ଦ୍ର-ସୂର୍ଯ୍ୟ ସୃଷ୍ଟି କରିଛ, ଆକାଶ ସୃଷ୍ଟି କରିଛ - ଏ ଗୁଡ଼ାକ କୁହ କାହିଁକି ? କଅଣ ଦରକାର ଏ ସବୁ କହିବା ? ବଗିଚା ଦେଖି କେବଳ ସେଇ ବଗିଚାଟାକୁ ତାରିଫ୍ କରିବାରେ କଅଣ ଲାଭ ? ବଗିଚାର ଯିଏ ମାଲିକ, ତାଙ୍କୁ ଦେଖିବ ନାହିଁ ? ବଗିଚାଟା ବଡ଼ ନା ମାଲିକ ବଡ଼ ? ମୁଁ ଯେତେବେଳେ ନରେନ୍ଦ୍ରକୁ ଦେଖିଲି, ସେତେବେଳେ ମୁଁ କେବଳ ତାକୁ ହିଁ ଦେଖିଲି । ତା' ଘର କେଉଁଠି, ବାପାଙ୍କ ନାଁ କଅଣ, କଅଣ କରନ୍ତି, ସେମାନେ କେତେ ଭାଇ - ଏ

---

* କେଶବ ଚନ୍ଦ୍ର ସେନ - (୧୮୩୮-୧୮୮୪) ବିଖ୍ୟାତ ବଙ୍ଗୀୟ ବାଗ୍ମୀ ଓ ବ୍ରାହ୍ମଧର୍ମର ପ୍ରଚାରକ ଓ ସଂସ୍ଥାପକ । ଏହାଙ୍କ ପ୍ରଭାବରେ ତତ୍କାଳୀନ ବଙ୍ଗ-ସମାଜରେ ଖ୍ରୀଷ୍ଟଧର୍ମର କ୍ରମବର୍ଦ୍ଧିଷ୍ଣୁ ପ୍ରଭାବ ପ୍ରତିହତ ହୋଇପାରିଥିଲା । ୧୮୭୦ରେ ସେ ଇଂଲଣ୍ଡ ଯାଇ ସେଠାରେ ଧର୍ମ ପ୍ରଚାର କରିଥିଲେ ଏବଂ ନିଜର ବାଗ୍ମିତା ଓ ମନୀଷା ବଳରେ ଇଂଲଣ୍ଡର ରାଣୀ ଭିକ୍ଟୋରିଆ ଓ ତତ୍କାଳୀନ ଇଂଲଣ୍ଡର ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ବ୍ରାହ୍ମ ଧର୍ମ ପ୍ରଚାରରେ ପ୍ରଥମ ଅବସ୍ଥାରେ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ସତୀର୍ଥ ଥାଇ ପରେ ମହର୍ଷିଙ୍କ ସହିତ ମତାନ୍ତର କାରଣରୁ ଏକ ନୂତନ ବ୍ରାହ୍ମ-ସମାଜ ସ୍ଥାପନ କରିଥିଲେ । ଜୀବନର ପ୍ରାନ୍ତ ଭାଗରେ ଶ୍ରୀ ରାମକୃଷ୍ଣଙ୍କ ସଂସ୍ପର୍ଶରେ ଆସି ସେ ହିନ୍ଦୁଧର୍ମାନୁମୋଦିତ ରୀତି-ନୀତିରେ ଅନୁପ୍ରାଣିତ ହୋଇଥିଲେ । (ଏହାଙ୍କ ଦ୍ୱିତୀୟା କନ୍ୟା ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ତାଙ୍କର ପ୍ରଥମ ମହାରାଣୀଙ୍କ ମୃତ୍ୟୁ ପରେ ବିବାହ କରିଥିଲେ ।)

ସବୁ କଥା ଭୁଲରେ ବି ତାକୁ କେବେ ପଚାରି ନାହିଁ । ଏତେ କଥା ପଚାରିବା ମୋର କଅଣ ଦରକାର ? ମୁଁ ଆମ୍ବ ଖାଇବାକୁ ଆସିଛି, ଆମ୍ବ ଖାଇବି । ବଗିଚାରେ କେତେଟା ଗଛ, କେତେ ଡାଳ, କେତେ ପତ୍ର- ସେଥିରୁ ମୋତେ କଅଣ ମିଳିବ ? ମଦ ପିଇ ସାରି ଶୁଣ୍ଢି ଦୋକାନରେ କେତେ ମହଣ ମଦ ଅଛି, ସେ ହିସାବ ମୁଁ ବୁଝିବାକୁ ଚାହିଁବି କାହିଁକି ? ବୋତଲେ ମଦରେ ତ ମୋ କାମ ହେଇଯାଇଛି !'

ତେବେ, ହଁ, ଗୋଟାଏ କଥା ବୁଝିବା ଦରକାର । ମଣିଷ ନିଜେ ଐଶ୍ୱର୍ଯ୍ୟପ୍ରିୟ, ତେଣୁ ଭାବେ ଈଶ୍ୱର ମଧ୍ୟ ଐଶ୍ୱର୍ଯ୍ୟପ୍ରିୟ । ତା'ର ଧାରଣା, ଈଶ୍ୱରଙ୍କ ଐଶ୍ୱର୍ଯ୍ୟକୁ ପ୍ରଶଂସା କଲେ ସେ ଖୁସି ହେବେ । କିନ୍ତୁ ଈଶ୍ୱରଙ୍କ ଆଖିରେ ଏଗୁଡ଼ାକ ଯାଦୁକରର ଖେଳ । ପଞ୍ଚଭୂତର କୁହୁକ- କାରସାଦି ।

ଠାକୁର ଯେବେ କଲିକତା ଆସୁଥିଲେ, ହୃଦୟ ତାଙ୍କୁ ସହର ସାରା ବୁଲେଇ ଦେଖାଉଥାଏ । ଦିନେ ବୁଲେଇ ନେଉ ନେଉ କହିଲା, 'ଦେଖ ମାମୁଁ, ଆଗରେ ସେଇଟା ଲାଟ ସାହେବଙ୍କ କୋଠି । ଦେଖୁଛ ? କେତେ ବଡ଼ ବଡ଼ ଖମ୍ବ ?'

ଠାକୁର ଚାହିଁ ଦେଇ ମା'ଙ୍କୁ ଦେଖିଲେ । ମା ପୁଣି ସବୁ ଦେଖେଇ ଦେଲେ ତାଙ୍କୁ । ଦେଖେଇ ଦେଲେ, କେବଳ କେତେ ଗୁଡ଼ାଏ ଗୋଲ ଗୋଲ ମାଟି -ଢେଲା ଥାକ ଥାକ କରି ସଜା ହୋଇଛି ।

ଶମ୍ଭୁ ମଲ୍ଲିକ ବିରାଟ ବଡ଼ ଲୋକ । ସବୁ ବେଳେ ମା'ଙ୍କ ପାଦରେ ମନ । ମଥୁର ବାବୁଙ୍କ ମୃତ୍ୟୁ ପରେ ସେ ହେଲେ ଠାକୁରଙ୍କ ରସଦଦାର - ପଡ଼ି ଯୋଗାଣକାରୀ । ଠାକୁରଙ୍କୁ କହିଲେ, 'ଆଶୀର୍ବାଦ କରନ୍ତୁ ଯେପରି ମୋର ଯାହା କିଛି ଐଶ୍ୱର୍ଯ୍ୟ ଅଛି, ସବୁ ତାଙ୍କରି ପାଦପଦ୍ମରେ ସମର୍ପଣ କରି ଦେଇ ମରିପାରେ ।'

ଠାକୁର ହସିଲେ । କହିଲେ, 'ସେ ଗୁଡ଼ାକ ତୁମ ପାଇଁ ସିନା ଐଶ୍ୱର୍ଯ୍ୟ । ହେଲେ, ତାଙ୍କୁ ତୁମେ କଅଣ ଦେବ ? ଦେବା ଭଳି ଅଛି ବା କଅଣ ତୁମର ? ତାଙ୍କ ଆଖିରେ ଏ ସବୁ ମାଟି-ଗୋଡ଼ି ।'

ଯଦି କିଛି ଦେବାକୁ ଚାହୁଁଛ, ତେବେ ଭକ୍ତି ଦିଅ । ପ୍ରାଣପୂର୍ଣ୍ଣ ଭକ୍ତି । ଈଶ୍ୱର କ'ଣ ଐଶ୍ୱର୍ଯ୍ୟରେ ବଶ ହୁଅନ୍ତି ? ସେ ଭକ୍ତିର ବଶ, ଭାବର ବଶ । ସେ କ'ଣ ତୁମ ପାଖରୁ ଟଙ୍କା କଉଡ଼ି ଧନ-ଦଉଲତ ଚାହାନ୍ତି ? ସେ ଚାହାନ୍ତି ଭାବ, ଭକ୍ତି, ଭଲ-ପାଇବା ।

ଗଦାଧର ସେ ଥର ପ୍ରାୟ ଦୁଇ ବର୍ଷ କାମାରପୁକୁରରେ ରହିଲା । ଚନ୍ଦ୍ରମଣିଙ୍କ ଇଚ୍ଛା ତା' ଦେହ ସଂପୂର୍ଣ୍ଣ ସୁସ୍ଥ ନ ହେବା ଯାଏ ସେ କଲିକତା ନ ଯାଉ । ଏଣେ ସାରଦା ସେତେବେଳକୁ ସାତ ବର୍ଷରେ ପାଦ ଦେଲାଣି । ଏଥର ଗଦାଧର ଥରେ ଶ୍ୱଶୁର ଘରକୁ ଯିବା ଦରକାର । ଫେରିବ ସ୍ତ୍ରୀକୁ ସାଙ୍ଗରେ ଧରି । ଗଲା ଗଦାଧର ।

ସାତବର୍ଷର ଝିଅ ସାରଦା - କିଏ ତାକୁ ଶିଖେଇ ଦେଲା କେଜାଣି - ଢାଳରେ ପାଣି ପୂରେଇ ନେଇ ଆସିଲା । ବିଞ୍ଚଣା ଆଣିଲା । ସତେ କି ସୁନ୍ଦର କଣ୍ଢେଇଟିଏ । ମୁଣ୍ଡରେ ବହଳ କଳା କେଶ, ଝୁଲି ପଡ଼ିଛି ପିଠି ଉପରକୁ । ଢାଳରୁ ପାଣି ଢାଳି ଗଦାଧରର ପାଦ ଧୋଇ ଦେଲା । ଓଦା

ହାତ ଦୁଇଟି ଧୀରେ ଧୀରେ ବୁଲାଇ ଆଣିଲା ପାଦ ଉପରେ । ତା' ପରେ ଆଣ୍ଠୁ ମାଡ଼ି ବସି ମଥାର କେଶରେ ପୋଛି ଦେଲା ପାଦ ।

ପାଦ ଧୋଇ ଦେଇ ସାରି ପାଖରେ ଆସି ଠିଆ ହେଲା । ଟିକି ହାତରେ ବିଞ୍ଚଣା ଧରି ବିଞ୍ଚିଦେଲା ଗଦାଧରଙ୍କୁ ।

ବୈକୁଣ୍ଠରେ ଲକ୍ଷ୍ମୀ ପଦସେବା କରୁଛନ୍ତି ବିଷ୍ଣୁଙ୍କର । ସାରଦା, ଗଦାଧରର ।

ଏହି ସେବାରେ ହିଁ ନିୟତସ୍ଥିତା ସାରଦା । ୧୨୭୧ ସାଲ । ଚାରିଆଡ଼େ ଦୁର୍ଭିକ୍ଷ । ସେତେବେଳେ ସରଦାର ବୟସ ଏଗାର । ବାପ ଘରେ ଅଛି । ଭୋକିଲା ଲୋକଙ୍କର ଧାଡ଼ି ଲାଗି ରହିଛି । ସାରଦାର ବାପା ରାମଚନ୍ଦ୍ର ଚାଉଳ-ଡାଲି ମିଶାଇ ଖେଚୁଡ଼ି ରାନ୍ଧି ରଖୁଛନ୍ତି ବଡ଼ ବଡ଼ ହାଣ୍ଡିରେ । କହିଛନ୍ତି, ଘର ଲୋକ ବାହାର ଲୋକ ସମସ୍ତେ ଖାଇବେ ଏଇ ଖେଚୁଡ଼ି । ଯିଏ ଆସିବ ଖାଇବ । କେଳବ ମୋ ସାରଦା ପାଇଁ ମୁଠାଏ ଭଲ ଚାଉଳର ଭାତ ଫୁଟାଇ ଦେବ ।

ତାକୁ ତ କେବଳ ଖାଇବାକୁ ଦେବା ନୁହେଁ, ତା' ପାଖରେ ଭୋଗ ନିବେଦନ କରିବା ।

ଦିନେ ଦିନେ ଏତେ ଲୋକ ଆସନ୍ତି ଯେ ରନ୍ଧା ହୋଇଥିବା ଖେଚୁଡ଼ି ଅଣ୍ଟେ ନାହିଁ । ପୁଣି ରନ୍ଧା ହୁଏ ସଙ୍ଗେ ସଙ୍ଗେ । ସେହି ଗରମ ଖେଚୁଡ଼ି-ଭାତ ଢାଳି ଦିଆଯାଏ ଭୋକିଲା ଲୋକଙ୍କ ପତରରେ । ପେଟ ଜଳୁଛି ଭୋକରେ, ମାତ୍ର ଭାତରେ ହାତ ଦେଲା ବେଳକୁ ହାତ ପୋଡ଼ି ଯାଉଛି ତାତିରେ । ସରଦା ହାତରେ ବିଞ୍ଚଣାଟିଏ ଧରି ତତଲା ଭାତକୁ ବିଞ୍ଚି ଦିଏ । ଟିକିଏ ଶୀତଳ ହୋଇଯାଉ । ବଢ଼ା ଭାତ ଆଗରେ ରଖି କେତେ ସମୟ ଭଲା ବସି ରହି ହେବ ?

ଏଗାର ବର୍ଷର ବାଳିକା ନୁହେଁ, ସ୍ୱୟଂ ବିଶ୍ୱମାତା । ଦୁଃଖାର୍ତ୍ତ ଜୀବର କ୍ଷୁଧାହରଣ ପାଇଁ ଆସିଛନ୍ତି ।

ବହୁତ ଆଗରୁ, ପାଞ୍ଚ ବର୍ଷ ବୟସରୁ, ଘର କାମରେ ସାହାଯ୍ୟ କରୁଛି ସାରଦା । କ୍ଷେତରେ ତୁଳା-ଚାଷ ହୋଇଛି । ଗଛରୁ ତୁଳା ତୋଳି ଘରକୁ ଆଣେ । ଅରଟରେ ସୂତା କାଟି ପଇତା ତିଆରି କରେ । ମୂଲିଆଙ୍କ ପାଇଁ ମୁଢ଼ି-ଗୁଡ଼ ନେଇ ଯାଏ ବିଲକୁ । ଥରେ ଫଙ୍ଗପାଳ ଉପଦ୍ରବ ହେଲା । ଗଛରୁ ପାଚିଲା ଧାନ-କେଣ୍ଡା ସବୁ କାଟି ନଷ୍ଟ କରିଦେଲେ । ଲୋକେ ନିରୁପାୟ । ତଳୁ ଧାନ ସାଉଣ୍ଟିବାରେ ଲାଗିଲେ । ସାରଦାର ଟିକି ହାତେ ପାପୁଲି କେତେ ବା ବଡ଼ ! ତଥାପି ସେ ବି ଲାଗିଗଲା ଧାନ ସାଉଣ୍ଟିବାରେ । ପୋଖରୀରେ ଦଳୁଆ ଘାସ ହୋଇଛି । କେବକ ପର୍ଯ୍ୟନ୍ତ ପାଣି ଭିତରକୁ ପଶି ସେଇ ଘାସ କାଟୁଛି ଗାଈ ପାଇଁ । ଦିନେ ଏଇ ଭଳି ପାଣି ଭିତରେ ପଶି ଘାସ କାଟିବା ବେଳେ ଦେଖିଲା, ତାହାରି ବୟସର ଆହୁରି ଗୋଟିଏ ଝିଅ ପାଣି ଭିତରେ ପଶି ହାତରେ ଦା ଧରି ସେଇ ଘାସ କାଟୁଛି । ଝିଅଟି କିଏ, କାହିଁକି କାଟୁଛି, କିଏ ଜାଣେ ? କାଟୁଛି ସତ, ନିଜେ ନେଉ ନାହିଁ । ଗୋଛାଏ ଘାସ କାଟି ଉପରକୁ ନେଇ ରଖି ଆସି ସାରଦା ଦେଖୁଛି ଆଉ ଗୋଛାଏ ଘାସ ତା' ପାଇଁ କାଟି ରଖିଛି ସେଇ ଝିଅଟି । ସାରଦାକୁ ଆଉ କାଟିବାକୁ ପଡୁ ନାହିଁ ।

ଏହିଭଳି ଆହୁରି କେତେ କଅଣ ଦେଖିଛି ସାରଦା । ତେର ବର୍ଷରେ ପୁଣି ଗଲା କାମାରପୁକୁର । ଗାଧୋଇବାକୁ ଯାଏ ହାଲଦାର-ପୋଖରୀକୁ । ନୂଆ ଭୁଆସୁଣୀ, ଏକୁଟିଆ

ପୋଖରୀ ତୁଠକୁ ଯିବ, ଡର ମାଡ଼େ । ବାଡ଼ି-ଦରଜା ଫିଟେଇ ବାହାରି ଆସି ଦେଖିଲା ଆଠ ଜଣ ସ୍ତ୍ରୀଲୋକ ଠିଆ ହୋଇଛନ୍ତି । ସେମାନେ ବି ଗାଧୋଇବାକୁ ଯିବେ ସେଇ ତୁଠକୁ । ଆଉ ଡରିବାର କଅଣ ଅଛି ? ବାଟରେ ଗଲାବେଳେ ସେଇ ସ୍ତ୍ରୀଲୋକମାନଙ୍କ ଭିତରୁ ଚାରି ଜଣ ଚାଲିଲେ ଆଗରେ, ଚାରି ଜଣ ପଛରେ, ମଝିରେ ସାରଦା । ଗାଧୋଇଲେ ବି ସେଇ ଭଳି ଆଗ ପଛ ହୋଇ । ଗାଧୁଆ ସରିଲା ପରେ ଘରେ ଆଣି ପହଞ୍ଚେଇ ଦେଇଗଲେ ଠିକ୍ ସେହିଭଳି । ସେଇ ଦିନକ ନୁହେଁ, ପ୍ରତିଦିନ ।

କିଏ ଏମାନେ ? ସାରଦା ଏ ଗାଁକୁ ନୂଆ ହୋଇ ଆସିଛି ବୋହୂ ହୋଇ । ସେ ବା ଜାଣିବ କେମିତି ଏମାନେ କିଏ ?

ସାରଦାକୁ ସାତ ବର୍ଷ ବେଳେ ଗଦାଧର ଯାଇଥିଲା ଶ୍ୱଶୁର ଘରକୁ । ପୁଅ-ବୋହୂ ଏକାଠି ଫେରିଲେ । କିନ୍ତୁ ମାଙ୍ଗଳିକ ଅନୁଷ୍ଠାନ ସରିବା ପରେ ଗଦାଧର ଅଡ଼ି ବସିଲା, ଦକ୍ଷିଣେଶ୍ୱର ଯିବ ।

ଚନ୍ଦ୍ରମଣି ଆଉ ବେଶୀ ଆପତ୍ତି ଉଠାଇଲେ ନାହିଁ । ଗଦାଧର ଏବେ ଆଗ ଅପେକ୍ଷା ଅନେକ ସୁସ୍ଥ, ଶାନ୍ତ । ବିବାହ ମଧ୍ୟ କରିଛି ସ୍ୱାଭାବିକ ଭାବରେ । ଚନ୍ଦ୍ରମଣିଙ୍କ ମନରେ ଏବେ ପ୍ରଚୁର ଆଶ୍ୱାସ, ପ୍ରଚୁର ବଳ । ସାରଦା ହିଁ ତାଙ୍କ ମନକୁ ଆଣି ଦେଇଛି ଏଇ ବଳ, ଏଇ ଆଶ୍ୱାସ !

କିନ୍ତୁ ଦକ୍ଷିଣେଶ୍ୱରରେ ପାଦ ଦେଲା ମାତ୍ରେ ଗଦାଧର ପୁଣି ଯଥା ପୂର୍ବଂ ତଥା ପରଂ । କୁଆଡ଼େ ଗଲେ ମା-ଭାଇ, କେଉଁଠି ରହିଲା ସ୍ତ୍ରୀ-ଘର-ସଂସାର । ଛାତି ପୁଣି ଲାଲ ହୋଇ ଆସିଲା । ଦେହରେ ଅସହ୍ୟ ଜ୍ୱାଳା । ନିଦ ଉଭେଇ ଗଲା ଆଖିରୁ । ପୁଣି ଲେଉଟିଲା ସେହି ଅସାଧ ରୋଗ ।

ପୁଣି ଆରମ୍ଭ ହେଲା ପୂର୍ବ ପରି ମା'ଙ୍କ ପାଇଁ ସେହି କାତର କ୍ରନ୍ଦନ ।

'ତୋତେ ଡାକିବାର ଫଳ ଏଇଆ ହେଲା, ମା ? ମୋ ଦେହରେ ଆଣି ଦେଲୁ ଏଇ ବିଷମ ବ୍ୟାଧି ? ହେଲେ, ଦେହ ଯାଉ କି ରହୁ, ତୁ ମୋତେ ଛାଡ଼ିଯିବୁ ନାହିଁ । ମୋତେ ଦେଖା ଦେ, ଏତକି ମାତ୍ର କୃପା କର ମୋ ପ୍ରତି । ମୋର ଆଉ କେହି ନାହିଁ, କେହି ନାହିଁ ତୋ ଛଡ଼ା -'

## ୧୮

ଦେଖନ୍ତୁ ନା, ପୁରି କଅଣ ହେଲା ?

ମଥୁରବାବୁ ପୁଣି ନେଇ ଆସିଲେ ଗଦାଧରକୁ ଗଙ୍ଗା ପ୍ରସାଦ ସେନଙ୍କ ପାଖକୁ ।

ଦିନକୁ ଦିନ ବଢ଼ିଚାଲିଛି । ଏଇଟା କି ରୋଗ ? ଉନ୍ମାଦ ନା ମୂର୍ଚ୍ଛା ? ରାତିରେ ଆଦୌ ଶୁଏ ନା । କାନ୍ଧରେ ଗୋଟାଏ ବାଉଁଶ ଠେଙ୍ଗା ପକାଇ ମନ୍ଦିର ଚାରି ପାଖରେ ବୁଲୁଛି । ଖାଇବା ଜିନିଷ ଆଣି କୁକୁରକୁ ଦିଏ । କୁକୁର ଖାଇ ସାରିଲେ ତାହାରି ଅଇଁଠାକୁ ଉଠାଇ ଆରି ନିଜ ପାଟିରେ ପୂରାଏ । ସର୍ବାଙ୍ଗରେ ଜ୍ୱାଳା-ଯନ୍ତ୍ରଣା । ଛାତି-ପିଠି ଲାଲ । ଆଗ ଥର ଯେଉଁ ଔଷଧ ଦେଇଥିଲେ ସେଥିରେ ତ କିଛି ହେଲା ନାହିଁ । ଅନ୍ୟ କିଛି ବ୍ୟବସ୍ଥା କରି ହୁଅନ୍ତା ନାହିଁ ? ...

ଗଙ୍ଗା ପ୍ରସାଦ ବସି ଭାବିବାକୁ ଲାଗିଲେ । ପାଖରେ ଥିଲେ ଆଉ ଜଣେ କବିରାଜ । କେହି

କେହି କହନ୍ତି, ଗଙ୍ଗା ପ୍ରସାଦଙ୍କ ଭାଇ ଦୁର୍ଗା ପ୍ରସାଦ, ଆଉ କେହି କେହି କହନ୍ତି, ପୂର୍ବ ବଙ୍ଗର ଜଣେ ଖ୍ୟାତିମାନ ବୈଦ୍ୟ । ସବୁ ଦେଖି ଶୁଣି ସେ କହିଲେ, ଔଷଧ ପତ୍ରରେ ଭଲ ହେବା ରୋଗ ଏ ନୁହେଁ । ଏଇଟା ହେଉଛି ଦିବ୍ୟୋନ୍ମାଦ ଅବସ୍ଥା । ଯୋଗଜ ବ୍ୟାଧି -

ଦିବ୍ୟଦ୍ରଷ୍ଟା ଆୟୁର୍ବେଦୀ । ସେ ହେଉଛନ୍ତି ପ୍ରଥମ ଲୋକ ଯେ ଜାଣି ପାରିଲେ ରୋଗର ମୂଳ କେଉଁଠି ।

କିନ୍ତୁ ତାଙ୍କ କଥା ଶୁଣୁଛି କିଏ ? ବାହାରର ଶାଖା ପଲ୍ଲବକୁ ନେଇ ସମସ୍ତେ ବ୍ୟସ୍ତ । ତୈଳ-ବଟିକା, ଭସ୍ମ-ଚୂର୍ଣ୍ଣ । ଚାଲିଲା ଏଇ ସବୁ ।

ସନ୍ତର୍ପଣରେ ଯାଇ ଦର୍ପଣ ଆଗରେ ଠିଆ ହେଲା ଗଦାଧର । ଲକ୍ଷ୍ୟ କଲା ନିଜ ଆଖିକୁ । ସ୍ଥିର, ବନ୍ଧ, ନିଶ୍ଚଳ ଆଖି । ଆଖି ପତା ଦୁଇଟିକୁ ହାତରେ ଧରି ଟାଣିବାକୁ ଚେଷ୍ଟା କଲା । ପତା ହଲୁ ନାହିଁ । ପଲକ ପଡୁ ନାହିଁ । ଆଖି ନିଷ୍ପନ୍ଦ, ସତେ ଅବା କାଚର ଡୋଳା । ଆଖିରେ ଆଙ୍ଗୁଠି ଖେଞ୍ଚିଲା । ତଥାପି ନିଷ୍ପଲକ ।

ଚନ୍ଦ୍ରମଣିଙ୍କ ପାଖରେ ଖବର ପହଞ୍ଚିଲା । ନିରୁପାୟ ହୋଇ ଯାଇ ଧାରଣା ଦେଲେ ଶିବ-ମନ୍ଦିରରେ । ମୋ ଗଦାଧରକୁ ଭଲ କରିଦିଅ । ତା' ଆଖିରେ ନିଦ ଦିଅ । ତା' ଦେହର ଜ୍ୱାଳା ନିବାରଣ କର । ପଡ଼ି ରହିଲି ଏଇଠି, ମୋ ପ୍ରାର୍ଥନା ନ ଶୁଣିବା ପର୍ଯ୍ୟନ୍ତ ଜଳ-ସ୍ପର୍ଶ ମଧ୍ୟ କରିବି ନାହିଁ ।

ମୁକୁନ୍ଦପୁର ଶିବଙ୍କ ପାଖକୁ ଯା । ସେଇଠି ଯାଇ ଅଧିଆ ପଡ଼ ।

ବାବାଙ୍କ ହୁକୁମ ପାଇଲେ ଚନ୍ଦ୍ରମଣି । ଗଲେ ମୁକୁନ୍ଦପୁର । ଦୁଇ ତିନି ଦିନ ପଡ଼ି ରହିଲେ ଧାରଣା ଦେଇ, ନିରମ୍ବୁ, ନିରଶନରେ । ସ୍ୱପ୍ନରେ ଦେଖା ଦେଲେ ମହାଦେବ । ପରିଧାନ ବାଘ-ଛାଲ, ମଥାରେ ଜଟା, ହାତରେ ତ୍ରିଶୂଳ । ଶୁଦ୍ଧ-ସ୍ଫଟିକ-ସଂକାଶ ଚନ୍ଦ୍ରଶେଖର । କହିଲେ, ଭୟ କରିବାର କିଛି ନାହିଁ । ତୋ ପୁଅ ପାଗଳ ହୋଇନାହିଁ । ତା' ଭିତରେ ଈଶ୍ୱରଙ୍କ ସଞ୍ଚାର ହେଉଛି, ସେଇଥିପାଇଁ ତା'ର ଏଇ ସବୁ ଅଦ୍‌ଭୁତ ଲକ୍ଷଣ । ଉଠ୍, ଘରକୁ ଯା । ମନ ସ୍ଥିର କରି ରହ ।

ଚନ୍ଦ୍ରମଣି ଆଶ୍ୱସ୍ତ ହେଲେ । ଶିବଙ୍କୁ ପୂଜା ଦେଇ ମନ ନିର୍ମଳ କରି ଘରକୁ ଫେରିଲେ । ଫେରିଲେ ତାଙ୍କ କୁଳ ଦେବତା ରଘୁବୀରଙ୍କ ଆଶ୍ରୟକୁ । ମନ-ପ୍ରାଣ ଢାଳି ଲାଗି ପଡ଼ିଲେ ସେବାରେ । ମୋ ଗଦାଧର ଉପରେ ଆଖି ରଖିଥିବ । ତାକୁ ବଞ୍ଚେଇ ରଖ ।

ମାତ୍ର ଗଦାଧରର ଜ୍ୱାଳା କମୁ ନାହିଁ, ଅସ୍ଥିରତା ଯାଉ ନାହିଁ ।

ନିୟତ-ଜାଗ୍ରତ ନିଷ୍ପଲକ ଦୁଇ ଆଖିରୁ ଦୀର୍ଘ ଧାରାରେ ଝରି ଚାଲିଛି ଜଳ । ବେଳେ ବେଳେ କହେ, ମା, ମା ଗୋ ! ମୋର ଆଖି ଦୁଇଟିକୁ ନିଶ୍ଚଳ କରି ଦେଇଛୁ ଆଖି ଆଗରେ ଚିରନ୍ତନୀ ହୋଇ ରହିବୁ ବୋଲି ? ନିମିଷକ ପାଇଁ ବି ମୋ ଆଖିରୁ ଆଡ଼ ହେବୁ ନାହିଁ । ଯେମିତି ମୁଁ ପଲକ ପକାଇବା ଫାଙ୍କରେ ତୁ ଫାଙ୍କିଦେଇ ପଳେଇ ଯାଇ ନପାରୁ । କିନ୍ତୁ, ତୁ କାହିଁ ? କେଉଠି ? ମୋ ଆଖିରୁ ସବୁ ନିଦ ହରଣ କରି ନେଇ ତୁ କ'ଣ ନିଜେ ଶୋଇ ପଡ଼ିଲୁ ନିଘୋଡ଼ ନିଦରେ, ନିଶ୍ଚିନ୍ତ ହୋଇ ? ଏଇଆ ତୋ ବିଚାର ! ତୋ ବିବେଚନା ! ରୋଗ-ଯନ୍ତ୍ରଣାରେ ବିନିଦ୍ର ସନ୍ତାନ ଯେତେବେଳେ ଛଟପଟ ହେଉଥାଏ, ତା' ମା ସେତେବେଳେ ଶୋଇପଡ଼େ ? ନିଦ ଆସେ ତାକୁ ?

ଦିନେ ନୁହେଁ, ଅଧେ ନୁହେଁ, ଦୀର୍ଘ ଛ' ବର୍ଷ ପର୍ଯ୍ୟନ୍ତ ଦୁଇ ଆଖି-ପତା ଏକ ହୋଇ ନାହିଁ ଗଦାଧରର । ଛ' ବର୍ଷ ପଲକ ପଡ଼ିନାହିଁ । ଶୋଇ ନାହିଁ ମୁହୂର୍ତ୍ତକ ପାଇଁ । କି ଦିନ କି ରାତି, କି ଆଲୋକ କି ଅନ୍ଧାର, କି ନିର୍ଜନ କି ଜନାରଣ୍ୟ - ସବୁ ଅବସ୍ଥାରେ, ସବୁ ସମୟରେ ଆଖି ଦୁଇଟି ଖୋଲା ରଖିଛି । ଗୋଟାଏ ତୀବ୍ର ଦୃଷ୍ଟିରେ ଆବିଦ୍ଧ କରି ରଖିଛି । ସ୍ଥିର, ନିବଦ୍ଧ, ତୀବ୍ର ଦୃଷ୍ଟି ।

ମା କଣ ରହି ପାରନ୍ତି ନ ଆସି ? ସେ ଦୃଷ୍ଟିର ଆହ୍ୱାନ, ସେହି ନିଷ୍ପଲକ ଦୃଷ୍ଟିର ଆକର୍ଷଣକୁ ଟାଳି ଦେବେ, ଶକ୍ତି କାହିଁ ତାଙ୍କର ! ପାଷାଣ-ଆଖିର ସେହି କ୍ରନ୍ଦନହିଁ ଡାକି ଆଣିଲା ମମତାର ନିର୍ଝରିଣୀଙ୍କୁ । ବସିଲେ ଆସି ପାଖରେ । କହିଲେ, ଆରେ, ଆଉ କାନ୍ଦ ନା, ମୁଁ ଆସିଛି । ଡାକିବା ଭଳି ଡାକିଲେ ମୁଁ ନ ଆସି ରହି ପାରିବି ? କହ, ମୋତେ କଅଣ କହିବୁ । କହ ଏଥର । ଅନା ମୋତେ । କଥା କହ-

ପ୍ରୟୋଜନ ଏହି ଏକାନ୍ତ ବ୍ୟାକୁଳତା । ଅବାଧ ଉନ୍ମାଦନା । ଯେତେ ଦିନ ଯାଏ ଦେଖା ନ ଦେଇଥିବୁ ସେତେ ଦିନ ଦିନରାତି ଆଖି ଏଇମିତି ମେଲା କରି ଚାହିଁ ରହିଥିବି । ତୃଣଖଣ୍ଡ ବି ଦାନ୍ତରେ ସ୍ପର୍ଶ କରିବି ନାହିଁ । ଅନଶନରେ ତନୁପାତ କରିବି । ଯଦି ଅତି ବେଶୀ ବିଳମ୍ବ କରୁ, ଗଳାରେ ଛୁରି ଚଳେଇ ଦେବି । ଦେଖିବି, ତୋ ମନ ଟଳୁଛି କି ନାହିଁ । ପ୍ରୟୋଜନ ଏଇଭଳି ଏକବାଗିଆ ଜିଦ୍ ।

'ସ୍ତ୍ରୀ-ପୁତ୍ର ପାଇଁ ଲୋକେ କାନ୍ଦି କାନ୍ଦି ଆଖିରୁ ଲୋଟାଏ ପାଣି ନିଗାଡ଼ି ଦିଅନ୍ତି । ଟଙ୍କା ପାଇଁ କଳସୀଏ । କିନ୍ତୁ ଈଶ୍ୱରଙ୍କ ପାଇଁ କାହିଁ କିଏ କାନ୍ଦୁଛି ? ଈଶ୍ୱରଙ୍କ ପାଇଁ କାନ୍ଦିବାକୁ କାଳେ ଲାଜ ଲାଗେ ବାବୁମାନଙ୍କୁ !'

'ଟଙ୍କା ପାଇଁ କେତେ ଡହଳ-ବିକଳ !' ପୁଣି କହିଲେ ଠାକୁର : 'ଟଙ୍କାରେ କଅଣ ହୁଏ ? ଭାତ ହୁଏ, ଡାଲି ହୁଏ, ଲୁଗାପଟା, ଘର ଦ୍ୱାର, ଆସବାବ ପତ୍ର-ଏଇ ସବୁ । ଭଗବାନ-ଲାଭ ହୁଏ କି ? ନା ! ଯଦି ଜୀବନରେ ଭଗବାନ-ଲାଭ ହୋଇ ନ ପାରିଲା, ତେବେ ମଣିଷ-ଜନ୍ମ ପାଇଥିଲି କାହିଁକି ?'

କିନ୍ତୁ ଈଶ୍ୱରଙ୍କୁ ପାଇବାର ଉପାୟ ?

ନାୟମାତ୍ମା ପ୍ରବଚନେନ ଲଭ୍ୟ ନ ମେଧୟା ନ ବହୁନା ଶ୍ରୁତେନ । ପଢ଼ିବା, ବୁଝିବା, ଶୁଣିବା- ଏଗୁଡ଼ାକ ତାଙ୍କୁ ପାଇବାର ଉପାୟ ନୁହେଁ । ଯଦି ତାଙ୍କର କୃପା ହେବ, ତେବେ ଯାଇ ତାଙ୍କୁ ପାଇବୁ । କିନ୍ତୁ ଏହି କୃପା ଉଦ୍ରେକ କରାଇବାକୁ ପଡ଼ିବ । ସେଥିପାଇଁ ପୁଣି ଉପାୟ ? ଧାଇଁବୁ, ଦଉଡ଼ିବୁ । ବହୁତ ଦଉଡ଼ା-ଦଉଡ଼ି କରିବୁ । ବବହୁତ ମେହନତ କରିବୁ । ପିଲାଟା ବିକଳ ହୋଇ ବହୁତ ଧାଁ-ଦଉଡ଼ କରୁଛି ଦେଖିଲେ ମା ମନକୁ ଦୟା ଆସେ । ଖେଳ ଭିତରେ ଆସି ଲୁଚି ରହିଥାଆନ୍ତି ମା, ଶେଷକୁ ଆସି ଦେଖା ଦିଅନ୍ତି । ତାଙ୍କ ଇଚ୍ଛା, ଖେଳଟା ଟିକିଏ ବେଶୀ ସମୟ ଚାଲୁ । ଟିକିଏ ବେଶୀ ରଗଡ଼ ହେଉ, ଦଉଡ଼ା-ଦଉଡ଼ି ହେଉ । ସଂସାରଟା ପରା ତାଙ୍କ ଲୀଳାର କ୍ଷେତ୍ର । ସେ ପରା ଇଚ୍ଛାମୟୀ !

ପ୍ରୟୋଜନ ବ୍ୟାକୁଳତା । ପ୍ରୟୋଜନ ଆନନ୍ଦସାନ୍ଦ୍ରା ଭକ୍ତି, ଅଚଳ-ଅନଳ-ବିଶ୍ୱାସ । ତିନି ପ୍ରକାର ଆକର୍ଷଣର ବଳ ମିଶିଲେ ତେବେ ଯାଇ ଦେଖା ଦିଅନ୍ତି ଭଗବାନ । ବିଷୟ ପ୍ରତି ବିଷୟୀର

ଆକର୍ଷଣ, ପତି ପ୍ରତି ସତୀର ଆକର୍ଷଣ ଏବଂ ସନ୍ତାନ ପ୍ରତି ମା'ର ଆକର୍ଷଣ । ଏହି ତିନି ଆକର୍ଷଣର ବଳ ଯଦି ଏକାଠି ମିଶାଇ ପାରିବୁ ତେବେ ଭଗବାନ ସିଧା ଚାଲି ଆସି ମିଶିଯିବେ ।

ମା'ର ପଣତ କାନି ଧରି ପିଲା ଜିଗର କରୁଛି ପଇସା ପାଇଁ, ଘୁଡ଼ି କିଣିବ । ସାହିର ସ୍ତ୍ରୀଲୋକମାନେ ବୁଲି ଆସିଛନ୍ତି, ମା ଗପ କରୁଛନ୍ତି ତାଙ୍କ ସହିତ । ନଜର ନାହିଁ ପିଲା ଆଡ଼କୁ । ପିଲା ବି ନଛୋଡ଼ବନ୍ଧା । ଏଁ– ଏଁ ହୋଇ କାନ୍ଦି ଚାଲିଛି, ପଣତ ଧରି ଭିଡୁଛି । ମା ତାକୁ ଟାଣ କରି ମନା କଲେ । କହିଲେ, ନା, ନା, ବାପା ପରା ମନା କରିଛନ୍ତି; ଘୁଡ଼ି ଉଡ଼ାଉ ଉଡ଼ାଉ କୋଉଠି ପଡ଼ି ଯାଇ ଗୋଡ଼ ହାତ ଖଣ୍ଡିଆ କରିବୁ ! ପୁଣି ମାତିଗଲେ ଗପରେ । ପିଲା କିନ୍ତୁ ମହା ଜିଦଖୋର । କାକୁତି ମିନତିରେ କିଛି ହେଲା ନାହିଁ । ଭେଁ-ଭେଁ ରଡ଼ି ଛାଡ଼ି ଘର କଂପେଇ ପକେଇଲା । ଗପ କରିବା ଚୁଲିକି ଗଲା । ସଙ୍ଗିନୀମାନଙ୍କୁ ମା କହିଲେ, ଟିକିଏ ରୁହ, ଛୁଆଟାକୁ ମୁଁ ଟିକିଏ ବୋଧ କରେଇ ଦେଇ ଆସେ । କହି ଘର ଭିତରକୁ ଯାଇ ବାକ୍ସ ଖୋଲି ପଇସା ବାହାର କରି ପକେଇ ଦେଲେ । ନେ, ବାବା, ନେ, ଯା ତୁ କଅଣ କରୁଛୁ କର । ବିରକ୍ତ ହୋଇଛନ୍ତି ଠିକ୍, ଶେଷକୁ କିନ୍ତୁ ହାର ମାନିଛନ୍ତି ବ୍ୟାକୁଳତା ପାଖରେ ।

ଅନୁରକ୍ତ କରାଇ ପାରିଲୁ ନାହିଁ, ବିରକ୍ତ କରେଇ ଦେ । ମା ପାଖରୁ ଠିକ୍ ପାଇବୁ ଯାହା ଚାହିଁଥିଲୁ । ଯାହା ବିରକ୍ତି ତାହା ହିଁ ତାଙ୍କର ଅନୁରକ୍ତି ।

ସେଥିପାଇଁ ମାତ୍ର ଗୋଟିଏ ଅସ୍ତ୍ର ବ୍ୟାକୁଳତା, ସେ ତ ଆମକୁ ଜନ୍ମ ଦେଇଛନ୍ତି ଏଇ ସଂସାରରେ, ତେଣୁ ତାଙ୍କ ଘରେ ଆମ ଭାଗ ଅଛି । ସଂପତ୍ତିରୁ ତୋ ଅଂଶଟା ଦେଇ ଦେବା ପାଇଁ ତାଙ୍କୁ ବ୍ୟତିବ୍ୟସ୍ତ କରେଇ ପକା । ଦେଖିବୁ, ତୋ ଭାଗଟା ତୋତେ ଅଲବତ ଦେଇ ଦେବେ । ମା ଉପରେ ଜବରଦସ୍ତି ଚଳିବ ନାହିଁ ତ ଆଉ କାହା ଉପରେ ଚଳିବ ? ମୋ ଭାଗ ଦବୁ ତ ଦେ, ନ ହେଲେ, ଏଇ ଅନା, ଛୁରି ବସେଇଲି ଗଳାରେ ।

ନେ ବାପା, ନେ ତୋ ଭାଗ । ନେ । ଶାନ୍ତ ହ ।

ଈଶ୍ୱରଙ୍କୁ ପାଇବାର ଉପାୟ କଅଣ ? ଶିଷ୍ୟ ପଚାରିଲେ ତାଙ୍କ ଗୁରୁଙ୍କୁ । ଗୁରୁ କହିଲେ, ଆ, ଦେଖେଇ ଦଉଛି । କହି ଶିଷ୍ୟକୁ ନେଇ ଆସିଲେ ଗୋଟାଏ ପୋଖରୀ ପାଖକୁ । ପାଣିରେ ପଶ । ଶିଷ୍ୟ ପଶିଲା । ଗୁରୁ ତାକୁ ପାଣି ଭିତରେ ବୁଡ଼ାଇ ଚାପି ରଖିଲେ । କିଛି ସମୟ ପରେ ପୁଣି ହାତ ଧରି ଟାଣି ଆଣିଲେ ଉପରକୁ । ପଚାରିଲେ, କିମିତିକା ଲାଗୁଥିଲା ? ଶିଷ୍ୟ ଫଁ କରି ନିଃଶ୍ୱାସଟାଏ ପକାଇ କହିଲା, ଆକ୍‌ଚା ମାକ୍‌ଚା ହେଇ ପଡୁଥିଲି, ପ୍ରାଣ ସତେ କି ଚାଲିଯିବ । ଗୁରୁ କହିଲେ, ଯେତେବେଳେ ଭଗବାନଙ୍କ ପାଇଁ ପ୍ରାଣ ଏଇ ଭଳି ଆକ୍‌ଚା -ମାକ୍‌ଚା ହୋଇ ପଡ଼ିବ,ସେତିକିବେଳେ ଜାଣିବୁ ଦର୍ଶନର ଆଉ ବିଳମ୍ୱ ନାହିଁ ।

ତୁମ ବ୍ୟାକୁଳତା, ତାଙ୍କ କୃପା । କିନ୍ତୁ ବ୍ୟାକୁଳତା ଆସିବ କିପରି । ଅନୁରାଗ ଦ୍ୱାରା । ପରମ ପ୍ରେମଭାବ ଦ୍ୱାରା । ପ୍ରେମଭାବ ଆସିବ କିପରି ? କେବଳ ନାମରୁ, ନାମାନନ୍ଦରୁ ।

'ତେବେ ଗୋଟାଏ କଥା ମନେ ରଖିବ, ଭୋଗାନ୍ତ ନ ହେବା ଯାଏଁ ବ୍ୟାକୁଳତା ଆସେ ନାହିଁ । କାମ-କାଞ୍ଚନର ଭୋଗ ଯାହା ରହିଛି ସେତକ ତୃପ୍ତି ନ ହେଲେ ଜଗନ୍ମାତାଙ୍କୁ ମନେ ପଡ଼ିବ ନାହିଁ । ପିଲା ଯେତେବେଳେ ଖେଳରେ ମାତି ରହିଥାଏ, ସେତେବେଳେ ମା କଥା ମନେ ପଡ଼େ

ନାହିଁ । ଖେଳ ସରିଗଲେ କହେ, ମା ପାଖକୁ ଯିବି । ହୃଦୟର ପୁଅ ପାରାଙ୍କ ସାଙ୍ଗରେ ଖେଳୁଥିଲା । ପାରାଙ୍କୁ ଡାକି କହୁଥିଲା, ଆ-ଆ-ତି-ତି... । ଖେଳରେ ତୃପ୍ତି ଆସିଗଲା, ସଂଗେ ସଂଗେ, ଏଁ - ଏଁ- କନ୍ଦଣା, 'ମା ପାଖକୁ ଯିବି ।' ଭୁଲେଇବା ପାଇଁ କେତେ ରକମ ଚେଷ୍ଟା କଲି, ସେ କାହିଁକି ଭୁଲିବ ? ଖେଳ-ଫେଳ କିଛି ଆଉ ତାକୁ ଭଲ ଲାଗୁନାହିଁ । ସଞ୍ଜ ହେଲାଣି, ଏତେବେଳେ ତା'ର ମା'କୁ ଦରକାର । ସିଏ କାନ୍ଦୁଛି, ତା' କାନ୍ଦ ଦେଖି ମୋତେ ବି କାନ୍ଦ ମାଡ଼ିଲା । ଈଶ୍ୱରଙ୍କ ପାଇଁ କାନ୍ଦିବାଟା ଏଇଭଳି । ପିଲାଟା ମୋ ପାଖକୁ ଆସୁନାହିଁ, ଅଥଚ ଜଣେ କିଏ ଅଚିହ୍ନା ଲୋକ ଆସି କହିଲା, ମା ପାଖକୁ ଯିବୁ ? ଚାଲ, ତୋତେ ତୋ ମା ପାଖକୁ ନେଇଯିବି । ସଙ୍ଗେ ସଙ୍ଗେ ଡେଇଁ ପଡ଼ିଲା ତା' କାଖକୁ ।'

ଅସଲ କଥା ହେଲା, ଯେତେ ଦିନ ପର୍ଯ୍ୟନ୍ତ ଭୋଗର ଶେଷ ହୋଇନାହିଁ, ସେତେ ଦିନ ପର୍ଯ୍ୟନ୍ତ କ୍ଳେଶ-ଭୋଗ ।

ତା' ପରେ ପୁଣି ଅଛି ଉପାଧି ! ପେଟରେ ପିଳେହି, ଅଥଚ ପିନ୍ଧିଛି କୁଞ୍ଚ-ଦିଆ କଳା କିନାରୀ ଶାନ୍ତିପୁରୀ ଧୋତି, ମୁହଁରେ ରସରସିଆ ଗୀତ । ରୋଗା ମଡ଼ମଡ଼ିଆ ଲୋକଟାଏ ବି ଯଦି ବୁଟ ଯୋତା ପିନ୍ଧି ପକାଏ, କଅଣ ଦେଖିବ ତା'ର ଫୂର୍ତ୍ତି ? ସଙ୍ଗେ ସଙ୍ଗେ ମୁହଁରେ ଶୁସୁରି ମାରିବ, ମୁହଁରୁ ବାହାରି ପଡ଼ିବ ଫୁଟ୍ ଫାଟ୍ ଇଂରେଜୀ ବୋଲି ! ସାମାନ୍ୟ ଟିକିଏ ଆଧାର ହୋଇ ଯାଇଛି, ଗେରୁଆ ପିନ୍ଧି ଭେକ ଦେଖଉଛି, ଫୁଲି ଉଠୁଛି ଅହଂକାରରେ । ଟିକିଏ କୋଉଠି ତ୍ରୁଟି ଦେଖି ପକେଇଲେ ରାଗରେ କଂପମାନ । କେତେ କ୍ରୋଧ, କେତେ ଅଭିମାନ !

ଟଙ୍କା ବି ଗୋଟାଏ ବଡ଼ ରକମ ଉପାଧି । ଟଙ୍କା ହେଲେ ମଣିଷ ଅନ୍ୟ ପ୍ରକାର ହୋଇଥାଏ, ସେ ଆଉ ମଣିଷ ହୋଇ ରହେ ନା । ସେଇ ବାହ୍ମଣ କଥା ତୋର ମନେ ଅଛି ନାରେ, ହୃଦୁଦା ? ଏଠିକି ଆସୁଥିଲା ମଝିରେ ମଝିରେ । ବାହାରକୁ ଜଣାପଡ଼େ, ଭାରି ବିନୟୀ, ଭାରି ସରଳ-କୋମଳ । ସେଥର କୋନ୍ନଗର ଯାଉଥିଲି,ତୁ ବି ଥିଲୁ ସାଙ୍ଗରେ । ନୌକାରୁ ଓହ୍ଲାଇ ଦେଖେ ସେଇ ବାହ୍ମଣ ବସିଛି ଗଙ୍ଗାକୂଳରେ, ହାଓ୍ୱା ଖାଉଛି । ମୋ ଉପରେ ଆଖି ପଡ଼ିଗଲା ମାତ୍ରେ କୁହାଟ ଛାଡ଼ିଲା ପରି କହିଲା, କଅଣ, ଗୋସେଇଁ ଭଲ ଅଛ ? ମୁଁ ତ ଅବାକ୍ ! ତା' କଥା କହିବା ଢଙ୍ଗ ଦେଖି ତୋତେ କହିଥିଲି ନା, ହୃଦୁଦାରେ, ଲୋକଟାର ଟଙ୍କା ହେଇଗଲାଣି ? ନ ହେଲେ କଥାରେ ଏମିତିକା ଠାଣି ଆସନ୍ତା କୁଆଡୁ ? ତୁ ହସି ପକେଇଲୁ । ମନେ ଅଛି ?

କେଶବ ସେନଙ୍କୁ କହିଲେ ଠାକୁର, 'ଯେତେବେଳ ଯାଏ ଉପାଧି ରହିଛି ସେତେବେଳ ଯାଏ ସେ ନାହାନ୍ତି । ଉପାଧି ଯେତିକି ଯାଉଥିବ ସେତିକି ସେ ପାଖକୁ ଆସୁଥିବେ । ଢିପ ଜମିରେ ବର୍ଷା ଜଳ ରହେ ନାହିଁ, ଖାଲୁଆ ଜମିରେ ରହେ । ସେହିଭଳି ଯେଉଁଠି ଅହଂକାର, ସେଠି ଜମି ପାରେ ନାହିଁ ତାଙ୍କ କୃପା-ବାରି । ତେଣୁ ମନକୁ ଦୀନ-ହୀନ ଭାବ ଆଣିବା ଭଲ, ନିଃସ୍ୱ, ନିଷ୍କିଞ୍ଚନର ଭାବ ।

ଡାକ୍ ଦେଖି ମନ, ଡାକାର ମତ,
କେମନ୍ ଶ୍ୟାମା ଥାକତେ ପାରେ !

(ମନରେ, ଡାକିବା ଭଳି ଡାକ । ଦେଖିବା, ଶ୍ୟାମା କେମିତି ନ ଆସି ରହି ପାରିବେ ।)

ସେହି ଶ୍ୟାମା ଆସିଛନ୍ତି ଗଦାଧର ପାଖକୁ । କଅଁଳା ପିଲାକୁ କୋଳରେ ଧରି ବସିଛନ୍ତି ।

ମା ! କାହିଁକି ଭଲା ଏତେ ଦଉଡ଼େଇ ମାରୁଛୁ ? ହାତ-ପାଆନ୍ତାରେ ଥାଇ ବି ଛୁଇଁବାକୁ ଦେଉନୁ କାହିଁକି ?

ଯଦି ବୁଢ଼ିଆଣୀକୁ ସମସ୍ତେ ପ୍ରଥମରୁ ଛୁଇଁ ପକାଇବେ, ଖେଳଟା ଚାଲିବ କେମିତି ? ଖେଳ ଲାଗି ରହିଥିଲେ ସିନା ବୁଢ଼ିଆଣୀର ଆନନ୍ଦ । ତାହାରି ମାୟାରେ ବଦ୍ଧ, ତାହାରି ଦୟାରେ ପୁଣି ମୁକ୍ତ । ସବୁ ତ ତାହାରି ଇଚ୍ଛା । ତାହାରି ଖେଳ । ତା' ଇଚ୍ଛା, ଖେଳଟା ଏଇ ରକମ ଚାଲୁଥାଉ । ଥରେ ମାୟାର ଖେଳ, ତା' ପରେ ପୁଣି ଦୟାର ଖେଳ ।

ମା ଯେତେବେଳେ ପାଖକୁ ଆସନ୍ତି ନାହିଁ ସେତେବେଳେ ଗଦାଧରର ଦେହ ଭିତରୁ ଆଉ ଜଣେ କିଏ ବାହାରି ଆସନ୍ତି । ଅବିକଳ ଆଉ ଜଣେ ଗଦାଧର । ପବିତ୍ର ପାବକ ସନ୍ୟାସୀ ମୂର୍ତ୍ତି । ତା'ର ଆତ୍ମସ୍ୱରୂପ ସେ ମୂର୍ତ୍ତି- ତା'ର ସଚ୍ଚିଦାନନ୍ଦ ଗୁରୁ ।

ପୂର୍ଣ୍ଣ ଜ୍ଞାନ ଆସିଗଲେ ଆଉ ଗୁରୁ କିଏ ନା ଶିଷ୍ୟ କିଏ ! ସେତେବେଳେ ନିଜେ ଗୁରୁ, ନିଜେ ପୁଣି ଶିଷ୍ୟ । ଅଥବା, ସେତେବେଳେ ଗୁରୁ ନାହିଁ, ଶିଷ୍ୟ ବି ନାହିଁ । 'ସେ ବଡ଼ କଠିନ ଠାଇଁ, ଗୁରୁ-ଶିଷ୍ୟ ଭେଟ ନାହିଁ' । ସେଇଥିପାଇଁ ଶୁକଦେବ ଯେତେବେଳେ ବ୍ରହ୍ମଜ୍ଞାନ ଶିକ୍ଷା ପାଇଁ ଜନକ ରାଜାଙ୍କ ପାଖରେ ଯାଇ ପହଞ୍ଚିଲେ, ଜନକ ରାଜା ତାଙ୍କୁ କହିଲେ, ଆଗେ ଦକ୍ଷିଣା ଦିଅ । ଶୁକଦେବ କହିଲେ, ପ୍ରାର୍ଥିତ ବସ୍ତୁ ନ ପାଇ ପ୍ରଥମରୁ କେମିତି ଦକ୍ଷିଣା ଦେବି ? ଜନକରାଜା ହସିଲେ । କହିଲେ, ବ୍ରହ୍ମଜ୍ଞାନ ପାଇଗଲା ପରେ ଆଉ ଗୁରୁ ଶିଷ୍ୟ ଜ୍ଞାନ ରହିବ ? ସେତେବେଳେ ଜନକ କିଏ ନା ଶୁକ କିଏ ? ନା, ଦକ୍ଷିଣା କଥା ଆଉ ମନେ ଥିବ ! ସେଥିଲାଗି କହୁଛି, ବାବା, ମୋ ଦକ୍ଷିଣାଟା ଆଗରୁ ଦେଇ ରଖ !

ଦିନେ ଗୋଟିଏ ଶିବ ମନ୍ଦିରକୁ ଯାଇ ଗଦାଧର 'ମହିମ୍ନଃ ସ୍ତୋତ୍ର' ଆବୃତ୍ତି କରୁଥିଲା । ପଢୁ ପଢୁ ଆସି ସେହି ଶ୍ଳୋକ ପାଖରେ ପହଞ୍ଚି ଗଲା ଯେଉଁଠି କୁହା ହୋଇଛି ଶିବଙ୍କ ମହିମାର ଅନ୍ତ ନାହିଁ—

ଅସିତ ଗିରିସମଂ ସ୍ୟାଦ୍ କଜ୍ଜଳଂ ସିନ୍ଧୁ ପାତ୍ରେ
ସୁରତରୁବରଶାଖା ଲେଖନୀ ପତ୍ରମୂର୍ବୀ
ଲିଖତି ଯଦି ଗୃହୀତ୍ୱା ସାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ।

ହିମାଳୟ ଯଦି ହୁଏ କାଳିର ବଡ଼ି, ସମୁଦ୍ର ହୁଏ ଦୁଆତ, କଳ୍ପ ବୃକ୍ଷର ଶାଖା କଲମ, ସମସ୍ତ ପୃଥିବୀ ହୁଏ କାଗଜ, ଏବଂ ସ୍ୱୟଂ ସରସ୍ୱତୀ ଯଦି ହୁଅନ୍ତି ଲେଖିକା, ତଥାପି ସେହି କାଳିର ଦୁଆତରେ ସେହି କଲମ ବୁଡ଼ାଇ ସେହି ବିସ୍ତୀର୍ଣ୍ଣ କାଗଜ ଉପରେ ଅନନ୍ତ କାଳ ଧରି ଲେଖି ଚାଲିଲେ ମଧ୍ୟ ସେହି ଲେଖିକା ଶିବ-ମହିମା କଥା ଲେଖି ଶେଷ କରି ପାରିବେ ନାହିଁ ।

ପଢୁ ପଢୁ ବିହ୍ୱଳ ହୋଇ ପଡ଼ିଲା ଗଦାଧର । ଦର-ଦର ହୋଇ ଲୁହ ଝରି ପଡ଼ିଲା ଆଖିରୁ । କଥା ଓ ପାଠ ସବୁ ମିଶି ଏକାକାର ହୋଇଗଲା । ସେ ଚିତ୍କାର କରି କହି ଉଠିଲା, 'ହେ ମହାଦେବ, ତୁମର ଏତେ ଗୁଣ, ମୁଁ ତାହା କେମିତି ପ୍ରକାଶ କରିବି !' କେବଳ ନୀରବ ଅଶ୍ରୁ-ବର୍ଷଣ

ନୁହେଁ, ମୁକ୍ତ କଣ୍ଠର ଉଚ୍ଚ କ୍ରନ୍ଦନ-ରୋଳ । ଆନ୍ତରିକତାର ଆର୍ତ୍ତନାଦ ।

ମନ୍ଦିରର କର୍ମଚାରୀମାନେ ଧାଇଁ ଆସିଲେ । ଚହଳ ପଡ଼ିଗଲା । ଆରେ, ସାନ-ଭଟ୍ଟାଚାର୍ଯ୍ୟେ ପୁଣି ପାଗଳାମି ଆରମ୍ଭ କରି ଦେଲେଣି ! ସେଇ ଆଗ ଭଳି ପେଟେଣ୍ଟ ପାଗଳାମି । ହେଲେ, ମାତ୍ରାଟା ବହୁତ ବେଶୀ । ଆରେ, ଛିଡ଼ା ହୋଇ ଦେଖୁଛୁ କଅଣ ? ସାନ-ମଝିଆଁ ବାବୁ ଆଜି ମନ୍ଦିରରେ ଅଛନ୍ତି, ବାନ୍ଧି ପକାଅ ଏ ପାଗଳାକୁ । ନ ହେଲେ କେଜାଣି ବା କୁଦା ମାରି ଯାଇ ଶିବଙ୍କ କାନ୍ଧ ଉପରେ ଚଢ଼ି ବସିବ ।

ଧର, ଧର ! କିଏ ଜଣେ ଆସି ହାତ ଦି'ଟା ଧରି ରଖ -

ପାଟି ଗୋଳ ଶୁଣି ନିଜେ ମଥୁରବାବୁ ଚାଲି ଆସିଲେ ସେଠିକି । ଦୃଶ୍ୟ ଦେଖି ବିମୋହିତ ହୋଇ ପଡ଼ିଲେ । ଶିବ ଭାବରେ ତନ୍ମୟ ହୋଇ ବସି ରହିଛି ଗଦାଧର । ଉଦାସୀନ ପୁଣି ଉପଶାନ୍ତ । ଆତ୍ମବିଭୂତିରେ ବୈଭବମୟ ।

'ଆରେ, କହୁଛି ପରା, ଟାଣି ଆଣ ତାକୁ ବିଗ୍ରହ ପାଖରୁ । କଅଣ ନାଇଁ କଅଣ କରି ପକେଇବ-'

'ଖବରଦାର !' ଗର୍ଜି ଉଠିଲେ ମଥୁରବାବୁ :'ଦେହରେ ହାତ ଦେଇ ପାରିବ ନାହିଁ କେହି !'

ଅଟକି ଗଲା ଉଦ୍ୟତ ହାତଗୁଡ଼ିକ । ସମସ୍ତେ ଚୁପ୍ ।

ମୁଗ୍ଧ ନେତ୍ରରେ ମଥୁର ବାବୁ ଦେଖିବାକୁ ଲାଗିଲେ ତାଙ୍କ ଗୁରୁ ଦେବଙ୍କୁ । ଦୁସ୍ତର ଭବ-ସମୁଦ୍ରର ନିପୁଣ କର୍ଣ୍ଣଧାରଙ୍କୁ ।

ଦେବତା ଠାରୁ ମଧ୍ୟ ଗୁରୁ ଗରୀୟାନ । 'ଶିବେ ରୁଷ୍ଟେ ଗୁରୁସ୍ତ୍ରାତା ଗୁରୌ ରୁଷ୍ଟେ ନ କଶ୍ଚନ' ।

କିଛି ସମୟ ପରେ ବାହ୍ୟଜ୍ଞାନ ଫେରି ଆସିଲା ଗଦାଧରର । ଆଖି ଖୋଲି ଦେଖିଲା ତାକୁ ବେଢ଼ି ମନ୍ଦିରର ସବୁ ଲୋକ ଠିଆ ହୋଇଛନ୍ତି । ମଝିରେ ମଥୁର ବାବୁ ।

ବେହୋସ ଅବସ୍ଥାରେ କିଛି ଗୋଟାଏ ଅବାଞ୍ଛିତ କାମ କରି ପକାଇଛି ବୋଧହୁଏ । ସାନ ପିଲାଟିଏ ପରି ଭୟରେ ସଂକୁଚିତ ହୋଇ ପଡ଼ିଲା । ପଚାରିଲା ଶିଶୁର ସାରଲ୍ୟରେ, 'କଅଣ, କିଛି ଭୁଲ କାମ୍ କରି ପକାଇଛି ?' ମଥୁର ବାବୁ ପାହୁଣ୍ଡେ ଆଗେଇ ଯାଇ ପ୍ରଣାମ କଲେ ଗଦାଧରକୁ । କହିଲେ, 'ନା, ବାବା, ତୁମେ ସ୍ତବ-ପାଠ କରୁଥିଲ, ଆମେ ସବୁ ଶୁଣୁଥିଲୁଁ ।'

ଆଉ ଦିନେ ।

ଗଦାଧର ଯେଉଁ ଘରେ ରହେ ସେହି ଘରର ଉତ୍ତର ପାଖ ବାରନ୍ଦାରେ ଟହଲି ହେଉଛି । ସେ ପାଖରେ ବାବୁଙ୍କ କଚେରୀ ଘର । କଚେରୀ-କାମ କରୁଛନ୍ତି ମଥୁର ବାବୁ । ଗଦାଧରକୁ ସେଠାରୁ ପରିଷ୍କାର ଦେଖି ହେଉଛି । କାମ କରୁଛନ୍ତି, ମଝିରେ ମଝିରେ ଖାତା-ପତ୍ରରୁ ମୁଣ୍ଡ ଟେକି ଗଦାଧର ଆଡ଼କୁ ଅନାଉଛନ୍ତି । ଗଦାଧରର ଲକ୍ଷ୍ୟ ନାହିଁ ସେ ଆଡ଼କୁ । ଥରେ ପଶ୍ଚିମରୁ ଆସୁଛି ପୂର୍ବ ଆଡ଼କୁ, ପୁଣି ପୂର୍ବରୁ ଯାଉଛି ପଶ୍ଚିମକୁ । ତାକୁ କିଏ ଦେଖୁଛି ନ ଦେଖୁଛି ସେ ଆଡ଼କୁ ନଜର ନାହିଁ ।

ହଠାତ୍ ଘଟିଗଲା ଗୋଟାଏ ଅଭାବନୀୟ ଘଟଣା । ମଥୁର ବାବୁ କାଗଜପତ୍ର ଫିଙ୍ଗିଦେଇ ପାଗଳପରି ଧାଇଁ ଆସିଲେ । ଆସି ଗଦାଧରର ପାଦ ଦୁଇଟି ଦୁଇ ହାତରେ ଜାବୁଡ଼ି ଧରି ଲୋଟି ପଡ଼ିଲେ ଭୂଇଁ ଉପରେ । କାନ୍ଦୁଛନ୍ତି ଅସମ୍ଭାଳ ହୋଇ ।

ଗଦାଧର ହତବୁଦ୍ଧି !

'ଏ କଅଣ ? ଏ' ତୁମେ କଅଣ କରୁଛ ? ତୁମେ ରାଣୀଙ୍କ ଜ୍ୱାଇଁ, ତମର କେତେ ଖାତିର-ସମ୍ମାନ ! ତୁମେ ଏମିତି ହେଉଛ ଦେଖିଲେ ଲୋକେ କହିବେ କଅଣ ? ଉଠ, ସ୍ଥିର ହୁଅ-'

ମଥୁର ଆଉ କଅଣ ଶୁଣନ୍ତି ସେ କଥା ! ନା କାନ୍ଦ ବନ୍ଦ ହେଉଛି !

ଟିକିଏ ସ୍ଥିର ହୋଇ କହିଲେ, 'ଗୋଟାଏ ଅପରୂପ ଦର୍ଶନ ଆଜି ପାଇଲି ତୁମ ଭିତରେ । ପୂର୍ବରୁ ପଶ୍ଚିମକୁ ଆସୁଛ, ସ୍ପଷ୍ଟ ଦେଖୁଛି, ତୁମେ ନୁହଁ, ମନ୍ଦିରର ମା ଆସୁଛନ୍ତି । ପୁଣି ବୁଲି ପଡ଼ି ତୁମେ ପଶ୍ଚିମରୁ ପୂର୍ବକୁ ଯାଉଛ, ମୁଁ ଦେଖୁଛି, ସାକ୍ଷାତ ମହାଦେବ ଯାଉଛନ୍ତି । ଭାବିଲି ବୋଧହୁଏ ମୋର ଦୃଷ୍ଟିଭ୍ରମ ହେଉଛି । ଆଖି ରଗଡ଼ି ପୁଣି ଚାହିଁଲି, ପୁଣି ସେହି ଶିବ-କାଳୀ । ପୁଣି ରଗଡ଼ି ପୁଣି ଚାହିଁଲି, ପୁଣି ସେଇ କଥା । ଯେତେ ଥର ଚାହିଁଲି ସେତେ ଥର -' ଆଉ କହି ପାରିଲେ ନାହିଁ ମଥୁର ବାବୁ, କୋହରେ କଣ୍ଠ ରୁଦ୍ଧ ।

'କାହିଁ, ମୁଁ ତ କିଛି ଜାଣି ନାହିଁ । ସେ ସବୁ ମିଛ, ଭ୍ରମ -' କଥାଟାକୁ ହସରେ ଉଡ଼େଇ ଦେବାକୁ ଚାହିଁଲା ଗଦାଧର ।

କିନ୍ତୁ ମଥୁର ବାବୁ ଆଉ କଅଣ ଶୁଣନ୍ତି ସେ କଥା ? ପାଦ ଛାଡ଼ିଲେ ନାହିଁ । ଉଠିଲେ ନାହିଁ । ଆଜି ପାଇ ଯାଇଛନ୍ତି ସେ ତାଙ୍କର ଜଗଦ୍‌ଗୁରୁଙ୍କୁ । ଭବଭୟବୈଦ୍ୟ ସର୍ବକାରଣ - କାରଣଙ୍କୁ ।

ଗଦାଧର ଶଙ୍କିଗଲା । କିଏ କେଉଁଠି ଏ ଘଟଣା ଦେଖି ପକାଇ ଯଦି ରାଣୀଙ୍କ ପାଖରେ କହିଦିଏ ? ରାଣୀ ଭାବିବେ, ସାନ ପଣ୍ଡିତ ମୋ ଜ୍ୱାଇଁକୁ ଗୁଣୀ-ଗାରେଡ଼ିରେ ଆୟତ୍ତ କରି ନେଲାଣି !

ବହୁତ ବୁଝେଇ ସୁଝେଇ ପ୍ରକୃତିସ୍ଥ କରେଇଲା ମଥୁର ବାବୁଙ୍କୁ । ମୁଁ କିଏ ? ମୁଁ କଅଣ ? ମା ନିଜେ ସବୁ ଦେଖେଇ ଦଉଛନ୍ତି ତୁମକୁ । ନ ହେଲେ ମୋ ପାଇଁ ତୁମେ ଏତେ କରନ୍ତ କାହିଁକି ? ସର୍ବସ୍ୱ-ବିନିମୟରେ ମୋତେ ଏତେ ଭଲ ପାଆନ୍ତ କାହିଁକି ?

ଗଦାଧରର ମନକୁ ସଉକୀ ଆସିଲା ମା'ଙ୍କୁ ପାଉଁଜ ପିନ୍ଧେଇବ । ମଥୁର ବାବୁ ସଂଗେ ସଂଗେ ଗଢ଼େଇ ଦେଲେ ପାଉଁଜ । ସଖୀ ଭାବରେ ସାଧନା କରିବା ସମୟରେ ସ୍ତ୍ରୀ-ବେଶ ହେବ ଗଦାଧର । ମଥୁର ବାବୁ ବନାରସୀ ଶାଢ଼ି, ଓଢ଼ଣା ଏବଂ ପୂରା ଗୋଟାଏ ସେଟ୍ ଡାଇମଣ୍ଡ କଟା ଅଳଂକାର କିଣିଦେଲେ । ସେତିକିରେ ସନ୍ତୁଷ୍ଟ ହୋଇ ରହି ପାରିଲେ ନାହିଁ । ପାଣିହାଟି ଯାଉଛି ଗଦାଧର ମେଳା ଦେଖିବା ପାଇଁ । ଦରୁଆନ ସହିତ ଗୋପନରେ ମଥୁର ବାବୁ ନିଜେ ବି ସାଙ୍ଗରେ ଯାଉଛନ୍ତି, କାଳେ ଭିଡ଼ ଭିତରେ ଗଦାଧରର କିଛି ଅସୁବିଧା ହେବ, ବୁଝିବା ପାଇଁ ।

ଭୃତ୍ୟ, ଭକ୍ତ, ଭଣ୍ଡାରୀ । ଏକାଧାରରେ ତ୍ରିମୂର୍ତ୍ତି ଏଇ ମଥୁରବାବୁ ।

କହିଲେ, 'ମୋ କୋଷ୍ଠୀରେ ଲେଖା ହୋଇଥିବା କଥା ଏତେ ଦିନେକେ ସତ ହେଲା ।'

'କଅଣ ଲେଖା ଅଛି ତୁମ କୋଷ୍ଠୀରେ ?'

'ଲେଖା ଅଛି, ମୋ ଇଷ୍ଟ ଦେବଙ୍କର ମୋ ପ୍ରତି ଏତେ କୃପା ରହିବ ଯେ ସେ ସ-ଶରୀରରେ ମୋ ପାଖେ ପାଖେ ରହିବେ । ମୋ ସହିତ ଯିବା-ଆସିବା କରିବେ । ତୁମେ ମୋର ସେହି ଇଷ୍ଟ, ମୋର ଅଭିଳଷିତ - ମୋର ପରମ ପ୍ରାର୍ଥନାର ଚରମ ପୁରସ୍କାର ।'

ତୁମେ କୃପାନିଧି ।

ତୁମେ ପ୍ରଥମେ ମାୟା, ପରେ ଦୟା । ପ୍ରଥମେ ମାୟା ରୂପରେ ଆସି ମନୋହରଣ କର, ତା' ପରେ ଦୟା ରୂପରେ ଆସି କରି ଦିଅ ମାୟାମୋଚନ । ମାୟାର ପର ପାରରେ ପହଞ୍ଚି ଏବେ ବସି ରହିଛି ତୁମ ଦୟା ପାଇଁ ।

## ୧୯

'ପଦ୍ମ ଦସ୍ତଖତ କଲା ନାହିଁ ?' ରାଣୀ ରାସମଣି ହତାଶ ଭାବରେ ଚାହିଁଲେ ଚାରିଆଡ଼କୁ: 'କାହିଁକି ଏମିତି ହେଲା ?'

ମୃତ୍ୟୁ ଆସନ୍ନ । ମାତ୍ର ମନରେ ଶାନ୍ତି ନାହିଁ ।

ଏତେ ବଡ଼ ଗୋଟାଏ କୀର୍ତ୍ତି ରଖି ଯାଉଛନ୍ତି ସଂସାରରେ, ଅଥଚ ଜୀବନର ଅନ୍ତିମ ଲଗ୍ନରେ ଶାନ୍ତି ନାହିଁ କାହିଁକି ? ଦେବୀଙ୍କ ସେବା ପାଇଁ ଦୁଇ ଲକ୍ଷ ଛବିଶ ହଜାର ଟଙ୍କା ଦେଇ ତିନି ଖଣ୍ଡ ଜମିଦାରୀ କିଣିଛନ୍ତି, ତେବେ ଏପର୍ଯ୍ୟନ୍ତ ଦେବୋତ୍ତର କରା ହୋଇନାହିଁ । ଚାରି ଝିଅଙ୍କ ଭିତରୁ ଦୁଇ ଜଣ କେବଳ ଜୀବିତ ଅଛନ୍ତି - ସବା ବଡ଼ ଝିଅ ପଦ୍ମମଣି ଏବଂ ସବା ସାନ ଜଗଦମ୍ବା । ଠାକୁରଙ୍କ ନାଁରେ ଦାନପତ୍ର ସଂପାଦନ କରି ସାରିଛନ୍ତି । ତେବେ ତା' ସାଙ୍ଗକୁ ଝିଅମାନେ ମଧ୍ୟ ଗୋଟାଏ ଗୋଟାଏ ଏକରାର ନାମ । ଲେଖି ଦେବା ଦରକାର ଯେ ସେ ସଂପତ୍ତିରେ ସେମାନଙ୍କର କୌଣସି ଦାବି ନାହିଁ । ଜଗଦମ୍ବା ଦସ୍ତଖତ କରିଦେଲା ପଦେ କଥାରେ, କିନ୍ତୁ ପଦ୍ମମଣି କଲମ ଛୁଇଁଲା ନାହିଁ ।

୧୮୬୧ ମସିହା ଫେବୃଆରୀ ୧୮ ତାରିଖ ଦିନ ଦାନପତ୍ରରେ ଦସ୍ତଖତ କଲେ ରାସମଣି । ଠିକ୍ ତା' ପର ଦିନ ପ୍ରସ୍ଥାନ କଲେ ସ୍ୱସ୍ଥାନକୁ ।

ମୃତ୍ୟୁର କିଛି ଦିନ ପୂର୍ବରୁ ଯାଇ ରହିଥିଲେ ତାଙ୍କର କାଳୀଘାଟରେ ଥିବା ଘରେ । ଅପେକ୍ଷା କରୁଥିଲେ ସେହି ଚରମ ମୁହୂର୍ତ୍ତକୁ । ସମୟ ଆସନ୍ନ ହୋଇ ଆସିଲା । ତାଙ୍କୁ ଅଣା ଗଲା ଆଦି-ଗଙ୍ଗା କୂଳକୁ । ବହୁ ଆଲୋକର ସମାରୋହ କରା ହୋଇଥିଲା ସେଠି । ହଠାତ୍ ରାସମଣି ଚିତ୍କାର କରି କହିଲେ, 'ନେଇ ଯାଅ, ନିଭେଇ ଦିଅ ଏ ଆଲୁଅ ସବୁ । ଅନ୍ଧାର କରି ଦିଅ, ମୋ ମା ଆସୁଛନ୍ତି । ତାଙ୍କ ଅଙ୍ଗ-ଜ୍ୟୋତିରେ ଦଶ ଦିଗ ଝଲସି ଉଠୁଛି ।'

ରାତ୍ରି ଦ୍ୱିତୀୟ ପ୍ରହର । ରାଣୀ ହଠାତ୍ ଅସ୍ଥିରତା ବୋଧ କଲେ । 'ମା ! ମା, ଆସିଲୁ ? ନେ, ଟାଣି ନେ ମୋତେ ତୋ କୋଳକୁ । ତେବେ ଶେଷ କଥାଟା ତୋତେ କହିଯାଉଛି - ପଦ୍ମ ଦସ୍ତଖତ କଲା ନାହିଁ !'

ମା ହସିଲେ । ସେଥିରେ ତୋର କଅଣ ଯାଏ ଆସେ ? ହୁଏତ ବହୁତ ମାଲି-ମୋକଦ୍ଦମା ହେବ ତୋ ନାତିମାନଙ୍କ ମଧ୍ୟରେ । ଦେବୋତ୍ତର ସଂପତ୍ତି ଛିନ୍ନ-ଛତ୍ର ହୋଇ ଯାଇପାରେ । ତେବେ ସେଥିପାଇଁ ତୁ କାହିଁକି ଚିନ୍ତା କରୁଛୁ ? ଯେଉଁ ଜିନିଷ ରହିବାର ନୁହେଁ ସେଇଟା ଯାଉ । କିନ୍ତୁ ତୁ

ରହିବୁ, ଆଉ ରହିବ ତୋ ଗଦାଧର ।

ଗଦାଧର ଦିନେ ପଚାରିଲା ହଳଧାରୀକୁ, 'ମୋର ଏମିତି ଗୋଟାଏ ସ୍ୱଭାବ କାହିଁକି ହେଲା କହିପାରିବ ? ଜପ କରିବାକୁ ବସି କିଏ ଯଦି ଅନ୍ୟମନସ୍କ ହୋଇପଡ଼େ, ସଂଗେ ସଂଗେ ମୁଁ ତାକୁ ଚାପଡ଼ା ବସେଇ ଦିଏ । ଥରେ ତ କାଳୀ-ମନ୍ଦିର ଭିତରେ ରାସମଣିଙ୍କୁ ବିଧାଏ ଦେଇଥିଲି । ଆଜି ପୁଣି ବରାନଗର ଘାଟରେ ଜୟ ମୁଖାର୍ଜୀଙ୍କୁ ଦୁଇ ଚାପଡ଼ ଦେଇ ଆସିଛି । ଖୁବ୍ ଆଡ଼ମ୍ବରରେ ଜପ କରିବାକୁ ବସି ଯାଇଛନ୍ତି, ଅଥଚ ମନ ଭିତରେ ଅନ୍ୟ ଚିନ୍ତା ।

ତୁ ଗୋଟାଏ ଉନ୍ମାଦ । କହିଲା ହଳଧାରୀ ।

ବୋଧହୁଏ ସେଇଆ । ସେଥିଲାଗି ମୁହଁରୁ ହକ୍ କଥାଟା ଚଟ୍ କରି ବାହାରିପଡ଼େ । କାହାକୁ ହେଲେ ଖାତିର ନାହିଁ । ଯେତେ ବଡ଼ ଲୋକ ହେଉ, କାଣି-କଉଡ଼ି ବି କେଆର କରେ ନା ।

ଦକ୍ଷିଣେଶ୍ୱରରେ ଯଦୁ ମଲ୍ଲିକଙ୍କର ବିରାଟ ଉଦ୍ୟାନ । ଯତୀନ୍ଦ୍ର ଠାକୁର ଆସିଛନ୍ତି ବୁଲିବାକୁ । ଠାକୁର ମଧ ଯାଇଛନ୍ତି ସେଠିକି । କଥା-ପ୍ରସଙ୍ଗରେ ଯତୀନ୍ଦ୍ର କହିଲେ, 'ଆମେ ହେଲୁ ସଂସାରୀ ଲୋକ । ଆମର କଅଣ ଆଉ ମୁକ୍ତି ଅଛି ? ସ୍ୱୟଂ ଯୁଧିଷ୍ଠିରଙ୍କୁ ତ ପୁଣି ନରକ ଦର୍ଶନ କରିବାକୁ ପଡ଼ିଥିଲା, ଆମ କଥା ପଚାରେ କିଏ ? ପଡ଼ିଥିଲା ତ ପଡ଼ିଥିଲା, କଥା ଶୁଣି ଠାକୁର ରାଗି ଗଲେ । କହିଲେ, ଯୁଧିଷ୍ଠିରଙ୍କ ବିଷୟରେ କେବଳ ତାଙ୍କର ନରକ-ଦର୍ଶନ କଥାଟା ମନେ ରଖିଲ । ତାଙ୍କର ସତ୍ୟ, କ୍ଷମା, ଧୈର୍ଯ୍ୟ, ବୈରାଗ୍ୟ - ତାଙ୍କର କୃଷ୍ଣ-ଭକ୍ତି - ଏ ଗୁଡ଼ାକ ସବୁ ଭୁଲିଗଲ ? ଆହୁରି କଅଣ ସବୁ କହିବାକୁ ଯାଉଥିଲେ ଠାକୁର; ମାତ୍ର ହୃଦୟର ଭାରି ଡର ବଡ଼ ଲୋକମାନଙ୍କୁ, ସେ ଚଟ କିନା ଠାକୁରଙ୍କ ମୁହଁରେ ହାତ ଦେଇ ଅଟକେଇ ଦେଲା ।

ଏବଂ, ଯତୀନ୍ଦ୍ର କଅଣ କଲେ ?

'ମୋର ଗୋଟାଏ ଜରୁରି କାମ ଅଛି ।' ବାହାନା କରି ଉଠି ଚାଲିଗଲେ ।

ଆଉ ଦିନେ ଯାଇଛନ୍ତି ସୌରୀନ୍ଦ୍ର ଠାକୁରଙ୍କ ଘରକୁ । ଦେଖା ହେଲା ମାତ୍ରେ କହି ପକାଇଲେ, 'ଦେଖ ବାବୁ, ତୁମକୁ ମୁଁ ରାଜା-ଫାଜା କିଛି କହି ପାରିବି ନାହିଁ । ତୁମେ ଯାହା ନୁହଁ, ସେଇଆ ତୁମକୁ ମୁଁ କହିବି କେମିତି ?'

ସୌରୀନ୍ଦ୍ର ରଜୋଗୁଣୀ ଲୋକ । ତାଙ୍କୁ 'ରାଜା' ବୋଲି ନ କହିବାରୁ ସେ ବୋଧହୁଏ ଖୁସି ହେଲେ ନାହିଁ । ଏକୁଟିଆ କଅଣ ଆଳାପ କରିବେ ? ଖବର ପଠାଇଲେ ଯତୀନ୍ଦ୍ରଙ୍କ ପାଖକୁ, ଆସିବା ପାଇଁ । ଯତୀନ୍ଦ୍ର କହି ପଠେଇଲେ, 'ମୋ ଗଳାଟା ବଥା ହୋଇଛି, ଯାଇ ପାରିବି ନାହିଁ ।'

ତୁମେ ଉନ୍ମାଦ । କହିଲେ କୃଷ୍ଣ କିଶୋର । ଏଁଡ଼େଦାର କୃଷ୍ଣ-କିଶୋର । ସର୍ବ ଶାସ୍ତ୍ରରେ ପାରଙ୍ଗମ ।

'ଯଦି ଉନ୍ମାଦ ନୁହଁ, ପଇତା, ଲୁଗା - ଏ ଗୁଡାକ ସବୁ ବର୍ଜନ କଲ କାହିଁକି ?'

ଠାକୁର କହିଲେ, 'ତୁମେ ନିଜେ ଥରେ ଉନ୍ମାଦ ହୁଅ । ତା' ପରେ ବୁଝିବ ।'

ହେଲା ବି ଠିକ୍ ସେଇଆ । କୃଷ୍ଣ କିଶୋରଙ୍କ ଉନ୍ମାଦ ଅବସ୍ଥା ଆସିଲା । ଏକୁଟିଆ ଗୋଟାଏ ଘର ଭିତରେ ଚୁପ୍ ହୋଇ ବସିରହନ୍ତି, ମୁହଁରେ କେବଳ ଓଁ - ଓଁ ଶବ୍ଦ କରନ୍ତି । ସମସ୍ତେ କହିଲେ ମୁଣ୍ଡ ବିଗିଡ଼ିଛି । କବିରାଜ ଡାକ । କବିରାଜ ଆସିଲେ ନାଟାଗଡ଼ରୁ । କୃଷ୍ଣ କିଶୋର

କହିଲେ, 'ମୋର ରୋଗ ଥିଲେ ଛଡ଼େଇ ଦିଅ, ଆପତ୍ତି ନାହିଁ । କିନ୍ତୁ ମନେ ରଖ, ମୋ ଓଁକାରକୁ ଛଡ଼େଇବ ନାହିଁ ।'

ନାରାୟଣ ଶାସ୍ତ୍ରୀ ଆସିଥିଲେ ନଦୀୟା, ନ୍ୟାୟ ଅଧ୍ୟୟନ କରିବା ପାଇଁ । ଘର ରାଜପୁତାନାରେ । ଗୁରୁ ଗୃହରେ ପଚିଶ ବର୍ଷ କାଳ ବ୍ରହ୍ମଚର୍ଯ୍ୟ ପାଳନ କରି ଆସିଛନ୍ତି । ଜୟପୁରର ମହାରାଜା ଚାହିଁଲେ ତାଙ୍କୁ ବଡ଼ ଚାକିରିରେ ରଖେଇବା ପାଇଁ । ଶାସ୍ତ୍ରୀ କାନକୁ ନେଲେ ନାହିଁ ସେ କଥା । ଜ୍ଞାନ ପରି ଆନନ୍ଦ ଆଉ କଅଣ ଅଛି ? ଶାସ୍ତ୍ର-ଦର୍ଶନ ସମସ୍ତ ମନ୍ଥନ କରି ଦେଖିବେ କେଉଁଠି ଅଛନ୍ତି ସେହି ବିଜ୍ଞାନାନନ୍ଦ ବ୍ରହ୍ମ । କିନ୍ତୁ ଗ୍ରନ୍ଥ ଅଧ୍ୟୟନ କରି ମନର ସାଧ ମେଣ୍ଟିଲା ନାହିଁ ଶାସ୍ତ୍ରୀଙ୍କର । ଅସ୍ତି- ସେ ଅଛନ୍ତି, ଏତିକି କେବଳ ଜାଣି ହେବ ଗ୍ରନ୍ଥ ଅଧ୍ୟୟନରୁ । ତା' ଠାରୁ ଆଉ ଅଧିକ ଉପଲବ୍ଧି ଆସିପାରିବ ନାହିଁ । ''ଅସ୍ତୀତି ବ୍ରୁବତୋଽନ୍ୟତ୍ର କଥଂ ତଦୁପଲଭ୍ୟତେ !''

ଶୁଣିଲେ ଦକ୍ଷିଣେଶ୍ୱରରେ ଅଛନ୍ତି ସେହି ଉପଲବ୍ଧିର ଅବଧି । ବାହାରିଲେ ଦକ୍ଷିଣେଶ୍ୱର । ବୁଝିଲେ, ଆହାର ଠାରୁ ଆସ୍ୱାଦ ବଡ଼ । ଠିକଣା ଜାଣିବା ଅପେକ୍ଷା ଖଣ୍ଡିଏ ଚିଠି ପାଇବାର ମୂଲ୍ୟ ଢେର ବେଶୀ ।

ଆସି ପହଞ୍ଚିଲେ । ହେଲେ, ପହଞ୍ଚି ଦେଖିଲେ କଅଣ ? ଗଦାଧର କାନ୍ଧରେ ଏଡ଼େ ଲମ୍ବା ବାଉଁଶ-ଠେଙ୍ଗା ପକେଇ ବୁଲୁଛି । କାଙ୍ଗାଳ ଲୋକେ ଖାଇଗଲା ପରେ, ତାଙ୍କରି ଅଇଁଠା ପତ୍ର ଚାଟୁଛି, ତାକୁ ନେଇ ପୁଣି ମୁଣ୍ଡରେ ଲଗାଉଛି । କୋଉଠିକାର କିଏ ଗୋଟାଏ ନୀଚ ଜାତିର ସ୍ତ୍ରୀଲୋକ, ଖାଉଛି ତା'ରି ହାତରୁ ଶାଗ-ଭାତ । ସମସ୍ତେ କହୁଛନ୍ତି, ଉନ୍ମାଦ । କିନ୍ତୁ ନାରାୟଣ ଶାସ୍ତ୍ରୀ ଦେଖିଲେ ଜ୍ଞାନୋନ୍ମାଦ । ପରେ ଆହୁରି ବି ଦେଖିଲେ, କେବଳ ଜାଣିଛି ତେଣୁ ଉନ୍ମାଦ ନୁହେଁ, ପାଇଛି, ତେଣୁ ଉନ୍ମାଦ ।

ହଳଧାରୀ କିନ୍ତୁ ଧାଇଁ ଆସିଲା ଉଗ୍ରମୂର୍ତ୍ତିରେ । 'କଅଣ କରୁଛୁ ଏ-ସବୁ ତୁ ? ଏଇ କାଙ୍ଗାଳ ଗୁଡ଼ାଙ୍କର ଅଇଁଠା ଚାଟି ଖାଉଛୁ ! ତୋ ପୁଅ ଝିଅଙ୍କ ବିଭାଘର ହୋଇ ପାରିବ ?'

କଥା ଶୁଣି ଗଦାଧର ଅଗ୍ନିଶର୍ମା । 'ଶଳା ! ତୁମେ ପରା ଗୀତା-ବେଦାନ୍ତ ପଢ଼ ? ତୁମେ ପରା ଶିଖାଅ, ଜଗତ ମିଥ୍ୟା, ବ୍ରହ୍ମ ସତ୍ୟ ? ସର୍ବ ଭୂତରେ ବ୍ରହ୍ମଦୃଷ୍ଟି ? ତୁମେ ଭାବିଛ, ମୁଁ ଏଣେ ଜଗତ ମିଥ୍ୟା ବୋଲି ମୁହଁରେ କହୁଥିବି, ପୁଣି ପୁଅ-ଝିଅଙ୍କ ବାପ ବି ହେବି ? ତୁମ ଶାସ୍ତ୍ର-ପାଠ ମୁହଁରେ ନିଆଁ !'

କଅଣ ଲାଭ ଶାସ୍ତ୍ର ପାଠ କରି ? ଭାବିଲେ ବସି ନାରାୟଣ ଶାସ୍ତ୍ରୀ । ତବଲାର ବୋଲ ମୁହଁରେ କହିଯିବା ସହଜ, କିନ୍ତୁ ଆପଣା ହାତରେ ସେଇ ବୋଲ ବଜେଇବା ଅତି ଦୁଷ୍କର ।

ରାଣୀଙ୍କ ମୃତ୍ୟୁ ପରେ ତାଙ୍କ ସଂପତ୍ତିର ଏକଜିକ୍ୟୁଟର୍ ହେଲେ ମଥୁର ବାବୁ । ଦିନେ ଗଦାଧରକୁ କହିଲେ, 'ତୁମ ନାଁରେ କିଛି ଜମି-ଜାଗା ଲେଖି ଦେଉଛି । କଅଣ କହୁଛ ?'

ଗଦାଧର ରାଗରେ ଲାଲ ପଡ଼ିଗଲା । କଅଣ ? ମୋତେ ବିଷୟୀ କରିବାର ମତଲବ ରଖିଛ ? ମୁଁ କଅଣ ଡାଲି-ତେଲ-ଲୁଣ କିଣିବାପାଇଁ ଆସିଛି ଏଠିକି ?

ଭଗବାନ-ପ୍ରାପ୍ତିର ଆନନ୍ଦ ଭଳି ଆଉ କିଛି ଆନନ୍ଦ ଅଛି ? ଭଗବାନଙ୍କର ସ୍ୱାଦ ଥରେ

ପାଇଗଲେ ସଂସାର ଅଲୁଣା ଲାଗେ । ଶାଲ ପାଇଗଲେ ଆଉ ବନାତକୁ କିଏ ପଚାରେ ?

ଏ ଆନନ୍ଦକୁ କ'ଣ କଥାରେ କହି ବୁଝାଇ ହୁଏ ? ବିବାହର ଅନେକ ଦିନ ପରେ ଝିଅ ପାଖକୁ ଆସିଛି ତା' ସ୍ୱାମୀ । ରାତି ପାହିଲା, ସାଙ୍ଗ ସାଥୀମାନେ ଆସି ଘେରିଗଲେ ଝିଅକୁ । କହ, କିଭଳି ଆନନ୍ଦ ହେଲା କାଲି ? ଝିଅଟି କହିଲା, କେମିତି ବୁଝେଇବି ? କଥାରେ କହି ବୁଝେଇ ହେବ ନାହିଁ । ତୁମ୍ଭମାନଙ୍କର ସ୍ୱାମୀ ଆସିଲେ ତେବେ ଯାଇ ବୁଝିବ । ତା' ଆଗରୁ ନୁହେଁ ।

ଶୋଷରେ ଛାତି ଫାଟି ଯାଉଛି ଚାତକର । ଗଡ଼ିଆ, ପୋଖରୀ, ନଈ,ନାଳ, ହ୍ରଦ ସମୁଦ୍ର- ଚାରିଆଡ଼େ ଜଳ ଭରପୂର । କିନ୍ତୁ ସେ ଜଳ ସେ ଛୁଇଁବ ନାହିଁ । ସେ ଅନେଇ ରହିଛି ସ୍ୱାତୀ ନକ୍ଷତ୍ରର ଜଳକୁ । 'ବିନା ସ୍ୱାତୀ କି ଜଲ ସବ ଧୁର' ।

ଯେଉଁ ଲୋକ ମିଶ୍ରି ସରବତ ପିଇଛି ସେ କଅଣ ଆଉ ଗୁଡ଼ପଣା ଛୁଇଁବ ?

'କିନ୍ତୁ ସଂସାରରେ ରହିବାକୁ ହେଲେ ଟଙ୍କା ତ ଦରକାର -' କହିଲେ ତ୍ରୈଲୋକ୍ୟ ସାନ୍ୟାଲ: ' ସଞ୍ଚୟ କରିବା ମଧ ଦରକାର । ପାଞ୍ଚଟା ଦାନ ପୁଣ୍ୟ କରିବା -'

'ଥାଉ, ଥାଉ ! କୁହନା ଆଉ ସେ କଥା । କେତେ ଦାନ-ପୁଣ୍ୟ କରୁଛ ତୁମେ ସବୁ, ସେ କଥା କ'ଣ କାହାକୁ ଅଛପା ଅଛି ? ନିଜ ଝିଅର ବିଭାଘରରେ ହଜାର ହଜାର ଟଙ୍କା ଖରଚ କରୁଛ, ଅଥଚ ପଡ଼ିଶା ଘରେ ତିନି ଓଳିରେ ଓଳିଏ ଚୁଲି ଜଳୁ ନାହିଁ । ମୁଠାଏ ଚାଉଳ ଯଦି କିଏ ମାଗି ପକାଏ, ଦେଲା ବେଳକୁ ବାଧୁଛି । କେତେ ହିସାବ ! କଅଣ ? - ଖାଇବାକୁ ପାଉ ନାହାନ୍ତି ? ହେଲା ଏବେ, ହେଲେ ମୁଁ ବା କଅଣ କରି ପାରିବି ? ସେ ଶଳେ ବଞ୍ଚିଲେ କି ମଲେ, ସେଥିରେ ମୋର କଅଣ ଯାଏ ଆସେ ? ମୁଁ ଆଉ ମୋ ପିଲା କୁଟୁମ୍ବ ଭଲରେ ରହିଲେ ହେଲା । ମୁହଁରେ କିନ୍ତୁ କହି ଚାଲିଛନ୍ତି, ସର୍ବଜୀବରେ ଦୟା !'

ପ୍ରଥମେ ଈଶ୍ୱରଙ୍କୁ ଲାଭ କର, ତା' ପରେ ସଂସାରରେ ରୁହ । ଈଶ୍ୱର ଲାଭ ପରେ ଯେଉଁ ସଂସାର ତାହା ହେଉଛି ବିଦ୍ୟାର ସଂସାର । ସେତେବେଳେ 'କଲଙ୍କ ସାଗରେ ଭାସି, କଲଙ୍କ ନା ଲାଗେ ଗାୟ' । 'ତୋଡ଼ି ଯେସନେ ପଙ୍କେ ଥାଇ, ତା' ଦେହେ ପଙ୍କ ନ ଲାଗଇ ।'

ଦେଖୁ ନ ଜୟଗୋପାଳ ସେନକୁ । ଏତେ ଟଙ୍କା, ଅଥଚ ଆଙ୍ଗୁଠି ଫାଙ୍କରୁ ପାଣି ବି ପଡ଼ିବ ନାହିଁ । ଗାଡ଼ିରେ ବସି ଆସେ, ଗାଡ଼ିରେ ଭଙ୍ଗା ଲଣ୍ଠନ । ଦରମଲା ଘୋଡ଼ା । ଚମ ଧୁଡୁ ଧୁଡୁ କରୁଆନ୍ । ଆଉ, ଏଠିକି ଆସିଛି, ହାତରେ ଧରି ଆସିଛି ଦି'ଟା ପଚା ଡ଼ାଳିମ୍ବ !

ଏଇ ତ ଟଙ୍କାର କରାମତି ।

ମଥୁର ବାବୁଙ୍କ ସହିତ ଠାକୁର କାଶୀ ଆସିଛନ୍ତି, ତୀର୍ଥ କରିବା ପାଇଁ । ରହିଛନ୍ତି ରାଜା ବାବୁଙ୍କ ଘରେ । ଏଠି ବି ସବୁ ସମୟରେ ବିଷୟ-ସଂପତ୍ତି ନେଇ କଥାବାର୍ତ୍ତା । ଠାକୁର ବସି କାନ୍ଦିଲେ: 'କେଉଁଠି ଆଣି ପହଞ୍ଚେଇଲୁ, ମା ! ରାସମଣିର ମନ୍ଦିରରେ ମୁଁ ବରଂ ଭଲରେ ଥିଲି; ସେଠି ଅନ୍ତତଃ ବିଷୟ ସଂପତ୍ତି କଥା ଶୁଣିବାକୁ ପଡୁ ନଥିଲା ।'

ଉପର ମହଲାରେ ଠାକୁର ଘର । ନାରାୟଣ ପୂଜା ହେଉଛି । ଘରର ବୋହୂ-ସାଆନ୍ତାଣୀମାନେ ଚନ୍ଦନ ଘୋରି ଦେଉଛନ୍ତି, ଭୋଗ ସାମଗ୍ରୀ ସଜାଡ଼ି ଦେଉଛନ୍ତି, ଆଉ ସବୁ ଆୟୋଜନ କରି ଦେଉଛନ୍ତି । ମୁହଁରେ କିନ୍ତୁ ପଦେ ହେଲେ ଈଶ୍ୱରଙ୍କ କଥା ନାହିଁ । କଅଣ ଆଜି

ତରକାରୀ ହେବ, ବଜାରରେ ଭଲ ପନି-ପରିବା କିଛି ମିଳିଲା ନାହିଁ, କାଲି ସେଇ ଅମୁକ ତରକାରୀଟା ବଢ଼ିଆ ହୋଇଥିଲା - କେବଳ ଏଇ ସବୁ କଥା ।

ମଥୁର ବାବୁ କଥା ଫେରେଇ ନେଲେ । କେତେ ଲୋକ ତାଙ୍କୁ ଆଶ୍ରା କରି ନିଜ ନିଜର ଅବସ୍ଥା ବଦଳାଇ ପକାଇଲେ । ଅଥଚ ଏ ନିଜେ ଏପରି ଏକ ଗୁଣୀ-ଗୁରୁ ଯେ ଖୋଦ ମଥୁର ବାବୁଙ୍କ ଅବସ୍ଥା ବଦଳାଇ ଦେଲେ ।

'ବାବା, ତୁମ ପାଇଁ ଗୋଟାଏ ଶାଲ ଆଣିଛି, ଦେଖିଲ ?'

ପୂରା ହଜାରେ ଟଙ୍କା ଦେଇ କିଣି ଆଣିଛନ୍ତି ମଥୁରବାବୁ । ନିଜ ହାତରେ ଅତି ଆଦରରେ ଗଦାଧର ଦେହରେ ବେଢ଼େଇ ଦେଲେ ।

ଦେହରେ ଶାଲ ବେଢ଼େଇ ହୋଇ ଶିଶୁ ପରି ସରଳ ଆନନ୍ଦରେ ପରସ୍ତେ ନାଚିଗଲା ଗଦାଧର । ଡାକି ଡାକି ଦେଖେଇଲା ସମସ୍ତଙ୍କୁ, ବୁଝିଲୁ, ହଜାରେ ଟଙ୍କାଦାମ !

ମୁହୂର୍ତ୍ତକ ପରେ ଭାବନା ବଦଳିଗଲା । ଏଇ ଶାଲ ଭିତରେ ଅଛି କଅଣ ? କେତେ ଗୁଡ଼ାଏ ଛେଳି- ମେଣ୍ଢାଙ୍କ ଲୋମ ! ଏଇ ଜିନିଷର ଏତେ କଦର ! ଶୀତ ସମ୍ଭାଳିବା ପାଇଁ ସାମାନ୍ୟ ଖଣ୍ଡେ କମ୍ବଳ ହେଲେ ଯଥେଷ୍ଟ । ଏଇଟା କଅଣ ହେବ ? ହେଉ, ହେଲା; ଏଇ ଶାଲ ଖଣ୍ଡକ ଘୋଡ଼ିହୋଇ ପଡ଼ିଲେ ଈଶ୍ୱର-ସ୍ପର୍ଶ ମିଳିବ ? ବରଂ ମନର ବିକାର ବଢ଼ିବ । ମନେ ହେବ, ମୁଁ ଜଣେ ଭାରି ଜବରଦସ୍ତ ଲୋକ, ମୋର ବହୁତ ଇଲମ୍ । ମୁଁ ଅନ୍ୟମାନଙ୍କ ଠାରୁ ବଡ଼ । ମୁଁ ଗୋଟାଏ ରାଜା-ବାଦଶା କି ସେଇ ଭଳି ଗୋଟାଏ କିଛି । ମନକୁ ବିକାର ଆସିଲେ ଲୋକ କଅଣ କହେ ଜାଣ ? କହେ, ମୁଁ ପାଞ୍ଚ ସେର ଚାଉଳର ଭାତ ଖାଇବି, ପନ୍ଦର କଳସୀ ପାଣି ପିଇବି । ବୈଦ୍ୟ ବସି ବସି ଶୁଣୁଥାଏ, ମନେ ମନେ ହସି ଦେଇ କହୁଥାଏ, ହଁ ହଁ, ଖାଇବୁରେ ବାପା, ଖାଇବୁ, ଅଲବତ ଖାଇବୁ । କହି ଦେଇ ନିଜେ ବସି ନିଶ୍ଚିନ୍ତ ମନରେ ହୁକା ଟାଣେ । ବିକାର କଟିଗଲା ପରେ କଅଣ କହିବ, ଶୁଣିବାକୁ ଅପେକ୍ଷା କରେ ।

ହଠାତ୍ ଦେହରୁ ଶାଲ ଖଣ୍ଡକ ବାହାର କରି ତଳେ ପକାଇଦେଲା ଗଦାଧର । ତା' ଉପରେ ଥୁ-ଥୁ- କରି ଛେପ ପକାଇଲା, ପାଦରେ ଦଳି ଚକଟି ଦେଲା । ଏତିକିରେ ବି ଶାନ୍ତି ଆସିଲା ନାହିଁ । ଏଇଟାକୁ ନିଆଁ ଲଗାଇ ପୋଡ଼ି ପାଉଁଶ କରିଦେବି, ତେବେ ଯାଇଂଯିବ ଏ ଜଞ୍ଜାଳ !

କିଏ ଜଣେ ଧାଇଁ ଆସି ଉଠାଇ ନେଲା ଶାଲଟା । ମଥୁର ବାବୁଙ୍କୁ ଯାଇ ଜଣେଇଲା ସବୁ କଥା । ମଥୁର ବାବୁ କହିଲେ, 'ଠିକ୍ କରିଛି । ଯାହା ମୁଁ ଚାହୁଁଥିଲି, ସେଇଆ କରିଛି ।'

ଈଶ୍ୱରଙ୍କର ଗୋଟାଏ ଚମତ୍କାର ପରିହାସ ।

ମଥୁରବାବୁଙ୍କ ନିଜ ଘର ଜାନବଜାରରେ । ଠାକୁରଙ୍କୁ ନେଇ ଆସିଛନ୍ତି ସେଇଠିକି । କିଛି ଦିନ ରହିବେ ସେଇଠି । ଭାତ ଖାଇବାକୁ ଦିଅନ୍ତି ସୁନା-ଥାଳିରେ, ତରକାରୀ ରୂପା ତାଟିଆରେ । ରକମ ରକମ ତରକାରୀ । ଖାଇବା ଲୋକର କିନ୍ତୁ ଥାଳି-ତାଟିଆ ଆଡ଼କୁ ନଜର ନାହିଁ, କଅଣ ଖାଉଛି ସେ କଥା ବି ଜାଣି ପାରେ ନାହିଁ । ଖାଇ ସାରି ଭୁଲରେ ବି ଥରେ ଅନେଇ ଦେଖେ ନା ଥାଳି-ବାସନର କଅଣ ହେଲା । ସେ ଚିନ୍ତାଟା ପୂରା ପୂରି ମଥୁର ବାବୁଙ୍କର । ଦେଖ, ଠିକ୍ ଭାବରେ

ଧୁଆ ମଚା ହେଲା କି ନାହିଁ । ଭାଙ୍ଗି ତୁଟି ଯାଇ ନାହିଁ ତ ? କେହି ଖଣ୍ଡେ ବି' ଖଣ୍ଡ ଚୋରି-ଚାରି କରି ନେଇଗଲା ପରା ! ସବୁ ଝିଂଝଟ ତାଙ୍କରି । ଯିଏ ଖାଇ ଦେଇ ଉଠି ଚାଲିଗଲା ତା' ପାଇଁ ଏ ଗୁଡ଼ାକ ନିତାନ୍ତ ଅସାର କଥା !

ଚନ୍ଦ୍ର ହାଲଦାର ମଥୁର ବାବୁଙ୍କ କୁଳ-ପୁରୋହିତ । ରହନ୍ତି ତାଙ୍କରି ଘରେ, ତାଙ୍କରି ଆଶ୍ରୟରେ । ମାତ୍ର ଗଦାଧରକୁ ଏତେ ଖାତିର କରାଯାଉଛି ଦେଖି ମନେ ମନେ ଈର୍ଷାରେ ଜଳିଯାଉଛନ୍ତି । କେମିତି ଏ ଲୋକଟା ବାବୁଙ୍କୁ ହାତ କଲା ! କୋଉଠିକାର କିଏ, ତା'ର ପୁଣି ଏତେ ବହପ ! ଏତେ ପ୍ରତାପ ! ନାଃ, ଏ ଲୋକଟାକୁ ଆଉ ବେଶୀ ପ୍ରଶ୍ରୟ ଦେବା ଠିକ୍ ନୁହେଁ । କିଛି ଗୋଟାଏ କରିବାକୁ ପଡ଼ିବ । ବାହାର ଘରେ ଏକୁଟିଆ ପ୍ରାୟ ଜ୍ଞାନଶୂନ୍ୟ ଅବସ୍ଥାରେ ବସିଛି ଗଦାଧର । ଚନ୍ଦ୍ର ହାଲଦାର ପାଖକୁ ଆସିଲେ । କେହି ଆଉ ନାହାନ୍ତି ସେଠି । ଗଦାଧରର ଦେହକୁ ଖେଞ୍ଚି ଦେଇ କହିଲେ, 'ଆରେ, ଏ ବ୍ରାହ୍ମଣ, ସତ କହିଲୁ, ବାବୁଙ୍କୁ କେମିତି ବଶ କଲୁ ?'

ଗଦାଧର ନିଷ୍ପନ୍ଦ । ହଲଚଲ ନାହିଁ ।

'ବାଲିଙ୍ଗି ଦେଖଉଛି ! ଢୁଳୋଉଛି ବସି ବସି ଏଠି ! କହ, ସତ କହ, କଅଣ କରି ତୁ ବାବୁଙ୍କୁ କାବୁ କଲୁ ?'

ଗଦାଧର ସଂଜ୍ଞାହୀନ ।

'ଓ, ଭାରି ତ ମଗଜ ରେ !' କହି ଗଦାଧରକୁ ପାଦରେ ଗୋଇଠା ମରିଲେ । ଥରେ ନୁହେଁ, ତିନି ଥର ।

ଗଦାଧର ଆଖି ଖୋଲି ଚାହିଁଲା ବି ନାହିଁ । ପୃଥିବୀ ସମସ୍ତଙ୍କ ଠାରୁ ବଡ଼, ଆକାଶ ତା'ଠାରୁ ବଡ଼ । କିନ୍ତୁ ଭଗବାନ ବିଷ୍ଣୁ ଗୋଟାଏ ପାଦରେ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନି ଭୁବନ ଆବୃତ କରି ରହିଛନ୍ତି । ସାଧୁଙ୍କ ହୃଦୟରେ ସେହି ବିଷ୍ଣୁପଦ । ଏବଂ ସେହି ପଦଛାୟାରେ ଅନନ୍ତ ସହ୍ୟ ଶକ୍ତି !

ସହିଗଲା ଗଦାଧର । ମଥୁର ବାବୁଙ୍କୁ କହିଦେଲେ ଚନ୍ଦ୍ର ହାଲଦାରଙ୍କ ଅବସ୍ଥା ରହିବ ନାହିଁ !

ଠାକୁର ତେଣୁ ହୃଦୟକୁ କହୁଥିଲେ, 'ତୁ ମୋ କଥା ସହି ଯିବୁ । ମୁଁ ତୋ କଥା ସହିଯିବି । ତେବେ ଯାଇ ହେବ । ଏତକ କରି ନ ପାରିଲେ ପାଉଣା ପତ୍ର ହିସାବ !କ୍ଷ

## ୨୦

ଘାଟକୁ ଲାଗି ବଉଳ ଗଛ । ନୌକା ଆସି ଲାଗିଲା ସେଇ ଘାଟରେ । ସମୟ ସକାଳ । ଦକ୍ଷିଣେଶ୍ୱର ବଗିଚାରେ ଗଦାଧର ଫୁଲ ତୋଳୁଛି । ହଠାତ୍ ଚାହିଁ ଦେଲା ଘାଟ ଆଡ଼କୁ । କିଏ ଆସିଲା ନୌକାରେ ?

ଆଶ୍ଚର୍ଯ୍ୟ, ଜଣେ ସ୍ତ୍ରୀଲୋକ ! କିନ୍ତୁ ଅଦ୍‌ଭୁତ ତା'ର ବେଶ-ଭୂଷା । ଦେହରେ ପିନ୍ଧିଛି ଗେରୁଆ ଲୁଗା, ହାତରେ ତ୍ରିଶୂଳ, ମୁଣ୍ଡର କେଶ ଲମ୍ବିଯାଇଛି ପିଠି ଉପରକୁ - ଇଏ ତ

ସନ୍ନ୍ୟାସିନୀ ! ଇଏ କେମିତି ଆସିଲା ଏଠିକି ? ଏଠି ତା'ର କଅଣ କାମ ? ତାକୁ ବାଟ ବତେଇଲା କିଏ ?

ଚଞ୍ଚଳ ନିଜ ଘରକୁ ଚାଲି ଆସିଲା ଗଦାଧର । ଡାକିଲା ହୃଦୟକୁ । ଆରେ, ଗଲୁ ଦେଖିବୁ, ନଈ ଘାଟକୁ ଜଣେ ଭୈରବୀ ଆସିଛି । କଅଣ ତା' ଦେହର ରଙ୍ଗ, କଅଣ ତା' ଆଖିର ଚାହାଣି ! ଭାବ -ଭଙ୍ଗୀରେ କେତେ ତେଜ ! ଘାଟର ପକ୍କା ଚାନ୍ଦିନି ଉପରେ ବସିଛି । ତାକୁ ଯାଇ ଡାକି ଆଣ ଏଇଠିକି ।

ହୃଦୟ ଆଶ୍ଚର୍ଯ୍ୟ ହେଲା । ସେ କାହିଁକି ଆସିବ ଏଠିକି ? ତୁମେ ଡାକୁଛ, ସେଥିରେ ତା'ର କଅଣ ଯାଏ ଆସେ ?

'ତୁ ଯା ... । ଯାଇ କହ, ମୁଁ ଏଇଠି ଅଛି । କହିଲେ ସେ ଆସିବ ।'

ଗଲା ହୃଦୟ । ଯାଇ ଦେଖିଲା ଘାଟ-ଚାନ୍ଦିନୀ ଉପରେ ଭୈରବୀ ଚୁପ୍ ଚାପ୍ ବସିଛି । ସତେ ଯେମିତି ତା'ରି ପାଖରୁ କିଛି ଖବର ଶୁଣିବା ପାଇଁ । ମାମୁଁଙ୍କ କଥା ତାକୁ କହିଲା । ଶେଷରେ କହିଲା ମାମୁଁ ତାକୁ ଆସିବା ପାଇଁ କହିଛନ୍ତି ।

ପୁଣି ଆଶ୍ଚର୍ଯ୍ୟ ହେଲା ହୃଦୟ । ସେହି ପ୍ରଦେ କଥାରେ ଉଠି ପଡ଼ିଲା ଭୈରବୀ । ଆଉ କିଛି ନ ପଚାରି ଆସିଲା ତା' ପଛେ ପଛେ ।

ଆସି ପହଞ୍ଚିଲା ଗଦାଧର ବସିଥିବା ଘରର କବାଟ ପାଖରେ । ଗଦାଧର ଉପରେ ଆଖି ପଡ଼ିଲା ମାତ୍ରେ କାନ୍ଦି ପକେଇଲା ଆନନ୍ଦରେ ଏବଂ ବିସ୍ମୟରେ । ଉଦ୍‌ଗତ ଅଶ୍ରୁକୁ ବାଧା ଦେଇ ଉଚ୍ଛ୍ୱସିତ କଣ୍ଠରେ କହିଲା, 'ବାବା, ତୁମେ ଏଇଠି ଅଛ ! ଏତିକି କେବଳ ଜାଣିଥିଲି ଯେ ତୁମେ ଗଙ୍ଗା କୂଳରେ ଅଛ । ସେଇ ଦିନରୁ ଖୋଜି ବୁଲୁଛି ତୁମକୁ ।ଏତେ ଦିନକେ ପାଇଲି ।'

ପ୍ରାୟ ଚାଳିଶ ବର୍ଷ ବୟସ ଭୈରବୀର । ଅଭିଭୂତ ହେଲା ପରି ତା' ଆଡ଼କୁ ଚାହିଁ ରହିଲା ଗଦାଧର । କହିଲା, 'ମୋତେ ତୁମେ ଖୋଜି ବୁଲୁଛ, ମା ? କିନ୍ତ ମୋ କଥା ତୁମେ ଜାଣିଲ କେମିତି ?'

'ମା ମହାମାୟା ଜଣେଇ ଦେଲେ । କହିଲେ, ଏଇ ତିନି ଜଣଙ୍କ ସହିତ ଯାଇ ଦେଖା କର ।'

'ତିନି ଜଣ ?'

'ହଁ, ଆଉ ଦୁଇ ଜଣଙ୍କ ସହିତ ଦେଖା ହୋଇସାରିଛି, ପୂର୍ବ ବଙ୍ଗରେ । ତା' ପରେ ଏତେ ଦିନ ଧରି ତୁମକୁ ଖୋଜୁଥିଲି । ଆଜି ଭେଟ ପାଇଲି ।'

ଗୃହହରା ଶିଶୁ ଯେପରି କି ତା' ମା'କୁ ଫେରି ପାଇଛି - ଭୈରବୀର ଉପସ୍ଥିତି ଗଦାଧରକୁ ଠିକ୍ ସେଇ ଭଳି ମନେ ହେଲା । କେତେ ଦିନର କେତେ ସୁଖ-ଦୁଃଖର କଥା କହିବାକୁ ଅଛି । ତୋତେ ସବୁ କହିବି, ମା, ଗୋଟି ଗୋଟି କରି । ବାହ୍ୟଜ୍ଞାନ ରହେ ନା, କେତେ ଅଲୌକିକ କଥା ଦେଖେ, ଶୁଣେ । ସାରା ଦେହ ଜଳି-ପୋଡ଼ି ଗଲା ପରି ଲାଗେ । ଆଖି ପତା ପକେଇ ପାରୁ ନାହିଁ । ସମସ୍ତେ କହୁଛନ୍ତି, ମୁଁ ପାଗଳ ହୋଇ ଯାଇଛି ।ସତରେ ମୁଁ ପାଗଳ ହୋଇ ଯାଇଛି ? ଦିନ ରାତି ମା'ଙ୍କୁ ଡାକି ଡାକି ଶେଷରେ ପାଗଳ ହୋଇଗଲି ? ମା'ଙ୍କୁ ଡାକିବାର ଏଇ ପରିଣାମ ?

'କିଏ କହୁଛି, ତୁମେ ପାଗଳ ?' ଭୈରବୀର କଣ୍ଠରୁ ଝରି ଆସିଲା ଅମୃତ-ଆଶ୍ୱାସ । 'ଯାକୁ କହନ୍ତି ମହାଭାବ । ଏ ଭାବ ଚିହ୍ନିବାର ଶକ୍ତି ଏଠି କାହାରି ନାହିଁ । ତେଣୁ ନିଜ ବୁଦ୍ଧି ଅନୁସାରେ ବିଚାର କରୁଛନ୍ତି ।'

'ମହାଭାବ !' ଗଦାଧରର ଉନ୍ନିଦ୍ର ଚକ୍ଷୁ ଦୁଇଟି ଉଜ୍ଜ୍ୱଳ ହୋଇ ଉଠିଲା ।

'ହଁ, ଏହି ଭାବ ଆସିଥିଲା ରାଧାରାଣୀଙ୍କର, ଏହି ଭାବ ହୋଇଥିଲା ଶ୍ରୀ ଚୈତନ୍ୟଙ୍କର । ଭକ୍ତି-ଶାସ୍ତ୍ରରେ ଏ ସବୁ କଥାର ଉଲ୍ଲେଖ ଅଛି । ମୁଁ ସବୁ ପଢ଼ି, ଦେଖେଇ ଦେବି ତୁମକୁ । ସବୁ ଲକ୍ଷଣ ଠିକ୍ ଠିକ୍ ମିଳେଇ ଦେବି ।'

ଭୈରବୀ ତା' ଝୁଲା ମୁଣି ଭିତରେ ହାତ ପୂରେଇଲା । ମୁଣିରେ ଅଛି କେତେ ଖଣ୍ଡ ପୋଥି ଆଉ ଖଣ୍ଡେ - ଦି'ଖଣ୍ଡ ଲୁଗା । ଜୀବନ-ପଥରେ ଏତିକି ତାର ସମ୍ବଳ ।

ମା, ଦେବୀଙ୍କ ପ୍ରସାଦ ଟିକିଏ ଖାଅ । କିଛି ଲହୁଣୀ ଓ ମିଶ୍ରି ଭୈରବୀଙ୍କୁ ନିବେଦନ କଲା ଗଦାଧର । କିନ୍ତୁ ପୁଅ ନ ଖାଇଲେ ମା କଅଣ ଆଗରୁ ଖାଇଦିଏ ? ବଢ଼ା ହୋଇଥିବା ପ୍ରସାଦରୁ କିଛି ଆଣି ଗଦାଧର ନିଜ ପାଟିରେ ଦେଲା । ତା' ପରେ ଭୈରବୀ ଖାଇଲା ସେହି ପ୍ରସାଦ - ସକାଳର ଜଳଯୋଗ ।

କିନ୍ତୁ, କିଏ ମା, ତୁମେ ସଂସାରତ୍ୟାଗିନୀ ? କାହିଁକି ତୁମର ଏଇ ସନ୍ନ୍ୟାସିନୀ ବେଶ ? ସନ୍ନ୍ୟାସ- ଆଚରଣ ?

କେହି ଜାଣନ୍ତି ନାହିଁ । ମୁଁ ନିଜେ ବି ନୁହେଁ । କେବଳ ଏତିକି ଜାଣି ରଖ, ଯଶୋହର ଜିଲ୍ଲାରେ ମୋ ଘର, ଜନ୍ମ ବ୍ରାହ୍ମଣ ପରିବାରରେ । ଯଦି ମୋତେ କିଛି ନାଁ ଦେବାକୁ ଚାହଁ, କୁହ ଯୋଗେଶ୍ୱରୀ । ଯୋଗରେ ବସି ଜାଣିଲି, ତିନି ଜଣଙ୍କୁ ମୋତେ ସାଧନାରେ ସାହାଯ୍ୟ କରିବାକୁ ହେବ । ଜଗନ୍ମାତାଙ୍କ ଆଦେଶ । ପ୍ରଥମ ଦୁଇ ଜଣଙ୍କ ଭିତରୁ ଜଣକ ନାଁ ଚନ୍ଦ୍ର, ଆଉ ଜଣକର ନାଁ ଗିରିଜା । ଦୁଇ ଜଣଙ୍କର ଘର ବରିଶାଲରେ । ତୃତୀୟ ଜଣକ ତୁମେ । ଚନ୍ଦ୍ର ଏବଂ ଗିରିଜାକୁ ଯାହା ଶିଖେଇବାର ଶିଖେଇ ଦେଇ ଆସିଛି । ଏଥର ତୁମ ପାଳି ।

କଅଣ ଶିଖିଲେ ସେମାନେ ?

ଦେଖିବ ବୁହ, ଅଳ୍ପ ଦିନ ଭିତରେ । ତାଙ୍କୁ ନେଇ ଆସିବି ଏଠିକି ଏଇ ଦକ୍ଷିଣେଶ୍ୱରକୁ । ତୁମ ସହିତ ଭେଟ କରେଇ ଦେବି । ମୋର ତିନି ଶିଷ୍ୟ ଏକାଠି ହେବେ ।

ମନ୍ଦିରର ଚାରିଆଡ଼େ ବୁଲି ସବୁ ଦେଖିଲା ଯୋଗେଶ୍ୱରୀ । ଗଳାରେ ଝୁଲେଇଛି ରଘୁବୀର -ଶିଳା । ତାଙ୍କ ପାଇଁ ଭୋଗ-ଆୟୋଜନ କରିବାର ସମୟ ହେଲା । ସଞ୍ଜା ଆସିଲା ଠାକୁରବାଡ଼ିରୁ, ସଞ୍ଜା-ସାମଗ୍ରୀ ଧରି ଭୋଗ ରାନ୍ଧିବା ପାଇଁ ଚାଲିଗଲା ପଞ୍ଚବଟୀ ବନକୁ ।

ମହାଭାବ ! ମହାଭାବ କାହାକୁ କହନ୍ତି ?

ଶ୍ରୀମତୀଙ୍କର ଯେଉଁ ପ୍ରକାର ଭାବ ହେଉଥିଲା । ଜଣେ ସଖୀ ଛୁଇଁବାକୁ ଯାଉଥିଲା, ଆଉ ଜଣେ କହିଲା, ଛୁଅଁନା, ତାଙ୍କ ଦେହରେ ବର୍ତ୍ତମାନ କୃଷ୍ଣଙ୍କର ବିଳାସ ଚାଲିଛି । ମହାଭାବ ହେଉଛି ଈଶ୍ୱର -ଭାବ । ଦେହ-ମନ ସବୁ ଓଲଟ-ପାଲଟ କରିଦିଏ । ସତେ ଯେପରି ଗୋଟାଏ ପ୍ରକାଣ୍ଡ ହାତୀ ଯାଇ ପଶିଛି ଛୋଟ କୁଡ଼ିଆ ଘର ଭିତରେ । ଘର ଭାଙ୍ଗି ଚୂରମାର । ଈଶ୍ୱରଙ୍କ

ବିରହ -ଅଗ୍ନି ପ୍ରଳୟ-ଅଗ୍ନି ତୁଲ୍ୟ । ତାହା ସାମାନ୍ୟ ଜିନିଷ ନୁହେଁ । ରୂପ-ସନାତନ ଯେଉଁ ଗଛ ମୂଳରେ ବସୁଥିଲେ ସେ ଗଛର ପତ୍ର ସିଝି ଯାଇ ଝାଉଁଳି ପଡୁଥିଲା ।

'ଏଇ ଅବସ୍ଥାରେ ପୂରା ତିନି ଦିନ ଅଜ୍ଞାନ ହୋଇ ପଡ଼ି ରହିଥିଲି,' କହିଲେ ଠାକୁର : 'ଅଚଳ ଅବସ୍ଥାରେ ପଡ଼ି ରହିଥିଲି ଗୋଟାଏ ଜାଗାରେ । ଜ୍ଞାନ ଫେରିଲା ପରେ ବ୍ରାହ୍ମଣୀ ମୋତେ ଧରି ଗାଧୋଇ ଦେବାକୁ ନେଇଗଲା । କିନ୍ତୁ ମୋ ଦେହରେ ହାତ ମାରି ପାରିଲା ନାହିଁ । ଗୋଟାଏ ମୋଟା ଚଦର ଆଣି ଘୋଡ଼େଇ ଦେଲା ମୋଦେହରେ । ସେହି ଚଦର ଉପରୁ ମୋତେ ଧରି ନେଇଗଲା ଗଙ୍ଗା କୂଳକୁ । ଦେହରେ ଯେଉଁ ମାଟି କାଦୁଅ ଲାଗିଥିଲା ସେଗୁଡ଼ିକ ପୋଡ଼ା ହାଣ୍ଡି ପରି ପୋଡ଼ି ହୋଇ ଯାଇଥିଲା ।'

ଶ୍ରୀ ମା କହୁଥିଲେ, 'ଠାକୁରଙ୍କର ଯେତେବେଳେ ମହାଭାବ ଆସୁଥିଲା, ମନେ ହେଉଥିଲା ତାଙ୍କ ଛାତି ଭିତରେ ସତେ କି ସାତଟା ଚୁଲିର ନିଆଁ ଜଳୁଛି ।' କହୁ କହୁ ଭାବାରୂଢ଼ ହୋଇ ପଡୁଥିଲେ;' ସେତେବେଳେ ଦେହର ରଙ୍ଗ କଅଣ ଦେଖିବ ! ସୁନାର ଇଷ୍ଟ କବଚ ସହିତ ଦେହର ରଙ୍ଗ ମିଶି ଯାଉଥିଲା । ତେଲ ମଖାଇ ଦେଲା ବେଳେ ଦେଖୁଥିଲି ସାରା ଅଙ୍ଗରୁ ଜ୍ୟୋତି ବାହାରୁଛି । କାଳୀ ମନ୍ଦିରକୁ ଯେତେବେଳେ ଯାଆନ୍ତି, ଲୋକେ ସବୁ ଠିଆ ହୋଇ ପଡ଼ନ୍ତି । କହନ୍ତି, ହେଇଟି, ସେ ଯାଉଛନ୍ତି । ପୂରିଲା ପୂରିଲା ଦେହ, ସାନ ଧୋତିଟିଏ ପିନ୍ଧି ଧସ୍ ଧସ୍ କରି ଯେତେବେଳେ ଯାଉଥିଲେ ଗଙ୍ଗାକୁ, ଗାଧୋଇବା ପାଇଁ, ରୂପର ସତେ କି ଢେଉ ଉଠୁଥିଲା । ଛିଦ୍ରା ହୋଇ ତାଟି ଫାଙ୍କରେ ମନ ପୂରାଇ ଦେଖୁଥିଲି । ମଥୁର ବାବୁ ଖଣ୍ଡିଏ ପିଢ଼ା କରେଇ ଦେଇଥିଲେ, ବେଶ୍ ବଡ଼ ପିଢ଼ା । ଖାଇ ବସିଲା ବେଳେ, ଏତେ ବଡ଼ ପିଢ଼ାଟା ବି ଅଣ୍ଟୁ ନଥିଲା, ଦେହର କିଛି ଅଂଶ ବାହାରକୁ ରହି ଯାଉଥିଲା -'

ଦିନେ କଥା-ପ୍ରସଙ୍ଗରେ ଶ୍ରୀ ମା କହିଲେ, 'ମୋତେ କଅଣ କହୁଥିଲେ, ଜାଣ ? କହୁଥିଲେ, ନିଜ ଦେହକୁ ଦେଖେଇ କହୁଥିଲେ, ମୋର ଏଇ ଦେହ ଗୟାରୁ ଆସିଛି । ତେଣୁ ତାଙ୍କ ମା ମଲା ପରେ ମୋତେ କହିଲେ, ତୁମେ ଯାଇ ପିଣ୍ଡ ଦେଇ ଆସ । କି କଥା ଇଏ ! ପୁଅ ଥାଉଁ ଥାଉଁ ମୁଁ ପିଣ୍ଡ ଦେବି କିପରି ? ସେ କହିଲେ, ହଁ ହଁ, ଚଳିବ । ତା' ପରେ ବୁଝେଇ ଦେଲା ଭଳି କହିଲେ, ମୋର କଅଣ ଆଉ ସେଠିକି ଯିବାର ଉପାୟ ଅଛି ? ଗଲେ ଆଉ ଫେରିବି ? ମୁଁ ଚମକି ପଡ଼ିଲି । ଥାଉ ତେବେ, ତୁମେ ଯିବା ଦରକାର ନାହିଁ, ମୁଁ ନିଜେ ଯିବି । ବୁଢ଼ା ଗୋପାଳକୁ ସାଙ୍ଗରେ ନେଇ ପରେ ମୁଁ ଗୟା ଗଲି ।'

ରାନ୍ଧି ସାରି ରଘୁବୀରଙ୍କ ଆଗରେ ଭୋଗ୍ୟ-ବ୍ୟଞ୍ଜନ ସଜାଡ଼ି ରଖି ଧ୍ୟାନରେ ବସିଛି ଭୈରବୀ । ବାହ୍ୟଜ୍ଞାନ ଲୁପ୍ତ । ଆଖିରୁ ଝରି ପଡୁଛି ଆନନ୍ଦର ଧାରା । ଧ୍ୟାନରେ ଦେଖୁଛି, ସ୍ୱୟଂ ରଘୁବୀର ଆସି ଖାଉଛନ୍ତି ତା'ର ସେଇ ନିବେଦିତ ଅନ୍ନ । ଆହା, କେତେ ତୃପ୍ତିରେ ଖାଉଛନ୍ତି ସେ, କେତେ ଆନନ୍ଦରେ ।

ବାହ୍ୟ ଜ୍ଞାନ ଫେରି ଆସିବା ପରେ ଚାହିଁ ଦେଇ ଆନନ୍ଦରେ ଆତ୍ମହରା ହୋଇ ପଡ଼ିଲା ଭୈରବୀ । ଭୋଗର ଅନ୍ନ ଖାଉଛି ଗଦାଧର । ଅନାହୂତ ଭାବରେ କେତେବେଳେ ଆସି ପହଞ୍ଚି ଯାଇଛି ପଞ୍ଚବଟୀରେ । ଚାଲି ଆସିଛି କେଉଁ ଏକ ଅଦୃଶ୍ୟ ପ୍ରାଣର ଆକର୍ଷଣରେ । ଅଦୃଶ୍ୟ

କୌଣସି ନିମନ୍ତ୍ରଣର ସମ୍ବାଦରେ ।

ଭୈରବୀ ଆଖିରେ ଆଖି ପଡ଼ିଲାରୁ ଜ୍ଞାନ ଭୂମିକୁ ଫେରି ଆସିଲା ଗଦାଧର । ଅପ୍ରସ୍ତୁତ ହେଲା ପରି କହିଲା, 'କେତେବେଳେ କଅଣ ଗୋଳମାଳ ହୋଇଯାଏ, ଜାଣିପାରେ ନାହିଁ । ଅଦ୍‌ଭୂତ କାମ ସବୁ କରି ପକାଏଁ ।'

ଭୈରବୀର ମୁଖମଣ୍ଡଳରେ ପ୍ରଶାନ୍ତ ଅଭୟ । କହିଲା, 'ଭଲ କରିଛ । ପ୍ରାଣ ଯାହା ଚାହୁଁଥିଲା ଠିକ୍ ସେଇଆ କରିଛ । ଧ୍ୟାନରେ ଯାହା ଦେଖୁଥିଲି ଆଖି ଖୋଲି ତାହା ହିଁ ପ୍ରତ୍ୟକ୍ଷରେ ଦେଖିଲି । ମୋର ଆଉ ବାହାର ପୂଜାର ପ୍ରୟୋଜନ ନାହିଁ । ମୁଁ ଆଜି ପାଇ ଯାଇଛି ମୋ ଧ୍ୟାନର ରଘୁବୀରଙ୍କୁ ।' କହି ଖାଇବାକୁ ଲାଗିଲା ଗଦାଧରର ଉଚ୍ଛିଷ୍ଟ ଅନ୍ନ । ତା' ଦେବତାଙ୍କ ପ୍ରସାଦ ।

ଖାଇ ସାରି ଆସିଲା ଗଙ୍ଗା କୂଳକୁ । ଶିଳାମୂର୍ତ୍ତିରେ ଆଉ କଅଣ ପ୍ରୟୋଜନ ? ପାଇ ଯାଇଛି ମୋର ପ୍ରାଣ-ସ୍ୱରୂପଙ୍କୁ । ଏତେ ଦିନ ଧରି ଯେଉଁ ଶିଳାଖଣ୍ଡକୁ ବେକରେ ଝୁଲାଇ ରଖିଥିଲା, ଗଳାରୁ ବାହାର କରି ବିସର୍ଜନ ଦେଲା ଗଙ୍ଗା ଗର୍ଭରେ ।

ମା'ଙ୍କୁ କହୁଥିଲା ଗଦାଧର, 'ମା, ମୋତେ ଦେଖେଇ ଦେ, ଶିଖେଇ ଦେ । ତୋ ପୁଅ ହୋଇ ମୁଁ କଅଣ ମୂର୍ଖ ହୋଇ ରହିବି ?'

ତାକୁ ଶିଖେଇବା ପାଇଁ ମା ପଠେଇଦେଲେ ଭୈରବୀକୁ, ତାଙ୍କର ଜ୍ଞାନବତୀ ଝିଅ ଯୋଗେଶ୍ୱରୀକୁ ।

ତନ୍ତ୍ର ଶାସ୍ତ୍ରର ବିଧିବେତ୍ତା, ବହୁଦର୍ଶନୀ ଭୈରବୀ । ନିଜ ପୁଅ ପରି ପଢ଼େଇବାକୁ ଲାଗିଲା ଗଦାଧରକୁ । ଦିବ୍ୟ-ଦର୍ଶନ କଅଣ, ଦିବ୍ୟୋନ୍ମାଦନା କଅଣ, ସବୁ କଥା ବହିରେ ଲେଖା ଥିବା ଲକ୍ଷଣ ସହିତ ମେଳେଇ ମେଳେଇ ଦେଖାଇ ଦେଲା । ଗଦାଧରର ବହୁ ଜିଜ୍ଞାସାର ସମାଧାନ ହେଲା, ବହୁ ସଂଶୟ ମୋଚନ । ପଞ୍ଚବଟୀରେ ପ୍ରବାହିତ ହେବାକୁ ଲାଗିଲା ଦିବ୍ୟାନନ୍ଦର ତରଙ୍ଗ । 'ଚିଦାନନ୍ଦ ସିନ୍ଧୁ-ନୀରେ ପ୍ରେମାନନ୍ଦର ଲହରୀ ।'

ପ୍ରାୟ ସାତ ଦିନ କଟିଗଲା ଅଲୌକିକ ଘନିଷ୍ଠତା ଭିତରେ । କିନ୍ତୁ ବାହାରର ସଂସାର ଏ-ଘନିଷ୍ଠତାକୁ କେଉଁ ଦୃଷ୍ଟିରେ ଦେଖୁଛି, କିଏ ଜାଣେ ? ଏମିତି ବି ହୋଇପାରେ, ଭୈରବୀ ନାଁରେ କେହି କଛି ଅନ୍ୟାୟ କଥା କହି ଦେବ । ତେଣୁ ଗଦାଧର ଭୈରବୀକୁ କହିଲା, ତୁମେ ବରଂ ଟିକିଏ ଦୂରରେ, ଗାଁ ଭିତରେ ଯାଇ ରୁହ ।

ଠିକ୍ କଥା କହିଛ । ହେଲେ କିଏ କେଉଁଠି ରହିବା ପାଇଁ ଜାଗା ଦେବ ମୋତେ ? ତେବେ ଯେଉଁଠି ରହେ ନା କାହିଁକି, ପ୍ରତିଦିନ ମୁଁ ଆସିବି ଗୋପାଳକୁ ଲହୁଣୀ ଖୁଆଇବା ପାଇଁ । ଗୋପାଳକୁ ନ ଦେଖିଲେ ମୋର ଯେ ସୂର୍ଯ୍ୟ-ଚନ୍ଦ୍ର ଉଦୟ ହେବେ ନାହିଁ ।

ଉତ୍ତରକୁ, ଅଳ୍ପ ଦୂରରେ, ଦେବ ମଣ୍ଡଳ ଘାଟ ପାଖରେ ରହିବାର ଆଶ୍ରୟ ପାଇଲା ଭୈରବୀ । ମଣ୍ଡଳ ଘରର ଲୋକେ ଅତି ଆଗ୍ରହରେ ତା' ରହିବା ପାଇଁ ବ୍ୟବସ୍ଥା କରିଦେଲେ । ଏଇ ଘାଟ ଚାନ୍ଦିନୀରେ ଖଟ ପକାଇ ଆନନ୍ଦରେ ରୁହ ।

ଦିନ ଦି'ଟା ଭିତରେ ଗାଁର ସମସ୍ତଙ୍କର ମନ କିଣି ପକାଇଲା ଭୈରବୀ । ଯେ କେହି ପାଖକୁ ଆସେ, ସେ ମନେ ମନେ ହାତ ଯୋଡ଼େ । ମୁହଁରେ ତା'ର ଅସରନ୍ତି ମଧୁରତାର ଭଣ୍ଡାର ।

କିଏ କହୁଛି, ଆମ ଘରୁ ସଞ୍ଜା ନିଅ, କିଏ କହୁଛି, ଆମ ଘରେ ଆସି ରୁହ । କାହାରି ସାହସ ନାହିଁ ଦୁର୍ନାମ କରିବ ।

ଗୋପାଳ ! ଗୋପାଳ ! ହାତରେ ଲବଣୀ ଧରି ବସି କାନ୍ଦୁଛି ବ୍ରାହ୍ମଣୀ ।

ପ୍ରାୟ ଦୁଇ ମାଇଲ ଦୂର । କାଳୀ ମନ୍ଦିରରେ ଗଦାଧରର କାନକୁ ସେ କାନ୍ଦଣା ସତେ କି ଶୁଭି ଯାଉଛି । ମା ଖାଇବାକୁ ଡାକୁଛି ଶୁଣିଲେ ସାନ ପିଲା ଯେମିତି ଧାଇଁଯାଏ ମା ପାଖକୁ, ଠିକ୍ ସେହି ଭଳି ଅଥୟ ହୋଇ ଧାଇଁଲା ଗଦାଧର । ଜଣା ପଡ଼ିଲା ନାହିଁ ତାକୁ କେତେବେଳେ ସେ ଦୁଇ ମାଇଲ ବାଟ ପାର ହୋଇ ଚାଲି ଆସିଲା । ପହଞ୍ଚି ଯାଇ ଆଉ କାଳ ବିଳମ୍ବ ନ କରି ସେମିତି ଅଣନିଃଶ୍ୱାସୀ ଅବସ୍ଥାରେ ବ୍ରାହ୍ମଣୀ ହାତରୁ ଲବଣୀ ନେଇ ଖାଇବାକୁ ଆରମ୍ଭ କରି ଦେଲା ।

ଦିନେ ଦିନେ ଭୈରବୀ ନିଜର ବେଶ ବଦଳାଏ । ଗାଁର ସ୍ତ୍ରୀଲୋକମାନଙ୍କ ପାଖରୁ ମାଗି ଆଣେ ଶାଢ଼ି ଅଳଙ୍କାର । ତାଙ୍କରି ସାହାଯ୍ୟରେ ତିଆରି କରେ ନାନା ପ୍ରକାର ଭକ୍ଷ୍ୟ-ଭୋଗ୍ୟ । ତା' ପରେ ଉତ୍ତମ ବେଶ ଭୂଷା ହୋଇ, ଥାଳିରେ ସବୁ ଜିନିଷ ସଜାଡ଼ି ରଖି, ଗୀତ ଗାଇ ଗାଇ ଆସେ କାଳୀ ମନ୍ଦିରକୁ । ନିଜ ହାତରେ ଖୁଆଇ ଦିଏ ଗଦାଧରକୁ । ତା' ଗୋପାଳକୁ ।

କହେ, ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କ ଆବିର୍ଭାବ ।

ଗଦାଧରର ମନେ ହୁଏ, ଏ ଯେପରି ଆଉ କେହି ନୁହନ୍ତି, ସାକ୍ଷାତ ନନ୍ଦରାଣୀ ଯଶୋଦା । ବାତ୍ସଲ୍ୟ ରସର ସୁରଧୂନୀ ।

କେବଳ ଜନନୀ ନୁହେଁ, ଜଗଦ୍‌ଗୁରୁ । କହିଲା, ଗୋଟି ଗୋଟି କରି ଚୌଷଠି ଗୋଟି ତନ୍ତ୍ର ଶିଖେଇବି ତୁମକୁ । ମା'ଙ୍କ ଆଦେଶ । ମା'ଙ୍କ ଆଶୀର୍ବାଦ ।

ଗଦାଧରର ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠେ ।

ଠାକୁରଙ୍କ ଧର୍ମ-ଜୀବନରେ ପ୍ରଥମ ଗୁରୁ ଜଣେ ନାରୀ । ଯେଉଁ ନାରୀ ମାତୃତ୍ୱମୟୀ, ମଙ୍ଗଳସ୍ୱରୂପିଣୀ ।

## ୨୧

ଘଟଣା ଦେଖି ଭୈରବୀ ଅବାକ୍ ।

ଭଗବାନଙ୍କ କଥା କହିବା ମାତ୍ରେ ଭାବ-ବିଭୋର ହୋଇ ପଡୁଛି । କୀର୍ତ୍ତନ ଶୁଣିବା ମାତ୍ରେ ପ୍ରାଣ ତରଳି ଯାଉଛି, ଢଳି ପଡୁଛି । ଧ୍ୟାନରେ ବସିଲେ ସଙ୍ଗେ ସଙ୍ଗେ ସମାଧିସ୍ଥ । ଏ ସମସ୍ତ ସେହି ଚୈତନ୍ୟ ଦେବଙ୍କ ଲକ୍ଷଣ । ସେହି ଜ୍ଞାନ, ସେହି ଭକ୍ତି, ସେହି ତୀବ୍ର ବୈରାଗ୍ୟ । ଚୈତନ୍ୟ ଦେବଙ୍କ ଜିଭ ଉପରେ ସାର୍ବଭୌମ ଚିନି ରଖିଦେଲେ । ଚିନି ଓଦା ହେଲା ନାହିଁ, ବାଷ୍ପ ହୋଇ ମିଳେଇଗଲା ପବନରେ । ଠିକ୍ ସେହିପରି ବ୍ରହ୍ମମୟ ସନ୍ନ୍ୟାସ । ପ୍ରଜ୍ୱଳନ୍ତ ଅନାସକ୍ତି । ଯାହା ଦେହରେ ହାତ ଦେଉଛି ତାକୁ ଈଶ୍ୱର- ଭାବିତ କରି ଦେଉଛି । ଯାହାକୁ ଧରି ପକାଉଛି ତାକୁ ନଚେଇ ଦେଉଛି । ଏତେ ପ୍ରିୟ ନିଜର ଯେଉଁ ଦେହ, ସେହି ଦେହ ବିଷୟରେ ଭୁଲ କରି ବସୁଛି । କେବଳ ଭୁଲ ନୁହେଁ, ଦେହବୋଧ ପର୍ଯ୍ୟନ୍ତ ରହୁନାହିଁ । ଚେତନାର ଚିହ୍ନ ସଂପୂର୍ଣ୍ଣ ଲୋପ ପାଇ ଯାଉଛି । ଏହି ସମସ୍ତ

ପ୍ରକାର ଲକ୍ଷଣ ଚୈତନ୍ୟ ଦେବଙ୍କ ଠାରେ ମଧ୍ୟ ଦେଖା ଯାଇଥିଲା । ଯାହାକୁ କହନ୍ତି ପ୍ରେମୋନ୍ମାଦ । ସମୁଦ୍ରକୁ ଲମ୍ଫ ଦେଲେ, ସମୁଦ୍ର ବୋଲି ବୋଧ ନାହିଁ । କଚାଡ଼ି ହୋଇ ତଳେ ମାଟି ଉପରେ ପଡ଼ିଗଲେ, ଦେହ ସତେ କି ମାଟି ଠାରୁ ତୁଚ୍ଛ ! ବନ ଦେଖି ମନେ ହେଲା ବୃନ୍ଦାବନ । ସାଗର ଦେଖି ଭାବିଲେ ଯମୁନା । ଅବିକଳ ଏହି ଭଳି ହୋଇଥିଲା ଗୋପିନୀମାନଙ୍କର । ରାସମଣ୍ଡଳ ମଧ୍ୟରୁ ଶ୍ରୀକୃଷ୍ଣ ଅନ୍ତର୍ହିତ ହୋଇଗଲେ, ଗୋପିନୀମାନେ ଉନ୍ମାଦିନୀ ହୋଇ ପଡ଼ିଲେ । ଗଛକୁ ଦେଖି କହିଲେ, ତୁମେ ନିଶ୍ଚୟ କୃଷ୍ଣଙ୍କୁ ଦେଖିଛ, ନ ହେଲେ ଏ ଭଳିନିଶ୍ଚଳ ସମାଧିସ୍ଥ ହୋଇ ରହନ୍ତ କିପରି ? ତୃଣାଚ୍ଛନ୍ନ ମାଟିକୁ ଦେଖି କହିଲେ, ତୁମେ ନିଶ୍ଚୟ କୃଷ୍ଣଙ୍କୁ ଦେଖିଛ, ନହେଲେ ଏପରି ରୋମାଞ୍ଚିତ ହୋଇ ରହିଛ କାହିଁକି ? ପୁଣି ଆଖି ପଡ଼ିଗଲା ମଞ୍ଜରିତ ମାଧବୀ ଉପରେ । କହିଲେ, ମାଧବୀ, ଆମ ମାଧବ କେଉଁ ଆଡ଼େ ଗଲେ ? ତାଙ୍କୁ ଆଣିଦିଅ । ସେହି ପ୍ରେମୋନ୍ମାଦ । ପ୍ରେମରେ ହସୁଛନ୍ତି, ପ୍ରେମରେ କାନ୍ଦୁଛନ୍ତି, ପ୍ରେମରେ ନାଚୁଛନ୍ତି, ପ୍ରେମରେ ପୁଣି ଗୀତ ଗାଉଛନ୍ତି । ସେହି 'ଚିଦାନନ୍ଦ-ସିନ୍ଧୁନୀରେ ପ୍ରେମାନନ୍ଦର ଲହରୀ ।'

ଚୈତନ୍ୟଚରିତାମୃତ ଓ ଚୈତନ୍ୟଭାଗବତରେ ଭୈରବୀ ପଢ଼ିଛି । ମହାପ୍ରଭୁ ପୁଣି ଦେହ ଧାରଣ କରି ଆସିବେ । ଦୁଃଖ ଓ ଅଜ୍ଞାନରୁ ଜୀବୋଦ୍ଧାର ନିମନ୍ତେ ପୁଣି ଅବତୀର୍ଣ୍ଣ ହେବେ ଧରା ଧାମରେ । କୌଣସି ସନ୍ଦେହ ନାହିଁ । ସମସ୍ତ ଲକ୍ଷଣ ମିଳି ଯାଉଛି । ସେ ଆସିଛନ୍ତି ।

ଭୈରବୀକୁ କହିଲା ଗଦାଧର, 'ମା, ଛାତି ପିଠି ସବୁ ଜଳି ଯାଉଛି, କେତେ ଚିକିତ୍ସା କରେଇଲି, କିଛି ଫଳ ହେଲା ନାହିଁ । ମୁଁ କଅଣ କରିବି ? କଅଣ କଲେ ଏହି ଜ୍ୱାଳା-ଯନ୍ତ୍ରଣାରୁ ତ୍ରାହି ପାଇବି ?'

ସୂର୍ଯ୍ୟୋଦୟ ହେବା ସଂଗେ ସଂଗେ ଆରମ୍ଭ ହୁଏ, ବେଳ ବଢ଼ିବା ସଂଗେ ସଂଗେ ବଢ଼େ । ଦ୍ୱି-ପ୍ରହର ସମୟରେ ଦୁଃସହତମ । ସେତେବେଳେ ଗଦାଧର ମୁଣ୍ଡରେ ଗାମୁଛା ପକାଇ ଗଙ୍ଗାରେ ଦେହ ବୁଡ଼ାଇ ରଖେ । ପ୍ରତିଦିନ, ତିନି ଚାରି ଘଣ୍ଟା । ତଥାପି ଜ୍ୱାଳା ଉପଶମ ହୁଏ ନାହିଁ । ଆଉ ବେଶୀ ସମୟ ପାଣିରେ ପଶି ରହିବାକୁ କି ସାହସ ହୁଏ ନାହିଁ, କାଳେ ଆଉ କୌଣସି ରୋଗ ଆକ୍ରମଣ କରିବ । ଶଙ୍ଖ ମଳମଳ ପଥରରେ ତିଆରି ଚଟାଣ । ଓଦା ଗାମୁଛାରେ ପୋଛି ଥଣ୍ଡା କରେ, ତାହାରି ଉପରେ ପଡ଼ି ରହେ । ତଥାପି ଜ୍ୱାଳାର ନିବୃତ୍ତି ନାହିଁ ।

'କଅଣ କଲେ ଯିବ ଏଇ ଦେହର ଦାହ, କହି ପାରିବ ?'

'ପାରିବି ।' ପ୍ରସନ୍ନ ଆଖିରେ ଚାହିଁଲା ଭୈରବୀ ।

ଏଭଳି କଥାଟିଏ ଶୁଣିବ ଗଦାଧର ଭାବି ନଥିଲା । ବିସ୍ମୟରେ ଆଖି ବଡ଼ ବଡ଼ ହୋଇଗଲା ।

'କଅଣ ? କଅଣ ସେହି ପ୍ରତିଷେଧ ?'

ଭାବିଥିଲା କେତେ କଅଣ କଠିନ କ୍ଳେଶ-ସାଧନା କରିବାକୁ କହିବ । ମାତ୍ର ଭୈରବୀ ମୁହଁରେ ନିର୍ମଳ ହସ ଫୁଟାଇ କହିଲା, 'ପ୍ରତିଷେଧ ଅତି ସହଜ । ଶାସ୍ତ୍ରରେ ସେ କଥାର ଉଲ୍ଲେଖ ଅଛି ।'

କଅଣ ? କଅଣ ସେଇ କଥା ? ସମସ୍ତେ ପଚାରି ବସିଲେ ।

ଦେହରେ ଚନ୍ଦନ ବୋଳି ହୁଅ । ଗଳାରେ ପକାଅ ଗୋଟାଏ ସୁଗନ୍ଧି ଫୁଲର ମାଳା ।

ହସରେ କଥାଟାକୁ ଉଡ଼େଇ ଦେଲେ ସମସ୍ତେ ।

ଉଡ଼େଇ ଦେଲେ କ'ଣ ଉଡ଼ିଯିବ ? ଠିକ୍ ଏହିପରି ଦାହ ହେଉଥିଲା ଶ୍ରୀ ରାଧିକାଙ୍କର । ଆଉ, ପ୍ରତ୍ୟକ୍ଷ ଇତିହାସ ଚାହଁ ? ଏହି ଭଳି ଦାହ ହେଉଥିଲା ଶ୍ରୀ ଗୌରାଙ୍ଗଙ୍କର । ଏ ଦାହ ଚର୍ମଦାହ ନୁହେଁ, ଏହା ମର୍ମଦାହ । ଏହା ଈଶ୍ୱର-ବିରହର ଯନ୍ତ୍ରଣା ।

ମଥୁରବାବୁ କହିଲେ, 'ଥରେ ପରୀକ୍ଷା କରି ଦେଖାଯାଉ ଏ ଚିକିତ୍ସାଟା ।'

ସୁବାସିତ ଫୁଲର ମାଳା ପିନ୍ଧିଲା ଗଦାଧର । ସର୍ବାଙ୍ଗରେ ଲେପନ କଲା ଚନ୍ଦନ ।

ଭଲ ହୋଇଗଲା ତିନି-ଦିନ-ଭିତରେ । ଦେହର ଜ୍ୱାଳା ପ୍ରଶମିତ ହେଲା । ପରୀକ୍ଷାରେ ସିଦ୍ଧକାମ ହେଲା ଭୈରବୀ । ସେହି ଦେହ ଭିତରେ କିଏ ବାସ କରୁଛି - ସନ୍ଦେହର ଅବକାଶ ରହିଲା ନାହିଁ ସିଦ୍ଧାନ୍ତରେ ।

ଗଦାଧର ତା' ପରେ ବର୍ଣ୍ଣନା କଲା ଶିଅଡ଼ ଯାଉଥିବା ସମୟର ଭାବ ଦର୍ଶନ କଥା– କିପରି ଦୁଇଟି ସାନ ପିଲା ତା' ଦେହ ଭିତରୁ ବାହାରି ଆସି ନାଚି କୁଦି ଖେଳୁଥିଲେ ପଡ଼ିଆରେ । ଭୈରବୀର ସିଦ୍ଧାନ୍ତ ଆହୁରି ଦୃଢ଼ୀଭୂତ ହେଲା । ସେ ଘୋଷଣା କଲା, ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କ ଆବିର୍ଭାବ ହୋଇଛି ।

ତୁମେ ସାମାନ୍ୟ ମଣିଷ ନୁହଁ । କେବଳ ସଂପୂର୍ଣ୍ଣ ମନୁଷ୍ୟ ମଧ୍ୟ ନୁହଁ । ଅତି-ମାନବ ମଧ୍ୟ ନୁହଁ, ଯାହା ଫଳରେ ଉପଲବ୍ଧିର ଉଚ୍ଚତମ ଚୂଡ଼ାକୁ ଉଠି ଆସି ପାରିଛ । ତୁମେ ଅବତାର । ତୁମେ ସେ । ଅନନ୍ତ ଈଶ୍ୱର ତୁମ ଭିତରେ ଅନ୍ତବାନ୍ ହୋଇଛନ୍ତି । ତୁମରି ମୂର୍ତ୍ତିରେ ପ୍ରତିମୂର୍ତ୍ତ ହୋଇଛନ୍ତି । ତୁମ ମା ଯାହା ତୁମେ ମଧ୍ୟ ତାହା । ତୁମରି କାୟାରେ ଆଶ୍ରୟ ନେଇଛନ୍ତି ମହାମାୟା । ତୁମେ ଆବିର୍ଭୂତ ଦେବତା । ତୁମେ ପ୍ରତିଭାତ ବ୍ରହ୍ମ । ତାରଣ କରିବା ପାଇଁ ତୁମର ଅବତରଣ ।

ସ୍ପଷ୍ଟ ଭାବରେ ଦିନେ ଘୋଷଣା କରିଦେଲା ଭୈରବୀ ।

କିନ୍ତୁ ମଥୁରବାବୁ ମାନିବାକୁ ପ୍ରସ୍ତୁତ ନୁହନ୍ତି । କିପରି ବା ମାନିବେ ? ଖବରକାଗଜରେ ତ ବାହାରି ନାହିଁ !

ଜଣେ ଭଦ୍ରଲୋକ ଆସି ତାଙ୍କ ବନ୍ଧୁଙ୍କୁ କହିଲେ, କାଲି ସେ ପାଖ ସାହି ଭିତର ଦେଇ ଯାଉଥିଲି, ହଠାତ୍ ଦେଖିଲି ଗୋଟିଏ କୋଠାଘର ଧୁଡ଼ ଧାଡ଼ ହୋଇ ତଳେ ଭୁଷୁଡ଼ି ପଡ଼ିଲା । ବନ୍ଧୁ କହିଲେ, ରୁହ, ରୁହ, ଖବରକାଗଜଟା ଦେଖେ । ଖବକାଗଜ ଖୋଲି ଦେଖିଲେ ଘର ଭୁଷୁଡ଼ି ପଡ଼ିବା କଥା କିଛି ବାହାରି ନାହିଁ । କଅଣ କହୁଛ ତୁମେ ? କାହିଁ, ଖବରକାଗଜରେ ତ ସେ କଥା କିଛି ବାହାରି ନାହିଁ ? ଖବରକାଗଜରେ ନାହିଁ ଯେତେବେଳେ, ତୁମ କଥା ବିଶ୍ୱାସ କରିବି କେମିତି ? ତେବେ ଚାଲ, ଦେଖି ଆସିବ ନିଜ ଆଖିରେ ସେଇ ଭଙ୍ଗା ଘର । ଭଙ୍ଗା ଘର ଦେଖିବି ଯେ, ହେଲେ ଧୁଡ଼ ଧାଡ଼ କରି ଭୁଷୁଡ଼ି ପଡ଼ିଲା, ତା'ର ପ୍ରମାଣ କଅଣ ?

ଈଶ୍ୱର ମନୁଷ୍ୟ ରୂପରେ ଲୀଳା କରୁଛନ୍ତି, ଏହା ତ ଇନ୍ଦ୍ରିୟର ତତ୍ତ୍ୱ ନୁହେଁ, ଏହା ହେଉଛି ଭକ୍ତିର ତତ୍ତ୍ୱ । ଅବତାର ଜ୍ଞାନୀ ପାଇଁ ନୁହନ୍ତି, ଭକ୍ତ ପାଇଁ । ନ ହେଲେଚଉଦ-ପା ଭିତରକୁ ଅନନ୍ତ ଆସିଛନ୍ତି, ଏ କଥା କଅଣ ସହଜରେ ବିଶ୍ୱାସ କରି ହେବ ? ନରଲୀଳାରେ ଭଗବାନ ଯଦି ମଣିଷ

ହୋଇଛନ୍ତି, ଠିକ୍ ମଣିଷଟିଏ ହିଁ ହୋଇଛନ୍ତି । ଟିକିଏ ହେଲେ ଭୁଲ ନାହିଁ, ଟିକିଏ ହେଲେ ଏପାଖ - ସେପାଖ ନାହିଁ । ଅବିକଳ ଷୋହଳ ଅଣା ମଣିଷ । ସେହି ଭୋକ, ଶୋଷ, ରୋଗ, ଶୋକ, କେତେବେଳେ ପୁଣି ଭୟ, ଠିକ୍ ମଣିଷ ପରି । କେମିତି ତାଙ୍କୁ ଚିହ୍ନିବ ଅବତାର ବୋଲି ? ରାମଚନ୍ଦ୍ର ସୀତାଙ୍କ ପାଇଁ ଶୋକରେ ଅଧୀର ହୋଇପଡ଼ିଥିଲେ । ଲକ୍ଷ୍ମଣଙ୍କୁ ଯେତେବେଳେ ଶକ୍ତି-ଶେଳ ଭେଦ କଲା, ସେତେବେଳେ ମଧ ରାମଚନ୍ଦ୍ର ଅଧୈର୍ଯ୍ୟ ହୋଇ କାନ୍ଦି ପକାଇଲେ । ମଣିଷ ହୋଇ ସେ ଯଦି ଠିକ୍ ମଣିଷ ଭଳି ହସିବେ- କାନ୍ଦିବେ- ଖାଇବେ, ପିଇବେ, ରୋଗ-ଶୋକରେ ଜର୍ଜର ହେବେ, ତେବେ ତୁମେ ତାଙ୍କୁ ଚିହ୍ନିବ କିପରି ? ତୁମେ କହିବ, ଏ' ତ ସାଧାରଣ ମଣିଷଟିଏ, ନାରାୟଣ କାହାନ୍ତି ? ବହୁରୂପୀ ଆସିଛି ସନ୍ନ୍ୟାସୀ ବେଶରେ, ତ୍ୟାଗୀ ମହାତ୍ମା ସାଜି । ବେଶ-ଭୂଷା ନିଖୁଣ । ଦେଖି ବାବୁମାନେ ଖୁସି ହେଲେ । ଗୋଟିଏ ଟଙ୍କା ବଢ଼ାଇ ଦେଲେ ତା' ଆଡ଼କୁ । ଉହୁଁ, କହି ହାତ ଘୁଞ୍ଚାଇ ନେଇ ଚାଲିଗଲା ବହୁରୂପୀ । ତ୍ୟାଗୀ ସନ୍ନ୍ୟାସୀ ହୋଇଛି ପରା, ଟଙ୍କା ନେବ କିପରି ? ପରେ ସନ୍ନ୍ୟାସୀ ବେଶ ଦେହରୁ ଓହ୍ଲାଇ ସାଧାରଣ ବେଶରେ ଆସି କହିଲା, ଦିଅ ଟଙ୍କା । ଠିକ୍ ସେହି ଭଳି । ଈଶ୍ୱର ଯେତେବେଳେ ମଣିଷ ରୂପରେ ଆସନ୍ତି, ଠିକ୍ ମଣିଷ ପରି ଆଚରଣ କରନ୍ତି ।

ଦେହ ହେଉଛି ଆବରଣ, ଗୋଟାଏ ଘୋଡ଼ଣୀ ମାତ୍ର । କିନ୍ତୁ ଚାହିଁ ଦେଖିଲ, ଲଣ୍ଠନ ଭିତରେ ଆଲୁଅ ଜଳୁଛି !

'କିନ୍ତୁ ତାହା କ'ଣ ସମ୍ଭବ ?' କହିଲେ ମଥୁରବାବୁ । 'ଶାସ୍ତ୍ର କହୁଛି, ବିଷ୍ଣୁଙ୍କର ଦଶ ଅବତାର - ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ରାମଚନ୍ଦ୍ର, କୃଷ୍ଣ, ବୁଦ୍ଧ ଏବଂ ଶେଷରେ କଲ୍କି । ଏହି ଦଶ ଭିନ୍ନ ଆଉ ଅବତାର ନାହିଁ । ଅନୁଭାଗବତରେ ଯେଉଁ କଲ୍କି କଥା କୁହାଯାଇଛି, ତୁମେ ତ, ବାବା, ସେ କଲ୍କି ନୁହଁ ?'

'ସେ କଥା ମୁଁ କଅଣ ଜାଣେ ?' ଗଦାଧର ସରଳତାର ପ୍ରତିମୂର୍ତ୍ତି । କହିଲା, 'ତେବେ ବ୍ରାହ୍ମଣୀ କହୁଛି -'

'ବ୍ରାହ୍ମଣୀ କିଏ ?'

'ତୁମେ ତାକୁ ଦେଖି ନାହଁ ?' ସଂକ୍ଷେପରେ କହିଲା ଗଦାଧର: 'ସର୍ବ ଶାସ୍ତ୍ରରେ ବିଦୂଷୀ । ଝୁଲା ଭିତରେ ଗଦାଏ ପୋଥି । ସେହି ପୋଥି ମିଳେଇ ସେ କହୁଛି ମୋ ଦେହରେ- ମନରେ କାଳେ ଅବତାରର ଚିହ୍ନ ରହିଛି । କଅଣ ସେ କହୁଛି କେ' ଜାଣି !'

ବିଶେଷ ଗୁରୁତ୍ୱ ଦେଲେ ନାହିଁ ମଥୁରବାବୁ । କହିଲେ, 'ଅବତାର ତତ୍ତ୍ୱର ସେ କଅଣ ଜାଣେ ! ଯାହା ଇଚ୍ଛା କିଛି ଗୋଟାଏ କହି ଦେଲେ ତ ଚଳିବ ନାହିଁ । ତେବେ, ହଁ, କାଳାକାଳର ଯେ ସାମ୍ରାଜ୍ଞୀ, ସେହି କାଳୀଙ୍କୁ ତୁମେ ପାଇଛ, ସନ୍ଦେହ ନାହିଁ ।'

ଥାଳିରେ ଥାଳିଏ ମିଷ୍ଟାନ୍ନ ଧରି ଆସୁଛି ଭୈରବୀ । ଗଦାଧରକୁ ଖୁଆଇବ । ଆସୁଛି ଆନନ୍ଦମୟୀ ନନ୍ଦରାଣୀଙ୍କ ଆବେଶରେ । ପ୍ରେମମୟୀ ମାତୃମୂର୍ତ୍ତିରେ । ପାଖରେ ପହଞ୍ଚି ଦେଖି ପକାଇଲା ମଥୁରବାବୁଙ୍କୁ । ଟିକିଏ ସଂକୁଚିତ ହୋଇ ପଡ଼ିଲା । ମିଷ୍ଟାନ୍ନ-ଥାଳି ବଢ଼େଇ ଦେଲା ହୃଦୟ ହାତକୁ ।

'ଏଇ ତେବେ ତୁମର ସେଇ ବ୍ରାହ୍ମଣୀ !' ପରିହାସ କଲା ପରି କହିଲେ ମଥୁର ବାବୁ ।

'ହଁ, ଏଇ ସେଇ ଯୋଗେଶ୍ୱରୀ ଭୈରବୀ ।' କହି ପୁଣି ଭୈରବୀକୁ ଲକ୍ଷ୍ୟ କରି କହିଲା, 'ବୁଝିଲ ? ତୁମେ ଯାହା କହୁଥିଲ ସେ କଥା ଇଏ ମାନିବାକୁ ରାଜି ନୁହନ୍ତି । କହୁଛନ୍ତି, ଦଶରୁ ଅଧିକ ଅବତାର ନାହାନ୍ତି ।'

'ମିଛ କଥା !' ହୁଙ୍କାର ଦେଲା ପରି କହିଲା ଭୈରବୀ ! 'ଭାଗବତରେ ବାଇଶ ଅବତାର କଥା କୁହାହୋଇଛି । ଏବଂ ତା'ପରେ ପୁଣି ସମ୍ଭବାମି ଯୁଗେ ଯୁଗେ । ଅସଂଖ୍ୟ ଥର ଭଗବାନ ଅବତୀର୍ଣ୍ଣ ହେବା କଥା କହି ଯାଇଛନ୍ତି ବ୍ୟାସଦେବ । ବୈଷ୍ଣବ-ଶାସ୍ତ୍ରରେ ମଧ କୁହା ହୋଇଛି, ମହାପ୍ରଭୁ ପୁନର୍ବାର ଦେହ ଧରି ଆସିବେ । ତା'ଛଡ଼ା, ଗଦାଧର ସହିତ ଗୌରାଙ୍ଗଦେବଙ୍କ ଅକ୍ଷରେ ଅକ୍ଷରେ ମେଳ ରହିଛି -'

ଇଏ ପୁଣି ଆଉ ଗୋଟାଏ ପାଗଳୀ ଆସି ପହଞ୍ଚିଲା ଦକ୍ଷିଣେଶ୍ୱରରେ ! ମନେ ମନେ ହସିଲେ ମଥୁର ବାବୁ । ଆପାଦମସ୍ତକ ଥରେ ନିରୀକ୍ଷଣ କଲେ ଭୈରବୀକୁ । ଏତେ ଅପୂର୍ବ ରୂପ-ଲାବଣ୍ୟ ଅଙ୍ଗରେ, ଅଥଚ ଏକୁଟିଆ ବୁଲୁଛି ଚାରିଆଡ଼େ, ନିର୍ଭୟରେ, ନିଃସଙ୍କୋଚରେ - ଏ ଯୋଗିନୀ ନା ନାଗିନୀ, କିଏ ଜାଣେ ? ଦେଖ ଥରେ ପରୀକ୍ଷା କରି ।

କାଳୀ ମନ୍ଦିରର ବାରନ୍ଦାରେ ଭେଟ ହୋଇଗଲା । ବିଦ୍ରୁପ ଭଙ୍ଗୀରେ ପଚାରିଲେ ମଥୁରବାବୁ, 'ଚମତ୍କାର ଭୈରବୀ ବେଶ ତ ହୋଇଛ । ହେଲେ, ତୁମ ଭୈରବଟି କାହାନ୍ତି ?'

ମୁହୂର୍ତ୍ତକ ପାଇଁ ସ୍ଥିର ହୋଇ ରହିଲା ଭୈରବୀ । ମନ୍ଦିର ଭିତରେ କାଳୀଙ୍କ ପାଦ ତଳେ ଶାୟିତ ହୋଇ ରହିଛନ୍ତି ଯେଉଁ ମହାକାଳ-ମୂର୍ତ୍ତି, ତାହାରି ଆଡ଼କୁ ସ୍ପଷ୍ଟ ଅଙ୍ଗୁଳି-ସଂକେତ କରି କହିଲା, 'ସେଇ ମୋ ଭୈରବ ।'

ମଥୁର ବାବୁ ମୁରୁକି ହସା ଦେଇ କହିଲେ, 'ସେ ଗୋଟିକ ତ ଅଚଳ ଭୈରବ । ତୁମ ସଚଳ ଭୈରବ କାହାନ୍ତି ?'

ଫଣିନୀ ପରି ଦୃପ୍ତ ଭଙ୍ଗୀରେ ମୁଣ୍ଡ ଟେକି ଚାହିଁଲା ଭୈରବୀ । ଦୃଢ଼ସ୍ୱରରେ କହିଲା, 'ସେହି ଅଚଳକୁ ଯଦି ସଚଳ କରି ନପାରେ ମୋର ଭୈରବୀ ହେବା ବୃଥା !'

ମଥୁର ବାବୁ ଠୋକର ଖାଇଲେ ଅବଶ୍ୟ । କିଛି ଆଉ କହିଲେ ନାହିଁ । କିନ୍ତୁ ସନ୍ଦେହ ଗଲା ନାହିଁ ।

ଦେହର ଜ୍ୱାଳା-ଯନ୍ତ୍ରଣା ଆଉ ନାହିଁ ଗଦାଧରର, କିନ୍ତୁ ପୁଣି ଗୋଟାଏ ନୂଆ ଉପସର୍ଗ କୁଆଡୁ ଆସିଲା ?

ଭୋକ ଲାଗୁଛି । ଚବିଶ ଘଣ୍ଟା କେବଳ ଭୋକ । ଭୟଙ୍କର ଭୋକ । ଖାଇସାରି ଉଠିଛି, ପୁରି ଭୋକ । ଭୈରବୀ ପାଖରେ ଦୁଃଖ ଜଣାଇ କହିଲା ଗଦାଧର, 'ଦିନ ରାତି ଆଉ କୌଣସି ଚିନ୍ତା ନାହିଁ । କେବଳ, ଭୋକ ଚିନ୍ତା, କେବଳ ଖାଇବା ଚିନ୍ତା । କଅଣ ଇଏ ହେଲା ମୋର ?'

'ବ୍ୟସ୍ତ ହେବାର କିଛି ନାହିଁ, ଅଭୟ ଦେଲା ଭୈରବୀ । କହିଲା, 'ସବୁର ମୂଳରେ ସେଇ ଗୋଟିଏ କଥା । ତୁମ ଭିତରେ ଯେଉଁ ଭାବସ୍ୱରୂପ ବିରାଜମାନ ହୋଇଛନ୍ତି ଏଇଟା ତାଙ୍କରି ଭାବ ।'

'ନା, ମା, ଏଇଟା ବୋଧହୁଏ ଆଉ ଗୋଟାଏ କିଛି ନୂଆ ରୋଗ ଆରମ୍ଭ ହେଲା ।'

'ହଉ । ରୁହ, ଭଲ କରି ଦେଉଛି ।'

ମଥୁର ବାବୁଙ୍କୁ କହିଲା, ଯେଉଁଠି ଯେତେ ଯାହା ଭଲ ଖାଇବା-ଜିନିଷ ଅଛି ସବୁ ଆଣି ଗୋଟାଏ ଘର ଭିତରେ ସଜେଇ ରଖ ।

ଗଦାଧରକୁ କହିଲା, ଖାଇବା ଜିନିଷ ଯେଉଁ ଘରେ ଅଛି ସେହି ଘରେ ଭିତରୁ କିଳି ଦେଇ ଏକୁଟିଆ ବସ ଦିନ ରାତି । ଯେତେ ଇଚ୍ଛା, ଯାହା ଇଚ୍ଛା, ଖାଉଥିବ । ଯେତେବେଳେ ଇଚ୍ଛା, ଯେମିତି ଇଚ୍ଛା, କେବଳ ଖାଉଥିବ । ଉଠଉଥିବ, ଖାଉଥିବ । ଖାଉଥିବ, ଫୋପାଡୁଥିବ - ।

ଚମତ୍କାର ବ୍ୟବସ୍ଥା ! ଗଦାଧର ଖାଉଛି ।ଯେତେବେଳେ ଯାହା ମନ ହେଉଛି, ଖାଇ ଦେଉଛି । ଯେତେ ଖାଉଛି, ସେତେ ଭୋକ ଲାଗୁଛି । ଯେତେ ଭୋକ ଲାଗୁଛି, ସେତେ ଖାଉଛି । ଦିନେ ଗଲା, ଦୁଇ ଦିନ ଗଲା, ତିନିଦିନ ବେଳକୁ, ଆଶ୍ଚର୍ଯ୍ୟ କଥା, ଆଉ ଭୋକ ନାହିଁ, ସେହି ସର୍ବଗ୍ରାସୀ ଭୋକ ଚାଲିଯାଇଛି । ଗଦାଧର ପୁଣି ଆଗ ଭଳି ସ୍ୱାଭାବିକ ।

ଏ ସମସ୍ତ ସେହି ନିର୍ଭୁଲ ଅବତାର ଲୀଳା । ବ୍ରାହ୍ମଣୀ ପୁଣି ଘୋଷଣା କଲା, ଗଦାଧର ନରଦେହରେ ଭଗବାନ ।

ମଥୁରବାବୁ ତଥାପି ମାନିବାକୁ ପ୍ରସ୍ତୁତ ନଚୁହନ୍ତି ।

'ତେବେ, ତୁମେ ସଭା ଡକାଅ !' ତେଜୋଦୃପ୍ତ କଣ୍ଠରେ ଗର୍ଜନ କରି କହିଲା ଭୈରବୀ: 'ମୁଁ ଶାସ୍ତ୍ରର ଉକ୍ତି ଦେଇ ପ୍ରମାଣ କରି ଦେବି । ଯଦି କାହାରି ଶକ୍ତି ଅଛି, ଆସି ମୋ କଥା ଖଣ୍ଡନ କରୁ ।'

କାଳୀ ମନ୍ଦିରରେ ଆଲୋଡ଼ନ ସୃଷ୍ଟି ହେଲା । ବ୍ରାହ୍ମଣୀ କଅଣ କହୁଛି ଏ ସବୁ !

'ମୁଁ ଠିକ୍ କଥା ହିଁ କହୁଛି ! ଏତେ ଦିନ ଧରି ତୁମ୍ଭେମାନେ ଯାହାକୁ ପାଗଳ ବୋଲି ମନେ କରି ଆସିଛ, ସେ ପ୍ରକୃତରେ ସ୍ୱୟଂ ନରଦେହୀ ରାମଚନ୍ଦ୍ର ।' ଭୈରବୀ ପୁଣି କହିଲା ଦୃପ୍ତ କଣ୍ଠରେ । 'ଏଇଟା କେବଳ ମୋ ମୁହଁର କଥା ନୁହେଁ, ଏହା ଶାସ୍ତ୍ରର କଥା । ଯଦି ଶାସ୍ତ୍ର ସ୍ୱୀକାର କରୁଥାଅ, ତେବେ ମୋ ପ୍ରମାଣକୁ ମଧ୍ୟ ସ୍ୱୀକାର କରିବ - ।'

ଗଦାଧର କହିଲା, 'ହଉ, ଡକାଅ ପଣ୍ଡିତ ସଭା । ଦେଖାଯାଉ ମଜା -'

କାଳୀ ମନ୍ଦିରର କର୍ମଚାରୀମାନେ ଅନେଇଲେ ମଥୁର ବାବୁଙ୍କ ମୁହଁକୁ । ନିଶ୍ଚୟ କଥାଟାକୁ ହସରେ ଉଡ଼େଇ ଦେବେ । ଗୋଟାଏ ମୁଣ୍ଡ-ଖରାପ ଆଡ଼ବାୟା ଲୋକ, ସିଏ କାଳେ ଭଗବାନ !

ନା, ନା, ସଭା ଡକାଯାଉ । କେହି କେହି କହିଲେ । ସବୁ ଚାଲବାଜି ଧରା ପଡ଼ିଯିବ ସଭାଟା ଡକେଇ ଦେଲେ ।

ଗଦାଧର ନିଜେ ମଧ୍ୟ ସଭା ଡକେଇବା କଥା କହୁଛି । ମଥୁର ବାବୁ ଆଉ ଆପତ୍ତି କରି ପାରିଲେ ନାହିଁ । ଭଲ କଥା, ନିଜ ମନର ସନ୍ଦେହ ବି ତ ମେଣ୍ଟିଯିବ ।

କିନ୍ତୁ, ଡାକିବି କାହାକୁ ?

ସେ ସମୟର ସବୁଠାରୁ ବଡ଼ ପଣ୍ଡିତ ଓ ସାଧକ ହେଉଛନ୍ତି ବୈଷ୍ଣବ ଚରଣ ଏବଂ ଗୌରୀକାନ୍ତ ତର୍କଭୂଷଣ ।

ଦୁଇ ଜଣଙ୍କ ପାଖକୁ ନିମନ୍ତ୍ରଣ ପଠାଇଲେ ମଥୁରବାବୁ ।

ମୁଁ ଗୋଟାଏ ନିପଟ ମୂର୍ଖ । ଅଥଚ ମହା ମହା ପଣ୍ଡିତମାନେ ଆସିବେ ମୋରି ପାଖକୁ ! ମୋ'ରି ପାଇଁ । ଭାବି ଆଶ୍ଚର୍ଯ୍ୟ ହେଲା ଗଦାଧର । ମା ଗୋ, ଇଏ ତୋର କି ଅଦ୍‌ଭୁତ ଖେଳ !

ଧାନ ମାପିବା ବେଳେ ଜଣେ ଗଉଣୀ ଧରି ମାପୁଥାଏ, ଆଉ ଜଣେ ପଛରୁ ଥାଇ ଧାନକାଣ୍ଡିର ଧାନ ତା' ଆଡ଼କୁ ଠେଲି ଦେଉଥାଏ । ସେଇଭଳି ତୁ ମୋ ଆଡ଼କୁ ଧାନ ଠେଲି ଦେ, ମା !

୨୨

ଦଳ-ବଳ ଧରି ବୈଷ୍ଣବ ଚରଣ ଆସି ପହଞ୍ଚିଲେ ଦକ୍ଷିଣେଶ୍ୱରରେ । ଆରମ୍ଭ ହେଲା ପଣ୍ଡିତ ସଭ । ଭୈରବୀ ତର୍କ ଆରମ୍ଭ କଲା । ଅବତାର ଲକ୍ଷଣ ସମ୍ବନ୍ଧରେ ଶାସ୍ତ୍ରମାନଙ୍କରେ କଅଣ କୁହାଯାଇଛି ଏବଂ ଗଦାଧରକୁ ପର୍ଯ୍ୟବେକ୍ଷଣ କରି ସେ କଅଣ ଦେଖୁଛି, ସମସ୍ତ କଥା କହିଲା । ଶାସ୍ତ୍ର-ସମ୍ମତ ପ୍ରାୟ ପ୍ରତ୍ୟେକ ଲକ୍ଷଣ ଗଦାଧର ମଧ୍ୟରେ ପରିସ୍ଫୁଟ । ଆପଣମାନେ ସମସ୍ତେ ମିଳେଇ ଦେଖନ୍ତୁ । ମୋର ଦୃଢ଼ ବିଶ୍ୱାସ, ବୈଷ୍ଣବ ଚରଣଙ୍କୁ ସିଧା ସଳଖ ସମ୍ବୋଧନ କରି କହିଲା ଭୈରବୀ, ମୋର ବିଶ୍ୱାସ, ଗଦାଧର ମର୍ତ୍ତ୍ୟଦେହୀ ଭଗବାନ । ଆପଣ ଯଦି ଏ କଥା ସ୍ୱୀକାର ନ କରିବେ, ତେବେ କହନ୍ତୁ, କାହିଁକି ନ କରିବେ ।

ସାହସିକା ଜନନୀ ତୁଲ୍ୟ ଆଶ୍ରୟର ପକ୍ଷପୁଟ ବିସ୍ତାର କରି ଦଣ୍ଡାୟମାନ ଭୈରବୀ । ଦେଖିବି, କିଏ ମୋ ଗଦାଧରକୁ ମନ୍ଦ ବୋଲି କହିବ । କାହାର ସାଧ ତାକୁ ଛୋଟ କରିଦେବ ।

ଆଉ ଗଦାଧର ? ସେ ସାତରେ ନାହିଁ କି ପାଞ୍ଚରେ ନାହିଁ । ଯାହାକୁ କେନ୍ଦ୍ର କରି ଏତେ ଯୁକ୍ତି-ତର୍କ, ତା' ନିଜର ହଁ ନାହିଁ, କି ନାଁ ନାହିଁ । ଆତ୍ମଭୋଳା ଶିଶୁଟିଏ ପରି ବସି ରହିଛି ସଭା ମଝିରେ । କେତେବେଳେ ହସି ଦେଉଛି , କେତେବେଳେ ଖାଲି ଚାହିଁ ରହୁଛି ଡିମା ଡିମା ଆଖିରେ । କେତେବେଳେ ପୁଣି ବଟୁଆ ଭିତରୁ ମସଲା ଆଣି ପାଟିରେ ପକାଉଛି । ଅବତାର ହେଲେ କେତେ, ନହେଲେ କେତେ - କଅଣ ତା'ର ଯାଏ ଆସେ ସେଥିରେ ! ସେ ଯେମିତି ଅଛି, ଭଲ ଅଛି !

ବୈଷ୍ଣବ ଚରଣ ପ୍ରଶ୍ନ ପଚାରିଲେ ଗଦାଧରକୁ ।

ହଁ, ଜ୍ୟୋତି ଦେଖେ । ପ୍ରବଳ ଆନନ୍ଦ ଆସେ । ଛାତି ଭିତରେ ବାଣ ଫୁଟିଲା ଭଳି ଦମ୍ ଦମ୍ ଶବ୍ଦ ହୁଏ । ମହାବାୟୁ ଉଠେ । ନାଭି ପାଖରୁ ଶବ୍ଦ ଉଠି ଆସେ । ହଁ, ଶୁଣେ ସେହି ଅନାହତ ଶବ୍ଦ । ଶବ୍ଦ-କଲ୍ଲୋଳ ଧରି ଯାଇ ସମୁଦ୍ରରେ ପହଞ୍ଚେ । ସେହି ସମୁଦ୍ର ହିଁ ପ୍ରତିପାଦ୍ୟ ବ୍ରହ୍ମ । ତାହା ହିଁ ପରମ ପଦ । 'ଯତ୍ର ନାଦୋ ବିଲୀୟତେ ।' ସେଠି 'ମୁଁ' ନାହିଁ କି 'ତୁମେ' ନାହିଁ, ଏକ ନାହିଁ କି ଅନେକ ନାହିଁ । ତାହା ଜ୍ଞାନ ଅଜ୍ଞାନର ଶେଷ ।

ବିଜ୍ଞାନୀ ସାଧୁ । ଯେଉଁ ଲୋକ କେବଳ ଦୁଧ କଥା ଶୁଣିଛି ସେ ଅଜ୍ଞାନ । ଯେ ଦୁଧ ଦେଖିଛି ତାହାର ଜ୍ଞାନ ଆସିଛି । ଏବଂ , ଯେଉଁ ଲୋକ ଦୁଧ ପିଇଛି ସେ ହେଉଛି ବିଜ୍ଞାନୀ ।

ଯିଏ କେବଳ ଜ୍ଞାନୀ ତାହାର ବସିବାର ଠାଣି ଭିନ୍ନ ପ୍ରକାର । ସେ ନିଶ ସାଉଁଳେଇ ଜମେଇ ବସେ । ଲୋକଙ୍କୁ ଦେଖିଲେ ପାଖକୁ ଡାକି ପଚାରେ, କିଛି ଜାଣିବାକୁ ଚାହଁ ? ଯଦି ଚାହଁ,

ବସ ଏଇଠି, ଶୁଣ, ମୁଁ କହୁଛି ।

କିନ୍ତୁ ବିଜ୍ଞାନୀ - ଯେ ସର୍ବଦା ଈଶ୍ୱରଙ୍କୁ ଦେଖୁଛି, ଈଶ୍ୱରଙ୍କ ସହିତ କଥା କହୁଛି - ତା' ରୀତି ଅଲଗା । ସେ କେତେବେଳେ ଜଡ଼, କେତେବେଳେ ପିଶାଚ,କେତେବେଳେ ବାଳକ, କେତେବେଳେ ପୁରି ଉନ୍ମାଦ । ଅଛି, ଅଛି, ହଠାତ୍ ସମାଧିସ୍ଥ ହୋଇ ସ୍ଥିର-ଅସ୍ପନ୍ଦ ହୋଇ ପଡ଼ି ରହୁଛି । ଅର୍ଥାତ୍ ଜଡ଼ । ସମଗ୍ର ଜଗତ ସେ ବ୍ରହ୍ମମୟ ଦେଖୁଛି । ତେଣୁ ଶୁଚି-ଅଶୁଚି, ମେଧ-ଅମେଧ ଜ୍ଞାନ ନାହିଁ । ଭାତ ଡାଲି ବେଶୀ ଦିନ ରହିଗଲେ ବିଷ୍ଠା ପରି ହୋଇଯାଏ । ମାତ୍ର ଖାଦ୍ୟ ଏବଂ ତ୍ୟାଜ୍ୟ ଉଭୟରେ ସେ ପାଏ ସମାନ ବ୍ରହ୍ମସ୍ୱାଦ । ତେଣୁ ସେ ପିଶାଚ । ତାହାର ଆଚାର ବ୍ୟବହାର ସାଧାରଣ ଲୋକଙ୍କ ଆଖିରେ ଅସ୍ୱାଭାବିକ । ତେଣୁ ସେ ପାଗଳ । ସେ ହେଉଛି କୋଷମୁକ୍ତ ତରବାରୀ, ତେଣୁ ସେ ଖାପ-ଛଡ଼ା । ପର ମୁହୂର୍ତ୍ତରେ ପୁଣି ସେ ବାଳକ ପରି । କୌଣସି ପାପ ନାହିଁ, ଲଜ୍ଜା-ଘୃଣା ନାହିଁ, ଛନ୍ଦ-କପଟ ନାହିଁ । ସଂପୂର୍ଣ୍ଣ ସହଜ ଅବସ୍ଥା । ସହଜ ଅବସ୍ଥା ହିଁ ସିଦ୍ଧ ଅବସ୍ଥା ।

ପ୍ରଶ୍ନର ଉତ୍ତରରେ ଆହୁରି ଅନେକ କଥା ପ୍ରକାଶ କଲା ଗଦାଧର । ଏମିତି ହୁଏ, ସେମିତି ହୁଏ; ଏ ଜିନିଷ ଦେଖେ, ସେ ଜିନିଷ ଦେଖେ- ଏଇ ଭଳି ସବୁ ଉତ୍ତର । ନିଜେ କିନ୍ତୁ କିଛି ହେଲେ କିଛି ଜାଣେ ନାହିଁ । ଯାହା ଲାଗି ଖୋଜା ଚାଲିଛି ତା'ର କୌଣସି ଖବର ନାହିଁ !

ଭୈରବୀର ସିଦ୍ଧାନ୍ତରେ ସଂପୂର୍ଣ୍ଣ ଏକମତ ହେଲେ ବୈଷ୍ଣବ ଚରଣ । କେବଳ ସେତିକି ନୁହେଁ, ଅନ୍ୟାନ୍ୟ ଅବତାର କ୍ଷେତ୍ରରେ ଯେତେ ଯେତେ ଲକ୍ଷଣ ଦେଖା ଯାଇଛି ତା' ଠାରୁ ବହୁତ ବେଶୀ - ପ୍ରାୟ ସମସ୍ତ— ବିକଶିତ । ଯେଉଁ ପରମା ଭକ୍ତିର ଫଳ ସ୍ୱରୂପ ଆସେ ମହାଭାବ, ତାହା ଗଦାଧର ଠାରେ ସବିଶେଷ ଦେଦୀପ୍ୟମାନ । ସନ୍ଦେହ ନାହିଁ, ଗଦାଧର ଈଶ୍ୱରଙ୍କ ପ୍ରତିମୂର୍ତ୍ତି ।

ସ୍ୱୟଂ ବୈଷ୍ଣବ ଚରଣ କହୁଛନ୍ତି ! ମଥୁର ବାବୁଙ୍କ ତୁଣ୍ଡରେ କଥା ନାହିଁ । କର୍ମଚାରୀ ଯେଉଁମାନେ ସେଠି ଥିଲେ, ପରସ୍ପରର ମୁହଁକୁ ଅନା-ଅନି ହେବାକୁ ଲାଗିଲେ ।

କିଛି ଦିନ ପରେ ଆସି ପୁଣି ପହଞ୍ଚିଲେ ଗୌରୀକାନ୍ତ ତର୍କ ଭୂଷଣ । ଘର ବାଙ୍କୁଡ଼ା ଜିଲ୍ଲାର ଇନ୍ଦେଶ । ବୈଷ୍ଣବ ଚରଣ ବିଷ୍ଣୁ-ଉପାସକ, ଗୌରୀକାନ୍ତ ତାନ୍ତ୍ରିକ । ମହା ଶକ୍ତିଶାଳୀ ତାନ୍ତ୍ରିକ । ପ୍ରତି ବର୍ଷ ଦୁର୍ଗାପୂଜା ସମୟରେ ନିଜ ସ୍ତ୍ରୀଙ୍କୁ ଭଗବତୀ ଜ୍ଞାନରେ ପୂଜା-ଆରାଧନା କରନ୍ତି । ଯଜ୍ଞ କରନ୍ତି, ଯଜ୍ଞ କରିବାର ରୀତି ଅଲୌକିକ । ଯଜ୍ଞର କାଠ ମାଟି ଉପରେ ରଖୁ ନଥିଲେ, ରଖୁଥିଲେ ନିଜ ବାମ ହାତର ପାପୁଲି ଉପରେ । ବାମ ହାତ ପ୍ରସାରିତ କରି କର ତଳ ଉପରେ କାଠ ସଜାଇ ରଖୁଥିଲେ - ଦୁଇ ଚାରି ଖଣ୍ଡ ନୁହେଁ - ପୂରା ଏକ ମହଣ ଓଜନର କାଠ । ସେଥିରେ ଅଗ୍ନି-ସଂଯୋଗ କରୁଥିଲେ ଡାହାଣ ହାତରେ । ଅନୁଷ୍ଠାନ ଶେଷ ନ ହେବା ପର୍ଯ୍ୟନ୍ତ ହାତ ଉପରେ ଜଳୁଥାଏ ସେହି କାଠ । ଠାକୁର ନିଜ ଆଖିରେ ଥରେ ଦେଖିଥିଲେ ଏ ଘଟଣା ।

ସେହି ଗୌରୀକାନ୍ତ ଆସିଛନ୍ତି ଦକ୍ଷିଣେଶ୍ୱର । ଯେଉଁ ଭଳି ପାଣ୍ଡିତ୍ୟ ସେହି ଭଳି ତର୍କ-ସାମର୍ଥ୍ୟ । ତାଙ୍କ ସହିତ ତର୍କରେ କେହି ପାରନ୍ତି ନାହିଁ । କିଏ ଛିଡ଼ା ହେବ ତାଙ୍କ ଆଗରେ ? ଲୋକେ କହନ୍ତି ଏଇଟା ବି ତାଙ୍କର ତନ୍ତ୍ର-ବଳ ।

ତର୍କ-ସଭାକୁ ଯେତେବେଳେ ଆସନ୍ତି, ପ୍ରଥମେ ପ୍ରଚଣ୍ଡ ଗୋଟାଏ ହୁଙ୍କାର ଛାଡ଼ନ୍ତି ।

ବୋଧହୁଏ କୌଣସି ଗୋଟାଏ ସ୍ତୋତ୍ରର ଅଂଶ-ବିଶେଷ ଆବୃତ୍ତି କରନ୍ତି । କଣ୍ଠ-ସ୍ୱରରେ ଆକାଶଫଟା ବଜ୍ରର କାଠିନ୍ୟ । ଶବ୍ଦର ପ୍ରଚଣ୍ଡତାରେ ଘର-ଦ୍ୱାର ଦୋହୋଲି ଗଲା ପରି ଲାଗେ । ଭୟରେ ଶୁଣିବା ଲୋକର ହୃତ୍‌ସ୍ପନ୍ଦନ କ୍ଷଣକ ପାଇଁ ସ୍ତବ୍ଧ ହୋଇଯାଏ । ସେହି ଚଣ୍ଡ-ରବର ଉଦ୍ଦେଶ୍ୟ ଆଉ କିଛି ନୁହେଁ, କେବଳ ପ୍ରତିପକ୍ଷର ମନରେ ଭୟ ସଂଚାର କରେଇବା । କେହି କେହି ବି କହନ୍ତି, ସେହି ଭଳି ଉଚ୍ଚ ସ୍ୱରରେ ଚିତ୍କାର କରିବା ଦ୍ୱାରା ନିଜ ଭିତରେ ନିଜର ଆଶ୍ଚର୍ଯ୍ୟ ଶକ୍ତିକୁ ଉଦ୍ଦୀପିତ କରନ୍ତି । ସେ ଯେ ଜଣେ ଅସୀମ ଶକ୍ତିଧର ବ୍ୟକ୍ତି, ଏହି ଚିତ୍କାର ତାହାର ଅଭିଜ୍ଞାନ ।

କାଳୀ ମନ୍ଦିରର ପ୍ରାଙ୍ଗଣରେ ପ୍ରବେଶ କରିବା ମାତ୍ରେ ଯଥାରୀତି ହୁଙ୍କାର ଛାଡ଼ିଲେ ଗୌରୀକାନ୍ତ ।

ନିଜ ଘର ଭିତରେ ଏକାକୀ ବସିଥିଲା ଗଦାଧର । ଚିତ୍କାର ଶୁଣି ଚମକି ପଡ଼ିଲା । ଇଏ କୋଉ ପଣ୍ଡିତ, କେଉଁଠୁ ଆସିଲେ, କେତେ ତାଙ୍କର ଶକ୍ତି-ସାଧନା, ଏ ସବୁ ଖବର ଜାଣିବାରେ ତା'ର ଆଗ୍ରହ ନାହିଁ । କିନ୍ତୁ କେଉଁ ସ୍ତୋତ୍ରାଂଶ ସେ ତାଙ୍କ ଚିତ୍କାର ଭିତରେ କହିଲେ ଠିକ୍ ଧରି ପକାଇଲା । ତା' ଅନ୍ତର ଭିତରେ ଯିଏ ରହିଛନ୍ତି ସେ କହିଦେଲେ ଗୋପନରେ । କହିଲେ, ତୁ ବି ସେହି ସ୍ତୋତ୍ରର ବାକି ଅଂଶଟା ଆବୃତ୍ତି କର । କିନ୍ତୁ ମନେ ରଖ, ସେ ଯେତେ ଜୋର ଗଳାରେ ଚିତ୍କାର କରିଛି ତୁ ତା' ଠାରୁ ଆହୁରି ଅଧିକ ଜୋରରେ ଚିତ୍କାର କରିବୁ !

ହେଲା । ଗଦାଧର ଚିତ୍କାର କରି ସ୍ତୋତ୍ର ଆବୃତ୍ତି କଲା, ପ୍ରବଳତର, ପରୁଷତର କଣ୍ଠରେ । ମନେ ହେଲା ସତେ କି ଡକାୟତ ଆସିଛନ୍ତି ଲୁଣ୍ଠନ କରିବା ପାଇଁ ।

ଯେ ଯେଉଁଠି ଥିଲେ ଚମକି ପଡ଼ିଲେ । ଜଗୁଆଳିମାନେ ହାତରେ ଠେଙ୍ଗା ବାଡ଼ି ଧରି ଧାଇଁ ଆସିଲେ । କାହିଁ ? ଡକାୟତ କାହିଁ ?

ଡକାୟତ-ଫକାୟତ କେହି ନାହାନ୍ତି । ଗୌରୀ ପଣ୍ଡିତଙ୍କ ସହିତ ପାଗଳା ପୁରୋହିତଙ୍କର ପ୍ରତିଯୋଗିତା ହେଉଛି - କାହା ଗଳାର କେତେ ଜୋର ! ସମସ୍ତେ ଅବାକ୍ । ପାଗଳା - ପୁରୋହିତଙ୍କ ଗଳାର ଆବାଜ ଏତେ ତୀବ୍ର ! ଏତେ ଭୟଙ୍କର ।

ପରାଜିତ ଗୌରୀକାନ୍ତ । ମୁହଁ ଗମ୍ଭୀର କରି ପଶିଲେ ମନ୍ଦିର ଭିତରକୁ । ଗୋଟାଏ ମାତ୍ର ଗର୍ଜନରେ ଏଭଳି ପରାସ୍ତ ହେବେ ସ୍ୱପ୍ନରେ ବି କଳ୍ପନା କରି ନଥିଲେ । କିଏ ଏହି କାଳୀଙ୍କର ବରପୁତ୍ର !

ଗୌରୀ ଥିଲେ ତର୍କରେ ଅଜେୟ । ଦେଖିଲେ, ତର୍କ-ଶକ୍ତି ଠାରୁ ଆହୁରି ଆଶ୍ଚର୍ଯ୍ୟାତର ଶକ୍ତି ମଧ୍ୟ ଅଛି । ତାଙ୍କର ଯେଉଁ ଶକ୍ତି ତାହା ତାଙ୍କୁ ତର୍କରେ ହିଁ ଆବଦ୍ଧ କରି ରଖିଛି, ତର୍କାତୀତଙ୍କୁ ଦେଖାଇ ପାରି ନାହିଁ । ସେ କେବଳ ରୌଦ୍ରର ସନ୍ଧାନ ପାଇଛନ୍ତି, ରୁଦ୍ରକୁ ପାଇ ନାହାନ୍ତି । କିନ୍ତୁ କିଏ ଏହି ଆଲୋକ-ସମ୍ଭବ, ଯିଏ ଗୋଟାଏ ମାତ୍ର ଧ୍ୱନିରେ ସମସ୍ତ କୋଳାହଳ ସ୍ତବ୍ଧ କରି ଦେଇ ପାରୁଛି ! ଗୋଟାଏ ମାତ୍ର ଉକ୍ତିରେ ଶାନ୍ତ କରି ଦେଇ ପାରୁଛି ସମସ୍ତ ଜିଜ୍ଞାସା !

ଗଦାଧର ପାଖରେ ସଂପୂର୍ଣ୍ଣ ଆତ୍ମସମର୍ପଣ କଲେ ଗୌରୀକାନ୍ତ ।

ତଥାପି ମଥୁର ବାବୁଙ୍କର ସନ୍ତୋଷ ଆସିଲା ନାହିଁ । ସେ ଆହୁରି ଅନେକ ପଣ୍ଡିତଙ୍କୁ ଡକାଇଲେ । ଶାସ୍ତ୍ର ଅନୁସାରେ ଠିକ୍ ଜିଣି ବିଚାର ଦରକାର । ମନ୍ଦିରକୁ ଲାଗି ପ୍ରଶସ୍ତ ନାଟ-ମନ୍ଦିର ।

ସେଇଠି ବସିଲା ବିଚାର-ସଭା । ସଭାକୁ ଯିବା ଆଗରୁ ଗଦାଧର ପ୍ରଥମେ ଗଲା କାଳୀ ମନ୍ଦିରକୁ - ପ୍ରଣାମ କରିବା ପାଇଁ । କାଳୀଙ୍କୁ ପ୍ରଣାମ ନିବେଦନ କରି ସାରି ବାହାରି ଆସୁଛି, ହଠାତ୍ ବୈଷ୍ଣବ ଚରଣ ଆସି ପାଦ ତଳେ ପଡ଼ିଗଲେ । ସଂଗେ ସଂଗେ ଗଦାଧରର ଭାବ-ସମାଧି ହୋଇଗଲା । ବୈଷ୍ଣବ ଚରଣଙ୍କ ଅନ୍ତର ଭିତରେ ପ୍ରବାହିତ ହେବାକୁ ଲାଗିଲା ଦିବ୍ୟାନନ୍ଦର ପ୍ରବାହ । ମୁହେଁ ମୁହେଁ ସଂଗେ ସଂଗେ ସେ ଗୋଟାଏ ସଂସ୍କୃତ ସ୍ତୋତ୍ର ରଚନା କରି ପକାଇଲେ । ସ୍ତୋତ୍ରରେ ଗଦାଧରର ସ୍ତୁତି ।

ସମବେତ ପଣ୍ଡିତମାନଙ୍କୁ ଉଦ୍ଦେଶ୍ୟ କରି ଗୌରୀକାନ୍ତ କହିଲେ, 'ମୁଁ ଆସିଛି ବୈଷ୍ଣବ ଚରଣଙ୍କ ସହିତ ତର୍କ କରିବାକୁ । ଆପଣମାନେ ଆସିଛନ୍ତି ସେହି ତର୍କ-ଯୁଦ୍ଧ ଦେଖିବାକୁ, ଯୁଦ୍ଧରେ କିଏ ଜୟୀ ହେବ ତାହା ନିର୍ଣ୍ଣୟ କରିବାକୁ । କିନ୍ତୁ ଆଉ ସେ ଯୁଦ୍ଧର ପ୍ରୟୋଜନ ନାହିଁ । ବୈଷ୍ଣବ ଚରଣ ଆଜି ବିଷ୍ଣୁ-ଚରଣ-ସ୍ପର୍ଶ ପାଇଛନ୍ତି । ତାଙ୍କୁ ପରାସ୍ତ କରିବା ମନୁଷ୍ୟର ଅସାଧ । ଆଉ, ତା'ଛଡ଼ା, ତର୍କ କରିବାର ଅଛି ବା କଅଣ ? ଶାସ୍ତ୍ର ମିଳାଇ ଦେଖିଛୁ ଆମେ ଦୁଇ ଜଣ, ଗଦାଧର ଭଗବାନଙ୍କର ମହାବତରଣ !'

କଅଣ ଏ ସବୁ କହୁଛନ୍ତି ଏମାନେ ! ବାଳକ-ସୁଲଭ ବିସ୍ମୟରେ କେବଳ ଚାହିଁ ରହିଥାଏ ଗଦାଧର । ମୁଁ ତ କାହିଁ କିଛି ବୁଝିପାରୁ ନାହିଁ !

ଈଶ୍ୱରଙ୍କ ସ୍ୱଭାବ ତ ଠିକ୍ ବାଳକ ପରି । ସାନ ପିଲାଟିଏ ଖେଳରେ ଘର ତିଆରି କରେ । ଥରେ ଗଢ଼େ, ପୁଣି ଭାଙ୍ଗି ପକାଏ । ଈଶ୍ୱର ମଧ ଠିକ୍ ଏହି ଭଳି ସୃଷ୍ଟି -ସ୍ଥିତି-ପ୍ରଳୟ କରି ଚାଲିଛନ୍ତି । ଶିଶୁ ଯେପରି କୌଣସି ଗୁଣର ବଶ ନୁହେଁ, ଈଶ୍ୱର ମଧ ଠିକ୍ ସେହିପରି ସମସ୍ତ ଗୁଣର ଅତୀତ ।

ତେଣୁ ସାନ ପିଲାଙ୍କ ସହିତ ମିଶିଯାଅ, ତାଙ୍କର ସଙ୍ଗରେ ରୁହ । ସେପରି କଲେ ତାଙ୍କରି ସ୍ୱଭାବ ଆରୋପିତ ହେବ ତୁମ ଠାରେ । ତାଙ୍କରି କଥା ଚିନ୍ତା କର, ତାଙ୍କ ସତ୍ତା ପାଇବ । ତଦାକାରିତା ଆସିବ ।

ଈଶ୍ୱର କି ଭଳି ଜାଣ ? ମନେ କର, ସାନ ପିଲାଟିଏ ଅଣ୍ଟିରେ ଅଣ୍ଟିଏ ରତ୍ନ ପୂରେଇ ରାସ୍ତା କଡ଼ରେ ବସିଛି । ରାସ୍ତାରେ କେତେ ଲୋକ ଯିବା ଆସିବା କରୁଛନ୍ତି । କେହି କେହି ତାକୁ ରତ୍ନ ମାଗୁଛନ୍ତି । ଅଣ୍ଟି ଟାଣ କରି ମୁଠେଇ ପିଲା ମୁହଁ ବୁଲେଇ ନେଇ କହୁଛି, ନା, ଦେବି ନାହିଁ । ଅଥଚ ଯେଉଁ ଲୋକଟି ହୁଏତ ତାକୁ ମାଗି ନାହିଁ, ଚାଲି ଯାଉଛି ନିଜ ବାଟରେ, ପିଲାଯି ତାହାରି ପଛେ ପଛେ ଧାଇଁ ଯାଇ ଯାଚି କରି ତାକୁ ସବୁ ଦେଇ ପକାଉଛି ।

ବିଜୟ-ଗୌରବରେ ଭୈରବୀର ମୁଖମଣ୍ଡଳ ପ୍ରଦୀପ୍ତ ହୋଇ ଉଠିଲା । ତା' କଥା ସ୍ୱୀକାର କରିବାକୁ ସମସ୍ତେ ବାଧ ହୋଇଛନ୍ତି ।

ମଥୁର ବାବୁଙ୍କ ଛାତି କୁଣ୍ଢେ ମୋଟ ହୋଇଗଲା । ଯାହାଙ୍କୁ ସେ ଗୁରୁ ଜ୍ଞାନରେ ମୁଣ୍ଡରେ ବସାଇଛନ୍ତି, ସେ କେବଳ ଗୁରୁ ନୁହନ୍ତି, ଗୁରୁଙ୍କ ଗୁରୁ, ସ୍ୱୟଂ ସଚ୍ଚିଦାନନ୍ଦ- ନିତ୍ୟ ସତ୍ୟ ଜ୍ଞାନୀୟ ଓ ଆନନ୍ଦମୟ ବ୍ରହ୍ମଙ୍କ ଅବତାର ।

ଅବତାର ବୋଲି ସମସ୍ତେ ମାନି ନେଲେ ସିନା, ହେଲେ ଗଦାଧରର ନିଜ ମନକୁ ସନ୍ତୋଷ

ଆସୁ ନାହିଁ । ଲୋକଙ୍କ କଥାରେ ତା' ମନକୁ ସାନ୍ତ୍ୱନା ଆସୁ ନାହିଁ । ସେ ଚାହୁଁଛି ନିଜର ଅନୁଭବ, ନିଜର ଉଜ୍ଜୀବନ । ବୋଧରୁ ବୋଧିର ଆସ୍ୱାଦ । ତେଣୁ ସେ ନିଜକୁ ନିୟୋଜିତ କଲା ନୂତନ ସାଧନାରେ । କଠିନତର ତପସ୍ୟାରେ । ବିଧିଗତ ଯୋଗଚର୍ଚ୍ଚାରେ । ଏହାରି ନାମ ତାନ୍ତ୍ରିକ ସାଧନା, ଏବଂ ଏହି ସାଧନାରେ ତା'ର ଗୁରୁ ହେଲା ଭୈରବୀ ଯୋଗେଶ୍ୱରୀ ।

ଆଜି ପର୍ଯ୍ୟନ୍ତ ଗଦାଧର କେବଳ ନିଜ ଚେଷ୍ଟାରେ ଈଶ୍ୱରଙ୍କୁ ଧରିବାକୁ ଚାହିଁଛି । ନିଜ ଚେଷ୍ଟାରେ ଅର୍ଥ ଅନ୍ତରର ବ୍ୟାକୁଳତାରେ । ଦେଖା ଯାଉ ଅନ୍ୟର ସାହାଯ୍ୟରେ କେତେ ବାଟ ଯାଇ ପାରୁଛି । ଅନ୍ୟର ସାହାଯ୍ୟରେ ଅର୍ଥ ଗୁରୁଙ୍କ ନିର୍ଦ୍ଦେଶରେ ।

ସେହି ଗୁରୁ ହେଲେ ଯୋଗେଶ୍ୱରୀ । ଜଣେ ସ୍ତ୍ରୀ ଲୋକ ।

ଠାକୁର ନିଜେ କହିଛନ୍ତି କାମିନୀ କାଞ୍ଚନ ତ୍ୟାଗ କରିବାକୁ । ଅଥଚ ତାଙ୍କ ନିଜର ଗୁରୁ ହେଲେ ଜଣେ ନାରୀ !

ଏ କଥାର ତାତ୍ପର୍ଯ୍ୟ ହେଉଛି, ନାରୀ ମଧ୍ୟରେ ଯେଉଁ କାମିନୀ ରହିଛି, ଯେଉଁ ତାମସୀ ରହିଛି, ତାକୁ ହିଁ ତ୍ୟାଗ କର । ଯେଉଁ ନାରୀ ଯୋଗିନୀ, ମହିମାମୟୀ ମାତୃସ୍ୱରୂପିଣୀ, ତାହାକୁ ଗ୍ରହଣ କର । ଅଭିନନ୍ଦନ କର ।

''ଯତନେ ହୃଦୟେ ରେଖୋ ଆଦରିଣୀ ଶ୍ୟାମା ମାକେ,
ମନ, ତୁଇ ଦେଖ ଆର ଆମି ଦେଖି
ଆର ଯେନ କେଉ ନାହିଁ ଦେଖେ ।
କମାଦିରେ ଦିୟେ ଫାଙ୍କି
ଆୟ ମନ ବିରଲେ ଦେଖି
ରସନାରେ ସଙ୍ଗେ ରାଖି
ଯେ ସେନ ମା ବଲେ ଡାକେ ।''

(ଆରେ ମନ, ଆଦରିଣୀ ଶ୍ୟାମା- ମା'ଙ୍କୁ ଅତି ଯତ୍ନରେ ହୃଦୟ ଭିତରେ ରଖିଥିବୁ । ତାଙ୍କୁ କେବଳ ତୁ ଦେଖୁଥିବୁ, ମୁଁ ଦେଖୁଥିବି; ଆଉ କେହି ଯେପରି ତାଙ୍କୁ ଦେଖି ନ ପାରେ । ଆ, ମନ, କାମ ଭାବରୁ ନିଜକୁ ମୁକ୍ତ ରଖି ଏକାନ୍ତରେ ବସି ତାଙ୍କୁ ଦେଖିବା । ଜିଭକୁ ପାଖରେ (ବଶରେ) ରଖିଥିବା, ସେ ମା ମା ବୋଲି ଡାକୁଥିବ ।)

ଜନକ ରାଜାଙ୍କର ଆଉ ଗୋଟିଏ ନାମ ବିଦେହ । କାରଣ, ସେ ନିର୍ଲିପ୍ତ । ତାଙ୍କ ଦେହରେ ଦେହବୁଦ୍ଧି ନାହିଁ । ସେହି ଜନକ ରାଜାଙ୍କ ସଭାକୁ ଦିନେ ଜଣେ ଭୈରବୀ ଆସିଲା । ସ୍ତ୍ରୀ ଲୋକ ଦେଖି ଜନକ ମୁହଁ ତଳକୁ କରି ରହିଲେ । ଭୈରବୀ କହିଲା, 'ଏ ପର୍ଯ୍ୟନ୍ତ ତୁମେ ସ୍ତ୍ରୀ ଲୋକ ଦେଖିଲେ ଭୟ ପାଉଛ ! ତା'ହେଲେ ତୁମର ପୂର୍ଣ୍ଣ ଜ୍ଞାନ ଆସି ନାହିଁ । ପୂର୍ଣ୍ଣ ଜ୍ଞାନ ହେଲେ ପାଞ୍ଚ ବର୍ଷର ପିଲାର ସ୍ୱଭାବ ଆସିଯାଏ । ସେତେବେଳେ ଆଉ ସ୍ତ୍ରୀ-ପୁରୁଷ ଭେଦ ବିଚାର ରହେ ନାହିଁ ।'

ଗଦାଧର ସେହି ପାଞ୍ଚ ବର୍ଷର ବାଳକ । ସ୍ତ୍ରୀଲୋକ ମାତ୍ରେ ହିଁ ତା' ପାଇଁ ମା'ଙ୍କ ପ୍ରତିମା । ତା'ଛଡ଼ା, କାମିନୀ-କାଞ୍ଚନ ତ୍ୟାଗ ସନ୍ନ୍ୟାସୀ ପାଇଁ, ସଂସାରୀ ପାଇଁ ନୁହେଁ । ସନ୍ନ୍ୟାସୀ ସ୍ତ୍ରୀଲୋକଙ୍କର ଚିତ୍ର ସୁଦ୍ଧା ଦେଖିବ ନାହିଁ । ସ୍ତ୍ରୀ ଲୋକ କି ଭଳି ଜିନିଷ ଜାଣ ? ଠିକ୍ ତେନ୍ତୁଳି-

ଆଚାର ଭଳି । ମନେ ପକେଇଲା ମାତ୍ରେ ପାଟିରୁ ଲାଳ ନିଗିଡ଼ି ଆସେ । ତେନ୍ତୁଳି ଆଚାର ନ ଦେଖିବା ଭଲ ।

'କିନ୍ତୁ, ଏ କଥା ଆପଣମାନଙ୍କ ପାଇଁ, ଅର୍ଥାତ୍ ସଂସାରୀ ଲୋକମାନଙ୍କ ପାଇଁ ନୁହେଁ,' କହିଲେ ଠାକୁର: 'ଆପଣମାନେ ଯେତେଟା ପାରିବେ ସ୍ତ୍ରୀଲୋକମାନଙ୍କ ସହିତ ଅନାସକ୍ତ ଭାବରେ ରହିବେ । ମଝିରେ ମଝିରେ ନିର୍ଜନ ସ୍ଥାନକୁ ଯାଇ ଈଶ୍ୱର-ଚିନ୍ତା କରିବେ । ସେଠି ଯେମିତି ସେମାନେ  କେହି ନଥିବେ । ଈଶ୍ୱରଙ୍କ ଠାରେ ଭକ୍ତି-ବିଶ୍ୱାସ ଜାତ ହୋଇ ପାରିଲେ ଅନାସକ୍ତ ହୋଇପାରିବ । ଗୋଟିଏ-ଯୋଡ଼ିଏ ପୁଅ-ଝିଅ ହେଲା ପରେ ସ୍ତ୍ରୀ-ପୁରୁଷ ଦୁଇ ଜଣ ଭାଇ-ଭଉଣୀ ପରି ଚଳିବ । ଈଶ୍ୱରଙ୍କୁ ସବୁବେଳେ ପ୍ରାର୍ଥନା କରୁଥିବ, ଆଉ, ଇନ୍ଦ୍ରିୟ-ସୁଖ ଆଡ଼କୁ ମନ ନ ଯାଉ, ଆଉ ପିଲା-ଝିଲା ନ ହୁଅନ୍ତୁ ।'

ଗିରୀଶ ଘୋଷ କହିଲେ, 'କାମିନୀ-କାଞ୍ଚନ ଛାଡ଼ି ହେଉଛି କାହିଁ ?'

'ବ୍ୟାକୁଳ ଭାବରେ ତାଙ୍କୁ ପ୍ରାର୍ଥନା କର, ବିବେକ ପାଇଁ ପ୍ରାର୍ଥନା କର । ଏକମାତ୍ର ଈଶ୍ୱର ଖାଣ୍ଟି, ଆଉ ସବୁ ଭେଜାଲ, ଅସାର - ଏହାରି ନାମ ବିବେକ । ଛାଙ୍କୁଣୀରେ ଜଳ ଛଣା ହୁଏ । ମଇଳା ତକ ଗୋଟାଏ ଆଡ଼େ ରହିଯାଏ, ଭଲ ଜଳ ଆଉ ଗୋଟାଏ ପାଖରେ ପଡ଼େ । ବିବେକ ହେଉଛି ସେହି ଛାଙ୍କୁଣୀ, ତାକୁ କାମରେ ଲଗାଅ । ତାଙ୍କୁ ଜାଣି ସାରି ସଂସାର କର । ତାହା ହେବ ବିଦ୍ୟାର ସଂସାର ।'

ଆଉ ଅବିଦ୍ୟାର ସଂସାର ? ଦେଖୁଥିବ ସେଠି ସ୍ତ୍ରୀଲୋକମାନଙ୍କର କେତେ ମୋହିନୀ ଶକ୍ତି ! ପୁରୁଷମାନଙ୍କୁ ନିର୍ବୋଧ ଅପଦାର୍ଥ କରି ରଖିଦେଇ ଥାଆନ୍ତି । ଏମିତି କାବୁ କରି ନେଇ ଥାଆନ୍ତି ଯେ ଉଠ୍ କହିଲେ ଉଠି ଠିଆହୋଇ ପଡ଼ିବେ, ବସ୍ କହିଲେ ପୁଣି ସଙ୍ଗେ ସଙ୍ଗେ ବସି ପଡ଼ିବେ ।

ତଥାପି ତ ଠାକୁର ନିଜେ ବିବାହ କରିଥିଲେ ।

'ଆଚ୍ଛା, ମୋର କାହିଁକି ବିବାହ ହେଲା, କହି ପାରିବୁ ? କଅଣ ପାଇଁ ମୋର ଗୋଟାଏ ସ୍ତ୍ରୀ ହେଲା ? ପିନ୍ଧା ଲୁଗାର ଠିକ୍-ଠିକଣା  ନାହିଁ ଯେଉଁ ଲୋକର - ସେ ଲୋକର ପୁଣି ସ୍ତ୍ରୀଟିଏ କାହିଁକି ?'

ନିଜେ ପୁଣି ଏ କଥାର ଉତ୍ତର ଦେଲେ, 'ସଂସ୍କାର ପାଇଁ ବିବାହ କରିବା ଦରକାର । ବ୍ରାହ୍ମଣ-ଶରୀରର ଦଶ ପ୍ରକାର ସଂସ୍କାର ଅଛି । ବିବାହ ତା' ମଧ୍ୟରୁ ଗୋଟାଏ । ଶୁକଦେବଙ୍କର ମଧ୍ୟ ବିବାହ ହୋଇଥିଲା ଏଇ ସଂସ୍କାର ପାଇଁ । ଏହି ଦଶ ପ୍ରକାର ସଂସ୍କାର ସଂପନ୍ନ ହୋଇ ସାରିଲା ପରେ ଆଚାର୍ଯ୍ୟ ହେବା ସମ୍ଭବ । ସବୁଯାକ ଘର ବୁଲି ଆସିଲେ ସିନା ଗୋଟି ପାଚିବ ।

ବିବାହ କଲେ, ଅଥଚ ସଂସାର ଭୋଗ କଲେ ନାହିଁ । ବିବାହ କେତେ ବଡ଼ ଆଦର୍ଶ ହୋଇପାରେ, ଦେଖେଇ ଦେଲେ ଜଗତକୁ । ସ୍ୱାମୀ-ସ୍ତ୍ରୀ ଭୋଗାସନରେ ନ ବସି ବସିଲେ ଯୋଗାସନରେ । ଯିଏ କାମିନୀ ହୋଇ ପାରିଥାଆନ୍ତା ସେ ପୁଣି ହେଲା ଜ୍ୟୋତିଷ୍ମତୀ ଜଗଦ୍ଧାତ୍ରୀ । ରତିର ଏହି ପୃଥିବୀରେ ଠାକୁର ପ୍ରତିଷ୍ଠିତ କଲେ ମୂର୍ତ୍ତିମତୀ ବିରତିକୁ, ଅତୃପ୍ତିର ସଂସାରରେ ସଂସ୍ଥାପିତ କଲେ ସନ୍ତୋଷମୟୀଙ୍କୁ । ନାରୀର ଯାହା ସବୁ ଠାରୁ ବଡ଼ ମହିମା ତାହା ହିଁ ଅର୍ପଣ କଲେ

ନାରୀକୁ ।

'ଏଠି ମୁଁ ଯାହା କିଛି କରୁଛି, ସବୁ ତୁମରିମାନଙ୍କ ପାଇଁ,' କହିଲେ ଠାକୁର ତାଙ୍କ ଭକ୍ତମାନଙ୍କୁ । 'ମୁଁ ଯଦି ଷୋହୋଳ ଅଣା କରେ ତେବେ ତୁମ୍ଭେମାନେ ହୁଏତ ଅଣାଏ କରିପାରିବ ।'

ଠାକୁରଙ୍କର ନିଜ ପାଇଁ ପୂର୍ଣ୍ଣ ନିବୃତ୍ତି, ସଂସାରୀ ଭକ୍ତଙ୍କ ପାଇଁ ଅନ୍ତତଃ ଟିକିଏ ସଂଯମ । ନିଜ ପାଇଁ ପୂର୍ଣ୍ଣ ନିର୍ବାସନା, ସଂସାରୀ ଭକ୍ତଙ୍କ ପାଇଁ ଅନ୍ତତଃ ଟିକିଏ ଅସ୍ପୃହା ।

'ଯିକିଏ ବିଞ୍ଚି ଦବୁ କିରେ, ମା, ଦେହ ଜଳି ଯାଉଛି ।' ଅଧୈର୍ଯ୍ୟ ଭାବରେ ଦିନେ କହିଲେ ଶ୍ରୀ ମା: 'ଯେ କଲିକତାକୁ ମୋର ଜୁହାର, ମା ! ଇଏ ଆସି କହୁଛି, ମୋର ଅମୁକ ଦୁଃଖ, ସିଏ ଆସି କହୁଛି, ମୋର ସମୁକ ଦୁଃଖ । ଖାଲି ଦୁଃଖ ଆଉ ଦୁଃଖ । କିଏ କ'ଣ କରି ଦେଇ ଚାଲି ଆସୁଛନ୍ତି -ହିସାବ ନାହିଁ । କାହାର ପଚିଶଟା ପୁଅ-ଝିଅ, ଦଶଟା ସେଥିରୁ ମରି ଯାଇଛନ୍ତି, କାନ୍ଦି କାନ୍ଦି ଅଥୟ । ମଣିଷ ନୁହନ୍ତି -ପଶୁ, ସମସ୍ତେ ପଶୁ ! ପଶୁ-ଜୀବନ । ସଂଯମ ବୋଲି କିଛି ନାହିଁ । ସେଇଥିପାଇଁ ଠାକୁର କହୁଥିଲେ, ଏକ ସେର ଦୁଧରେ ଚାରି ସେର ଜଳ, ଫୁଙ୍କି ଫୁଙ୍କି ମୋ ଆଖି ଗଲା । ତ୍ୟାଗୀ ପିଲାମାନେ, କିଏ କୋଉଠି ଅଛ, ଏବେ ଆସ ରେ । ଚାଲି ଆସ ଭଲା ପାଖକୁ, ତୁମ୍ଭମାନଙ୍କ ସହିତ ଦି'ପଦ କଥା କହି ପାରିଲେ ମୁଁ ବଞ୍ଚିଯିବି । ଠିକ୍ କଥା କହୁଥିଲେ ... । ଜୋରରେ ବିଞ୍ଚ, ମା । ... ଲୋକଙ୍କ ଦୁଃଖ ଆଉ ଦେଖି ପାରୁ ନାହିଁ ।'

## ୨୩

ମା ଗୋ, ବ୍ରାହ୍ମଣୀ କହୁଛି ତନ୍ତ୍ର ମତରେ ସାଧନା କରିବା ପାଇଁ । କରିବି ?

କରିବୁ ନାହିଁ କାହିଁକି ? ନିଶ୍ଚୟ କରିବୁ । ସଂପୂର୍ଣ୍ଣ ଭାବରେ କରିବୁ । ଜଗଦମ୍ବା ଇଙ୍ଗିତ ଦେଲେ । କହିଲେ, ତନ୍ତ୍ର ସାଧନା ହେଉଛି ଜୀବନର ସର୍ବାଙ୍ଗୀନ ସାଧନା । ସତ୍ତାର ନିମ୍ନତମ ସ୍ତରରୁ ଉଚ୍ଚତମ ସ୍ତରକୁ କ୍ରମ-ଉନ୍ମୋଚନ । ବୋଧରୁ ବିକାଶକୁ ଚାଲି ଆସିବା, ଭୋଗରୁ ଯାଇ ଯୌଗେଶ୍ୱର୍ଯ୍ୟରେ ଅଧିଷ୍ଠିତ ହେବା । ଜୀବନ-ସତ୍ତା ଉପରେ ଛିଡ଼ା ହୋଇ ବ୍ରହ୍ମ-ଭୂମିକାରେ ପ୍ରତିଷ୍ଠା ଲାଭ କରିବା । ଚିତ୍ତରୁ ଚୈତନ୍ୟକୁ ଉତ୍ତରିତ ହେବା ।

ଶକ୍ତି ହେଉଛି ତନ୍ତ୍ରର ସର୍ବସ୍ୱ । ତନ୍ତ୍ରରେ କେଉଁଠି କିଛି ହେଲେ ତୁଚ୍ଛ ନାହିଁ, ହେୟ ନାହିଁ, ପରିତ୍ୟାଜ୍ୟ ନାହିଁ । ସମସ୍ତ ଜିନିଷରୁ ଈଶ୍ୱରୀ ଶକ୍ତି ଆହରଣ କରିବା, ଆକର୍ଷଣ କରିବା । ଆତ୍ମଶକ୍ତିକୁ ଅଧ୍ୟାତ୍ମ ଶକ୍ତି ପାଖକୁ ନେଇ ଯିବା । ଅର୍ଥାତ୍, ଶକ୍ତିକୁ ଆଣି ଶିବତ୍ୱରେ ପହଞ୍ଚାଇ ଦେବା । ସମସ୍ତ ଗତିକୁ ଗୋଟାଏ ପରମ ଧୃତି ମଧ୍ୟରେ ଶାନ୍ତ କରାଇବା ।

ମା, ମୁଁ ତ ତୋର ଦର୍ଶନ ପାଇ ସାରିଛି, ମୋର ପୁଣି ସାଧନା ଆଉ କଅଣ ଦରକାର ?

ଦରକାର । ଲାଉ କଖାରୁ ଦେଖିଛୁ ? ଆଗେ ଫଳ, ତା' ପରେ ଫୁଲ । ସେହିଭଳି ତୋର ପ୍ରଥମେ ସିଦ୍ଧି, ତା' ପରେ ସାଧନା ।

ଭୈରବୀକୁ ଯାଇ କହିଲା ଗଦାଧର, 'ତୁମେ ପରା ମୋତେ ଅବତାର ବୋଲି କହୁଛ ?

ତେବେ  ମୋର ପୁଣି ସାଧନା କାହିଁକି ?'

ଦେଖାଯାଉ, ତୁମ ନର-ଦେହରେ ତାହା କି ଅପୂର୍ବ ଐଶ୍ୱର୍ଯ୍ୟ ଆଣି ଦେଉଛି ! ଦେହ ଯେତେବେଳେ ଅଛି, ସମସ୍ତ ବିକାର ମଧ ଅଛି । ତେଣୁ ଦେହ ପକ୍ଷରେ ଯାହା ସାଧ, ସେହି ସବୁ ସାଧନା ତୁମକୁ କରିବାକୁ ପଡ଼ିବ । ଜୈବ ଦେହକୁ ନେଇ ଯିବାକୁ ପଡ଼ିବ ଶୈବ ସ୍ଥିତିକୁ । ମୃଣ୍ମୟରୁ ଚିନ୍ମୟକୁ । ନ ହେଲେ ଜୀବୋଦ୍ଧାର ହେବ କିପରି ?

ପାର୍ବତୀ ଭଗବତୀ ହୋଇ ମଧ ଶିବଙ୍କ ପାଇଁ କଠୋର ସାଧନା କରିଥିଲେ । ପଞ୍ଚମୁଣ୍ଡୀ ଉପରେ ବସି ପଞ୍ଚତପା କରିଥିଲେ । ପ୍ରଚଣ୍ଡ ଶୀତରେ ପାଣି ଭିତରେ ଦେହକୁ ବୁଡ଼ାଇ ରଖିଥିଲେ । ଅନିମେଷ ନୟନରେ ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ରହିଥିଲେ ।

ସେହିଭଳି କୃଷ୍ଣ, କୃଷ୍ଣ ହୋଇ ମଧ ଅନେକ ସାଧନା କରିଥିଲେ ରାଧାଯନ୍ତ୍ର ସାହାଯ୍ୟରେ ।

'ଆପନି ଆଚରି ଧର୍ମ ଜୀବେରେ ଶିଖାଅ ।' ନର ଦେହ ଧାରଣ କରି ମଧ କେତେ ଊର୍ଦ୍ଧ୍ୱକୁ ଆସିହୁଏ - କେଉଁ ଅଲୌକିକ ତୀର୍ଥ ଭୂମିକୁ - ତୁମେ ତାହା ପ୍ରମାଣ କରି ଦେଖେଇ ଦିଅ । ଦେହୀ ହୋଇ ମଧ୍ ଦେହୋତ୍ତୀର୍ଣ୍ଣ ହେବାର ଆଦର୍ଶ ସ୍ଥାପନ କର । ଏହି ସବୁ ଦୁର୍ବଳ ଅବିଶ୍ୱାସୀ ଜୀବମାନେ ତୁମ ଛଡ଼ା ଆଉ କାହା ପାଖରୁ ଆଶ୍ୱାସ ପାଇବେ ? କେଉଁଠି ପାଇବେ ତ୍ରାଣର ସନ୍ଧାନ ? ରାଗ-ବେଗରୁ ଚାଲି ଆସିବେ ବୈରାଗ୍ୟ- ଆବେଗକୁ ?

ତାହା ଛଡ଼ା ଶାସ୍ତ୍ରର ମର୍ଯ୍ୟାଦା ତ ଅକ୍ଷୁଣ୍ଣ ରଖିବାକୁ ପଡ଼ିବ । ସଂସ୍କାର ପାଳନ ପାଇଁ ପରା ବିବାହ କରିଛ ? ଠିକ୍ ସେହି ପରି ଶାସ୍ତ୍ର-ପାଳନ ପାଇଁ ତନ୍ତ୍ର ସାଧନା କରିବାକୁ ପଡ଼ିବ । ତନ୍ତ୍ର ହେଉଛି ସମସ୍ତ ଶାସ୍ତ୍ର ମଧରେ ଶ୍ରେଷ୍ଠ ।

''ଦେବୀନାଞ୍ଚ ଯଥା ଦୁର୍ଗା ବର୍ଣ୍ଣାନାଂ ବ୍ରାହ୍ମଣୋ ଯଥା
ତଥା ସମସ୍ତଶାସ୍ତ୍ରାଣାଂ ତନ୍ତ୍ରଶାସ୍ତ୍ରମନୁତ୍ତମମ୍ ।''

ତନ୍ତ୍ରର ଆଚାର ତ୍ରିବିଧ - ପଶୁ, ବୀର ଏବଂ ଦିବ୍ୟ । ପଶ୍ୱାଚାର ସାଧାରଣ ଜୀବମାନଙ୍କ ପାଇଁ । ଏଥିରେ କେବଳ ଶମ -ଦମ, ଯମ-ନିୟମ, ଧ୍ୟାନ-ପୂଜା ଆଦି ଆନୁଷ୍ଠାନିକ ରୀତି ନୀତି । କାମନା ଠାରୁ ଦୂରେଇ ରହିବାର ଚେଷ୍ଟା ଏଥିରେ ଅଛି, ତଥାପି ସେହି କାମନାକୁ ହିଁ ଏଥିରେ ମୂଲ୍ୟ ଦିଆଯାଏ । ଏ ମାର୍ଗରେ, ଜୀବ-ଭାବର ଯଥା ସମ୍ଭବ ସଂସ୍କାର ମାତ୍ର ଆସେ, କିନ୍ତୁ ଜୀବ ଭାବର ଲୟ ହୁଏ ନାହିଁ । ଜୀବତ୍ୱ ଏଥିରେ ଉତ୍ତୀର୍ଣ୍ଣ ହୁଏ ନା ଶିବତ୍ୱକୁ ।

ବୀରାଚାର ଭିନ୍ନ ପ୍ରକାର । କାମନା ମଧରେ ରହିବ, ଅଥଚ କାମନାକୁ ଉପେକ୍ଷା କରିବ, ଉଦାସୀନ ରହିବ । ଉଲ୍ଲାସ ଅନୁଭବ କରିବ, ମାତ୍ର ସେଥିପ୍ରତି ଆକୃଷ୍ଟ ହେବ ନାହିଁ, ସେଥିରେ ଆବଦ୍ଧ ହେବ ନାହିଁ । ମହୁ ମାଛି ପରି ପଦ୍ମ ଉପରେ ବସୁଥିବ, ମାତ୍ର ମଧୁପାନ କରିବ ନାହିଁ । ଫଳ ପ୍ରାପ୍ତ ହେଲେ ମଧ ଫଳ ତ୍ୟାଗ କରିବ । ସମଗ୍ର ମୂଳାଧାରକୁ ଅଧ୍ୟାତ୍ମଶକ୍ତିର ଆୟତ୍ତାଧୀନ କରିବାକୁ ପଡ଼ିବ । ପଶୁ-ଶକ୍ତିରେ ଅବଶ୍ୟ ଚାଳିତ ହେଉଛି, ମାତ୍ର ଶକ୍ତିକୁ ଚାଳନା କରୁଛି ବୀର । ଏହି ବୀର ଶକ୍ତିକୁ ଟଳେଇ ଆଣି ଶିବଭାବରେ ପ୍ରତିଷ୍ଠା ଦେଉଛି । ଶକ୍ତି ରୂପାନ୍ତରିତ ହୋଇ ହେଉଛି ଶାନ୍ତି । ସ୍ଥୂଳ ହେଉଛି ସୂକ୍ଷ୍ମ । ବୋଧ ହେଉଛି ବିଭୂତି ।

ଆଉ ଦିବ୍ୟ ? ସେ ହେଉଛନ୍ତି ଜ୍ଞାନସ୍ୱରୂପ । ବ୍ରହ୍ମମୟ । ସେ ଶକ୍ତିରେ ନାହାନ୍ତି, ବିଭୂତିରେ

ବି ନାହାନ୍ତି । ତାଙ୍କର ସ୍ଥିତିରେ ବ୍ରହ୍ମ, ପ୍ରାପ୍ତିରେ ମଧ୍ୟ ବ୍ରହ୍ମ । ସେ ପ୍ରଶାନ୍ତ । ପ୍ରସାରିତ ।

ତା' ହେଲେ, ଏବେ କଅଣ କରିବାକୁ ହେବ ?

ପ୍ରଥମେ ମୁଣ୍ଡ ସାଧନ କର । ଯେଉଁ ଦେଶରେ ଗଙ୍ଗା ନାହିଁ ସେହି ଦେଶରୁ ମୁଣ୍ଡମାଳା ସଂଗ୍ରହ କରି ଆଣିବାକୁ ପଡ଼ିବ । ତା' ପରେ ସ୍ଥାପନ କରାଯିବ ମୁଣ୍ଡାସନ ।

ବଗିଚାର ଉତ୍ତର ସୀମାରେ ଗୋଟାଏ ବେଲ ଗଛ । ତାହାରି ମୂଳରେ ବେଦୀ ନିର୍ମାଣ କରାଗଲା । ସେହି ବେଦୀ ତଳେ ତିନି ଗୋଟି ନରମୁଣ୍ଡ ପୋତା ଗଲା । ବିକଳ୍ପ ଆସନ ପ୍ରସ୍ତୁତ ହେଲା ପଞ୍ଚବଟୀରେ । ସେଠି ବେଦୀ ତଳେ ରହିଲା ପଞ୍ଚ ଜୀବଙ୍କର ପଞ୍ଚମୁଣ୍ଡ । ଶିବା (ଶିଆଳ), ସର୍ପ, ଶ୍ୱାନ, ବୃଷ ଓ ମଣିଷ । ବ୍ରାହ୍ମଣୀ ନିଜେ, ନାନା ଆଡ଼େ ବୁଲି ସବୁ ସଂଗ୍ରହ କରି ଆଣିଲା । ଯେଉଁଟି ପାଇଁ ଯେଉଁ ଆସନ ଦରକାର ସେହି ଆସନରେ ବସି ତନ୍ତ୍ର ସାଧନା ଆରମ୍ଭ କଲା ଗଦାଧର ।

ବହୁ ପ୍ରକାର ପୂଜା, ବହୁ ପ୍ରକାର ଜପ, ବହୁ ପ୍ରକାର ହୋମ-ତର୍ପଣ । ଉଗ୍ରରୁ ଉଗ୍ରତର ତପସ୍ୟା । ଗୋଟାଏ ସାଧନା ଆରମ୍ଭ କରେ, ଦୁଇ ତିନି ଦିନ ଭିତରେ ନିରାପଦରେ ଉତ୍ତୀର୍ଣ୍ଣ ହୋଇଯାଏ । ଶାସ୍ତ୍ରରେ ଯେଉଁ ଫଳ ନିର୍ଦ୍ଦିଷ୍ଟ ଅଛି ତାହା ପ୍ରତ୍ୟକ୍ଷ କରେ । ଦର୍ଶନ ପରେ ଦର୍ଶନ,ଅନୁଭୂତି ପରେ ପୁଣି ନୂତନ ଅନୁଭୂତି ।

ଗୋଟିଏ ଗୋଟିଏ କରି ଚୌଷଠି ଗୋଟି ତନ୍ତ୍ର ଶିଖାଇଲା ବ୍ରାହ୍ମଣୀ ।

ଟିକିଏ ହେଲେ ପଦ-ସ୍ଖଳନ ହେଲା ନାହିଁ ଗଦାଧରର । ହେବ କିପରି ? ମା ଯେ ତା' ହାତ ଧରି ରହିଛନ୍ତି ।

ଦିନେ ରାତିରେ ବ୍ରାହ୍ମଣୀ କେଉଁଠାରୁ ଜଣେ ସ୍ତ୍ରୀଲୋକ ନେଇ ଆସିଲା । ପୂର୍ଣ୍ଣଯୌବନା ସୁନ୍ଦରୀ ରମଣୀ । ତାକୁ ବେଦୀ ଉପରେ ବସାଇଲା । ଗଦାଧରକୁ କହିଲା, 'ବାବା, ଏହାକୁ ଦେବୀ ଜ୍ଞାନରେ ପୂଜା କର ।'

ସମସ୍ତ ସ୍ତ୍ରୀଙ୍କୁ ତ ଗଦାଧର ମାତୃଜ୍ଞାନ କରେ । ତା'ର ଡରିବାର କଅଣ ଅଛି ? ପୂଜା କଲା ତନ୍ମୟ ଭାବରେ ।

ପୂଜା ଶେଷ ହେଲା ପରେ ଭୈରବୀ କହିଲା, 'ବାବା, ଏହାକୁ ସାକ୍ଷାତ ଜଗଜ୍ଜନନୀ ମନେ କରି ତା' କୋଳରେ ବସ । କୋଳରେ ବସି ତଦ୍‌ଗତ ଭାବରେ ଜପ କର ।'

ଗଦାଧରର ଦେହ ଶୀତେଇ ଉଠିଲା । ରମଣୀ ଦିଗମ୍ବରୀ !

ଇଏ କି ଭଳି ଆଦେଶ ଦେଉଛୁ ମା ? ମୁଁ ତୋର ଦୁର୍ବଳ ସନ୍ତାନ, ଏତେ ବଡ଼ ଦୁଃସାହସ କରିବାର ଶକ୍ତି ଅଛି ମୋର ?

କିଏ କହୁଛି ତୁ ମୋର ଦୁର୍ବଳ ସନ୍ତାନ ? ତୁ ପରା ମୋର ସବୁଠାରୁ ବଳବାନ ପୁଅ । ସେଠି ଯିଏ ବସିଛି, ସେ କିଏ କି ? ମୁଁ ପରା ! ତୁ ମୋ କୋଳରେ ବସିବୁ ନାହିଁ ? ଏହା ତ ଅତି ସହଜ ଅବସ୍ଥା । ଏଥିରେ ଦୁଃସାହସ କଅଣ ରହିଲା ?

''ନିବିଡ଼ ଆଁଧାରେ ତୋର ଚମକେ ଅରୂପ ରାଶି;
ତାଇ ଯୋଗୀ ଧ୍ୟାନ ଧରେ ହୟେ ଗିରି-ଗୁହାବାସୀ ।''

ଠିକ୍ କଥା । ମା ତ ନିଜେ ବସି ରହିଛନ୍ତି ! ସଙ୍ଗେ ସଙ୍ଗେ ସମସ୍ତ ଦେହ-ପ୍ରାଣ ଅନନ୍ତ ଦୈବ-ବଳରେ ବଳୀୟାନ ହୋଇ ଉଠିଲା । ରମଣୀର କୋଳରେ ବସିଯାଇ ସମାଧିସ୍ଥ ହୋଇଗଲା ଗଦାଧର ।

ବ୍ରାହ୍ମଣୀ କହିଲା, 'ପରୀକ୍ଷାରେ ପାଶ୍ କରିଛ ।'

ଆଉ ଦିନେ ମଲା ମଣିଷର ଖପୁରିରେ ମାଛ ରାନ୍ଧିଲା ଭୈରବୀ । ଜଗଦମ୍ବାଙ୍କୁ ତର୍ପଣ କଲା । ଗଦାଧରକୁ ସେହି ମାଛ ଖାଇବାକୁ କହିଲା । ନିର୍ବିକାର ଭାବେ ଖାଇଦେଲା ଗଦାଧର ।

ତା'ପରେ ଆଉ ଦିନେ ଯାହା ହେଲା ତାହାର କଳ୍ପନା ମଧ୍ୟ ଭୟଙ୍କର । କେଉଁଠାରୁ କେଜାଣି, ଗଳିତ ନର-ମାଂସ ସଂଗ୍ରହ କରି ଆଣିଲା ଭୈରବୀ । ଦେବୀଙ୍କୁ ତର୍ପଣ କରି ସାରି ଗଦାଧରକୁ କହିଲା, 'ଏହି ମାଂସ ଜିଭରେ ଲଗାଅ ।'

'ଅସମ୍ଭବ ! ସେ କାମ ମୋ ଦେଇ ହୋଇପାରିବ ନାହିଁ ।' ପ୍ରତିବାଦ ଜଣାଇଲା ଗଦାଧର ।

'କାହିଁକି ? ଘୃଣା ଆସୁଛି ? କୌଣସି ଜିନିଷକୁ ଘୃଣା କରିବା ଠିକ୍ ନୁହେଁ । ଦେଖ, ମୁଁ ଖାଉଛି ।' କହି ସେହି ମାଂସରୁ ଖଣ୍ଡିଏ ନିଜ ପାଟିରେ ପକାଇ ଚୋବାଇବାକୁ ଲାଗିଲା ବ୍ରାହ୍ମଣୀ ।

'ଏଥର ତୁମେ ଖାଅ ।' କହି ଆଉ ଖଣ୍ଡିଏ ମାଂସ ଉଠାଇ ଗଦାଧରର ମୁହଁ ପାଖକୁ ନେଲା ।

ମା, ତୁ କହୁଛୁ ? ଖାଇବି ?

ଚାହୁଁ ଚାହୁଁ ସମଗ୍ର ଦେହ ପ୍ରାଣରେ ଚଣ୍ଡୀଙ୍କର ପ୍ରଚଣ୍ଡ ଉଦ୍ଦୀପନା ଜାତ ହେଲା । 'ମା ମା କହି ଭାବାବିଷ୍ଟ ହୋଇ ପଡ଼ିଲା ଗଦାଧର । ସଙ୍ଗେ ସଙ୍ଗେ ବ୍ରାହ୍ମଣୀ ତା' ପାଟି ଭିତରକୁ ମାଂସ ଖଣ୍ଡଟି ପୂରାଇ ଦେଲା ।

ଭୟ ନାହିଁ, ଲଜ୍ଜା ନାହିଁ, ଘୃଣା ନାହିଁ । ଗଦାଧର ତ୍ରିପାଶ ମୁକ୍ତ ।

ସର୍ବଶେଷ ତନ୍ତ୍ର ଆହୁରି ବାକି ରହିଛି । ଏଥର ଶିବ-ଶକ୍ତିଙ୍କର ଲୀଳା-ବିଳାସ ଦର୍ଶନ । ଏହା ହିଁ ବୀରାଚାରର ଶେଷ ସାଧନା ।

ଅଣୁ ମାତ୍ର ବିଚଳିତ ହେଲା ନାହିଁ ଗଦାଧର । ନିର୍ବିକଳ୍ପ ସମାଧିରେ ବୁଡ଼ିଯାଇ ବସି ରହିଲା ପ୍ରଶାନ୍ତ ଭାବରେ । ସମସ୍ତ ସ୍ତ୍ରୀତ୍ୱରେ ସେ ଦେଖୁଛି ମାତୃତ୍ୱ । ରମଣୀ ମାତ୍ରେ ହିଁ ମା । ମାତୃଭାବରେ ହିଁ ଆଦ୍ୟାଶକ୍ତିଙ୍କ ଅଧିଷ୍ଠାନ ।

ମାତୃଭାବ ହେଉଛି ନିର୍ଜ୍ଜଳା ଏକାଦଶୀ । ବିନ୍ଦୁ ମାତ୍ର ଭୋଗର ଗନ୍ଧ ନାହିଁ ସେଥିରେ । ଫଳ-ମୂଳ ଖାଇ ଏକାଦଶୀ ପାଳନ କରି ହୁଏ । ପୁରୀ ତରକାରୀ ଖାଇ ମଧ୍ୟ ହୋଇପାରେ । ସେଗୁଡ଼ିକ ବାମାଚାର । ବାମାଚାରରେ ଭୋଗର କଥା ଅଛି । ମାତ୍ର ଭୋଗ ଥିଲେ ହିଁ ଭୟ । ସନ୍ନ୍ୟାସୀର ଯଦି ଭୋଗ-ସ୍ପୃହା ରହେ ତେବେ ତାହାର ପତନ ଅନିବାର୍ଯ୍ୟ । ପାଟିର ଛେପ ତଳେ ପକାଇ ସାରି ପୁଣି ତାକୁ ତଳୁ ଉଠାଇ ଖାଇବା ଭଳି ।

'ମୋର ହେଲା ନିର୍ଜ୍ଜଳା ଏକାଦଶୀ । ସମସ୍ତ ସ୍ତ୍ରୀଲୋକ ମୋ ଆଖିରେ ମୂର୍ତ୍ତିମତୀ ମହାମାୟା' । କହିଲେ ଠାକୁର : 'ଏହି ମାତୃଭାବ ହିଁ ସାଧନାର ଶେଷ କଥା । ତୁମେ ମା, ମୁଁ ତୁମ

ସନ୍ତାନ - ଯା' ପରେ ଆଉ କଥା ନାହିଁ, ଏହା ଛଡ଼ା ଆଉ ସଂପର୍କ ନାହିଁ ।'

ଭୈରବୀ କହିଲା, 'ବାବା, ତୁମେ ଆନନ୍ଦାସନରେ ସିଦ୍ଧ ହୋଇ ଏଥର ଦିବ୍ୟ ଭାବରେ ପ୍ରତିଷ୍ଠିତ ହେଲ ।'

ଗଦାଧରର ଦେହରେ ଫୁଟି ଉଠିଲା ସାଧନା-ସମ୍ଭୂତ ଅପୂର୍ବ ରୂପ-କାନ୍ତି । ଶରୀର ଜ୍ୟୋତିର୍ମୟ । ଖରାରେ ଛିଡ଼ା ହେଲେ ଛାୟା ନାହିଁ । ସର୍ବାଙ୍ଗରେ ସୁଧାଂଶୁ -କାନ୍ତି । ସତେ ଯେପରି ଧବଳ ଗିରିଶିଖର ଉପରେ ପଦ୍ମାସନରେ ସମାସୀନ ଶିବ ।

'ମା, ବାହାରର ରୂପ ମୋର କଅଣ ହେବ ? ମୋତେ ଅନ୍ତରର ରୂପ, ଦେ । ସମସ୍ତ କୁରୂପ-ସୁରୂପରେ ତୋତେ ହିଁ ଯେମିତି ମୁଁ ଦେଖି ପାରେ ।'

ଦିନେ କାଳୀ ମନ୍ଦିର ଭିତରେ ବସି ପୂଜା କରୁଛି ଗଦାଧର । କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ମା'ଙ୍କ ମୂର୍ତ୍ତି ମନକୁ ଆଣିପାରୁ ନାହିଁ । ହଠାତ୍ ନଜର ପଡ଼ିଲା, ଘଟ ପାଖରୁ କିଏ ଜଣେ ଉଙ୍କିମାରି ଚାହୁଁଛି । କିଏ ? ଆରେ ! ଇଏ ତ ଜଣେ ସ୍ତ୍ରୀଲୋକ । ପତିତା ରମଣୀ । ଦକ୍ଷିଣେଶ୍ୱର ନଦୀ ଘାଟକୁ ସେ ଅନେକ ସମୟରେ ଗାଧୋଇବାକୁ ଆସେ । ଆଶ୍ଚର୍ଯ୍ୟ କଥା । ମା କଅଣ ଆଜି ପତିତା ବେଶରେ ପୂଜା ନେବାକୁ ଆସିଲେ ? 'ହଉ ମା, ତୋର ଆଜି ରମଣୀ ହେବାକୁ ମନ ବଳିଛି । ହଉ । ଭଲ ହେଲା । ତୋର ଯାହା ଇଚ୍ଛା ତୁ ସେଇଆ ହୋ; ସେଇ ରୂପରେ ତୁ ପୂଜା ନେ ।'

ଆଉ ଦିନେ ଥିଏଟର ଦେଖି ରାସ୍ତା ଦେଇ ଫେରୁଛନ୍ତି ଠାକୁର । ଗଣ-ମୋହିନୀଗଣ ବେଶ-ଭୂଷା ହୋଇ, ବେଣୀ ଝୁଲାଇ, କପାଳରେ ଟିପା ମାରି ବାରନ୍ଦାରେ ଛିଡ଼ା ହୋଇ ଧୂଆଁ ପିଉଛନ୍ତି । 'ମା ! ମା ଗୋ ! ତୁ ଏଠି ଏଇ ରୂପରେ ରହିଛୁ ?' କହି ଠାକୁର ପ୍ରଣାମ କଲେ ସେହି ଗଣିକାମାନଙ୍କୁ ।

ଜନନୀ, ଜାୟା, ଜନତୋଷିଣୀ- ସବୁ ସେହି ଜଗଦମ୍ବାଙ୍କର ଅଂଶ ।

ତୁମେ ମହାବିଦ୍ୟା । ମହାବିଦ୍ୟାରେ ମହା ବିଦ୍ୟା ଅଛି, ମହା ଅବିଦ୍ୟା ମଧ୍ୟ ଅଛି ।

ସେହିଭଳି ବେଦ-ବେଦାନ୍ତ ତୁ, ଅଟା-ତାମସା ଅଶ୍ଳୀଳ ଗୀତ ମଧ୍ୟ ତୁ ।

ମା, ତୁ ପଞ୍ଚାଶତ-ବର୍ଣ୍ଣ-ରୂପିଣୀ । ଯେଉଁ ସବୁ ବର୍ଣ୍ଣର ବିନ୍ୟାସରେ ବେଦ-ବେଦାନ୍ତ ହୋଇଛି, ସେହି ସବୁ ବର୍ଣ୍ଣ ତ ରହିଛି ଅଶ୍ଳୀଳ ଗୀତରେ । ବେଦ-ବେଦାନ୍ତର କ-ଖ ଗୋଟାଏ ପ୍ରକାର, ଅଶ୍ଳୀଳ ଗୀତର କ-ଖ ଆଉ ଗୋଟାଏ ଭିନ୍ନ ପ୍ରକାର, ଏମିତି ତ କେବେ ହୋଇ ନପାରେ । ଭଲ-ମନ୍ଦ, ପାପ-ପୁଣ୍ୟ, ଶୁଚି-ଅଶୁଚି - ସର୍ବତ୍ର ତୋର ଅଧିଷ୍ଠାନ ।

ସର୍ବତ୍ର ସମବୁଦ୍ଧି । ସମସ୍ତଙ୍କ ପାଇଁ ସ୍ଥାନ, ସମସ୍ତଙ୍କ ପାଇଁ ମାନ, ସମସ୍ତଙ୍କ ପାଇଁ ଆଶ୍ୱାସ । ପାପୀ-ତାପୀ, ଆର୍ତ୍ତ-ପୀଡ଼ିତ, ଅବର-ଅଧମ— କେହି ହେଲେ ତୁମେ ହେୟ ନୁହଁ, ଅପାଙ୍କ୍ତେୟ ନୁହଁ; ନିଃସ୍ୱ-ନିରାଶ୍ରୟ ନୁହଁ । ଯେଉଁ ଅବସ୍ଥାରେ ଅଛ ସେହି ଅବସ୍ଥାରେ ଚାଲି ଆସ । ସନ୍ତାନ ଯେଉଁ ଅବସ୍ଥାରେ ଥାଉ ନା କାହିଁକି, ତା' ପାଇଁ ସ୍ଥାନ ଅଛି ମା'ର କୋଳରେ । ସେ ଯଦି ଆମ ମା, ତାଙ୍କ ପାଖରେ ଲଜ୍ଜା କରିବାର କଅଣ ଅଛି ? ଭୟ କରିବାର କଅଣ ଅଛି ? ଆଉ, ଯିବାରେ ଆମ ଆଡୁ ଟିକିଏ ଡେରି ଯଦି ବା ହୋଇଯାଇଥାଏ, ସେଥିଲାଗି କ'ଣ ମା ବି ଡେରି କରିବେ ?

ଭୈରବୀ କହିଲା, 'ଟିକିଏ କାରଣ ଖାଅ ।'

କାରଣ ? ଜଗତ୍-କାରଣ ଈଶ୍ୱରଙ୍କ ଅମୃତ ପାନ କରିବାକୁ ଯାଉଛି; ତା' ତୁଳନାରେ ଏଇ ତୁଚ୍ଛ ମଦିରା !

ମୁଗ୍ଧ ବିସ୍ମୟରେ ଭୈରବୀ ଚାହିଁଲା ଗଦାଧରକୁ । କହିଲା, 'ମୁଁ ସିଦ୍ଧି ଲାଭ କରିଛି ବୀର ଭାବର ସାଧନା କରି । ତୁମେ କିନ୍ତୁ ହୋଇଛ, ଦିବ୍ୟଭାବର ଅଧିକାରୀ । ତୁମେ ମୋ ଠାରୁ ଅନେକ ଉଚ୍ଚରେ ।'

ଦିବ୍ୟ ଭାବ ? - ହସି ଦେଲା ଗଦାଧର ।

ତୁମେ ଜଳ ସ୍ପର୍ଶ ନ କରି ମଧ ମୀନ ଆହରଣ କରିପାରିଛ । ତୁମର ଦେହବୋଧ ନାହିଁ । ତୁମ ସୁଷୁମ୍ନା ଦ୍ୱାର ସଂପୂର୍ଣ୍ଣ ଭାବରେ ଖୋଲିଯାଇଛି । ତୁମେ ବାଳକ-ସ୍ୱଭାବ ପ୍ରାପ୍ତ ହୋଇଛ । ସକଳ ବସ୍ତୁରେ ତୁମର ଅଦ୍ୱୈତ-ବୁଦ୍ଧି ଆସି ସାରିଛି । ଗଙ୍ଗା-ଜଳ ଓ ନର୍ଦ୍ଦମା ଜଳ ତୁମ ପାଖରେ ସମାନ । ତୁଳସୀ-ସୁଜନାରେ ଭେଦ-ବିଚାର ନାହିଁ । ଏଥର ମୋତେ ତୁମ ଶିଷ୍ୟା କର । ମୋତେ ବୀରରୁ ଦିବ୍ୟକୁ ନେଇ ଚାଲ । ନେଇ ଚାଲ ରୂପରୁ ଅରୂପକୁ, କ୍ରିୟାରୁ ସତ୍ତାକୁ, ଦୀପ୍ତିରୁ ତୃପ୍ତିକୁ -

ତୁମେ ପରା ଯୋଗେଶ୍ୱରୀ ? ଯୋଗମାୟାଙ୍କ ଅଂଶ ? ତୁମର ପୁଣି ଅପୂର୍ଣ୍ଣ କଅଣ ?

କହି ପାରିବି ନାହିଁ । ମାତ୍ର ତୁମ ଭିତରେ ବର୍ତ୍ତମାନ ଯେଉଁ ଶାନ୍ତି, ଯେଉଁ ବିଶୁଦ୍ଧି, ଯେଉଁ ସ୍ୱଚ୍ଛତା ଦେଖିବାକୁ ପାଉଛି, ତାହା ମୋର ଅନଧିଗମ୍ୟ । ତେଣୁ ମନେ ହେଉଛି, ମୁଁ ଅପୂର୍ଣ୍ଣ, ଅଶକ୍ତ । ତୁମେ ଅଗ୍ନିରୁ ଚାଲି ଆସିଛ ଜ୍ୟୋତିକୁ, ଝଡ଼ରୁ ନୀଳିମାକୁ, କେନ୍ଦ୍ରରୁ ପ୍ରସାରକୁ । ମୁଁ ତୁମ ଶିଷ୍ୟା ହେବି । ମୁଁ ଚାହେଁ ସେହି ଶାନ୍ତି, ସେହି ବ୍ୟାପ୍ତି, ସେହି ନୀରବତା । ସେହି ଦିବ୍ୟ ଚେତନା ।

ଗଦାଧର ହସିଲା । କହିଲା, 'ଯିଏ ଗୁରୁ ସିଏ ପୁଣି ଶିଷ୍ୟ । ଯିଏ ମା ସେହି ପୁଣି ସନ୍ତାନ । ଯେ ଭଗବାନ ସେ ପୁଣି ଭକ୍ତ ।'

ଭୈରବୀ ଆସି ବସିଲା ଗଦାଧରର ଛାୟାଶ୍ରୟରେ ।

ତା'ର ଶେଷ ତପସ୍ୟା ଆହୁରି ବାକି ରହିଛି ।

## ୨୪

ତନ୍ତ୍ରରେ ସିଦ୍ଧି ଲାଭ କଲ, ଏଥର କିଛି ଗୋଟାଏ କରି ଦେଖାଅ । ପାହାଡ଼ଟାକୁ ଟଳେଇ ଦିଅ, ନ ହେଲେ ଶୁଖିଲା ନଈରେ ଜୁଆର ଆଣି ଦିଅ ।

କିଛି କରିବ ନାହିଁ ? ଚୁପ୍ ଚାପ୍ ବସି ରହିଥିବ ? ତା' ହେଲେ କେମିତି ଜାଣିବି ତୁମେ ଗୋଟାଏ ମସ୍ତବଡ଼ ସାଧୁ ହୋଇଯାଇଛ ?

ହୃଦୟ ବାରମ୍ୱାର କହିବାକୁ ଲାଗିଲା, 'ମା'ଙ୍କ ପାଖକୁ ଯାଇ କିଛି ଗୋଟାଏ କ୍ଷମତା ମାଗି ଆଣ ।'

କ୍ଷମତାରୁ କଅଣ ମିଳିବ ? ମା'ଙ୍କୁ ଦେଖି ପାରୁଛି, ଟାଣି ଆଣି ପାରୁଛି ପାଖକୁ, ଏଇଟା କ'ଣ ଯଥେଷ୍ଟ କ୍ଷମତା ନୁହେଁ ?

ଏ କ୍ଷମତାକୁ ତ ଆଉ ପାଞ୍ଚ ଜଣ ଦେଖିପାରୁ ନାହାନ୍ତି ! ଯେଉଁ କାମ ଦେଖିଲେ ସମସ୍ତେ

ଆଶ୍ଚର୍ଯ୍ୟ ହେବେ ସେହି ଭଳି କିଛି ଗୋଟାଏ କର ।

ତନ୍ତ୍ର ବଳରେ ଅଷ୍ଟସିଦ୍ଧି* ଲାଭ ହୋଇଛି ଗଦାଧରର । ସେହି କ୍ଷମତା ସେ ଏବେ କାମରେ ଲଗେଇବ କି ? ତାଟକା ହୋଇଯିବେ ସମସ୍ତେ ?

ମା'ଙ୍କ ପାଖକୁ ଗଲା ପଚାରିବା ପାଇଁ । ମୁହୂର୍ତ୍ତକ ଭିତରେ ମା ଦେଖେଇଦେଲେ ସେହି ସବୁ ସିଦ୍ଧି ଘୃଣ୍ୟ ଆବର୍ଜନା । ବିଷ-କଳୁଷ । ଭଗବାନଙ୍କୁ ପାଇବା ବାଟରେ ଦୁର୍ଲଂଘ୍ୟ ପ୍ରତିବନ୍ଧକ । ଥରେ ଯଦି ସେଇ ପ୍ରଲୋଭନରେ ପଡ଼, ମାଟି ହୋଇଯିବ ସମସ୍ତ ତପସ୍ୟାଫଳ । ଦେଉଳିଆ ହୋଇଯିବ ଦି'ଟା ଦିନରେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କଅଣ କହିଥିଲେ ? କହିଥିଲେ, ଅଷ୍ଟସିଦ୍ଧି ମଧ୍ୟରୁ କୌଣସି ଗୋଟିଏ ବି ଯଦି ତୁମର ଥାଏ, ତେବେ ତୁମ ଶକ୍ତି ଅବଶ୍ୟ ବଢ଼ିବ, କିନ୍ତୁ ମୋତେ ପାଇବ ନାହିଁ । ସିଦ୍ଧି-ବଳ ଥିବା ଯାଏ ମାୟା ଯିବ ନାହିଁ; ପୁଣି ମାୟା ଥିବା ଯାଏ ଅହଂକାର । ଅହଂକାର ଥିବା ପର୍ଯ୍ୟନ୍ତ ଭଗବାନଙ୍କ ବାଟରେ ଆଗେଇ ପାରିବ ନାହିଁ । ଛୁଞ୍ଚିର କଣାରେ ସୂତା ପଶେଇବ, ସୂତାରେ ଆଂଶୁ ଥିଲେ ଯିବ ?

ତା'ଛଡ଼ା କେଡ଼େ ହୀନ ବୁଦ୍ଧି ଏଇଟା ! ମୁଁ ସିଦ୍ଧି ଲାଭ କରିଛି, ଆସ ମୋ ପାଖକୁ, ତୁମକୁ ମୋକଦ୍ଦମାରେ ଜିତେଇ ଦେବି, ଧନ-ଦଉଲତ କରେଇ ଦେବି, ରୋଗ ଭଲ କରି ଦେବି । ଛିଃ ! ଏଇଥିପାଇଁ ଏତେ ସାଧନା !

ବଡ଼ ଲୋକ ପାଖରେ ପହଞ୍ଚି ଯେଉଁ ଲୋକ ହାତ ପତେଇ କିଛି ମାଗେ, ସେ ଆଉ ଆଗ ଭଳି ସମ୍ମାନ ପାଏ ନାହିଁ । ତାକୁ ଆଉ ଡାକି ନେଇ ନିଜ ଗାଡ଼ିରେ ବସାନ୍ତି ନାହିଁ ବାବୁ । ଯଦି ବା ସେ ଗାଡ଼ିରେ ଉଠେ, ତାକୁ ନିଜ ପାଖରେ ବସିବାକୁ ଦିଅନ୍ତି ନାହିଁ । ମନଖୋଲା କଥା ବି ହୁଅନ୍ତି ନାହିଁ ତା' ସହିତ ।

ଯଦି ସିଦ୍ଧିର କରାମତି ଦେଖେଇବା ଆଡ଼କୁ ମନ ବଳେଇବ, ଭଗବାନ କହିବେ, ବେଶ ତ, ଆଉ କଅଣ ଦରକାର ତୋର ? ବହୁତ ପାଇଗଲୁ । ସେଇଆକୁ ନେଇ ଧୋଇ ଖାଉଥା । ସେତିକିରେ ରହ । ସାବି ବୋଲି ଯେଉଁ ସ୍ତ୍ରୀ ଲୋକଟା, ଜାଣି ନ ତା' କଥା ?

ସମସ୍ତେ କହୁଚନ୍ତି, ସାବିର ଏବେ ଭଲ ସମୟ ଆସିଛି । ଗୋଟାଏ ଘର ନିଜ ନାଁରେ ଭଡ଼ା ନେଇଛି । ବାସନ-କୁସନ କିଣିଛି, ଖଟ, ବିଛଣା, ମସିଣା, ତକିଆ ସବୁ କିଣିଛି, କେତେ ଲୋକ ଆସୁଛନ୍ତି, ଯାଉଛନ୍ତି । ସୁଖରେ ଅଛି । ଏ କଥାର ଅର୍ଥ, ଆଗରୁ ସେ ଜଣେ ଭଦ୍ରଲୋକଙ୍କ ଘରେ ଦାସୀ କାମ କରୁଥିଲା, ଏବେ ବଜାର ଉପରକୁ ଆସି ବ୍ୟବସାୟ ମେଲି ଦେଇଛି । ଅର୍ଥାତ୍, ସାମାନ୍ୟ ଜିନିଷ ଲୋଭରେ ନିଜର ସର୍ବନାଶ କରୁଛି । ଯେଉଁ ଦେହ-ମନ-ଆତ୍ମାକୁ ଆଧାର କରି

---

* ଅଷ୍ଟ ସିଦ୍ଧି -ଯୋଗଲବ୍ଧ ଅଷ୍ଟ ଐଶ୍ୱର୍ଯ୍ୟ ବା ବିଭୂତି, ଯଥା - ୧) ଅଣିମା - ଦେହକୁ ଅଣୁ ପ୍ରମାଣ କ୍ଷୁଦ୍ର କରାଇ ସର୍ବତ୍ର ବିଚରଣ କରିବାର ସାମର୍ଥ୍ୟ (୨) ଲଘିମା - ଦେହକୁ ଇଚ୍ଛାନୁଯାୟୀ ଲଘୁ ବା ସୂକ୍ଷ୍ମ କରାଇବାର ଶକ୍ତି (୩) ବ୍ୟାପ୍ତି - ବିସ୍ତୃତି, ଅର୍ଥାତ୍ ସର୍ବତ୍ରାବସ୍ଥିତି ଗୁଣ (୪) ପ୍ରାକାମ୍ୟ- ଯଥେଚ୍ଛା ଭୋଗ କରିବାର ଶକ୍ତି (୫) ମହିମା - ମହାତ୍ମ୍ୟ ବା ଗୌରବ (୬) ଈଶିତ୍ୱ - ସର୍ବପ୍ରାଧାନ୍ୟ (୭) ବଶିତ୍ୱ- ବଶୀକରଣ କ୍ଷମତା (୮) କାମାବସାୟିତା- ନିଜର ସମସ୍ତ ଇଚ୍ଛା ବା କାମନାକୁ ସଫଳ କରାଇବାର କ୍ଷମତା; ଇନ୍ଦ୍ରିୟ ନିଗ୍ରହ ଶକ୍ତି ।

ଭଗବାନଙ୍କୁ ଲାଭ କରି ପାରନ୍ତି ସେହି ଦେହ-ମନ- ଆତ୍ମାକୁ ତୁଚ୍ଛ ଟଙ୍କା-ପଇସା ପାଇଁ, ତୁଚ୍ଛ ଲୋକମାନ୍ୟ ପାଇଁ, ତୁଚ୍ଛ ଦେହ ସୁଖ ପାଇଁ ବିକ୍ରି କରି ଦେବି ?

'ତେବେ କଅଣ ମାଗିବ ମା'ଙ୍କୁ ?' ବିରକ୍ତ ହୋଇ ପଚାରିଲା ହୃଦୟ ।

'ମାଗିବି, କେବଳ କୃପା । କହିବି, ମୋତେ ଭକ୍ତି ଦିଅ । ଶୁଦ୍ଧା ଭକ୍ତି, ଅହେତୁକୀ ଭକ୍ତି ।'

ହଁ, ପ୍ରହ୍ଲାଦ ଯାହା କହିଥିଲା । ରାଜ୍ୟ ଚାହେଁ ନା, ଐଶ୍ୱର୍ଯ୍ୟ ଚାହେଁ ନା, କେବଳ ଚାହେଁ ହରିଙ୍କୁ ।

କିଛି ଚାହୁଁ ନ ଥିବ, ଅଥଚ ଭଲ ପାଉଥିବ- ଏହାରି ନାମ ଭକ୍ତି । ବଡ଼ ଲୋକ ଘରକୁ ନିତି ଦିନ ଯାଉଛ, କିଛ ମାଗୁ ନାହଁ, ପଚାରିଲେ କହୁଛ, କିଛି ନୁହଁ, ଆଜ୍ଞା, ଖାଲି ଆପଣଙ୍କୁ ଟିକିଏ ଦେଖିବାକୁ ଆସିଛି । ଏଇଟା ହେଉଛି ନିଷ୍କାମ ଭକ୍ତି । ନାରଦଙ୍କର ଯେଉଁ ପ୍ରକାର ଭକ୍ତି ଥିଲା । ଚାରିଆଡ଼େ ବୁଲୁଥାଆନ୍ତି, ବୀଣା ବଜାଇ ହରିନାମ ଗାନ କରୁଥାଆନ୍ତି ।

ମନ୍ଦିରକୁ ଯାଇ ଗଦାଧର ମା'ଙ୍କ ପାଦ-ପଦ୍ମରେ ଅଞ୍ଜଳି-ଅଞ୍ଜଳି ଫୁଲ ଦେଲା । ଏହି ନିଅ ମା, ତୁମ ଜ୍ଞାନ, ନିଅ ତୁମ ଅଜ୍ଞାନ, ମୋତେ ଶୁଦ୍ଧା ଭକ୍ତି ଦିଅ । ନିଅ ତୁମ ଶୁଚି, ନିଅ ତୁମ ଅଶୁଚି, ମୋତେ ଶୁଦ୍ଧା ଭକ୍ତି ଦିଅ । ନିଅ ତୁମ ପୁଣ୍ୟ, ନିଅ ତୁମ ପାପ, ମୋତେ ଶୁଦ୍ଧା ଭକ୍ତି ଦିଅ । ତୁମ ଧର୍ମ ନିଅ, ତୁମ ଅଧର୍ମ ନିଅ, ମୋତେ ଶୁଦ୍ଧା ଭକ୍ତି ଦିଅ—'

ଗୋଟାଏ ନେଲେ ଆଉ ଗୋଟାଏ ବି ନେବାକୁ ପଡ଼ିବ । ମା ଯଦି ଜ୍ଞାନଟାକୁ ନିଅନ୍ତି ତେବେ ଅଜ୍ଞାନଟା ମଧ୍ୟ ନେବେ । ପୁଣ୍ୟଟାକୁ ନେଲେ ପାପଟା ମଧ୍ୟ ନେବେ । ଅନେକକୁ ବାଦ ଦେଇ ଏକ ନାହିଁ । ଅନ୍ଧକାର ବିନା ଆଲୋକ ନାହିଁ । ଅହଲ୍ୟାଙ୍କର ଶାପ ମୋଚନ ପରେ ଶ୍ରୀରାମଚନ୍ଦ୍ର ତାଙ୍କୁ କହିଲେ, ବର ପ୍ରାର୍ଥନା କର । ଅହଲ୍ୟା କହିଲେ, ଯଦି ବର ଦେବାକୁ ଅଭିଳାଷ, ତେବେ ଏହି ବର ଦିଅ, ଯଦି ପଶୁ ରୂପରେ ବି ଜନ୍ମଲାଭ କରେଁ, ତୁମରି ପାଦପଦ୍ମରେ ମନ ରହିଥିବ -'

ମୁଁ ସିଦ୍ଧି ଚାହେଁ, ମାତ୍ର ସିଦ୍ଧିର କରାମତି ଚାହେଁ ନା । ମୋ ସିଦ୍ଧି ଦେହରେ ବୋଳି ହେଲେ ନିଶା ଧରିବ ନାହିଁ, ଖାଇବାକୁ ପଡ଼ିବ ।

ଭୈରବୀର ସେହି ଶିଷ୍ୟ ଦୁଇ ଜଣ, ଚନ୍ଦ୍ର ଏବଂ ଗିରିଜା, ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଛନ୍ତି । ଦୁଇ ଜଣ ଯାକ ସିଦ୍ଧିର କରାମତି ଦେଖେଇବାରେ ବ୍ୟସ୍ତ । ରକମ ରକମ ଭେଲ୍‌କି - ବାଜି ।

ଏଇଟା ହେଉଛି ଅହଂକାର । ଗୋଟାଏ ପ୍ରକାର ମାୟା । ଖଣ୍ଡିଏ ଭସା ମେଘ ଭଳି । ସାମାନ୍ୟ ମେଘ-ଖଣ୍ଡ ଯୋଗୁଁ ସୂର୍ଯ୍ୟକୁ ଦେଖି ହୁଏ ନାହିଁ । ଠିକ୍ ସେହିଭଳି, ଏଇ ଅହଂ-ବୁଦ୍ଧି ହେତୁ ହୋଇ ପାରେ ନା ଈଶ୍ୱର-ଦର୍ଶନ ।

ଅହଂକାର ନ ଛାଡ଼ିଲେ ଈଶ୍ୱରଙ୍କୁ ଧରି ହୁଏ ନାହିଁ । ଭାର ନିଅନ୍ତି ନାହିଁ ଈଶ୍ୱର ।

ଘରେ ଭୋଜି-ଭାତ ଭଳି କିଛି ଗୋଟାଏ ବଡ଼ କାମ ହେଉଥିଲେ ଜଣେ ଲୋକଙ୍କୁ ଭଣ୍ଡାର-ଘରର ଦାୟିତ୍ୱ ଦିଆଯାଇଥାଏ । ସେ ଲୋକ ଥିବା ପର୍ଯ୍ୟନ୍ତ ଗୃହକର୍ତ୍ତା ନିଜେ ଆସନ୍ତି ନାହିଁ ସେ ଘରକୁ । ଯେତେବେଳେ ସରଘରିଆ ନିଜେ ଇଚ୍ଛା କରି ଦାୟିତ୍ୱରୁ ଓହରି ଯାଏ,

ସେତିକିବେଳେ କର୍ତ୍ତା ନିଜେ ଆସି ଭଣ୍ଡାର ଘରେ ତାଲା ପକାନ୍ତି, ସବୁ କଥା ନିଜେ ବୁଝନ୍ତି ।

ତେଣୁ କ୍ଷମତା ନିଜ ହାତରେ ରଖ ନାହିଁ, ଛାଡ଼ିଦିଅ ସେହି ସର୍ବଶକ୍ତିମାନଙ୍କ ହାତରେ ।

ଥରେ ବୈକୁଣ୍ଠପୁରରେ ନାରାୟଣ ବିଶ୍ରାମ କରୁଥିଲେ, ଲକ୍ଷ୍ମୀ ପଦସେବା କରୁଥିଲେ । ହଠାତ୍ ନାରାୟଣ ଉଠି ଛିଡ଼ା ହେଲେ । ଲକ୍ଷ୍ମୀ ପଚାରିଲେ, 'କଅଣ ହେଲା ? କୁଆଡ଼େ ଯିବ ?' ନାରାୟଣ କହିଲେ, 'ମୋର ଜଣେ ଭକ୍ତ ଭାରି ବିପଦରେ ପଡ଼ିଛି, ଯାଉଛି ତାକୁ ରକ୍ଷା କରିବା ପାଇଁ ।' କହି ବାହାରିଗଲେ । ମାତ୍ର ଖଣ୍ଡେ ବାଟ ଯାଇ ପୁଣି ଫେରି ଆସିଲେ । ଲକ୍ଷ୍ମୀ ପଚାରିଲେ, 'ଏତେ ଶୀଘ୍ର ଫେରି ଆସିଲ ଯେ ?' ନାରାୟଣ ହସିଲେ । କହିଲେ, 'ଭକ୍ତଟି ଭାବ-ବିହ୍ୱଳ ହୋଇ ବାଟ ଚାଲୁଥିଲା । ଧୋବା କେତେ ଜଣ ଲୁଗା କାଚି ଶୁଖେଇବା ପାଇଁ ରାସ୍ତା କଡ଼ରେ ତଳେ ମେଲେଇ ଦେଇଥିଲେ । ଭକ୍ତଟି ସେହି ଲୁଗା ମାଡ଼ି ପକାଇଲା । ଧୋବାମାନେ ହାଁ - ହାଁ କରି ତାକୁ ମାରିବା ପାଇଁ ଧାଇଁ ଆସିଲେ । ତାକୁ ରକ୍ଷା କରିବା ପାଇଁ ଯାଉଥିଲି ।' 'ତେବେ ଫେରି ଆସିଲ କାହିଁକି ?' ନାରାୟଣ କହିଲେ, 'ଦେଖିଲି, ଭକ୍ତଟି ନିଜେ ଧୋବାଙ୍କୁ ମାରିବା ପାଇଁ ତଳୁ ଢେଲା ଉଠାଉଛି । ତେଣୁ ମୁଁ ଆଉ ଗଲି ନାହିଁ ।'

ନିଜକୁ ନିଶ୍ଚିହ୍ନ କରି ସମର୍ପଣ କରିଦିଅ । କିଛି ରଖିବ ନାହିଁ ନିଜ ପାଇଁ । ଏପରିକି ନିଜକୁ ଦେଖେଇ 'ମୁଁ' ବୋଲି କହିବ ନାହିଁ, କହିବ 'ତୁମେ' ।

ଚନ୍ଦ୍ର 'ଗୁଟିକା-ସିଦ୍ଧି' ନାମକ ଗୋଟିଏ ସିଦ୍ଧି ଅର୍ଜନ କରିଥିଲା । ତା' ପାଖରେ ଗୋଟିଏ ମନ୍ତ୍ରପୂତ ଗୁଟିକା ବା ଗୁଟି ଥିଲା । ତାହା ଧାରଣ କରିବା ମାତ୍ରେ ସେ ଅଦୃଶ୍ୟ ବା ଅଶରୀରୀ ହୋଇଯାଇ ପାରୁଥିଲା । ଅଦୃଶ୍ୟ ରୂପରେ ନିଜ ଇଚ୍ଛା ଅନୁସାରେ ଯେ କୌଣସି ସ୍ଥାନକୁ ଯାଇ ପାରୁଥିଲା । ସ୍ଥାନଟି ଯେତେ ଦୁର୍ଗମ ବା ଦୁଷ୍ପ୍ରବେଶ୍ୟ ହେଲେ ମଧ୍ୟ ତା' ପାଇଁ କିଛି ଅସୁବିଧା ହେଉ ନଥିଲା । ଏହି ଶକ୍ତି ଅର୍ଜନ କରି ଚନ୍ଦ୍ରର ମନକୁ ଅହଂକାର ଆସିଲା । ଗର୍ବରେ ଫାଟି ପଡୁଥିଲା । ଦିନେ ଦେଖିଲା ଗୋଟାଏ ଦୁଇ ମହଲା କୋଠା ଘରର ବାରନ୍ଦା ଉପରେ ଛିଡ଼ା ହୋଇଛି ଅପୂର୍ବ ସୁନ୍ଦରୀ ଯୁବତୀଟିଏ । ରୂପ ଦେଖି ମୋହିତ ହୋଇଗଲା ଚନ୍ଦ୍ର । ଭାବିଲା, ତା' ପାଖକୁ ଯିବ ଅଶରୀରୀ ରୂପରେ । କବାଟ ଝରକା ବନ୍ଦ ଥିଲେ ବି କୌଣସି ଗୋଟାଏ ଛିଦ୍ର ପଥରେ ସେ ପଶି ଯାଇ ପାରିବ ତନ୍ତ୍ରବଳରେ । ନିଜ ସିଦ୍ଧିର ବାହାଦୁରୀ ଦେଖାଇବାକୁ ଯାଇଚନ୍ଦ୍ର ଆସକ୍ତ ହୋଇ ପଡ଼ିଲା ସେହି ଧନୀ-କନ୍ୟା ପ୍ରତି । ଫଳରେ ବହୁ ସାଧନା-ଅର୍ଜିତ-ସିଦ୍ଧି କ୍ଷୟ ପାଇ ସେ ଧୀରେ ଧୀରେ ଶକ୍ତିହୀନ ହେବାକୁ ଲାଗିଲା । ଫଳରେ ଯେଉଁ ଶକ୍ତିକୁ ନେଇ ସେ ଏତେ ଆସ୍ଫାଳନ କରୁଥିଲା ସେ ଶକ୍ତି ସେ ସଂପୂର୍ଣ୍ଣ ରୂପେ ହରାଇ ବସିଲା । ଫତୁର ହୋଇଗଲା ।

ଆଉ ଗିରିଜା ?

ଦିନେ ଠାକୁର ଯାଇଥିଲେ ଶମ୍ଭୁ ମଲ୍ଲିକଙ୍କ ଉଦ୍ୟାନକୁ । ଗିରିଜା ସାଙ୍ଗରେ ଯାଇଥିଲା । କଥା କହୁ କହୁ କେତେବେଳେ ସଂଜ ଗଡ଼ି ଯାଇ ରାତି ପହରେ ହୋଇଗଲାଣି, ଖିଆଲ ନାହିଁ । ଫେରିଲା ବେଳକୁ ଭୀଷଣ ଅନ୍ଧାର । ମୁହଁକୁ ମୁହଁ ଦିଶୁ ନାହିଁ । ଈଶ୍ୱର ସମ୍ବନ୍ଧୀୟ ଆଲୋଚନାରେ ଏତେ ତନ୍ମୟ ହୋଇ ରହିଥିଲେ ଯେ ଆସିଲା ବେଳେ ଲଣ୍ଠନଟିଏ ମାଗି ଆଣିବା କଥା ମନେ ପଡ଼ିଲା ନାହିଁ । ଏବେ ଯିବେ କିପରି ? ପାହୁଣ୍ଡେ ଚାଲନ୍ତି, ଥରେ ଝୁଣ୍ଟି ପଡ଼ନ୍ତି । ଆଉ ପାହୁଣ୍ଡେ

ଗଲା ବେଳକୁ ଦିଗ-ଭ୍ରମ ହୋଇ ଯାଉଛି । ବିଷମ ପରିସ୍ଥିତି । ଏବେ କରିବି କଅଣ ? କେମିତି ଯିବି ଏଇ ଅନ୍ଧାର ଭିତରେ ।

'ରୁହ, ମୁଁ ଆଲୁଅ ଦେଖାଉଛି ।'

ଗିରିଜା ସିଦ୍ଧି ଲାଭ କରିଛି । ସେ ନିଜ ପିଠିରୁ ଆଲୁଅ ବାହାର କରିପାରେ ।

କାଳୀ ମନ୍ଦିର ଆଡ଼କୁ ପିଠି କରି ଠିଆ ହେଲା ଗିରିଜା । ତା' ପିଠିରୁ ଆଲୋକ-ଛଟା ବାହାରି କାଳୀ ମନ୍ଦିରର ଫାଟକ ପର୍ଯ୍ୟନ୍ତ ବାଟ ପରିଷ୍କାର ଦେଖାଗଲା । ସେହି ଆଲୁଅରେ ବାଟ ଦେଖି ଚାଲି ଆସିଲେ ଠାକୁର ।

କିନ୍ତୁ ସେତିକି । ଗିରିଜାର ଆଉ କିଛି ହେଲା ନାହିଁ । ଲଣ୍ଠନ ହୋଇ ରହିଗଲା, ସୂର୍ଯ୍ୟ ହୋଇପାରିଲା ନାହିଁ ।

ଭବତାରିଣୀ ସେମାନଙ୍କର ସମସ୍ତ ଶକ୍ତି ଠାକୁରଙ୍କ ଦେହକୁ ଟାଣି ଆଣିଲେ । ସେମାନଙ୍କର ମୋହ ଭାଙ୍ଗିଲା । ମନରୁ ଅଭିମାନ ପୋଛି ଦୀନ ଭାବରେ ସେମାନେ ପୁଣି ବସିଲେ ଯୋଗାସନରେ ।

ସେଗୁଡ଼ାକରେ ଅଛି କଅଣ ? ସେ ଗୁଡ଼ାକ ହେଉଛି ତୁଚ୍ଛା ବନ୍ଧନ । ମନକୁ ଟାଣି ରଖେ । ଆଗକୁ ଯିବାକୁ ଦିଏ ନାହିଁ । ଜାଣିନୁ, ସେଇ ପଇସାକ'ର ସିଦ୍ଧି ଗପ ?

ଦି' ଭାଇ । ବଡ଼ ଭାଇ ସନ୍ନ୍ୟାସୀ ହୋଇ ସଂସାର ଛାଡ଼ିଛି । ସାନ ଭାଇ ଅଳ୍ପ କିଛି ପାଠ-ଶାଠ ପଢ଼ି କଷ୍ଟେ ମଷ୍ଟେ ସଂସାର ଚଳାଉଛି । ବାର ବର୍ଷ ପରେ ସନ୍ନ୍ୟାସୀ ଫେରିଲା ଘରକୁ, ସାନ ଭାଇର ଜମିବାଡ଼ି, ଚାଷବାସ କିପରି କଅଣ ଚାଲିଛି ଦେଖିଯିବା ପାଇଁ । ସାନ ଭାଇ ପଚାରିଲା, 'ଏତେଦିନ ଯେ ସନ୍ନ୍ୟାସୀ ହୋଇ ରହିଲ, ହେଲା କଅଣ ତୁମର ? ପାଇଲ କଅଣ ?'

'ଦେଖିବୁ ? ଆ ମୋ ସଙ୍ଗରେ ।'

ଦି' ଭାଇ ଆସିଲେ ନଈ କୂଳକୁ । 'ଦେଖ', କହି ବଡ଼ ଭାଇ ନଈର ଜଳ ଉପର ଦେଇ ପାଦରେ ଚାଲି ଚାଲି ଚାଲିଗଲା ଆର ପାଖକୁ । ନଈ ଘାଟରେ ନୌକା ଥିଲା । ସାନ ଭାଇ ନାଉରିଆକୁ ପଇସାଟିଏ ଦେଇ ନାଆରେ ବସି ନଈ ପାର ହୋଇଗଲା । ବଡ଼ ଭାଇ କହିଲା, 'ଦେଖିଲୁ ତ, ନଈ ଉପର ଦେଇ କେମିତି ଚାଲି ଚାଲି ଚାଲିଆସିଲି ?' ସାନ ଭାଇ କହିଲା, 'ତୁମେ ବି ତ ଦେଖିଲ, ମୁଁ କେମିତି ମାତ୍ର ପଇସାଟିଏ ଦେଇ ନଦୀ ପାର ହେଲି ? ବାରବର୍ଷ ପରିଶ୍ରମ କରି ତୁମେ ଯାହା ପାଇଛ, ମୁଁ ତାହା ପାଉଛି ବିନା ପରିଶ୍ରମରେ, ମାତ୍ର ପଇସାଟିଏ ଦେଇ । ତା'ହେଲେ ତୁମେ ବାର ବର୍ଷର ସାଧନାରେ ଯେଉଁ ସିଦ୍ଧି ପାଇଛ ତାହାର ଦାମ୍ କେତେ ?- ପଇସା- ଏ ମାତ୍ର !

ଆଉ ଜଣେ ଯୋଗୀ ଯୋଗ ସାଧନା ଦ୍ୱାରା ବାକ୍‌ସିଦ୍ଧି ଲାଭ କରିଛି । ଯଦି କାହାକୁ କହି ପକାଏ 'ମର୍', ସେ ସଙ୍ଗେ ସଙ୍ଗେ ସେଇଠି ପଡ଼ି ମରିଯିବ । ପୁଣି ଯଦି କହେ 'ବଞ୍ଚ୍', ମଲା ଲୋକଟି ପୁଣି ବଞ୍ଚି ଉଠିବ । ଦିନେ ଦେଖିଲା, ଜଣେ ସାଧୁ ଏକ ଲୟରେ ବସି ଈଶ୍ୱରଙ୍କ ନାମ ଜପ କରୁଛନ୍ତି । ଥଟ୍ଟା କରି କହିଲା, ହୋ ବାବାଜୀ, ହରିନାମ ତ ବହୁତ ଜପିଲ; ପାଇଲ କିଛି ? କଅଣ ଆଉ ପାଇବି ? କେବଳ ତାଙ୍କୁ ହିଁ ପାଇବାକୁ ଇଚ୍ଛା । ତାଙ୍କ କୃପା ନ ହେଲେ କିଛି ହୋଇପାରିବ ନାହିଁ । ତେଣୁ ତାଙ୍କ କରୁଣା ପାଇଁ ତାଙ୍କରି ନାମ ଜପି ଜପି ଦିନ ଯାଉଛି । କାହିଁକି ଏତେ ପଣ୍ଡଶ୍ରମ

କରୁଛ ? କେମିତି କିଛି ଗୋଟାଏ ପାଇବ, ସେ ଆଡ଼କୁ ମନ ଦିଅ । ଭଲ କଥା; ହେଲେ ଆପଣ ନିଜେ କଅଣ ପାଇଛନ୍ତି, ଟିକିଏ ଶୁଣେଇଲେ ? ଶୁଣିବ କଅଣ ହେ ? ଦେଖ । ପାଖରେ ଗୋଟାଏ ହାତୀ ବନ୍ଧା ହୋଇଥିଲା । ତାକୁ ଅନେଇ କହିଲା, ମର୍ । ହାତୀ ସଙ୍ଗେ ସଙ୍ଗେ ମରିଗଲା । ପୁଣି ମଲା ହାତୀକୁ ଲକ୍ଷ୍ୟ କରି କହିଲା, ବଞ୍ଚ୍ । ହାତୀ ଝାଡ଼ି ଝୁଡ଼ି ହୋଇ ପୁଣି ଉଠି ଠିଆ ହେଲା । ଦେଖିଲ ? କଅଣ ଆଉ ଦେଖିଲି ? ହାତୀଟା ଥରେ ମରିଗଲା, ପୁଣି ବଞ୍ଚି ଉଠିଲା । ଏଥିରେ ଆପଣଙ୍କର କଅଣ ଲାଭ ହେଲା ? ଆପଣ ଏଇ ଶକ୍ତି ବଳରେ ଜନ୍ମ-ମୃତ୍ୟୁ ବନ୍ଧନରୁ ମୁକ୍ତି ପାଇ ପାରିବେ ?

'ଶୁଣ୍, ଇଆଡ଼କୁ ଆ ।' ଠାକୁର ଦିନେ ଏକାନ୍ତରେ ଡାକିଲେ ନରେନ୍‌କୁ । ସାଙ୍ଗରେ ଧରି ନେଇଗଲେ ନିର୍ଜନ ପଞ୍ଚବଟୀ ଭିତରକୁ ।

କହିଲେ, 'ତୋତେ ଗୋଟାଏ କଥା କହିବି ।'

ନରେନ୍ ନିଷ୍ପନ୍ଦ, ନିର୍ବାକ୍ ।

'ଯାହା କହୁଛି, ଶୁଣ୍ ମନ ଦେଇ । ମୋ ଭିତରେ ଅଷ୍ଟସିଦ୍ଧି ଅବିର୍ଭୂତ ହୋଇ ରହିଛନ୍ତି । ମୁଁ କିନ୍ତୁ ସେଗୁଡ଼ିକ କୌଣସି କାମରେ ଲଗାଉ ନାହିଁ । ଲଗେଇବି ନାହିଁ ମଧ୍ୟ । ସେଗୁଡ଼ାକ ତୋତେ ଦେଇ ଦେବାକୁ ଚାହୁଁଛି -' ।

'ମୋତେ ?'

'ହଁ, ତୋ ଛଡ଼ା ଆଉ ସେଥିପାଇଁ ଯୋଗ୍ୟ କିଏ ଅଛି ? ତୋତେ ବହୁତ କାମ କରିବାକୁ ପଡ଼ିବ । ସେଗୁଡ଼ାକ ତୋ ପାଇଁ ଦରକାର; ପାଖରେ ଥିଲେ କାମରେ ଆସିବ । ତୋ ଛଡ଼ା ଆଉ କାହାକୁ ଦେଖୁନାହିଁ, ଯିଏ ଏତେ ଶକ୍ତି ଧାରଣ କରି ପାରିବ । କହ, ନବୁ ?'

ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ରହିଲା ନରେନ୍ । ତା'ପରେ କହିଲା ଧୀରେ ଧୀରେ, 'ସେହି ସବୁ ଶକ୍ତି ମୋତେ ଈଶ୍ୱର ଲାଭ କରିବାରେ ସାହାଯ୍ୟ କରିବ ?'

ଠାକୁର ଟିକିଏ ଭାବିଲେ । କହିଲେ, 'ନା, ସେତିକି କେବଳ କରିପାରିବ ନାହିଁ ।'

'ତା' ହେଲେ ସେଗୁଡ଼ାକରେ ମୋର କୌଣସି ପ୍ରୟୋଜନ ନାହିଁ ।' ଅନାସକ୍ତିର ଦୃଢ଼ତା ଫୁଟି ଉଠିଲା ନରେନ୍‌ର ଭଙ୍ଗୀରେ । 'ଯାହା ଦ୍ୱାରା ଈଶ୍ୱର ଲାଭ ହୋଇପାରିବ ନାହିଁ, କେବଳ ଲୋକମାନ୍ୟ ମିଳିବ, ତାକୁ ନେଇ ମୁଁ କଅଣ କରିବି ?'

ଠାକୁରଙ୍କ ମୁହଁରେ ଫୁଟି ଉଠିଲା ପ୍ରସନ୍ନ ହସ ।

ଦିନେ ନରେନ୍ ଆପଣା ମନକୁ ଯାଇ ପହଞ୍ଚିଲା ଠାକୁରଙ୍କ ପାଖରେ । ଧ୍ୟାନର ଫଳ କଅଣ ହେଉଛି-ନ ହେଉଛି ତାଙ୍କୁ ଜଣେଇବା ପାଇଁ । ଖାଇବା-ଶୋଇବା-ବସିବା ସବୁ ସମୟରେ ତ ଏବେ ଧ୍ୟାନ କରୁଛି ନରେନ୍ । କାମ କରୁଥିଲା ବେଳେ ବି ମନର ଅଭ୍ୟନ୍ତରରେ ବସି ଈଶ୍ୱର-ଚିନ୍ତାରେ ମଗ୍ନ ହୋଇ ରହିଥାଏ ।

ପଚାରିଲା, 'ମୋର ଏ ଭଳି ସବୁ କାହିଁକି ହେଉଛି ?'

'କଅଣ ହେଉଛି ?' ସତେ ଅବା ଜାଣନ୍ତି ସବୁ କଥା । ଖୁସି- ଖୁସି ଭାବରେ ପଚାରିଲେ ଠାକୁର ।

'ଧ୍ୟାନରେ ବସିଥିବା ବେଳେ ମୁଁ ଦୂରର ବସ୍ତୁ ଦେଖି ପାରୁଛି । ବହୁ ଦୂରରୁ କଥା ଶୁଣି ପାରୁଛି । କେଉଁଠି କେଉଁ ଘରେ କିଏ ବସି କଅଣ କରୁଛି, କାହାକୁ କଅଣ କହୁଛି, ସବୁ ଦେଖିପାରୁଛି, ଶୁଣି ପାରୁଛି । ମୋତେ ଜଣାଯାଉଛି, ମୁଁ ସେଇ ଘରକୁ ଚାଲି ଯାଉଛି; ଯାଇ ଦେଖୁଛି, ଯାହା ଦେଖିଥିଲି, ଯାହା ଶୁଣିଥିଲି ସବୁ ସତ । ଇଏ ପୁଣି ଗୋଟାଏ ନୂଆ ଖେଳ ନା କଅଣ ?'

ଠାକୁର କହିଲେ, 'ଏଗୁଡ଼ାକ ସବୁ ସିଦ୍ଧି । ତୋତେ ଭୁଲେଇବା ପାଇଁ ଆସୁଛନ୍ତି । ଈଶ୍ୱର-ପ୍ରାପ୍ତି ବାଟରେ ବାଧା ସୃଷ୍ଟି କରିବା ପାଇଁ । ତୁ ଏ ଗୁଡ଼ାକ ନେବୁ କାହିଁକି ? ତୁ ଭଗବାନଙ୍କୁ ନେବୁ । ଧ୍ୟାନସିଦ୍ଧ ହେବୁ । କିଛି ଦିନ ଧ୍ୟାନ ବନ୍ଦ କରି ଦେ, ତା' ପରେ ଦେଖିବୁ, ଆଉ ସେମାନେ ଆସୁନାହାନ୍ତି । ତୁ ପଥର ସନ୍ଧାନ ପାଇବୁ, ନିତ୍ୟ ସନାତନ ପଥ; ଆଗେଇ ଯିବୁ ସେଇ ପଥରେ ।'

## ୨୫

ତୁମେ ଯେଉଁ ଭଳି ମୋ ମା ଠିକ୍ ସେହି ଭଳି ତୁମେ ପୁଣି ମୋ ଝିଅ । ତୁମେ ଯେଉଁ ଭଳି 'ପିତେବ ପୁତ୍ରସ୍ୟ' ସେହିଭଳି ତୁମେ ପୁଣି ସନ୍ତାନ । ତୁମ ରସର କଅଣ ଶେଷ ଅଛି ? ତୁମେ ଯେଉଁ ଭଳି ଭକ୍ତିରେ ଅଛ, ପ୍ରେମରେ ଅଛ, ଠିକ୍ ସେହିଭଳି ପୁଣି ଅଛ ବାତ୍ସଲ୍ୟରେ । ଶୀତଳ ସ୍ନେହ ରସରେ ।

ତୁମେ ଗୁରୁଙ୍କ ଠାରୁ ଗରୀୟାନ । ତୁମେ ବିଶ୍ୱ ଚରାଚରର ପିତା । ତୁମେ 'ଗୁହାହିତଂ ଗହ୍ୱରେଷ୍ଟଂ' । ତୁମେ ପୁଣି ବକ୍ଷଲଗ୍ନ ଅବୋଧ ଶିଶୁ । ମା-କ୍ଷୀର ଖାଉଥିବା କଅଁଳା ପିଲା ।

'ମୁଁ ଏକ-ବାଗିଆ ହେବି କାହିଁକି ? ମୁଁ ପାଞ୍ଚ ପ୍ରକାର କରି ମାଛ ଖାଇବି । କେତେବେଳେ ଝୋଳ, କେତେବେଳେ ଝାଳ, କେତେବେଳେ ଅମ୍ୱଳ, କେତେବେଳେ ପୁଣି ଭଜା ।'

ମୋର ନିତ୍ୟ ନୂତନ ଆସ୍ୱାଦନ । ସେ ପରା ରସର ଅପାର ପାରାବାର । ରସୋ ବୈ ସଃ । ତେଣୁ ରାମଙ୍କୁ ସେବା କରିବା ପାଇଁ ହନୁମାନ ହୁଏ । ପୁଣି ତାଙ୍କୁ ସ୍ନେହ କରିବା ପାଇଁ କୌଶଲ୍ୟା ହୁଏ ।

ଭକ୍ତ ଯେମିତି ଭଗବାନଙ୍କୁ ଲୋଡ଼େ, ଭଗବାନ ବି ସେମିତି ଭକ୍ତକୁ ଲୋଡ଼ନ୍ତି । ଭକ୍ତ ହେଉଛନ୍ତି ରସ, ଭଗବାନ ହେଲେ ରସିକ । ସେହି ରସ ସେ ପାନ କରନ୍ତି । ଅଥବା କହିପାର, ଭଗବାନ ପଦ୍ମ, ଭକ୍ତ ପଦ୍ମ-ଲୋଭୀ ଅଳି । ଭକ୍ତ ସେହି ପଦ୍ମର ମଧୁ ପାନ କରନ୍ତି । ଭଗବାନ ନିଜେ ନିଜର ମାଧୁର୍ଯ୍ୟ ଆସ୍ୱାଦନ କରିବା ନିମନ୍ତେ ଦୁଇ ପ୍ରକାର ରୂପ ହୋଇଛନ୍ତି । ପ୍ରଭୁ ଓ ଦାସ । ମା ଓ ସନ୍ତାନ । ପ୍ରିୟ ଓ ପ୍ରିୟା ।

ଦକ୍ଷିଣେଶ୍ୱରର କାଳୀ ମନ୍ଦିରକୁ ଆଜି କାଲି ଅନେକ ସାଧୁ ସନ୍ନ୍ୟାସୀ ଆସୁଛନ୍ତି । କେବଳ ପେଟ-ବିକଳିଆ ବାବାଜୀ ନୁହନ୍ତି, ଖୁବ୍ ଉଚ୍ଚ ସ୍ତରର ସାଧୁ । ଗଙ୍ଗା-ସାଗର ଯାଉଛନ୍ତି, ଅଥବା ଶ୍ରୀକ୍ଷେତ୍ର ପୁରୀ ଯାଉଛନ୍ତି - ବାଟରେ କିଛି ଦିନ ଦକ୍ଷିଣେଶ୍ୱରରେ ରହି ଯାଉଛନ୍ତି । ନିଜ ଆଖିରେ ଦେଖି ଯାଉଛନ୍ତି ଗଦାଧରଙ୍କୁ- ସର୍ବତୀର୍ଥସାରଙ୍କୁ ।

ଗଦାଧର କୁଆଡ଼େ ହେଲେ ଯାଏ ନା । ସ୍ଥିର ହୋଇ ବସିଥାଏ, ମନ ହେଲେ ଗୀତ ଗାଏ—

ଆପନାତେ ଆପନି ଥେକୋ
　　　　ଯେୟୋ ନା ମନ କାରୁ ଘରେ ।
ଯା ଚା'ବି ତାଇ ବସେ ପାବି
　　　　ଖୋଁଜୋ ନିଜ ଅନ୍ତଃପୁରେ ।

(ମନ, ନିଜ ଭିତରେ ସ୍ଥିର ହୋଇ ରହ । କାହାରି ଘରକୁ ଯିବା ଦରକାର ନାହିଁ । ନିଜ ଭିତରେ ଖୋଜ୍, ଯାହା ଚାହୁଁଛୁ ବସି ବସି ସବୁ ପାଇବୁ ।)

ଦିନେ ଜଣେ ଅଦ୍‌ଭୁତ ସାଧୁ ଆସି ପହଞ୍ଚିଲେ ଦକ୍ଷିଣେଶ୍ୱରରେ । ପାଖରେ ଅଛି ପାଣି ପିଇବା ପାଇଁ ଗୋଟାଏ ଲୋଟା ଏବଂ ଖଣ୍ଡିଏ ପୋଥି । ସେଇ ପୋଥିଟି ତାଙ୍କର ଏକମାତ୍ର ସଂପତ୍ତି । ପ୍ରତିଦିନ ସେଇଟିକୁ ଫୁଲ ଦେଇ ପୂଜା କରନ୍ତି ଏବଂ ଯେତେବେଳେ ଇଚ୍ଛା ସେତେବେଳେ ଖୋଲି ପଢ଼ନ୍ତି ଏକ ଲୟରେ ।

ଗଦାଧରର କୌତୁହଳ ବଢ଼ିଲା । ଦିନେ ଭାରି ଜିଗର କରି କହିଲା, 'କଅଣ ଅଛି ତୁମ ବହିରେ ? ଦିଅ, ମୁଁ ଟିକିଏ ଦେଖେଁ ।'

ଦେଖିଲା । ବହିର ପ୍ରତି ପୃଷ୍ଠାରେ ନାଲି କାଳିରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି ମାତ୍ର ଦୁଇଟି ଶବ୍ଦ: ଓଁ ରାମ ! ଆଉ କିଛି ନାହିଁ । ଅନ୍ୟ କୌଣସି କଥା ନାହିଁ । ପୃଷ୍ଠା ପୃଷ୍ଠା ଧରି କେବଳ ସେହି ଦୁଇଟି ଶବ୍ଦର ପୁନରାବୃତ୍ତି: ଓଁ ରାମ !

'ଗଦାଏ ବହି ପଢ଼ି ଲାଭ କଅଣ ? ପଢ଼ିବା ଭଳି କଥା ଆଉ ଅଛି ବା କଅଣ ?' କହିଲେ ସାଧୁ : 'ଈଶ୍ୱର ହିଁ ସମସ୍ତ ବେଦ-ପୁରାଣର ମୂଳ । ସେ ଓ ତାଙ୍କ ନାମ- ଏ ଦୁଇଟିରେ କୌଣସି ତଫାତ୍ ନାହିଁ । ତାଙ୍କର ଗୋଟିଏ ମାତ୍ର ନାମରେ ହିଁ ସମସ୍ତ ଶାସ୍ତ୍ର ନିହିତ ରହିଛି । ଆଉ ଅନ୍ୟ ଶାସ୍ତ୍ର ପଢ଼ିବା କଅଣ ଦରକାର ? ସେହି ଗୋଟିଏ ରାମ-ନାମରେ ପ୍ରାଣାରାମ ।'

ଏ ସାଧୁ ଜଣକ ରାମାୟେତ ବୈଷ୍ଣବ ସଂପ୍ରଦାୟର ଲୋକ । ଠିକ୍ ସେହିଭଳି ଆଉ ଜଣେ ବାବାଜୀ- ନାମ ଜଟାଧାରୀ । ୧୨୭୯ ସାଲ (୧୮୬୪-୬୫ ମସିହା)ର କଥା । ଗଦାଧର ସେତେବେଳକୁ ତନ୍ତ୍ରସିଦ୍ଧ ହୋଇ ସାରିଲାଣି । ବୁଲୁ ବୁଲୁ ଦିନେ ଜଟାଧାରୀ ଆସି ପହଞ୍ଚିଗଲା । ସାଙ୍ଗରେ ରହିଛି ଅଷ୍ଟ-ଧାତୁ-ନିର୍ମିତ ବାଳକ ରାମଚନ୍ଦ୍ର ବିଗ୍ରହ । ଆଦରରେ ନାମ ଦେଇଛି ରାମଲାଲା ।

ଅନ୍ୟ କୌଣସି କଥାକୁ ନଜର ନାହିଁ ଜଟାଧାରୀର । ଦିନ ରାତି ଅଷ୍ଟ ପ୍ରହର ତାକୁଇ ନେଇ ବ୍ୟସ୍ତ । କୁଆଡ଼େ ଗଲେ ସାଙ୍ଗରେ ନେଇଯାଏ । ମୁହୂର୍ତ୍ତକ ପାଇଁ ପାଖରୁ ଅନ୍ତର କରେ ନାହିଁ । ଭିକ୍ଷାରୁ ଯାହା ମିଳେ ସେତକ ରାନ୍ଧି ବାଢ଼ି ଖୁଆଏ ରାମଲାଲାକୁ । କେବଳ ଉପର-ଠାଉରିଆ ନିବେଦନ ନୁହେଁ, ଜଟାଧାରୀ ଦେଖେ, ରାମଲାଲା ସତରେ ଖାଉଛି । କେବଳ ଖାଉଛି ନୁହେଁ, ବାରମ୍ବାର ମାଗି ନେଇ ଖାଉଛି । ନା, କେବଳ ସ୍ୱପ୍ନ ବା ମନର କଳ୍ପନା ନୁହେଁ, ଜଟାଧାରୀ ଦୁଇ ଆଖି ଖୋଲା ରଖି ପ୍ରତ୍ୟକ୍ଷ ଭାବରେ ଦେଖେ । ରାମଲାଲା ମୂର୍ତ୍ତି ନୁହେଁ, ମଣିଷ । ବାଳଗୋପାଳ ।

ଘଣ୍ଟା ଘଣ୍ଟା ବସି ରହି ଗଦାଧର ଦେଖୁଥାଏ ଜଟାଧାରୀ ଓ ରାମଲାଲାର ଏହି ସବୁ ଲୀଳା ।

ଆଶ୍ଚର୍ଯ୍ୟ କଥା, କିଛି ଦିନ ପରେ ରାମଲାଲାର ମନ ଢଳିଲା ତା'ରି ଆଡ଼କୁ । ଦିନ ଯେତିକି ଯାଉଥାଏ ଗଦାଧର ପ୍ରତି ତା' ପ୍ରୀତି ସେତିକି ବଢୁଥାଏ । ଜଟାଧାରୀ ପାଖରେ ଗଦାଧର ବସିଥିବା ପର୍ଯ୍ୟନ୍ତ ରାମଲାଲା ବେଶ୍ ଅଛି, ମନ ଖୁସିରେ ଖେଳୁଛି, ବୁଲୁଛି, ସବୁ କରୁଛି । ମାତ୍ର ଗଦାଧର ଯେମିତି ଉଠେ ନିଜ ଘରକୁ ଆସିବା ପାଇଁ, ରାମଲାଲା ତା' ପିଛା ଧରେ ।

ଗଦାଧର ଧମକ ଦେଇ କହେ, 'କିରେ ? ତୁ ମୋ ସାଙ୍ଗରେ କୁଆଡ଼େ ଯିବୁ ? ତୋ ନିଜ ଲୋକ ପାଖକୁ ଯା । ଫେରି ଯା, କହୁଛି ! ଫେରିଯା ଜଟାଧାରୀ ପାଖକୁ ।'

କଥା କାନକୁ ନିଏ ନା ରାମଲାଲା । ଗଦାଧରର ପଛେ ପଛେ ଚାଲୁଥାଏ । ଚାଲୁ ଚାଲୁ ପୁଣି ନାଚି ଯାଉଥାଏ । କେତେବେଳେ ଆଗରେ, କେତେବେଳେ ପଛରେ ।

ଗଦାଧର ଆଶ୍ଚର୍ଯ୍ୟ ହୁଏ । ମନର ଭ୍ରମ ନୁହେଁ ତ ? ମନ ପ୍ରାଣ ଦେଇ ଜଟାଧାରୀ ତା' ସେବା କରୁଛି ବର୍ଷ ବର୍ଷ ଧରି । ତା' ଇଷ୍ଟ, ତା' ଠାକୁର ସିଏ । ତାକୁ ଛାଡ଼ି ସେ ଗଦାଧର ସହିତ ଆସୁଛି କାହିଁକି ? ଏତେ ଦିନ ଧରି ଯେଉଁ ଲୋକ ଏତେ ନିଷ୍ଠାରେ ତା' ସେବା-ପୂଜା କରି ଆସୁଛି, ତା' ଠାରୁ ବେଶୀ ଆପଣାର ହେଲା ଗଦାଧର !

ନା, ଭ୍ରମ ନୁହେଁ । ସତରେ ଦେଖୁଛି ଗଦାଧର । ଆଖି ଆଗରେ ଦେଖୁଥିବା ଗଛ-ପତ୍ର ରାସ୍ତାଘାଟ ଯେଉଁ ପରି ସତ୍ୟ, ଠିକ୍ ସେଇପରି ସତ୍ୟ ରାମଲାଲାର ନାଚି ନାଚି ତା' ସହିତ ଯିବା ।

ଆରେ ! ଆରେ ! ଯେ କଅଣ ? - ନାଚି ନାଚି କୋଳକୁ ଆସିବା ପାଇଁ ଦୁଇହାତ ଟେକି ଅଝଟପଣ ଦେଖାଉଛି ରାମଲାଲା ।

ଆଉ ଉପାୟ ନାହିଁ । ଗଦାଧର ତାକୁ ଟେକି ଆଣିଲା ନିଜ କୋଳକୁ - ସତରେ ଟେକି ନେଲା ।

ଦିନେ ଦିନେ ଏମିତି ହୁଏ, ଚୁପ୍ ଚାପ ବସିଥିବ କୋଳରେ, ହଠାତ୍ ଡେଇଁ ପଡ଼ି କୋଳରୁ ଓହ୍ଲାଇ ଯିବ । ଯାଇ ଖରାରେ ଦୌଡ଼ିବ, ନ ହେଲେ ଯାଇ ଫୁଲ ତୋଳିବ କଣ୍ଟାବଣରେ ପଶି । କିମ୍ବା ହୁଏତ ଯାଇ ଗଙ୍ଗାରେ ପଶି ପାଣିରେ ହାତ ଗୋଡ଼ ଛାଟି ଖେଳିବ ।

କେତେ ରକମ ତା' ଦୁଷ୍ଟାମି । ମନା କଲେ ମାନିବ ନାହିଁ । ଆରେ, ଯା' ନା ଖରାରେ, ପାଦରେ ଫୋଟକା ହେବ, ଗୋଡ଼ ହାତରେ କଣ୍ଟା ପଶିବ, ଥଣ୍ଡା ଲାଗି ସର୍ଦ୍ଦି ହେବ । କିଏ ଶୁଣୁଛି ସେ କଥା ! ଖଣ୍ଡେ ଦୂରରେ ଛିଡ଼ା ହୋଇ ମୁରୁକି ମୁରୁକି ହସେ, ବେଳେ ବେଳେ ପୁଣି ଓଠ ବଙ୍କେଇ ଖତେଇ ହୁଏ ।

'ରହିଥା, ବଦମାସ୍ ! ପିଟି ପିଟି ଆଜି ତୋ ହାଡ଼ ଚୂନା କରିଦେବି !' କହି ତାକୁ ଧରିବା ପାଇଁ ଧାଇଁଯାଏ ଗଦାଧର । ରାମଲାଲ ଦଉଡ଼ି ପଳାଏ, ଗଦାଧର ଗୋଡ଼ାଉଥାଏ ।

ଦଉଡ଼ି ଦଉଡ଼ି ଯାଇ ପାଣି ଭିତରକୁ ଡେଇଁ ପଡ଼େ ରାମଲାଲା । ଗଦାଧର ବି ଛାଡ଼ିବା ଲୋକ ନୁହେଁ । ପାଣି ଭିତରେ ପଶି ଯାଇ ତାକୁ ଟାଣି ଉଠାଇ ଆଣେ ଉପରକୁ । ନାନା ରକମ ଚିଜ ଦେଇ ତାକୁ ଭୁଲେଇବା ପାଇଁ ଚେଷ୍ଟା କରେ । କହେ, କାହିଁକି ଏତେ ଦୁଷ୍ଟ ହେଉଛୁ ? ଘର ଭିତରେ

ବସି ଖେଳ । ବାହାରକୁ ଯିବୁ ନାହିଁ । ରାମଲାଲା ଭଲ ପିଲାଟି ପରି ସବୁ ଶୁଣେ, ହେଲେ କଥା ଗୁଡ଼ାକ ଏ କାନରେ ପଶି ସେ କାନରେ ବାହାରିଯାଏ । ପୁଣି ସେଇ ଭଳି ଅମାନିଆ ହୁଏ, ଉଦ୍ଦଣ୍ଡପଣ ଦେଖାଏ । ସଙ୍ଗେ ସଙ୍ଗେ ଚଡ଼-ଚାଡ଼ ମାଡ଼ ବସାଏ ଗଦାଧର ।

ଥରି ଥରି ଫୁଲି ଉଠେ ସୁନ୍ଦର ଓଠ ଦିଓଟି । ଦୁଇ ଆଖିରେ ଲୁହ ଟଳ ମଳ । କାନ୍ଦିବ କାନ୍ଦିବ ହୋଇ ଅସହାୟ ଭାବରେ ଚାହିଁ ରହେ ରାମଲାଲା ଗଦାଧରର ମୁହଁକୁ ।

ଗଦାଧର ସହିପାରେ ନାହିଁ । ମନ ଭିତରଟା କଷ୍ଟରେ ମଛି ହୋଇଗଲା ପରି ଲାଗେ । ଦୁଇ ହାତ ବଢ଼େଇ ତାକୁ ପୁଣି ଟାଣି ଆଣେ କୋଳକୁ । ଆଦର କରେ, ଗେଲ କରେ, ମିଠା କଥାରେ ମନ ଭୁଲେଇବାକୁ ଚେଷ୍ଟା କରେ ।

ଭାବରେ ତନ୍ମୟ ହୋଇ କଳ୍ପନାରେ ଦେଖୁଛି, ନା ସେପରି ନୁହେଁ । ଦେଖୁଛି ଅବିକଳ ରକ୍ତ-ମାଂସରେ । ବାସ୍ତବ ଜୀବନ୍ତ ରୂପରେ । ନିଜର କଥାବାର୍ତ୍ତା ଆଚରଣରେ ମଧ୍ୟ ସେହି ଅବିକଳ ବାସ୍ତବତା ।

ଦିନେ ଗଦାଧର ଗଙ୍ଗାକୁ ଯାଉଛି ଗାଧୋଇବା ପାଇଁ । ରାମଲାଲା କୋଉଠି ଥିଲା, ଧାଇଁ ଧାଇଁ ଆସି ପହଞ୍ଚିଗଲା - ମୁଁ ଯିବି ! ହଉ, ଚାଲ । କିନ୍ତୁ ସମସ୍ତଙ୍କର ଗାଧୁଆ ସରିଲା, ତା'ର ସରୁ ନାହିଁ । ଯେତେ ଡାକିଲେ ବି ଉଠି ଆସୁନାହିଁ ପାଣି ଭିତରୁ । ଶେଷକୁ ରାଗିଯାଇ ଗଦାଧର ତାକୁ ପାଣି ଭିତରେ ବୁଡ଼େଇ ରଖିଲା । କେତେ ପାଣି ଘାଣ୍ଟିବୁ ଘାଣ୍ଟ ! ମାତ୍ର କେତେବେଳ ଯାଏ ବୁଡ଼େଇ ରଖିବ ପାଣି ଭିତରେ ! ଗଦାଧରକୁ ଜଣାଗଲା ପାଣି ଭିତରେ ବୁଡ଼ି ରହିଥିବା ରାମଲାଲାର ଦେହ ଥରୁଛି । ସଙ୍ଗେ ସଙ୍ଗେ ତାକୁ ପାଣି ଭିତରୁ ଉଠେଇ ଆଣି ଛାତିରେ କୁଣ୍ଢେଇ ଧରି ଉପରକୁ ଉଠି ଆସିଲା ।

ଆଉ ଦିନେ ବି ସେମିତି ଭାରି ଅଝଟ ହେଲା ରାମଲାଲା । ତାକୁ ଭୁଲେଇବା ପାଇଁ ଗଦାଧର ତା' ହାତରେ ଖଇ ଗଣ୍ଡାଏ ଆଣି ଦେଲା ଖାଇବା ପାଇଁ । ଖଇରେ ଗୋଟାଏ ଧାନ ଥିଲା, ଗଦାଧର ଦେଖି ନାହିଁ । ହଠାତ୍ ଚାହିଁ ଦେଇ ଦେଖିଲା ଖଇ ଚୋବାଉ ଚୋବାଉ ଧାନରେ ଘଷି ହୋଇ ନରମ ଜିଭଟି ତା'ର କଟି ଯାଇଛି, ଜିଭରୁ ଲହୁ ଜକେଇ ଆସୁଛି ।

କଅଣ କଲି ମୁଁ ଚଣ୍ଡାଳ ! ବେଦନାରେ ଛାତି ସତେ କି ଫାଟିଯିବ ! ରାମଲାଲାକୁ କୋଳକୁ ଟାଣି ଆସିଲା, ନିଜେ କାନ୍ଦି ପକାଇଲା ଭୋ ଭୋ ହୋଇ । ମୁହଁକୁ ପୀଡ଼ା ହେବ ବୋଲି ମା କୌଶଲ୍ୟା ଯେଉଁ ମୁହଁରେ ସର-ଲହୁଣୀ ଦେଲା ବେଳେ ବି ଅତି ସାବଧାନରେ ଦେଉଥିଲେ, ସେଇ ମୁହଁରେ ସେ ଆଜି ଦେଲା ଧାନ-ମିଶା ଖଇ ! କାଣ୍ଡଜ୍ଞାନ କ'ଣ ଲୋପ ପାଇଗଲା ତା'ର !

ଅତି ବିକଳ ହୋଇ କାନ୍ଦିବାକୁ ଲାଗିଲା ଗଦାଧର । ତା' କୋଳରେ ବସିଥିବା ରାମଲାଲାକୁ କେହି ଦେଖିପାରୁ ନାହାନ୍ତି । କିନ୍ତୁ ସମସ୍ତେ ଦେଖୁଛନ୍ତି ତା' କାନ୍ଦିବାର ଆନ୍ତରିକତା । ଶୁଣୁଛନ୍ତି ତା' କାନ୍ଦର କାତରତା । ତା' କାନ୍ଦ ଦେଖି ଦେଖିବା ଲୋକର ଆଖିକୁ ବି ଲୁହ ଆସି ଯାଉଛି ।

ରନ୍ଧାରନ୍ଧି କାମ ସରି ଯାଇଛି । ଜଟାଧାରୀ ଖୋଜୁଛି ରାମଲାଲାକୁ । କୁଆଡ଼େ ଗଲୁରେ !ଭ ଆ, ଖାଇବୁ ଆ - ! ହେଲେ, ରାମଲାଲା କାହିଁ ? ଖୋଜି ଖୋଜି ଆସି ଦେଖିଲା

ଗଦାଧରର ଘର ଭିତରେ ଗଦାଧର ସହିତ ଖେଳୁଛି । ଅଭିମାନ ଆସିଲା ଜଟାଧାରୀର ମନକୁ । 'ବାଃ, ବଢ଼ିଆ ପିଲା ତୁମେ ! ମୁଁ ତେଣେ ରନ୍ଧାବଢ଼ା କାମ ସାରି, ଖାଇବ ବୋଲି ତୁମକୁ ଖୋଜି ବୁଲୁଛି, ତୁମେ ଏଠି ନିଶ୍ଚିନ୍ତ ହୋଇ ଖେଳୁଛ ବସି ?'

ଅଭିମାନ ବେଦନା ହୋଇ ଝରି ପଡ଼ିଲା ଆଖରୁ । 'ଠିକ୍ ଚିହ୍ନିଛି ତୁମକୁ । ତୁମ ଆଦତ ପରା ସେଇଆ । ଦୟାମାୟା ବୋଲି କିଛି ନାହିଁ ତୁମର । ବାପ-ମା'ଙ୍କୁ ଛାଡ଼ି ଦେଇ ତୁମେ ପରା ବଣକୁ ପଳେଇଥିଲ ! ବାପଟା କାନ୍ଦି କାନ୍ଦି ମରିଗଲା, ତଥାପି ଟିକିଏ ତା' ମୁହଁକୁ ଅନେଇଲ ନାହିଁ ! ତୁମେ ଏଡ଼ିକି ପାଷାଣ !' କହୁ କହୁ ରାମଲାଲର ହାତ ଧରି ଜୋର କରି ଟାଣି ନେଇଗଲା ଜଟାଧାରୀ ।

କିନ୍ତୁ ଜୋର-ଜବରଦସ୍ତିରେ କେତେ ଦିନ ବା ତାକୁ ଅଟକେଇ ରଖି ପାରିବ ଜଟାଧାରୀ ? ବାରମ୍ବାର ସେ ପଳେଇ ଆସେ ଗଦାଧର ପାଖକୁ ।

ଜଟାଧାରୀ ଆଉ ଦକ୍ଷିଣେଶ୍ୱର ଛାଡ଼ି ଯାଇ ପାରୁନାହିଁ । ଯିବ କେମିତି ? ରାମଲାଲା ତ ଗଦାଧରକୁ ଛାଡ଼ିବାକୁ ନାରାଜ । ରାମଲାଲାକୁ ଛାଡ଼ି ଜଟାଧାରୀ ବା ଯାଇପାରୁଛି କୋଉଠି ?

ଅବଶେଷରେ ବୁଝିଲା ଜଟାଧାରୀ - ପ୍ରେମାସ୍ପଦ ଠାରୁ ପ୍ରେମ ବଡ଼ । ଲୁହ ଛଳ-ଛଳ ଆଖିରେ ଦିନେ ଆସି ପହଞ୍ଚିଲା ଗଦାଧର ପାଖରେ ।

କହିଲା, 'ମୁଁ ଆଜି ଯାଉଛି ।'

'ଯାଉଛ ?' ଚମକି ପଡ଼ିଲା ଗଦାଧର : 'ତୁମ ରାମଲାଲା ?'

'ସେ ଏ ଜାଗା ଛାଡ଼ି ଯିବ ନାହିଁ । ତାକୁ ତୁମ ପାଖରେ ରଖି ଦେଇ ଯାଉଛି ।'

'ମୋ ପାଖରେ ରଖି ଦେଇ ଯାଉଛ ?' ଗଦାଧର ମହା ଖୁସି ।

'ହଁ, ସେଇଥିରେ ତା'ର ଆନନ୍ଦ । ଆଜି ସେ ମୋତେ ମୋର ବାଞ୍ଛିତ ରୂପରେ ଦେଖା ଦେଲା । ପୁଣି କହିଲା ଏଠୁ ସେ ପାଦେ ହେଲେ ଘୁଞ୍ଚିବ ନାହିଁ । ତେଣୁ ମୁଁ ଆଜି ଏକୁଟିଆ ଯାଉଛି । ସେ ତୁମ ପାଖରେ ଅଛି, ତୁମ ସହିତ ଖେଳୁଛି, ଏତିକିରେ ମୋର ସୁଖ । ସେ ସୁଖରେ ଅଛି, ଆନନ୍ଦରେ ଅଛି, ଏହି ଭାବନାରେ ମୋର ଶାନ୍ତି । ତା'ର ଯେଉଁଥିରେ ଆନନ୍ଦ ମୋର ବି ସେଇଥିରେ ଆନନ୍ଦ । ତା' ସୁଖ ମୋ ସୁଖ । ତୁମକୁ ଲାଗିଲା ମୋ ରାମଲାଲା ।'

ରାମଲାଲାକୁ ଦକ୍ଷିଣେଶ୍ୱରରେ ଛାଡ଼ି ଦେଇ ରିକ୍ତ ହସ୍ତରେ ଚାଲିଗଲା ଜଟାଧାରୀ ।

ସେ ଆଜି ସେହି ପ୍ରେମର ସନ୍ଧାନ ପାଇଛି ଯେଉଁ ପ୍ରେମରେ ସ୍ୱାର୍ଥବୋଧ ନାହିଁ, ତେଣୁ ବିଚ୍ଛେଦ ନାହିଁ, ବେଦନା ମଧ୍ୟ ନାହିଁ । ଯେଉଁ ପ୍ରେମରେ ପରମ ପୂର୍ଣ୍ଣତା । ଯେଉଁ ପ୍ରେମ ଅନ୍ୟ ସମସ୍ତ ଭାବ ଠାରୁ ବଡ଼ - ମହାଭାବ ।

ପୂଜା ଠାରୁ ବଡ଼ ଜପ । ଜପ ଠାରୁ ଧ୍ୟାନ ବଡ଼ । ଧ୍ୟାନ ଠାରୁ ଭାବ ବଡ଼ । ଭାବ ଠାରୁ ବଡ଼ ମହାଭାବ । ମହାଭାବ ହିଁ ପ୍ରେମ ଏବଂ ଯାହା ପ୍ରେମ ତାହା ହିଁ ଈଶ୍ୱର ।

ଧାତୁ ନିର୍ମିତ ଗୋଟାଏ ମୂର୍ତ୍ତି ଏଇ ରାମଲାଲା । ଚର୍ମ-ଚକ୍ଷୁରେ ସମସ୍ତେ ସେଇଆ ଦେଖୁଛନ୍ତି । ସମସ୍ତଙ୍କ ପାଇଁ ସେ ଗୋଟାଏ ଶୁଷ୍କ ପ୍ରାଣହୀନ ପ୍ରତୀକ । ଗଦାଧର ପାଖରେ ସେ ପୂର୍ଣ୍ଣ ପ୍ରାଣବାନ୍ । ଆଗରୁ ସେ ଆରାଧନା କରି ଆସୁଛି ରଘୁବୀରଙ୍କୁ ପ୍ରଭୁ ଜ୍ଞାନରେ । ଜଟାଧାରୀ ହିଁ

ତାଙ୍କୁ ଦୀକ୍ଷା ଦେଲା ଗୋପାଳମନ୍ତ୍ରରେ, ଦୀକ୍ଷା ଦେଇ ଦେଖାଇଦେଲା ତାଙ୍କର ବାଳକ-ମୂର୍ତ୍ତି । ଯିଏ ପ୍ରଭୁ, ଯିଏ ଆରାଧନୀୟ, ସେ ପୁଣି ଶିଶୁ, ଆଦରଣୀୟ । ସଂପର୍କ କେବଳ ଗୋଟାଏ ସେତୁ । ସେହି ସେତୁ ଉପର ଦେଇ ଚାଲି ଆସିବାକୁ ହେବ ଏ ପାଖରୁ ସେ ପାଖକୁ । ପ୍ରତୀକରୁ ପ୍ରତ୍ୟକ୍ଷକୁ । ମୂର୍ତ୍ତିରୁ ବ୍ୟାପ୍ତିକୁ, ବିଶ୍ୱମୟତାକୁ । ବାହାରେ ଯିଏ ଦୁର୍ଲଭ ନିଧି ତାଙ୍କୁ ଆଣିବାକୁ ହେବ ଅନ୍ତର ମଧ୍ୟକୁ, ଅନ୍ତରର ଅନ୍ତଃପୁରକୁ । ପୁଣି, ଯିଏ ଅନ୍ତରର ନିଧି, ତାଙ୍କୁ ଦେଖିବାକୁ ହେବ ବାହାରକୁ ଆଣି, ସର୍ବ ଜୀବରେ, ସମସ୍ତ ବିଶ୍ୱ-ସୃଷ୍ଟିରେ । ସଂପର୍କରୁ ଚାଲି ଆସିବାକୁ ହେବ ବିରାଟ ବନ୍ଧନହୀନତାକୁ ।

'ମଧୁର ଭାବ-ସାଧନର ଏହା ହିଁ ପ୍ରକୃତ ତାତ୍ପର୍ଯ୍ୟ ।' କହିଲା ଭୈରବୀ ।

''ଯୋ ରାମ ଦଶରଥକି ବେଟା;
ଓହି ରାମ ଘଟ-ଘଟ ମେ ଲେଟା ।
ଓହି ରାମ ଜଗତ୍ ପଶେରା,
ଓହି ରାମ ସବ୍‌ସେ ନେୟାରା ।''

ରାମ ତ କେବଳ ଦଶରଥଙ୍କ ପୁଅ ନୁହନ୍ତି, ସେ ସମସ୍ତ ଜୀବ ଦେହରେ ପ୍ରକାଶିତ । ପୁଣି, ପ୍ରକାଶିତ ହୋଇ ମଧ୍ୟ ସେ ସଂସାରର ସମସ୍ତ ବିଷୟରୁ ପୃଥକ୍, ମାୟାହୀନ, ନିର୍ଗୁଣ ।

ଈଶ୍ୱର ସର୍ବାବ୍ୟାପୀ, ସର୍ବାନୁଭୂ । ଯେପରି ସେ ଘଟରେ, ସେହିପରି ପୁଣି ସେ ଆକାଶରେ । ସ୍ଥାନରେ କେଉଁଠି ହେଲେ ତାଙ୍କର ବିଚ୍ଛେଦ ନାହିଁ, କାଳରେ କେଉଁଠି ତାଙ୍କର ବିରାମ ନାହିଁ, ପାତ୍ରରେ କେଉଁଠି ତାଙ୍କର ବିଭେଦ ନାହିଁ । ଏବଂ, ତଥାପି ସେ ସ୍ଥାନ-କାଳ-ପାତ୍ରର ଅତୀତ ।

ତାଙ୍କର ଅସୀମ କ୍ଷମତା, ଅନନ୍ତ ଐଶ୍ୱର୍ଯ୍ୟ, ଅସାମାନ୍ୟ ପ୍ରତାପ । କିନ୍ତୁ ଆମ ପାଖରେ ତାଙ୍କର ସତ୍ୟ ପରିଚୟ କେଉଁଠି ? ସେ ସୁନ୍ଦର, ସେ ସରସ, ସେ ମଧୁର । ଆନନ୍ଦର ଆକର ।

## ୨୬

ବାତ୍ସଲ୍ୟ ରସର ସାଧନା କରିବାକୁ ବସି ଗଦାଧର ଅନୁଭବ କଲା ସେ ସ୍ତ୍ରୀଲୋକ ହୋଇଯାଇଛି । ସମସ୍ତ ନାରୀଙ୍କ ଭିତରେ ସେ ଯେଉଁ ମା'ଙ୍କୁ ଦେଖିଆସିଛି ସେ ନିଜେ ବର୍ତ୍ତମାନ ସେହି ମା । ମା କୌଶଲ୍ୟା । ଅନ୍ତର ଭିତରେ ବିଗଳିତ ସ୍ନେହ, ଅଙ୍ଗରେ କରୁଣାର କୋମଳତା ।

ସ୍ନିଗ୍ଧରୁ ସେ ଚାଲିଆସିଲା ମଧୁରକୁ । ଧାରଣ କଲା ନାରୀର ଆଉ ଏକ ରୂପ । ସଂପର୍କର ଆଉ ଏକ ସେତୁ । ସାଧନାର ଆଉ ଏକ ସୋପାନ । ସେ ବର୍ତ୍ତମାନ ପ୍ରିୟା, ପ୍ରେମିକା, ପ୍ରେମୋତ୍ସୁକା । କୃଷ୍ଣକାମିନୀ ଗୋପାଙ୍ଗନା ।

କିଏ କହିବ ସେ ସ୍ତ୍ରୀଲୋକ ନୁହେଁ ! ବେଶ-ପୋଷାକ ସବୁ କିଣି ଦେଇଛନ୍ତି ମଥୁରବାବୁ । ଶାଢ଼ି ଘାଘରା କାଞ୍ଚଳା ଓଢ଼ଣୀ ଠାରୁ ଆରମ୍ଭ କରି ମୁଣ୍ଡରେ ବେଣୀ ପାରିବା ପାଇଁ ପରଚୂଳ ପର୍ଯ୍ୟନ୍ତ । ଦେହରେ ପୂରା ଏକ ସେଟ ସୁନାର ଅଳଙ୍କାର, ପାଦରେ ରୂପାର ପାଉଁଜ । କେବଳ

ସେତିକି ? ଚାଲି-ଚଳନରେ, ଆଖିର ଚାହାଣିରେ, ଭାବ.ଭଙ୍ଗୀରେ ସେ ସଂପୂର୍ଣ୍ଣ ନାରୀଟିଏ । ସବୁଥିରେ ରୂପସୀ ତରୁଣୀର ଲାବଣ୍ୟ । ସେ ସଖୀ, ସେ ଦାସୀ, ସେ ସେବିକା ।

ଦୁର୍ଗାପୂଜା ଉପଲକ୍ଷରେ ଜାନବଜାର ଆସିଛି ଗଦାଧର, ମଥୁରବାବୁଙ୍କ ଘରକୁ । ଗଦାଧରର ଆନନ୍ଦର ସୀମା ନାହିଁ । ସେ ମା'ଙ୍କର ଦାସୀ ହୋଇଛି । କେବଳ ମନରେ ନୁହେଁ, ବେଶ-ବାସ, ଭାବ-ଭଙ୍ଗୀ ସବୁଥିରେ । ଅନ୍ତରଙ୍ଗ ଭାବରେ ମିଶି ଯାଇଛି ଅନ୍ତଃପୁରିକାମାନଙ୍କ ସହିତ ।

ସନ୍ଧ୍ୟା ବେଳ । ମା'ଙ୍କର ଆରତି ହେବ । ଗଦାଧର କାହିଁ ? ମଥୁର ବାବୁଙ୍କ ସ୍ତ୍ରୀ ଜଗଦମ୍ବା ଖୋଜି ଖୋଜି ଆସି ଦେଖିଲେ ଗଦାଧର ସମାଧିସ୍ଥ ହୋଇ ବସିଛି । ସଖୀ ରୂପରେ ସମାଧିସ୍ଥ । ଜଗଦମ୍ବା ସଙ୍କଟରେ ପଡ଼ିଲେ । ତାକୁ ସେହି ଅବସ୍ଥାରେ ଛାଡ଼ିଦେଇ ନିଜେ ଯିବେ କେମିତି ଆରତି ଦେଖିବାକୁ ? ଭାବରେ ବିହ୍ୱଳ ହୋଇ ଯଦି କେଉଁଠି ପଡ଼ିଯାଏ ? ଆଗରୁ ବି ଥରେ ଏଇ ଘରେ ପଡ଼ିଯାଇଥିଲା ଟଳି ଟଳି, ପଡ଼ିଯାଇଥିଲା ପୁଣି ଅନ୍ୟ କେଉଁଠି ନୁହେଁ, ନିଆଁ ଉପରେ । ... କଅଣ କରିବେ ସେ ଏବେ ? କେମିତି ଚାଲିଯିବେ ତାକୁ ଏକୁଟିଆ ଛାଡ଼ିଦେଇ ସେହି ଅବସ୍ଥାରେ ?

ହଠାତ୍ ଗୋଟାଏ ବୁଦ୍ଧି ଦିଶିଲା ଜଗଦମ୍ବାଙ୍କୁ । ତାଙ୍କ ନିଜର ଅତି ମୂଲ୍ୟବାନ ଅଳଙ୍କାର ସବୁ ନେଇ ଆସିଲେ । ଗୋଟିଏ ଗୋଟିଏ କରି ପିନ୍ଧେଇ ଦେଲେ ଗଦାଧରକୁ । କାନ ପାଖକୁ ମୁହଁ ଆଣି କହିଲେ, 'ମା'ଙ୍କର ଆରତି ବେଳ ହେଲାଣି । ତୁମେ ପରା ଚାମର ଚଳେଇବ ? ଚାଲ ।'

ମା'ଙ୍କ ନାମ କାନରେ ପଡ଼ିଲା ମାତ୍ରେ ଧ୍ୟାନ ଭାଙ୍ଗିଗଲା ଗଦାଧରର । ଉଠି ପଡ଼ି ଚାଲିଲା ଠାକୁର-ବଙ୍ଗଳା ଆଡ଼କୁ । ଯାଇ ଠିକ୍ ପହଞ୍ଚିଛି, ସଙ୍ଗେ ସଙ୍ଗେ ଆରତି ବି ଆରମ୍ଭ ହୋଇଗଲା । ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ ସେ ବି ଚାମର ବ୍ୟଜନ କରିବାକୁ ଲାଗିଲା ।

ଦେଖଣାହାରି ସ୍ତ୍ରୀ ପୁରୁଷ ଦୁଇଟି ଅଲଗା ଧାଡ଼ିରେ ଛିଡ଼ା ହୋଇ ଆରତି ଦେଖୁଛନ୍ତି । କିନ୍ତୁ ମଥୁର ବାବୁଙ୍କର ବିସ୍ମୟର ସୀମା ନାହିଁ । ତାଙ୍କରି ସ୍ତ୍ରୀଙ୍କ ପାଖରେ ଛିଡ଼ା ହୋଇ ଚାମର ଚଳାଉଛି ଆଉ ଯେଉଁ ସ୍ତ୍ରୀଲୋକ ଜଣକ, ସେ କିଏ ? କାହା ସ୍ତ୍ରୀ ? ଏତେ ସୁନ୍ଦର ବେଶ-ଭୂଷା, ଆଶ୍ଚର୍ଯ୍ୟ ସୁନ୍ଦର ରୂପ- ଏ କାହା ଘରର ବୋହୂ ? ତାଙ୍କ ସ୍ତ୍ରୀଙ୍କ ବାନ୍ଧବୀମାନଙ୍କ ମଧରେ ଏପରି ଜଣେ ସୁନ୍ଦରୀ ସ୍ତ୍ରୀଲୋକ ଅଛନ୍ତି ତାଙ୍କୁ ଜଣା ନଥିଲା ।

ଆରତି ସରିଲା । ସ୍ତ୍ରୀଙ୍କୁ ପଚାରିଲେ ମଥୁର ବାବୁ, 'ତୁମ ପାଖରେ ଠିଆ ହୋଇ ଚାମର ଚଳାଉଥିଲା ଯେଉଁ ସ୍ତ୍ରୀଲୋକଟି, ସେ କିଏ ? ତା' ଘର କେଉଁଠି ? କାହା ସ୍ତ୍ରୀ ?'

'କଅଣ ହେଲା ! ତୁମେ ଚିହ୍ନି ପାରିଲ ନାହିଁ ? ସେ ପରା ବାବା ! ଆମ ଠାକୁର ଗଦାଧର ।'

ତୁଣ୍ଡରୁ ଆଉ କଥା ବାହାରିଲା ନାହିଁ ମଥୁରବାବୁଙ୍କର । ଆଶ୍ଚର୍ଯ୍ୟ ! ଏତେ ନିକଟରେ ଅଛି ଯେଉଁ ଲୋକ, ଦିନ ରାତି ପାଖରେ ଥାଇ ମଧ, ଚିହ୍ନିହେଲା ନାହିଁ ତାକୁ !

ଦିନେ ହୃଦୟକୁ ଡାକି ନେଇଗଲେ ଭିତର ଖଞ୍ଜାକୁ । ସ୍ତ୍ରୀଲୋକମାନଙ୍କ ମେଳରେ ସ୍ତ୍ରୀଲୋକ ବେଶରେ ବସିଛି ଗଦାଧର । ହୃଦୟକୁ ପଚାରିଲେ, 'କହିଲ, ଏମାନଙ୍କ ଭିତରୁ ତୁମ ମାମୁଁ କିଏ ?'

ହୃଦୟ ବହୁ ବେଳ ଯାଏ ଅନେଇ ଦେଖିଲା, ଚିହ୍ନି ପାରିଲା ନାହିଁ ।

ଭୈରବୀ କହିଲା, 'ମୁଁ ଠିକ୍ ଚିହ୍ନେଇ ଦେଇପାରିବି । ଯିଏ ଦେଖିବାକୁ ଅବିକଳ ରାଧାରାଣୀଙ୍କ ପରି ସେଇ ହେଉଛି ଗଦାଧର, ଦକ୍ଷିଣେଶ୍ୱରରେ ସକାଳେ ଯେତେବେଳେ ବଗିଚାରୁ ଫୁଲ ତୋଳୁଥାଏ ଗଦାଧର । ବହୁତ ଥର ତାକୁ ଦେଖି ମୁଁ ଭୁଲ୍‌ରେ ରାଧାରାଣୀ ବୋଲି ଭାବିଛି ।'

ଗୋପିନୀମାନଙ୍କର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି କାତ୍ୟାୟନୀ । ଗୋପିନୀମାନେ ସେହି ଦେବୀଙ୍କୁ ପୂଜା କରନ୍ତି ଏବଂ କୃଷ୍ଣ-ବର ଭିକ୍ଷା କରନ୍ତି । ଗଦାଧର ସେହିଭଳି ଯାଇ ଭବତାରିଣୀଙ୍କୁ ପ୍ରଥମେ ପ୍ରାର୍ଥନା କଲା । ମା, ତୋ ଶକ୍ତି ବଳରେ ସେହି ମଧୁରଙ୍କୁ ଆଣି ଦେ । ତୁ ଶ୍ୟାମା, ହେଲେ ଏଥର ତୁ ମୋର ଶ୍ୟାମ ହୁଅ ।

କିନ୍ତୁ ସେହି ମଧୁରର ଯିଏ ସର୍ବସ୍ୱତ୍ୱାଧିକାରିଣୀ, ସେହି ମହାଭାବଭାବିନୀ ରାଧାରାଣୀଙ୍କୁ ତୁଷ୍ଟ କରି ନ ପାରିଲେ କିଛି ହୋଇ ପାରିବ ନାହିଁ । ରାଧାରାଣୀଙ୍କ କୃପା ବିନା କୃଷ୍ଣ-ଦର୍ଶନ ଅସମ୍ଭବ ।

ରାଧାରାଣୀଙ୍କୁ ଧ୍ୟାନ କରିବାକୁ ବସିଲା ଗଦାଧର । ବୁଡ଼ିଗଲା ସେହି ଅକାମ-ପ୍ରେମମୂର୍ତ୍ତିଙ୍କ ସ୍ମରଣ-ମନନ ଭିତରେ । ଆକୁଳ ଆବେଗରେ ଅବିରାମ କେବଳ କହିଲା, ମୋତେ ଦେଖା ଦିଅ । ମୁଁ ତୁମ ସଖୀ, ତୁମ ସଙ୍ଗିନୀ । ମୋ ସହିତ ବଞ୍ଚନା କର ନାହିଁ । ଅଦର୍ଶନର ବିରହ, ଯେ କଅଣ, କେତେ ତୀବ୍ର, ତାହା ତ ତୁମେ ଜାଣ - '

ରାଧାରାଣୀ ଦେଖା ଦେଲେ । ନାଗେଶ୍ୱର ପୁଷ୍ପ ତୁଲ୍ୟ ଦେହର ବର୍ଣ୍ଣ । ଅନୁପମ ଗୌର-ଗୌରବୋଜ୍ଜ୍ୱଳ ମୂର୍ତ୍ତି । ଧୀରେ ଧୀରେ ନିକଟକୁ ଆସି ସେହି ମୂର୍ତ୍ତି ମିଳାଇଗଲା ଗଦାଧରର ଦେହରେ । ଗଦାଧର ରାଧାରାଣୀ ହୋଇଗଲା ।

ଯାହା ରାଧା ତାହି ହିଁ ଧାରା । ଯାହା ଧାରା ତାହା ହିଁ ରାଧା ।

କାନ୍ଦି କାନ୍ଦି ଆକୁଳ ହେଉଛନ୍ତି ଶ୍ରୀମତୀ । ଆଣି ଦିଅ ମୋ କୃଷ୍ଣଙ୍କୁ । ଯଦି ନ ପାରିବ ମୋତେ ନେଇ ଚାଲ ତାଙ୍କ ପାଖକୁ । ଦିନ ଗଣି ଗଣି ମୋ ନଖ-କ୍ଷୟ ହେଲା । କେବେ ହେବ ମୋ କୃଷ୍ଣ-ଚନ୍ଦ୍ରଙ୍କର ଉଦୟ ! କେବେ ଆଉ ଦେଖିବି ସେହି କୃଷ୍ଣ-ମେଘ ? ଦେଖିବି ଅବା କେମିତି ? ଆଖି ତ ମାତ୍ର ଦୁଇଟି- ସେଥିରେ ପୁଣି ନିମେଷ, ତହିଁରେ ପୁରି ବାରିଧାରା । ମୁଁ କେମିତି ଦେଖିବି ? 'ନିମିଖେ ନିମିଖ୍ ନାହିଁ ସୟ୍' - ଆଖିର ପଲକପାତ ମଧ୍ୟ ଅସହ୍ୟ ଲାଗୁଛି ।

ସୁଚିର ବିରହର ନାୟିକା । ନିରୁପାଧି ପ୍ରେମ, ଅଥଚ ଅନିର୍ଣ୍ଣେୟ ବିରହ । ଏତେ ଯଦି ଯନ୍ତ୍ରଣା, ତେବେ ଭୁଲି ଯାଉ ନ' କାହିଁକି ? ହାୟ ହାୟ, ତାଙ୍କୁ ଭୁଲିବ କେମିତି ? ଜଳ ଆଣିବାକୁ ଗଲେ ଯମୁନା ଦେଖୁଛି । ଘରେ ଥିଲେ ଦେଖୁଛି ଦୂରର ଗିରି ଗୋବର୍ଦ୍ଧନ । ବନକୁ ଗଲେ ଦେଖୁଛି ସେହି କୁଞ୍ଜ-କୁଟୀର । ଶୁଭିଯାଉଛି ସେହି ବେଣୁ-ଧ୍ୱନି । ତାଙ୍କୁ ଭୁଲିବି କେମିତି ? ବାହାରେ ତାଙ୍କୁ ପାଉ ନାହିଁ, ତେଣୁ ଖୋଜୁଛି ଅନ୍ତର ଭିତରେ । ସେହିଠାରେ ତାଙ୍କୁ ଦେଖୁଛି, ତାଙ୍କ କଥା ଶୁଣୁଛି, ତାଙ୍କୁ ସ୍ପର୍ଶ କରୁଛି, ଆଘ୍ରାଣ କରୁଛି । ତାହାହିଁ ମୋର ମାନସ-ସାକ୍ଷାତକାର; ମୋ ମାନସ-ମହୋତ୍ସବ । କହ ସଖୀ, ଯିଏ ଅନ୍ତରର ଅନ୍ତରତମ, ତାଙ୍କ ସହିତ କଅଣ ସର୍ବାଂଶରେ ବିରହ

ହୋଇପାରେ ।?

ତେବେ, କାହିଁକି ଏ ବିରହ, କାହିଁକି ? ଅନ୍ତର ଭିତରେ ଯାହାଙ୍କୁ ପାଇ ପାରୁଛି ତାଙ୍କୁ ବାହାରେ ପାଇବି ନାହିଁ କାହିଁକି ? ନିରାଧାର କାହିଁକି ହେବେ ନାହିଁ ଆଧାରଭୂତ ? କାହିଁକି ଆସି ଉଭା ହେବେ ନାହିଁ ଆଖି ଆଗରେ !

ବୁଝିଲୁ ସଖୀ, ତାଙ୍କୁ ଗଭୀର-ନିବିଡ଼ ଭାବରେ ପାଇବି ବୋଲି ଏଇ ବିରହ । ବିରହ ହେଉଛି ପ୍ରେମରୂପା ଭାବନା । ପ୍ରେମ ରୂପା ଜୀବିକା । ମିଳନରେ ତ ମନ ପ୍ରିୟତମ ଠାରେ ଅଭିନିବିଷ୍ଟ ହେବାକୁ ଚାହେଁ ନା, ସେତେବେଳେ ସେ ଲୀଳା-ସର୍ବସ୍ୱ, ଗୋଟାଏ ଲୀଳାର ସମାପ୍ତି ପରେ ଅନ୍ୟ ଏକ ଲୀଳାର ସନ୍ଧାନ କରେ; ଗୋଟାଏ ବିଳାସରୁ ପୁଣି ଭିନ୍ନ ଏକ ବିଳାସକୁ ଯିବାକୁ ଚାହେଁ । କିନ୍ତୁ ବିରହରେ ସମସ୍ତ ସୃଷ୍ଟି ହିଁ ତଦ୍‌ଗତ-ସମାହିତ । ମିଳନରେ ସେ ସଂକ୍ଷିପ୍ତ, ବିରହରେ ପରିବ୍ୟାପ୍ତ । ମିଳନରେ ମୁଁ ଏକାକୀ, ବିରହରେ ତ୍ରିଭୁବନ ମୋର ସହଚର । ସେଇଥିପାଇଁ କୃଷ୍ଣ କହିଲେ ଗୋପିନୀମାନଙ୍କୁ, ମୋତେ ପାଖରେ ପାଇଲେ ଯେତେ ସ୍ୱାଦ, ତା' ଠାରୁ ଢ଼େର ବେଶୀ ସ୍ୱାଦ ମୋତେ ଧ୍ୟାନ କଲେ । ଠିକ୍ ମଧୁଧାରା ପରି ଏହି ଧ୍ୟାନ ଧାରା ।

ପ୍ରେମ ପରି ଆଉ କଅଣ ଅଛି ! ଏହି ବିଶ୍ୱ ସଂସାର ଭଗବାନଙ୍କର ଅଧୀନ, କିନ୍ତୁ ଭଗବାନ ପ୍ରେମର ଅଧୀନ । ସର୍ବସ୍ୱାଧୀନ ଭଗବାନ ପ୍ରେମ କାମନାରେ ଆସି ଭକ୍ତ ପାଖରେ ହାତ ପତେଇ ଛିଡ଼ା ହୁଅନ୍ତି । ସହଜେ ତ ସେ ଆପ୍ତକାମ, ତାଙ୍କର ବା ଅଭାବ କଅଣ ? ତେବେ ସେ ଭକ୍ତ ପାଖକୁ ଆସି ପ୍ରେମ-ଭିକ୍ଷା କରନ୍ତି କାହିଁକି ? କରନ୍ତି, ତାଙ୍କର ଅଭାବ ଅଛି ବୋଲି ନୁହେଁ, ଏହା ତାଙ୍କର ସ୍ୱଭାବ ବୋଲି ।

ପ୍ରେମ ହିଁ ପୁରୁଷାର୍ଥ । ବାହାରେ ବିଷଜ୍ୱାଳା, ଭିତରେ କିନ୍ତୁ ଅମୃତମୟ । ଶୀତ ଅଛି, ପୁଣି ଆଚ୍ଛାଦନ ଅଛି । ଆଚ୍ଛାଦନ ଅଛି ବୋଲି ତ ଶୀତ ସୁଖକର । ପୁଣି, ଶୀତ ଅଛି ବୋଲି ସିନା ଆଚ୍ଛାଦନ ଆରାମପ୍ରଦ । ସେହିଭଳି, ମିଳନର ଆକାଂକ୍ଷାରେ ବିରହ ଆନନ୍ଦମୟ, ପୁରି ବିରହର ଉତ୍‌କଣ୍ଠାରେ ମିଳନ ମଧ୍ୟ ଆନନ୍ଦମୟ । ତଥାପି ମିଳନ ଠାରୁ ବିରହ ଅଧିକତର । ମିଳନରେ କେବଳ ସଙ୍ଗ, ବିରହରେ ଯେଉଁ ଭଳି ସ୍ମୃତି ସେହିଭଳି ପୁଣି ଆଶା । ପ୍ରଥମେ ଅବଶ୍ୟ ଦୁଃଖ, ମାତ୍ର ପରିପାକରେ ଆନନ୍ଦ ଏବଂ ଏହି ଆନନ୍ଦ ହିଁ ପରାକାଷ୍ଠା ।

ଗଦାଧର ବର୍ତ୍ତମାନ ସେହି ଆନନ୍ଦମୟୀ ବିରହିଣୀ ।

ପ୍ରେମର ଏଇ ଯେଉଁ ଆନନ୍ଦ, ଏହା କଅଣ ଭକ୍ତର ନିଜ ଆସ୍ୱାଦନ ପାଇଁ ? ନା; ଏହା ଭଗବାନଙ୍କ ଆସ୍ୱାଦନ ପାଇଁ । ଏ ରସ ଯେତିକି ମିଠା ହୁଏ, ଯେତେ ଅଧିକ ଏହାର ଜ୍ୱାଳା । ଏଥିରେ ଯେତେ ଆର୍ତ୍ତି ତେତେ ଆପ୍ତି ।

ଚାରି ପ୍ରକାର ପ୍ରେମ । କେବଳ ଜଣକ ଆଡୁ ଭଲ-ପାଇବା ରହୁଥିବ, ଏହାକୁ କହନ୍ତି ଏକାଙ୍ଗୀ । ଅର୍ଥାତ୍ ଜଣେ ଚାହେଁ, ଅନ୍ୟ ଜଣକ ଚାହେଁ ନା । ଯେପରି ହଂସ ଓ ଜଳ । ହଂସ ଜଳକୁ ଭଲ ପାଏ, ମାତ୍ର ଜଳର ହଂସ ପ୍ରତି ଆକର୍ଷଣ ନାହିଁ । ଆଉ ଗୋଟାଏ ପ୍ରକାର ପ୍ରେମ ଅଛି, ତାକୁ କୁହାଯାଏ ସାଧାରଣୀ । ଏଠି କେବଳ ନିଜର ସୁଖ-କାମନା । ତୁମେ ସୁଖୀ ହେଲ କି ନ ହେଲେ, ସେଥିରେ ମୋର କିଛି ଯାଏ-ଆସେ ନାହିଁ ।ଏ ପ୍ରେମରେ ନାୟିକା କେବଳ ଆତ୍ମସୁଖ ପାଇଁ

ନାୟକଙ୍କୁ ପ୍ରିୟ ମଣେ । ଯେପରି ଚନ୍ଦ୍ରାବଳୀ । ତୃତୀୟ ପ୍ରକାର ହେଉଛି ସମଞ୍ଜସା । ସମାନ ସମାନ । ମୋର ସୁଖ ହେଉ, ତୁମର ବି ସୁଖ ହେଉ । ନାୟକର ସୁଖ ଅବଶ୍ୟ ନାୟିକାର କାମ୍ୟ, କିନ୍ତୁ ସେଥି ସହିତ ନିଜ ସୁଖ ପ୍ରତି ସମାନ ଲକ୍ଷ୍ୟ । ସର୍ବଶେଷ, ଅର୍ଥାତ୍ ସବୁଠାରୁ ଉଚ୍ଚ ପ୍ରେମ ହେଲା ସମର୍ଥା । ଆତ୍ମସୁଖ ଚାହେଁ ନା, କେବଳ ତୁମରି ସୁଖ ହେଉ । ମୋର ଯାହା ହେଉ ପଛକେ, ତୁମେ ସୁଖରେ ଥାଅ । ଏଇଟା ହିଁ ହେଉଛି ଶ୍ରୀମତୀଙ୍କର ଭାବ । ତେଣୁ ଶ୍ରୀମତୀଙ୍କର ସମର୍ଥା ରତି । କେବଳ କୃଷ୍ଣ-ସୁଖରେ ସୁଖୀ । କୃଷ୍ଣୈକନିଷ୍ଠା । ସେ କୃଷ୍ଣମୟୀ, ତେଣୁ ସେ ଶ୍ରୀମତୀ । ମୂର୍ତ୍ତିମୟୀ ମାଧୁରୀ ।

ମୋର ଯାହା କିଛି ଅଛି ସବୁ ତୁମକୁ ଦେଇଦେବି । କୁଳ-ଶୀଳ, ଧୈର୍ଯ୍ୟ-ଲଜ୍ଜା, ଦେହ-ଆତ୍ମା, ପରକାଳ-ଇହକାଳ । କିଛି ଚାହେଁ ନା ବିନିମୟରେ । ମୋ ପ୍ରେମ ଧର୍ମ-ଅଧର୍ମର ଅତୀତ । ଧର୍ମର ଅତୀତ, କାରଣ ତୁମ ସହିତ ମେର ବିବାହ ନାହିଁ । ଅଧର୍ମର ମଧ୍ୟ ଅତୀତ, କାରଣ ମୁଁ ତ ତୁମରି ସ୍ୱରୂପ ଶକ୍ତି । ତେଣୁ ''ଯେ ଧନ ତୋମାରେ ଦିବ ସେଇ ଧନ ତୁମି'' । ତୁମକୁ ମୁଁ ଯେଉଁ ଧନ ଦେବି,ତୁମେ ନିଜେ ସେହି ଧନ । 'ମୁଁ' ଛଡ଼ା 'ତୁମେ' ନାହିଁ । ପୁଣି ତୁମକୁ ଛାଡ଼ି ମୁଁ ନାହିଁ । ଆଉ ସମସ୍ତ ସମ୍ବନ୍ଧରେ ଏକରେ ଏକ ମିଶିଲେ ଦୁଇ; କେବଳ ପ୍ରେମରେ ଦୁଇର ମିଳନରେ ଏକ ।

କିଏ କହିବ ଗଦାଧର ରାଧିକା ନୁହେଁ ? ରୂପ ଯେପରି କି ଠିକିରି ପଡୁଛି । କେବଳ ବେଶ-ପୋଷାକରେ ବା ଭାବ-ଭଙ୍ଗୀରେ ନୁହେଁ, ମହାଭାବରେ । ଠିକ୍ ରାଧିକା ପରି ସେ ଜୟଶ୍ରୀମୂର୍ତ୍ତି ଧାରିଣୀ । ତା'ର ଶରୀର ସତେ କି ଅମୃତ-ବର୍ତ୍ତିକା । କିନ୍ତୁ ଯେତେ ରୂପ ଦେଖୁଛ, ସମସ୍ତ ସେହି କୃଷ୍ଣଙ୍କର ପ୍ରତିଛାୟା । ''ତୋମାର ଗରବେ ଗରବିଣୀ ଆମି, ରୂପସୀ ତୋମାର ରୂପେ ।'' ତୁମରି ଗୌରବରେ ମୁଁ ଆଜି ଗର୍ବିତା, ତୁମରି ରୂପରେ ରୂପମୟୀ ।

ମନ ହିଁ ତିଆରି କରେ ଶରୀରକୁ । ମନରେ ଯେଉଁ ପ୍ରକାର ଭାବ, ମୁହଁରେ ସେହି ଅନୁରୂପ ଆଭା । ହନୁମାନ-ଭାବରେ ଥିଲା ବେଳେ ଗଦାଧରର ଲାଞ୍ଜ ଉତ୍ପନ୍ନ ହେବାର ସୂଚନା ଦେଖାଯାଇଥିଲା । ବର୍ତ୍ତମାନ ସ୍ତ୍ରୀ-ଭାବରେ ଥାଇ ତା'ର ରୋମକୂପରୁ ନିୟମିତ ସମୟରେ ରକ୍ତକ୍ଷରଣ ହେବାକୁ ଲାଗିଲା ।

ପଦ୍ମଲୋଚନ ଜଣେ ପ୍ରସିଦ୍ଧ ପଣ୍ଡିତ । କହିଲେ, 'ଏ ସମସ୍ତ ଉପଲବ୍ଧି ବେଦ-ପୁରାଣକୁ ଅତିକ୍ରମ କରିଯାଉଛି ।'

ପ୍ରଥମ କୈଶୋରରେ ମନେ ମନେ ଆକ୍ଷେପ କରୁଥାଏ ଗଦାଧର, ସେ କାହିଁକି ଝିଅଟିଏ ନ ହେଲା ! ଝିଅ ହୋଇଥିଲେ କେତେ ଆନନ୍ଦରେ ସେ ଗୋପିନୀମାନଙ୍କ ପରି କୃଷ୍ଣଙ୍କୁ ଭଜନା କରି ପାରୁଥାଆନ୍ତା । ଶେଷରେ ହୁଏତ ଦିନେ ତାଙ୍କୁ ପାଇ ବି ଯାଇ ପାରିଥାଆନ୍ତା । ଏହି ପୁରୁଷ-ଦେହଟା ହିଁ ତା'ର ସେହି ସାଧନା ପଥରେ ବାଧା । ଯଦି ଆଉ ଥରେ ଜନ୍ମ ନେବାକୁ ପଡ଼େ, ସେ ନିଶ୍ଚୟ ସ୍ତ୍ରୀ ହୋଇ ଜନ୍ମିବ । କୌଣସି ବ୍ରାହ୍ମଣ ଘରର ସୁନ୍ଦରୀ ବାଳ-ବିଧବା ହୋଇ । କୃଷ୍ଣ ବ୍ୟତୀତ ଆଉ କାହାକୁ ସେ ପତି ବୋଲି ଜାଣିବ ନାହିଁ । ସାନ କୁଡ଼ିଆ ଘରଟିରେ ସେ ରହିଥିବ, ପାଖରେ ଥିବ ଦୂରସଂପର୍କୀୟା ବେଶୀ-ବୟସର ପିଉସୀ କିମ୍ବା ମାଉସୀ । ଘରକୁ ଲାଗି ଟିକିଏ ଖୋଲା ଜାଗା ଥିବ, ସେଠି ପନି-ପରିବା ଫଳେଇବ । ଗୁଜରାଣ ମେଣ୍ଟେଇବ ଅରଟରେ ସୂତା କାଟି । ଗୁହାଳରେ

ଗାଈଟିଏ ଥିବ,ଦୁଧ ଦୁହିଁବ ନିଜ ହାତରେ । ସେଇ ଦୁଧରୁ ସର-ଲବଣୀ ତିଆରି କରି-ବସି-ବାହୁନି-ହୋଇ କାନ୍ଦିବ । ମୋ କୃଷ୍ଣରେ, ଖାଇବୁ ଆ ! ତୋତେ ନିଜ ହାତରେ ଖୁଆଇବି ବୋଲି ଏତେ ସବୁ କରିଛି, କେତେବେଳୁଁ ଚାହିଁ ରହିଛି ! ... ଏତେ ସେବା, ଏତେ ଆକୁଳତା - ଏ ସବୁ କଅଣ ନିଷ୍ଫଳ ହୋଇପାରେ ? ଗୋପ-ବାଳକ ବେଶରେ କୃଷ୍ଣ ଆସି ଦେଖା ଦେବେ, ଖାଇଯିବେ ସର-ଲବଣୀ ତା' ହାତରୁ, କେହି କିଛି ଜାଣି ପାରୁ ନଥିବେ । ଦିନେ ନୁହେଁ, ପ୍ରତିଦିନ ।

କିଶୋର ବୟସର ଏ ଇଚ୍ଛା ପୂରଣ ହୋଇ ନାହିଁ ସିନା, କିନ୍ତୁ ବର୍ତ୍ତମାନ, ସାଧନାରେ, ଆହୁରି ଉଚ୍ଚ ଭୂମିକୁ ଆସି, ଗଦାଧରର ଶ୍ରୀକୃଷ୍ଣ-ଦର୍ଶନ ହେଲା । ଏବଂ, ଭଗବାନଙ୍କ ଭାବ ହେଉଛି ଏହି ମଧୁର -ଭାବ । ଏହି ଘନାନନ୍ଦମୟ ମଧୁର ଭାବରେ ହିଁ ତାଙ୍କର ମତି, ରତି, ଅବସ୍ଥିତି । ଏହି ମଧୁରଭାବ ସାଧନାର ଶେଷ ଶିଖରରେ ପହଞ୍ଚି ଗଦାଧର ଦେଖିଲା ପାଦ ତଳର ତୃଣ ଠାରୁ ଊର୍ଦ୍ଧ୍ୱର ଅନନ୍ତ ଆକାଶ ପର୍ଯ୍ୟନ୍ତ ସମସ୍ତ କୃଷ୍ଣ । ଏପରି କି ସେ ନିଜେ ମଧ ସେହି କୃଷ୍ଣ-ବାସୁଦେବ । ଯିଏ ରାଧା ସେହି ତ ମାଧବ । କୃଷ୍ଣ ହିଁ ଦୁଇ ଅଂଶରେ ସମାନ ଭାବରେ ବିଭକ୍ତ ହୋଇଛନ୍ତି । ପ୍ରିୟ ଓ ପ୍ରିୟା । ଭଗବତ୍ତା ଓ ଭକ୍ତି ।

ଫୁଲଟିଏ ଫୁଟିଥିଲା ଘାସରେ । ଠାକୁର ଛିଣ୍ଡାଇ ଆଣିଲେ ସେଇଟି । କହିଲେ ଭକ୍ତମାନଙ୍କୁ ଲକ୍ଷ୍ୟ କରି, 'ସେତେବେଳେ ଯେଉଁ କୃଷ୍ଣମୂର୍ତ୍ତି ଦେଖୁଥିଲି, ଠିକ୍ ଏହି ଭଳି ତା' ଦେହର ରଙ୍ଗ ।'

ସାମାନ୍ୟ ଘାସ-ଫୁଲରେ ମଧ ତାଙ୍କରି ଲାବଣ୍ୟ-ଲିଖନ ।

ଭାଗବତ-ପାଠ ହେଉଛି, ଶୁଣୁଛି ଗଦାଧର । ହଠାତ୍ ଜ୍ୟୋତିର୍ମୟମୂର୍ତ୍ତି ଶ୍ରୀକୃଷ୍ଣଙ୍କୁ ଦେଖିଲା ଆଖି ଆଗରେ । ଦେଖିଲା,ତାଙ୍କ ପାଦରୁ ଜ୍ୟୋତିର ଗୋଟାଏ ରେଖା ବାହାରି ଆସି ପ୍ରଥମେ ସ୍ପର୍ଶ କଲା ଭାଗବତକୁ,ତା' ପରେ ଆସି ଲାଗିଲା ତା' ନିଜ ଛାତିରେ ।

କଅଣ ଏହାର ତାତ୍ପର୍ଯ୍ୟ ? ବୁଝିବାରେ ବିଳମ୍ବ ହେଲା ନାହିଁ ।

ଭାଗବତ, ଭକ୍ତ ଓ ଭଗବାନ ତିନିହେଁ ଏକ । ଏକରେ ତିନି,ତିନିରେ ପୁଣି ଏକ ।

## ୨୭

ଗଙ୍ଗାରେ ଗାଧୋଉଛନ୍ତି, ଇଏ କିଏ !

କାଳୀ ମନ୍ଦିରରେ ପୂର୍ବକୁ ମୁହଁ କରି ବସି ଧ୍ୟାନ କରୁଛି ଗଦାଧର; ମନଶ୍ଚକ୍ଷୁରେ ଭାସି ଉଠିଲା ଜଣେ ସନ୍ନ୍ୟାସୀଙ୍କ ମୂର୍ତ୍ତି । ନାଗା ସନ୍ନ୍ୟାସୀ । କଟିରେ କୌପୀନଟାଏ ବି ନାହିଁ । ମସ୍ତକରେ ଦୀର୍ଘ ଜଟା, ତେଜଃପୁଞ୍ଜ କଳେବର । ଗଙ୍ଗାରେ ସ୍ନାନ କରୁଛନ୍ତି ।

ଧ୍ୟାନରେ ବସି ଗଦାଧର ଦେଖିଲା ସେହି ମୂର୍ତ୍ତି । ଉଠି ପଡ଼ି ଆଗେଇ ଗଲା ନଈ-ଘାଟ ଆଡ଼କୁ ।

ଠିକ୍ ଦେଖିଛି । ଦୀର୍ଘକାୟ ଜଟାଜୂଟଧାରୀ ଉଲଙ୍ଗ ଜଣେ ସନ୍ନ୍ୟାସୀ ସ୍ନାନ ସାରି ଆସି ଠିଆ ହେଲେ ତା' ଆଗରେ । ଦହନୋତ୍ତୀର୍ଣ୍ଣ ସୁବର୍ଣ୍ଣ ପରି ଉଜ୍ଜ୍ୱଳ ଦେହକାନ୍ତି ।

'ଆରେ, ଏଇ ଯେ ମିଳି ଯାଇଛି ଯୋଗ୍ୟ ଲୋକ ।' ଗଦାଧର ଉପରେ ଆଖି ପଡ଼ିଲା

ମାତ୍ରେ ଆନନ୍ଦରେ ଉଦ୍‌ଫୁଲ୍ଲ ହୋଇ ଉଠିଲେ ସନ୍ନ୍ୟାସୀ । କହିଲେ, 'ସାଧନ-ଭଜନ ! ମାନେ ?

'ଭବାତୀତ ଅରୂପର ସାଧନ । ବେଦାନ୍ତ ସାଧନ । ଯାହାକୁ କହନ୍ତି ବ୍ରହ୍ମବିଦ୍ୟା ଲାଭ । କରିବ ?'

'କରିବି କି ନାହିଁ ସେ କଥା ତ ମୁଁ ଜାଣେ ନାହିଁ ।'

'ତୁମେ ଜାଣ ନାହିଁ ମାନେ ? ତେବେ କିଏ ଜାଣେ ?'

'ମୋ ମା ଜାଣନ୍ତି ।'

'କିଏ ତୁମ ମା ?'

ମନ୍ଦିର ଆଡ଼କୁ ଅଙ୍ଗୁଳି-ସଂକେତ ଗଲା ଗଦାଧର । କହିଲା, 'ସେହି ପାଷାଣମୟୀ ମୋ ମା ।'

ବିଦ୍ରୂପର ଚେନାଏ ହସ ଖେଳିଗଲା ସନ୍ନ୍ୟାସୀଙ୍କ ମୁହଁରେ । ସେ ତ ଗୋଟାଏ ମୂର୍ତ୍ତି, ଗୋଟାଏ ମୁଉଳିକା । ସେ ପୁଣି ମା ହେଲା କେମିତି ? ଈଶ୍ୱର ଏକ, ସତ୍ୟ । ଦେବ-ଦେବୀ ସବୁ ଭ୍ରମ ।

ମୁହଁ ଉପରେ ସିଧା ସଳଖ କିଛି କହିଲେ ନାହିଁ । କହିଲେ, 'ହଉ, ଯାଅ, ତୁମ ମା'ଙ୍କୁ ପଚାରି ଆସ । କିନ୍ତୁ, ଶୁଣ, ବେଶୀ ଡେରି କରିବ ନାହିଁ । ଅତି ବେଶୀରେ ତିନି ଦିନ ମୁଁ ରହିବି ଏଠି । ତିନି ଦିନରୁ ଅଧିକ ଏକ ଦଣ୍ଡ ବି ମୁଁ ରହେଁ ନା କେଉଁଠି । ଏହାରି ଭିତରେ ଦୀକ୍ଷାର ବ୍ୟବସ୍ଥା କରିବା ଦରକାର ।'

ଗଦାଧର କେତୋଟି ମୁହୂର୍ତ୍ତ ନିରୀକ୍ଷଣ କରି ଦେଖିଲା ସନ୍ନ୍ୟାସୀଙ୍କୁ । ପଚାରିଲା, 'ଆପଣ ତୋତାପୁରୀ ?'

'ଆଶ୍ଚର୍ଯ୍ୟ ! ତୁମେ ମୋ ନାଁ ଜାଣିଲ କେମିତି ?'

ହଁ, ମୁଁ ତୋତାପୁରୀ । ପଞ୍ଜାବର ଲୁଧିଆନାରେ ମୋ ମଠ ଥିଲା । ଚାଳିଶ ବର୍ଷ ସାଧନା କରିଛି । ନର୍ମଦା ନଦୀ ତୀରରେ ଦୁଷ୍କର ତପସ୍ୟା କରି ନିର୍ବିକଳ୍ପ ସମାଧି ଲାଭ ହୋଇଛି ମୋର । ବ୍ରହ୍ମ-ସାକ୍ଷାତ ହୋଇଛି । ବ୍ରହ୍ମଜ୍ଞ ହେବା ପରେ ତୀର୍ଥାଟନ କରୁଛି । ଗଙ୍ଗାସାଗର୍ ଓ ଶ୍ରୀକ୍ଷେତ୍ର ଦର୍ଶନ ସାରି ଏବେ ଆସିଛି ଦକ୍ଷିଣେଶ୍ୱର । ମାତ୍ର ତିନିଦିନ ପାଇଁ । ମୁଁ ଶକ୍ତି-ଭକ୍ତି ସ୍ୱୀକାର କରେ ନାହିଁ । ମୁଁ ରହିଛି ବିଶୁଦ୍ଧ ଜ୍ଞାନର କାଣ୍ଡରେ । ମୁଁ ବେଦାନ୍ତବାଦୀ । ମୋର ନିରାକାର ବ୍ରହ୍ମ-ସାଧନା ।

ଗଦାଧର ଆସିଲା ଭବତାରିଣୀଙ୍କ ପାଖକୁ । କହିଲା, ମା ତୋତାପୁରୀ କହୁଛି, ନିରାକାର ସାଧନା କରିବାକୁ । କରିବି ?'

'ନିଶ୍ଚୟ କରିବୁ ।' ଆଦେଶ ହେଲା ମା'ଙ୍କର । 'ତୋତେ ଶିଖେଇବା ପାଇଁ ତ ସେ ଆସିଛି ।'

କିନ୍ତୁ ବ୍ରାହ୍ମଣୀର ଭୀଷଣ ଆପତ୍ତି । କହିଲା, ସାବଧାନ ! ସେ ଲଙ୍ଗଳାଟା ପାଖକୁ ଯାଅ ନାହିଁ । ସେ ତୁମର ସମସ୍ତ ଭାବ ନଷ୍ଟ କରି ଦେଇ ତୁମକୁ ଶୁଖିଲା ଦଉଡ଼ି କରି ଛାଡ଼ିଦେବ ।

କରୁ ! ଭାବ ରାଜ୍ୟର ଚରମ ଭୂମିରେ ତ ପହଞ୍ଚି ସାରିଛି । ଏବେ ଥରେ ଭାବାତୀତ ଅଦ୍ୱୈତ-ଭୂମିରୁ ବୁଲି ଆସେ ।

ଝିଅମାନେ ସେତେ ଦିନ ପର୍ଯ୍ୟନ୍ତ କଣ୍ଢେଇ ନେଇ ଖେଳନ୍ତି ଯେତେ ଦିନ ସେମାନଙ୍କର ବିବାହ ହୋଇ ନଥାଏ । ବିବାହ ପରେ, ମାନେ, ସ୍ୱାମୀ-ଲାଭ ହେଲେ କଣ୍ଢେଇ ସବୁକୁ ବାନ୍ଧିବୁନ୍ଧି ପେଟରା ଭିତରେ ରଖି ଦିଅନ୍ତି । ସେହି ଭଳି, ଈଶ୍ୱର ଲାଭ ହେଲା ପରେ ଆଉ ପ୍ରତିମା ଦରକାର ପଡ଼େ ନାହିଁ ।

ସାକାର-ନିରାକାର ଦୁଇଟା ହିଁ ଦରକାର । କେହି ବା ସାକାରରୁ ନିରାକାରକୁ ଆସେ । କିଏ ପୁଣି ନିରାକାରରୁ ଆସେ ସାକାରକୁ । ତେଲିଙ୍ଗୀ ବାଜାରେ ଦୁଇ ରକମ ସ୍ୱର ଥାଏ । ପୋଁ.. ଓଁ.. ଓଁ.. ଥାଏ, ପୁଣି ମହୁରି ବି ଥାଏ । ପୋଁ ଟା ଏକସୁରା, କେବଳ ଗୋଟାଏ ସ୍ୱର । ସେଇଟା ନିରାକାର । ଆଉ ମହୁରିରେ ବାଜେ ନାନା ରକମ ରାଗ-ରାଗିଣୀ । ନାନା ଭାବରେ ଈଶ୍ୱର-ସମ୍ଭୋଗ ।

ତା'ଛଡ଼ା, ମା'ଙ୍କ ଆଦେଶ ବି ମିଳିଛି । ଗଦାଧର ଆସିଲା ତୋତାଙ୍କ ପାଖକୁ । କହିଲା, 'ମା 'ହଁ' କହିଲେ । ଦୀକ୍ଷା ନେବି । ମୋତେ ଆପଣଙ୍କ ଚେଲା କରନ୍ତୁ ।'

'ଗୁରୁ ମିଳେ ଲାଖ୍ ତୋ ଚେଲା ମିଳେ ଏକ୍ ।' ଖୁସି ହେଲେ ତୋତା । କହିଲେ, 'ପ୍ରଥମେ ତୁମକୁ ଶିଖା-ସୂତ୍ର ତ୍ୟାଗ କରି ଯଥାଶାସ୍ତ୍ର ସନ୍ନ୍ୟାସ ଗ୍ରହଣ କରିବାକୁ ପଡ଼ିବ ।'

'କରିବି । କିନ୍ତୁ ଗୋପନରେ ।'

'ଗୋପନରେ କାହିଁକି ?'

'ପ୍ରାୟ ବର୍ଷେ ହେଲା ମୋ ମା ଆସିଏଠି ରହିଛନ୍ତି । ମୋ ଗର୍ଭଧାରିଣୀ ମା ।ସବୁ ସଂସ୍କାର ବିସର୍ଜନ ଦେଇ ମୁଁ ଯଦି ପୂର୍ଣ୍ଣ ସନ୍ନ୍ୟାସ ନିଏ, ମା ଜାଣିଲେ ମନରେ ବହୁତ ଆଘାତ ପାଇବେ ।'

ଏଇଟା ହେଉଛି ୧୨୭୧ ସାଲ (୧୮୬୫ ଖ୍ରୀଷ୍ଟାବ୍ଦ)ର କଥା । ପ୍ରାୟ ବର୍ଷେ ହେଲା ଚନ୍ଦ୍ରମଣି ଆସି ଦକ୍ଷିଣେଶ୍ୱରରେ ରହିଛନ୍ତି । ଯେଉଁ ଘରେ ଗଦାଧର ନାହିଁ ସେ ଘର ତାଙ୍କ ପାଇଁ ଘର ନୁହେଁ । ତେଣୁ ସେ ଜୀବନର ଅବଶିଷ୍ଟ ଦିନଗୁଡ଼ିକ ଏଇଠି, ଏଇ ଗଙ୍ଗା କୂଳରେ ଗଦାଧର ପାଖରେ କଟେଇ ଦେବାକୁ ଚାହାନ୍ତି । ରହିଛନ୍ତି ନହବତଖାନା ଘରେ । ଗଦାଧର ଉପରେ ସବୁବେଳେ ଆଖି ପଡୁଛି - ଏତିକି କେବଳ ସେ ଚାହାନ୍ତି, ଆଉ କିଛି ନୁହେଁ ।

ମଥୁରବାବୁ ସ୍ୱଭାବତଃ ଟିକିଏ କଞ୍ଜୁସ ପ୍ରକୃତିର ଲୋକ । କିନ୍ତୁ ଗଦାଧର ବେଳକୁ, କାହିଁକି କେଜାଣି, ତାଙ୍କ ଉଦାରତାର ସୀମା ନାହିଁ । ସେହି ଉଦାରତା ଚନ୍ଦ୍ରମଣିଙ୍କ ପାଇଁ ମଧ୍ୟ ।

ଦିନେ ମଥୁରବାବୁ କହିଲେ, 'ଆଚ୍ଛା, ଜେଜୀ ମା, ତୁମେ ତ ମୋ ଠାରୁ କେବେ କିଛି ସେବା ନେଲ ନାହିଁ ?'

'ମୋର ଅଭାବ କଅଣ ?' ହସିଲେ ଚନ୍ଦ୍ରମଣି ।

'ତଥାପି କିଛି ଗୋଟାଏ ମାଗ । ଯାହା ତୁମ ଖୁସି ।'

'କଅଣ ମାଗିବି, ପୁଅ ? ମାଗିବାର ବା ଅଛି କଅଣ ? ଖାଇବା-ପିନ୍ଧିବାର କଷ୍ଟ ତ ତୁମେ ରଖି ନାହିଁ । ଆଉ କଅଣ ମାଗିବି ?'

ମଥୁରବାବୁଙ୍କ ମନ ବୁଝିଲା ନାହିଁ । ତଥାପି ଜିଗର କଲେ । ତୁମକୁ କିଛି ଦେବା ପାଇଁ ମୋର ଭାରି ମନ । ଯାହା ମନକୁ ଆସୁଛି, କିଛି ଗୋଟାଏ କୁହ, ନିଅ ମୋ ପାଖରୁ ।

ଯାହାର ଗଦାଧର ଅଛି, ପ୍ରକୃତରେ ତା'ର ଆଉ କଅଣ ଅଛି ଚାହିଁବାର ? ତଥାପି ମଥୁରବାବୁଙ୍କ ଜିଦ୍‌ରୁ ଶେଷକୁ ମାଗିଲେ ଗୋଟାଏ ଜିନିଷ । କହିଲେ, 'ଯଦି ନିହାତି ଦେବାକୁ ଚାହୁଁଛ, ତେବେ ମୋତେ ଚାରି ପଇସାର ଦୂକ୍‌ତା କିଣି ଦିଅ !'

ଏପରି ନିର୍ଲୋଭ ମା ନ ହେଲେ ଏପରି ନିଷ୍କାମ ପୁଅ ହୁଏ ! ସେହି ମା ଯଦି ଜାଣିବେ ପୁଅ ସମସ୍ତ ସଂସାର-ସଂପର୍କ ତୁଟାଇ ଦେଇ ସନ୍ନ୍ୟାସୀ ହୋଇ ଯାଇଛି, ସହି ପାରିବେ ?

ତୋତାପୁରୀ କହିଲେ, 'ହଉ, ଗୋପନରେ ଦୀକ୍ଷା ଦେବି । କେହି ଜାଣିବେ ନାହିଁ ।

ସର୍ବପ୍ରଥମେ ନିଜର ପ୍ରେତ-ପିଣ୍ଡ ଦିଅ । ଶ୍ରାଦ୍ଧ-କ୍ରିୟା କରି ସଂଯତ ହୋଇ ଅବସ୍ଥାନ କର । ପଞ୍ଚବଟୀର ସାଧନ-କୁଟୀରରେ ନେଇ ରଖ ଦୀକ୍ଷାର ସମସ୍ତ ଉପଚାର । ଶୁଭ ମୁହୂର୍ତ୍ତ ଉଦୟ ହେଲେ ମୁଁ ଡାକିବି ।

ଆସିଲା ସେହି ବ୍ରାହ୍ମ ମୁହୂର୍ତ୍ତ । ସପ୍ତ ଶିଖା ବିସ୍ତାର କରି ଜଳି ଉଠିଲା ହୋମାଗ୍ନି ।

ସମ୍ୟକ ପ୍ରକାର ତ୍ୟାଗର ନାମ ସନ୍ନ୍ୟାସ । ଏହି ସର୍ବସ୍ୱତ୍ୟାଗ ଈଶ୍ୱରଙ୍କ ପାଇଁ । କିନ୍ତୁ କଅଣ ତୁମର ଅଛି ଯେ ତ୍ୟାଗ କରିବ ? ଦେହ-ମନ-ଇନ୍ଦ୍ରିୟ ଏମାନେ କେହି ତୁମର ନିଜର ନୁହନ୍ତି । ଯାହାର ନିଜର ବୋଲି କିଛି ନାହିଁ, ସେ ପୁଣି ତ୍ୟାଗ କରିବ କଅଣ ?

ତେଣୁ ତ୍ୟାଗ କରିବାକୁ ହେଲେ ଅର୍ଜନ କରିବାକୁ ପଡ଼ିବ । ପ୍ରଥମେ ଅର୍ଜନ କର - ଅର୍ଜନ କର ଆତ୍ମ-ବିଭୂତି । ସମଗ୍ର ଜଗତକୁ ଆତ୍ମବୋଧରେ ପ୍ରାଣମୟ କର । ଏହି ବିଶ୍ୱରୂପକୁ ନିଜର ରୂପ ବୋଲି ଅନୁଭବ କର । ସେହି ଅନନ୍ତ ଅନୁଭୂତି ମଧ୍ୟରେ ନିଜକୁ ବିସର୍ଜନ ଦିଅ । ଏହା ହିଁ ତ୍ୟାଗ, ଏହା ହିଁ ସନ୍ନ୍ୟାସ । ଯାହାର ସେହି ଐଶ୍ୱର୍ଯ୍ୟ ନାହିଁ, ବିଭୂତି ନାହିଁ, ସେ ବା କଅଣ ତ୍ୟାଗ କରି ପାରିବ ? ସେ ତ ଦୀନ ହୀନ ଭିକ୍ଷୁକ ।

କେଉଁ ବସ୍ତୁ ଯଥାର୍ଥରେ ପ୍ରାର୍ଥନୀୟ ମଣିଷ ତାହା ଜାଣେ ନା । ତେଣୁ ସେ ଚାହିଁ ବସେ ଧନ-ଜନ, ନାମ-ଯଶ ଇତ୍ୟାଦି । ଚାହିଁବା ଏବଂ ପାଇବା - ଏ ଦୁଇଟି ଯାକ ତା' ପାଇଁ ଭ୍ରାନ୍ତି-ବିଳାସ । କାରଣ, ପାଇଲେ ମଧ୍ୟ ଅଭାବ ମେଣ୍ଟେ ନାହିଁ । କଅଣ ପାଇଲେ ତା'ର ଶାନ୍ତି ଆସିବ, ନିଜେ ସେ- ସେ କଥା ଜାଣେ ନା, ତେଣୁ ସେ ଧାଏଁ ସେହି ସବୁ ଜିନିଷ ପଛରେ । ଠିକ୍ ଖବରଟା ପାଇ ପାରେ ନାହିଁ, ତେଣୁ ବାଟ-ଅବାଟ ଭୁଲି ଏଣେ ତେଣେ ଧାଉଁଥାଏ । ଥରେ ଯଦି ଆନନ୍ଦମୟ ଈଶ୍ୱରସତ୍ତାର ଖବରଟା ପାଇ ଯାଆନ୍ତା, ପ୍ରହ୍ଲାଦ ପରି ଯଦି ସ୍ଫଟିକ ସ୍ତମ୍ଭରେ ହରିଙ୍କୁ ଦେଖି ପାରନ୍ତା, ତା'ହେଲେ ଆଉ ମଣି ଫିଙ୍ଗି ଦେଇ କାଚକୁ ସାଉଣ୍ଟିବା ପାଇଁ ହାତ ବଢ଼ାନ୍ତା ନାହିଁ । ମଧୁ କେବେ ଚାଖି ନାହିଁ, ତେଣୁ ଗୁଡ଼ ଖୋଜି ବୁଲୁଛି ।

ସର୍ବତ୍ର, ସର୍ବ ଦିଗରେ, ସର୍ବାବସ୍ଥାରେ ନିୟତ ମଧୁ-କ୍ଷରଣ ହେଉଛି - ଏହି ଉପଲବ୍ଧି ହିଁ ଈଶ୍ୱରୋପଲବ୍ଧି ।

ତୋତାପୁରୀ ମନ୍ତ୍ରପାଠ ଆରମ୍ଭ କଲେ ।

ଦୃଢ଼ାସୀନ ହୋଇ ବସ । ତଦ୍‌ଗତ ମନରେ ଶୁଣ । ସମିଦ୍ଧ ହୁତାଶନରେ ଆହୁତି ଦିଅ ।

ପ୍ରାର୍ଥନା କର ।

ହେ ଯଜ୍ଞପତି, ହେ ପରମାତ୍ମନ, ମୋର ସମସ୍ତ ପ୍ରାଣବୃତ୍ତି ତୁମକୁ ଆହୁତି ଦେଉଛି; ତୁମେ

ମୋ ଠାରେ ପ୍ରକାଶିତ ହୁଅ । ତୁମେ ନିତ୍ୟକାଳର ପ୍ରକାଶ, ଥରେ ମୋ ପାଇଁ ପ୍ରକାଶ ଲାଭ କର । ଅଖଣ୍ଡୈକରସ ବ୍ରହ୍ମବସ୍ତୁ ମୋ ଭିତରେ ଦୀପ୍ୟମାନ କର । ବୁଝିବାକୁ ଦିଅ,ତୁମେ ଯାହା ମୁଁ ମଧ୍ୟ ତାହା । କୌଣସି ଦ୍ୱୈତ ନାହିଁ, ସର୍ବତ୍ର ଏକ ଅଖଣ୍ଡ ଚୈତନ୍ୟ ମାତ୍ର ବିଦ୍ୟମାନ । ଜୀବ ଏବଂ ଈଶ୍ୱର ସେହି ଏକ ଅଦ୍ୱିତୀୟ ପରମ ତତ୍ତ୍ୱର ଦୁଇଟି ପୃଷ୍ଠା । ସେହି ଏକତ୍ୱବୋଧର ଚେତନା ମୋତେ ଦିଅ ।

ଏହା ପରେ ଆରମ୍ଭ ହେଲା ବିରଜା ହୋମ ।

ମୋ ଦେହ ଗଠିତ ହୋଇଛି ଯେଉଁ ପଞ୍ଚଭୂତକୁ ନେଇ ସେହି ଭୂତପଞ୍ଚ ଶୁଦ୍ଧ ହେଉ । ଶୁଦ୍ଧ ହେଉ ମୋର କୋଷପଞ୍ଚ - ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ କୋଷ । ଶୁଦ୍ଧ ହେଉ ପଞ୍ଚବାୟୁ-ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ । ପଞ୍ଚ ଇନ୍ଦ୍ରିୟକୁ ଆକର୍ଷଣ କରେ ଯେଉଁ ପଞ୍ଚ ବିଷୟ - ଶବ୍ଦ, ସ୍ପର୍ଶ, ରୂପ, ରସ ଏବଂ ଗନ୍ଧ- ତାହା ଶୁଦ୍ଧ ହେଉ । ଶୁଦ୍ଧ ହେଉ ମୋର ଦେହ ଓ ମନ, ବାକ୍ୟ ଓ କର୍ମ । ଶୁଦ୍ଧ ହେଉ ମୋର ନିରୋଧ-ସମାଧି । ହେ ଜ୍ୱାଳାମାଳୀ, ହେ ସର୍ବଦେବମୁଖ ବୈଶ୍ୱାନର, ମୋ ଭିତରେ ଜାଗ୍ରତ ହୁଅ । ହେ ସର୍ବାର୍ଥସାଧକ, ମୋ ଅଭୀଷ୍ଟ ଲାଭ ପଥରେ ଯେତେ ବିଘ୍ନ ଅଛି ସେ ସମସ୍ତ ବିନାଶ କର । ମୋତେ ସେହି ସମ୍ୟକ୍ ପ୍ରଜ୍ଞା ଦିଅ ଯାହା ବଳରେ ଗୁରୁ-ଦତ୍ତ ଜ୍ଞାନ ମୋ ଭିତରେ ନିରନ୍ତର ଜାଜ୍ୱଲ୍ୟମାନ ହୋଇ ରହିବ । ମୁଁ ସ୍ତ୍ରୀ-ପୁତ୍ର ଧନ-ମାନ ରୂପ-ଯୌବନ କିଛି ଚାହେଁ ନାହିଁ । ମୋର ସମସ୍ତ ପାର୍ଥିବ ବାସନା ତୁମ ଠାରେ ଆହୁତି ଦେଇ ମୁଁ ନିଃଶେଷ ରୂପେ ତ୍ୟାଗ କରୁଛି । ମୁଁ ନିଜେ ବର୍ତ୍ତମାନ ସଚ୍ଚିଦାନନ୍ଦମୟ ବ୍ରହ୍ମ । ଯେଉଁପରି ଭାବରେ ଈଶ୍ୱର ସମାହିତ, ଠିକ ସେହିପରି ମୁଁ ମଧ୍ୟ ବର୍ତ୍ତମାନ ସେହି ସର୍ବତୋ-ନିରାବରଣ ସର୍ବ-ପ୍ରଶାନ୍ତ ପରମାନନ୍ଦମୟ ମହଦାତ୍ମଭାବରେ ନିମଗ୍ନ । ହେ ଅର୍ଚ୍ଚିଷ୍ମାନ୍, ମୁଁ ବର୍ତ୍ତମାନ ଶିଖାହୀନ ବିଶୁଦ୍ଧ ଜ୍ୟୋତି । ନିରବୟବ ଆଭା ।

ଦୀକ୍ଷା ଫଳରେ ନବଜନ୍ମ ହେଲା ଗଦାଧରର ।

ରୂପରୁ ଚାଲି ଆସିଲା ଅରୂପକୁ । ଅଳ୍ପରୁ ଭୂମାକୁ । ପରିମିତରୁ ନିରତିଶୟକୁ ।

ଆକାରରୁ ଅକାୟକୁ

ଶିଷ୍ୟକୁ ନୂତନ କୌପୀନ ଓ କାଷାୟ ଦେଲେ ତୋତାପୁରୀ । କହିଲେ, ଏଥର ତୁମକୁ ନୂତନ ନାମ ଦେବି ।

'ମୋ ନାଁ ଟା ବି ବଦଳିଯିବ ?'

'କେବଳ ନାଁ ନୁହେଁ, ପଦବୀ ମଧ୍ୟ । ତୁମେ ବର୍ତ୍ତମାନ ସଂପୂର୍ଣ୍ଣ ନୂତନ । ଏକ ନୂତନ ଦେଶରେ ନୂତନ ଜନ୍ମଲାଭ କରିଛ ।'

ଗଦାଧର ଚାହିଁ ରହିଲା ଆବିଷ୍ଟ ଭାବରେ ।

'ହଁ, ଏଇ ମୁହୂର୍ତ୍ତରୁ ତୁମ ନାମ ରାମକୃଷ୍ଣ । ସନ୍ନ୍ୟାସ ଦୀକ୍ଷା ନେଇଛ, ଅର୍ଥାତ୍ ଶ୍ରୀ-ରେ ଅଧିଷ୍ଠିତ ହୋଇଛ । ତୁମେ ଶ୍ରୀରାମକୃଷ୍ଣ । ଏବଂ ପଦବୀ ? ପଦବୀ ପରମହଂସ । ଶ୍ରୀରାମକୃଷ୍ଣ ପରମହଂସ । ପରମହଂସ କାହାକୁ କୁହାଯାଏ ଜାଣିଛ ?'

'ଜାଣିଛି' । ଆବିଷ୍ଟ ହେଲା ପରି କହିଲା ଗଦାଧର: 'କ୍ଷୀର ଓ ନୀର ଏକାଠି ମିଶି ରହିଥିଲେ ମଧ୍ୟ ଯେ ହଂସ ପରି ନୀର ଛାଡ଼ି କ୍ଷୀର ନେଇ ପାରନ୍ତି । ବାଲି ଓ ଚିନି ମିଶି ଯାଇଥିଲେ ବି

ଯେ ପିମ୍ପୁଡ଼ି ପରି କେବଳ ଚିନିତକ ନେଇ ପାରନ୍ତି ।'

ଠିକ୍ କହିଛ । ସେହି ହେଉଛନ୍ତି ପରମହଂସ । ଚୋପା ପକାଇ ଦେଇ ଭିତରର ସାର ବସ୍ତୁଟି ଗ୍ରହଣ କର । ଖଣ୍ଡକୁ ପରିତ୍ୟାଗ କରି ଗ୍ରହଣ କର ଅଖଣ୍ଡକୁ । ଉପାଧି ପରିତ୍ୟାଗ କରି ନିତ୍ୟବସ୍ତୁକୁ ।

'ବୁଝିଲୁ ? ପରମହଂସ ଦୁଇ ପ୍ରକାର,' ଠାକୁର ଦିନେ କହିଲେ ଗିରୀଶ ଘୋଷଙ୍କୁ : 'ଜ୍ଞାନୀ ପରମହଂସ ଆଉ ପ୍ରେମୀ ପରମହଂସ । ଯିଏ ଜ୍ଞାନୀ ପରମହଂସ ସେ ଆପ୍ତସାର । ତାଙ୍କର ମନୋଭାବଟା ହେଲା, ଏକୁଟିଆ ମୋର ହେଲେ ହେଲା । କିନ୍ତୁ ଯିଏ ପ୍ରେମୀ ପରମହଂସ, ତାଙ୍କର ଏକୁଟିଆ ନିଜର ହୋଇଗଲେ ସେଥିରେ ସୁଖ ପାଆନ୍ତି ନାହିଁ । ଈଶ୍ୱରଙ୍କୁ ପାଇସାରି ତାଙ୍କ ସମ୍ବାଦ ସେ ଦେଇ ଯିବାକୁ ଚାହାନ୍ତି ଆଉ ସମସ୍ତଙ୍କୁ କିଏ ହୁଏତ ଆମ୍ବଟାକୁ ନିଜେ ସବୁ ଖାଇ ଦିଏ, କିଏ ପୁଣି ଆଉ ପାଞ୍ଚ ଜଣଙ୍କୁ ବାଣ୍ଟିଦିଏ । କୂଅ ଖୋଳିବା ବେଳେ ଯେଉଁ ଟୋକେଇ କୋଦାଳ ସବୁ କାମରେ ଲାଗୁଥାଏ, ଖୋଳା ସରିଗଲେ କେତେକ ଲୋକ ସେଗୁଡ଼ାକ ସେହି କୂଅ ଭିତରେ ପକେଇ ଦିଅନ୍ତି, କେହି କେହି ପୁଣି ସେ ସବୁକୁ ଆଣି ସାଇତି ରଖନ୍ତି, କାଳେ ସାହି ପଡ଼ିଶାରେ ଆଉ କାହାରି କାମରେ ଲାଗିବ । ନାରଦ, ଶୁକଦେବ- ଏମାନେ, ସମସ୍ତେ ତାଙ୍କ ଟୋକେଇ କୋଦାଳ ସାଇତି ରଖି ଯାଇଥିଲେ ।'

ଗିରୀଶ ଘୋଷ କହିଲେ, 'ଆପଣ ବି ସେହିଭଳି । ତେଣୁ ମୋତେ ଆପଣ ଆଶୀର୍ବାଦ କରନ୍ତୁ ।'

'ମୁଁ କିଏ ? ମୁଁ କେହି ନୁହେଁ । ତୁମେ ମା'ଙ୍କୁ କୁହ, ମା'ଙ୍କୁ ଡାକ, ତା'ହେଲେ ହୋଇଯିବ ।'

'ହୋଇଯିବ ? କିନ୍ତୁ ମୁଁ ଯେ ପାପୀ, ଘୋରତର ପାପୀ ।'

ଠାକୁର ବିରକ୍ତ ହେଲେ । କହିଲେ, 'ସେ ଭଳି କଥା ତୁଣ୍ଡରେ ଧର ନାହିଁ । ଯେ ନିଜକୁ ସବୁବେଳେ ପାପୀ- ପାପୀ ବୋଲି କହି ହେଉଥାଏ ସେ ପ୍ରକୃତରେ ପାପୀ ହୋଇଯାଏ । ବରଂ କୁହ, ମୁଁ ମା'ଙ୍କ ସନ୍ତାନ । ମୁଁ ମା'ଙ୍କୁ ଆଶ୍ରୟ କରିଛି - ମୋର ପୁଣି ପାପ କଅଣ !'

'କହୁଛି ଯେ, ହେଲେ ଆପଣ ଟିକିଏ ମୋ ପାଇଁ କହନ୍ତୁ-'

'ମୁଁ କଅଣ କହିବି ? ମୁଁ କିଏ ! ମୁଁ କେହି ନୁହେଁ । ମୁଁ କେବଳ ଗଣ୍ଡାଏ ଖାଇଦିଏ, ଆଉ ବସି ବସି ତାଙ୍କ ନାମ କରେ । ତୁମ ନିଜର ଯଦି ଆନ୍ତରିକ ହୁଏ -'

'କଥା ତ ସେଇଠି । ସେଇ ଆନ୍ତରିକଟା ତ ନାହିଁ ।ସେତକ ଯଦି ଆପଣ କରେଇ ଦିଅନ୍ତେ-'

'ମୁଁ' କିଏ ! ନାରଦ, ଶୁକଦେବ- ଏମାନେ ହେଲେ କେହି ହୋଇ ଥାଆନ୍ତେ, ତା'ହେଲେ କେଜାଣି ବା -

'ନାରଦ-ଶୁକଦେବଙ୍କୁ ଆମେ ପାଇବୁ କେଉଁଠୁ ? ଆମେ ପାଇଛୁ ଶ୍ରୀରାମକୃଷ୍ଣଙ୍କୁ ।'

ଠାକୁର ହସିଲେ । କହିଲେ 'ଯାହା ଯେମିତି ପାରୁଛ, କିଛି ଗୋଟାଏ ଧରି ପକେଇଲେ

ହେଲା । ଅସଲ କଥା ହେଲା ବିଶ୍ୱାସ । ଅସଲ ହେଉଛି ଶରଣାଗତି ।'

## ୨୮

ଏଥର ବ୍ରହ୍ମଯୋଗ ଯୁକ୍ତାତ୍ମା ହୁଅ । ନିର୍ଦ୍ଦେଶ ଦେଲେ ତୋତାପୁରୀ ।

କହିଲେ, ନାମ ଓ ରୂପର ସୀମା ଭିତରେ ମାୟା ଖଣ୍ଡିତ ହୋଇ ରହିଛି, ସେହି ସୀମା ଅତିକ୍ରମ କରି ଚାଲି ଆସ ନିଜ ଲୋକକୁ, ବ୍ରହ୍ମସାଧର୍ମ୍ୟକୁ । ତୁମ ନିଜ ଭିତରେ ରହିଛି ଯେଉଁ ଆତ୍ମତତ୍ତ୍ୱ ତାକୁ ଆବିଷ୍କାର କର । ତୁମର ସୀମିତ 'ମୁଁ'କୁ ବ୍ରହ୍ମାନୁଭୂତିରେ ପ୍ରତିଷ୍ଠିତ କର । ସ୍ୱସତ୍ତାବୋଧର ଲୋପ ନୁହେଁ, ସ୍ୱସତ୍ତାବୋଧର ପ୍ରତିଷ୍ଠା ।

ଏହା ହିଁ ଅଦ୍ୱୈତବାଦ । ଏହି ଆତ୍ମବୋଧକୁ ଜାଗ୍ରତ କରାଇବାରେ ଅଦ୍ୱୈତବାଦର ସାର୍ଥକତା । ମୁଁ କ୍ଷୁଦ୍ର ନୁହେଁ, ମୁଁ ନୀଚ ନୁହେଁ, ମୁଁ ମହାନ୍, ମୁଁ ଭୂମା - ଏହି ଉଦାର ଉଚ୍ଚବୋଧ ହିଁ ଆତ୍ମବୋଧ । ଆତ୍ମବୋଧ ହିଁ ଆନନ୍ଦ । ଆନନ୍ଦ ହେଉଛି ସତ୍ ।

ପୁଣି କହିଲେ, ଭଲ ଭାବରେ ବୁଝି ନିଅ । ଜୀବ ମାତ୍ରେ ହିଁ ଈଶ୍ୱରଙ୍କ ଆଭାସ । ଜୀବ ପ୍ରତିବିମ୍ବ, ଈଶ୍ୱର ବିମ୍ବସ୍ଥାନୀୟ । ପ୍ରକୃତ କଥା ହେଉଛି, ଜୀବ ଓ ବ୍ରହ୍ମ ଅଭିନ୍ନ । ଜୀବ ବ୍ରହ୍ମର ପରିଣାମ । ପୁଣି ଜୀବର ପରିଣାମ ମଧ୍ୟ ବ୍ରହ୍ମ ।ଏହି ଜ୍ଞାନ ଉଦୟ ହେବାରେ ଆତ୍ମସ୍ୱରୂପର ସ୍ଫୂର୍ତ୍ତି । ଏହି ଜ୍ଞାନ ହିଁ ମୋକ୍ଷ ।

ବର୍ତ୍ତମାନ ତୁମେ ଚାରିଆଡ଼େ ଈଶ୍ୱରଙ୍କୁ ଦେଖୁଛ; କିନ୍ତୁ ଏ ସାଧନାରେ ତୁମେ ଆଉ ଚାରିଆଡ଼କୁ ଅନାଇବ ନାହିଁ, ଦିକ୍‌ବିଦିକ ଭାବ ଭୁଲି ଯାଇ ଚାହିଁବ କେବଳ ଗୋଟାଏ ଆଡ଼କୁ, ଈଶ୍ୱରଙ୍କ ଆଡ଼କୁ । ଚାରିଆଡ଼କୁ ଆଖି ପକାଇ ସବୁ ଠାରେ ଈଶ୍ୱରଙ୍କୁ ଦେଖିବା ମଧ୍ୟ ଚଞ୍ଚଳତା । କିନ୍ତୁ ଏ ସାଧନାରେ ଚିତ୍ତ ନିଶ୍ଚଳ ଏବଂ ଏକାଗ୍ର ହୋଇ କେବଳ ସେହି 'ଏକ'କୁ ହିଁ ଦେଖିବ । ସେତେବେଳେ ତୁମର ଆଉ ପୃଥକତ୍ୱ ରହିବ ନାହିଁ । ଈଶ୍ୱରଙ୍କ ଭିତରେ ହିଁ ତୁମ ଅସ୍ତିତ୍ୱ ସଂପୂର୍ଣ୍ଣ ହେବ । ଈଶ୍ୱରଙ୍କ ଠାରେ ଯେଉଁ ଶାଶ୍ୱତୀ ଶାନ୍ତି ତାହା ହିଁ ଅବସ୍ଥିତି ଲାଭ କରିବ ତୁମ ଭିତରେ ।

କିନ୍ତୁ ମୋତେ କଅଣ କରିବାକୁ ହେବ, କୁହ । ପଚାରିଲେ ଶ୍ରୀରାମକୃଷ୍ଣ ।

ତୁମେ ବର୍ତ୍ତମାନ ବସିବ ନିର୍ବିକଳ୍ପ ସମାଧିରେ । ବସିବ ସେହି ଗୁଣାତୀତ ନିର୍ବିଶେଷର ତପସ୍ୟାରେ ।

ଯିଏ ସବୁଠାରୁ ଦୂରରେ ଅଛନ୍ତି, ଅଥଚ ଯାହାଙ୍କ ଠାରୁ ନିକଟତର ଆଉ କିଛି ନାହିଁ; ଯାହାଙ୍କ ଠାରୁ ସୂକ୍ଷ୍ମତର କିଛି ନାହିଁ, ଏବଂ ଯାହା ଠାରୁ ନାହିଁ କିଛି ମହତ୍ତର, ଆକାଶରେ ବୃକ୍ଷ ପରି ଯିଏ ସ୍ତବ୍ଧ ଭାବରେ ବିରାଜମାନ, ଯେ ଏକ - ଦେଶ, କାଳ ଓ ବସ୍ତୁ ଏହି ତ୍ରିବିଧ ପରିଚ୍ଛେଦ-ଶୂନ୍ୟ– ଅଦ୍ୱିତୀୟ, ସେହି ଅସଙ୍ଗ ପୁରୁଷଙ୍କୁ ଧ୍ୟାନ କର । କୁହ, ମୋର ଏହି କ୍ଷୀଣ ପ୍ରାଣସ୍ପନ୍ଦନକୁ ତୁମରି ମହାନ ପ୍ରାଣ ସହିତ ଯୁକ୍ତ କରି ଦିଅ, ଏହି କ୍ଷୁଦ୍ର ପ୍ରାଣ ତୁମରି ବିରାଟ ପ୍ରାଣରେ ପ୍ରତିଷ୍ଠିତ ହେଉ । ତୁମ ଅନ୍ତରର ସ୍ୱଭାବ ସହିତ ମୋ ଅନ୍ତରର ପରିଚୟ କରାଇ ଦିଅ । ତୁମ ନାମରେ ମୋର ପ୍ରୟୋଜନ ନାହିଁ, ତୁମ ରୂପରେ ମୋର ପ୍ରୟୋଜନ ନାହିଁ, ତୁମ ସ୍ୱଭାବଟି କେବଳ ମୋ ସ୍ୱଭାବ

ହେଉ ।

ସମାଧିରେ ବସିଲେ ରାମକୃଷ୍ଣ ।

ଶରୀର ଓ ଇନ୍ଦ୍ରିୟ ସମେତ ମନର ଚରମ ସ୍ଥିରତାର ନାମ ସମାଧି । ଧ୍ୟାତା ଯେତେବେଳେ ନିଜକୁ ଭୁଲିଯାଇ କେବଳ ଧ୍ୟେୟର ବିଦ୍ୟମାନତା ଉପଲବ୍ଧି କରେ ସେତିକିବେଳେ ସେ ସମାହିତ ।

କିନ୍ତୁ ରାମକୃଷ୍ଣ ନିଜର ଚିତ୍ତକୁ ସ୍ଥିର କରି ଆଣିବା ମାତ୍ରେ ତାଙ୍କର ଧ୍ୟାନଚକ୍ଷୁରେ ଜଗଦମ୍ବା ଆସି ଉଦୟ ହେଲେ । ଯେତେ ଚେଷ୍ଟା କଲେ ମଧ୍ୟ ନାମ ବା ରୂପର ସୀମା ଅତିକ୍ରମ୍ କରି ଆସି ପାରିଲେ ନାହିଁ । ଯେଉଁ ମୁହୂର୍ତ୍ତରେ ମନକୁ ଆଣି ଏକାଗ୍ର ଭୂମିରେ ପହଞ୍ଚାଉଛନ୍ତି ସେହି ମୁହୂର୍ତ୍ତରେ ମନ ପୁଣି ରୂପମୟ ହୋଇ ଉଠୁଛି । ମୁଁ ଭୋକ୍ତା ନୁହେଁ, ଭୋଜ୍ୟ ମଧ୍ୟ ନୁହେଁ, ମୁଁ କେବଳ ଭୋଜନ- ଏହି ନିର୍ବିତର୍କ ଚେତନାରେ ମନ ନିଶ୍ଚଳ ହୋଇ ପାରୁ ନାହିଁ ।

'ନାଃ, ମୋ ଦେଇ ହୋଇପାରିବ ନାହିଁ !' ଆଖି ଖୋଲି ଚାହିଁଲେ ରାମକୃଷ୍ଣ ।

'କେଁଓ ହୋଗା ନେହିଁ ?' ଗର୍ଜି ଉଠିଲେ ତୋତାପୁରୀ । ହେବାକୁ ହିଁ ପଡ଼ିବ । ରୂପର ପଦ୍ମ-ସରୋବର ପାର ହୋଇ ଆସିବାକୁ ହେବ ଅରୂପର ମହାସମୁଦ୍ରକୁ ।

କଅଣ ଯେପରି ଖୋଜିଲା ଭଳି ଏଣେ ତେଣେ ଆଖି ପକେଇଲେ ତୋତା । କୁଟୀର ବାହାରେ ତଳେ ପଡ଼ିଥିଲା ଖଣ୍ଡିଏ ଭଙ୍ଗା କାଚ । ଉଠାଇ ଆଣିଲେ ସେଇଟି । ରାମକୃଷ୍ଣଙ୍କ କପାଳ ଉପରେ, ଦୁଇ ଭ୍ରୂର ଠିକ୍ ମଧ୍ୟସ୍ଥଳରେ ସେହି ଭଙ୍ଗାକାଚର ଗୋଜିଆ ଅଂଶଟି ଲଗାଇ ଜୋରରେ ଚାପି ରଖିଲେ । କହିଲେ, 'ମନକୁ ଚାରିଆଡୁ ଟାଣି ଆଣି ଠିକ୍ ଏହି ବିନ୍ଦୁରେ ରଖ ।'

ଆଉ ଥରେ ପୁଣି ସଂକଳ୍ପହୀନ ହେବାର ସଂକଳ୍ପ ନେଇ ଧ୍ୟାନରେ ବସିଲେ ରାମକୃଷ୍ଣ । ପୁଣି ଆବିର୍ଭୂତ ହେଲେ ଜଗଦମ୍ବା । କିନ୍ତୁ ରାମକୃଷ୍ଣ ଆଉ ଅଭିଭୂତ ହେବେ ନାହିଁ । ସ୍ୱସ୍ଥାନରେ ନିୟତାବସ୍ଥ ହୋଇ ରହିବେ । ଯେଉଁ ଜ୍ଞାନ ନିରଂଶ, ନିରବଚ୍ଛିନ୍ନ, ସେହି ଜ୍ଞାନରେ ସମାସୀନ ହୋଇ ରହିବେ । ମୂର୍ତ୍ତିରୁ ଚାଲି ଆସିବେ ଭାବକୁ । ଆକାରରୁ ଏକାକାରକୁ । ମୂର୍ତ୍ତି ଧୀରେ ଧୀରେ ଅଦୃଶ୍ୟ ହୋଇଗଲା । କୌଣସି ଠାରେ ଆଉ କୌଣସି ପ୍ରକାର ବିକଳ୍ପ ବା ବିଶେଷର ଲେଶ ମାତ୍ର ରହିଲା ନାହିଁ । ନିଷ୍କଳ-ନିର୍ମଳ, ଶାନ୍ତ ଓ ସର୍ବାତୀତ ଏକ ରାଜ୍ୟରେ ଆସି ପହଞ୍ଚି ଯାଇ ସ୍ତବ୍ଧ ହୋଇ ରହିଗଲେ ରାମକୃଷ୍ଣ । ଏହା ହିଁ ଅଦ୍ୱୈତ-ସାଧନାର ସମାଧି ।

ତୋତା ନୀରବରେ ବସି ରହିଲେ ପାଖରେ । ଏକ ଧ୍ୟାନରେ ଦେଖିବାକୁ ଲାଗିଲେ ନିଜର ଶିଷ୍ୟକୁ । ବିନ୍ଦୁ ମାତ୍ର କଂପନ ନାହିଁ,ବୋଧହୁଏ ନିଃଶ୍ୱାସ ବି ପଡୁ ନାହିଁ । ଗୋଟାଏ ଜ୍ୟୋତିର୍ମୟ ମୌନରେ ଆବୃତ ହୋଇ ରହିଛି । ଆରୂଢ଼ ହୋଇଛି ଏକ ଜ୍ୟୋତିର୍ମୟ ଉପଲବ୍ଧିରେ ।

ଘରୁ ବାହାରି ଆସିଲେ ତୋତାପୁରୀ । କବାଟରେ ବାହାରୁ କୋଲପ ପକାଇଲେ । ପଞ୍ଚବଟୀକୁ ଫେରି ଆସି ନିଜ ଆସନରେ ନିଶ୍ଚଳ ହୋଇ ବସି ରହି ଅପେକ୍ଷା କରିବାକୁ ଲାଗିଲେ, କେତେବେଳେ ରାମକୃଷ୍ଣ ସମାଧିରୁ ଉଠି କବାଟ ଖୋଲିବା ପାଇଁ ଡାକିବେ ।

ସଡ଼ା-ଶବ୍ଦ କିଛି ନାହିଁ । ଥାଉ ତେବେ, ଯେତେ ସମୟ ପାରୁଛି ରହିଥାଉ ବ୍ରହ୍ମାସ୍ୱାଦରେ ତନ୍ମୟ ହୋଇ । କିନ୍ତୁ ଆଉ କେତେ ବେଳ ଯାଏ ରହିବ ? ଦିନ ଯାଇ ରାତି ଆସିଲା । ରାତି ମଧ୍ୟ ପାହିବାକୁ ବସିଲା । ତୋତାପୁରୀଙ୍କ ମନକୁ ଚିନ୍ତା ଆସିଲା, କଅଣ କରିବି ଏବେ ! 'ଇହାସନେ

ଶୁଷ୍ୟତୁ ମେ ଶରୀରଂ, ତ୍ୱଗସ୍ଥିମାଂସଂ ପ୍ରଳୟଞ୍ଚ ଯାତୁ' - ରାମକୃଷ୍ଣଙ୍କର କଅଣ ଏହି ଅବସ୍ଥା ଆସିଗଲା ? ନା, କାହିଁକି ମିଛରେ ଭୟ କରୁଛି ? ସେହି ଦିବ୍ୟ ଦୀପାଧାର ଯାହାର ଦେହ, ତା' ବିଷୟରେ ତ ଭୁଲ ହୋଇ ପାରିବ ନାହିଁ ! ତୋତାପୁରୀ ଅପେକ୍ଷା କରି ରହିଲେ ଆହୁରି ଗୋଟାଏ ଦିନ ଏବଂ ଗୋଟାଏ ରାତି । ତଥାପି ରାମକୃଷ୍ଣ ଘର ଖୋଲିବାକୁ ଡାକୁ ନାହାନ୍ତି, ଦେହର କୌଣସି ପ୍ରୟୋଜନ ବିଷୟରେ ଜଣାଉନାହାନ୍ତି । ତେବେ, ହେଲା କଅଣ ? ଜୀବନରେ ଅଛି ତ ? ଦେଖିବି କି ଥରେ ଯାଇ କବାଟ ଖୋଲି ? ମନକୁ ପାପ ଛୁଇଁଲା - କେଉଁ ଅବସ୍ଥାରେ ତାକୁ ଦେଖିବି କେଜାଣି ! ହଉ, ଯାଉ ଆଉ ଗୋଟାଏ ଦିନ, ଡାକିବ ହୁଏତ ଏହି ସମୟ ଭିତରେ । ପୁଣି ଦିନଟାଏ ଗଲା । ତଥାପି ରାମକୃଷ୍ଣଙ୍କ କୁଟୀର ପୂର୍ବ ପରି ନୀରବ, ନିସ୍ପନ୍ଦ, ନିଃଶ୍ୱାସଶୂନ୍ୟ ।

ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ ତୋତାପୁରୀ । ଉଠିଲେ ଆସନ ଛାଡ଼ି । ସ୍ତମ୍ଭୀଭୂତ ରାମକୃଷ୍ଣ ଶିଳୀଭୂତ ହୋଇଗଲେ ପରା ! ଏ ଯାଏଁ ଅଛନ୍ତି ତ ଜୀବନରେ ? ନା କଅଣ -

ବ୍ୟସ୍ତ ଭାବରେ ଖୋଲି ଦେଲେ କବାଟ । ଆଖିରେ ଅଣ୍ଡାଳି ପକାଇଲେ ରାମକୃଷ୍ଣଙ୍କୁ ।

ଯେଉଁ ପରି ଭାବରେ ବସାଇ ଦେଇ ଯାଇଥିଲେ, ଠିକ୍ ସେହିପରି ବସି ରହିଛନ୍ତି ସ୍ଥିର ହୋଇ । ଦେହରେ ପ୍ରାଣର ପ୍ରକାଶ ପର୍ଯ୍ୟନ୍ତନାହିଁ । ନିଃଶ୍ୱାସ-ପ୍ରଶ୍ୱାସର ଲେଶ ମାତ୍ର ଲକ୍ଷଣ ନାହିଁ । ଅଥଚ ଦେହରେ ତପ୍ତ ଦୀପ୍ତି, ମୁଖମଣ୍ଡଳରେ ଜ୍ୟୋତିର୍ମୟ ପ୍ରସନ୍ନତା । ନିରୁଦ୍ଧ ଅବସ୍ଥାରେ ବସି ରହିଛନ୍ତି ପ୍ରଶାନ୍ତ ଭାବରେ । ବସି ରହିଛନ୍ତି ନିବାତ - ନିଷ୍କମ୍ପ ଦୀପଶିଖା ପରି । ବସିରହିଛନ୍ତି ଆତ୍ମଜ୍ଞାନରେ, ଆତ୍ମଦର୍ଶନରେ ବିଭୋର ହୋଇ । ବ୍ରହ୍ମରେ ଲଗ୍ନ, ଲିପ୍ତ, ଲୀନ ହୋଇ ।

ସଂମୂଢ଼ବତ୍ ଚାହିଁ ରହିଲେ ତୋତାପୁରୀ । ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ଚାଳିଶ ବର୍ଷ କଠୋର ସାଧନା କରି ଯେଉଁ ସମାଧିକୁ ସେ ଉତ୍ତୀର୍ଣ୍ଣ ହୋଇଛନ୍ତି ରାମକୃଷ୍ଣଙ୍କ ପକ୍ଷରେ ତାହା ସମ୍ଭବ ହୋଇପାରିଲା ମାତ୍ର ତିନି ଦିନରେ ! ... ନାକ ତଳେ ହାତ ଦେଇ ଦେଖିଲେ, ନିଃଶ୍ୱାସ ପଡୁ ନାହିଁ । ଛାତିରେ ହାତ ରଖିଲେ, ହୃଦ୍‌ସ୍ପନ୍ଦନ ହେଉ ନାହିଁ । ବାରମ୍ବାର ସ୍ପର୍ଶ କଲେ ମଧ୍ୟ ଚେତନାର ବିକାର ନାହିଁ । ସତେ ଯେପରି ଊର୍ଦ୍ଧ୍ୱ-ଅଧଃ-ମଧ୍ୟ ସମସ୍ତ ଆତ୍ମବୋଧରେ ପୂର୍ଣ୍ଣ ହୋଇ ରହିଛି । ଏବଂ, ଏହି ଅବସ୍ଥାର ନାମ ନିର୍ବିକଳ୍ପ ସମାଧି ।

''ଊର୍ଦ୍ଧ୍ୱପୂର୍ଣ୍ଣମଧଃ ପୂର୍ଣ୍ଣଂ ମଧ୍ୟପୂର୍ଣ୍ଣଂ ଯଦାତ୍ମକଂ
ସର୍ବପୂର୍ଣ୍ଣଂ ସ ଆତ୍ମେତି ସମାଧିସ୍ଥସ୍ୟ ଲକ୍ଷଣମ୍ ।''

'ଇୟେ କ୍ୟା ଦୈବୀ ମାୟା !' ବିସ୍ମୟାନନ୍ଦରେ ଅଭିଭୂତ ହୋଇ ଚିତ୍କାର କରି ଉଠିଲେ ତୋତାପୁରୀ । ଦେବତାଙ୍କର କି ଅଦ୍‌ଭୂତ ମାୟା ! ଥରେ ମାତ୍ର ଚେଷ୍ଟା କରି, ମାତ୍ର ତିନି ଦିନ ମଧ୍ୟରେ ରାମକୃଷ୍ଣଙ୍କର ନିର୍ବିକଳ୍ପ ସମାଧି ହୋଇଗଲା !

ଏଥର ସମାଧି-ଭୂମିରୁ ତାଙ୍କୁ ଓହ୍ଲାଇ ଆଣିବା ଦରକାର । ରାମକୃଷ୍ଣଙ୍କ କାନ ପାଖକୁ ମୁହଁ ନେଇ 'ହରି ଓମ୍' ମନ୍ତ୍ର ଉଚ୍ଚାରଣ କଲେ ତୋତାପୁରୀ । ମନ୍ତ୍ର-ନାଦରେ ରୋମାଞ୍ଚିତ ହୋଇ ଉଠିଲା ସମଗ୍ର ପଞ୍ଚବଟୀ । ଧୀରେ ଧୀରେ ଚକ୍ଷୁ ଉନ୍ମୋଚନ କଲେ ରାମକୃଷ୍ଣ ।

ତିନି ଦିନ ମାତ୍ର ରହି ଥାଆନ୍ତେ ତୋତାପୁରୀ, ରହିଗଲେ ନିରବଚ୍ଛିନ୍ନ ଭାବରେ ଏଗାରମାସ । ଉତ୍ତମ ଆଧାରଟିଏ ପାଇ ଯାଇଥିଲେ, ଛାଡ଼ି ଯିବାକୁ ସହଜରେ ମନ ବଳିଲା ନାହିଁ ।

ମନେ ମନେ ସଂକଳ୍ପ କଲେ ଶିଷ୍ୟଙ୍କୁ ନିର୍ବିକଳ୍ପ ଭୂମିରେ ଦୃଢ଼ାସନରେ ବସାଇ ସାରି, ତା'ପରେ ବିଦାୟ ନେବେ ।

ରାମକୃଷ୍ଣ ତାଙ୍କୁ ଡାକୁଥିଲେ 'ଲ୍ୟାଂଟ୍ଟା' (ଲଙ୍ଗୁଳି) ବୋଲି । ତୋତାପୁରୀଙ୍କ ବାଳକତ୍ୱ ଯେପରି ଉଲଗଂତାରେ, ରାମକୃଷ୍ଣଙ୍କର ବାଳକତ୍ୱ ମଧ୍ୟ ସେହିପରି ତାଙ୍କର ଏହି ବିଚିତ୍ର ସମ୍ବୋଧନରେ ।

ତୋତାପୁରୀ ସବୁବେଳେ ଧୂନି ଜଳାଇ ରଖନ୍ତି । ମେଘ ହେଉ, ବର୍ଷା ହେଉ, ଧୂନିର ନିର୍ବାଣ ନାହିଁ । ଖାଇବା, ଶୋଇବା ସବୁ ଏହି ଧୂନି ପାଖରେ । ସଂଜ-ସକାଳେ ଧୂନିକୁ ଆରତି କରନ୍ତି, ଭିକ୍ଷା-ଲବ୍ଧ ଅନ୍ନ ପ୍ରଥମେ ଧୂନି ପାଖରେ ଅର୍ଘ୍ୟ ଦିଅନ୍ତି । ଧୂନି ପାଖରେ ସମାଧିରେ ବସନ୍ତି, ସେହି ଧୂନି ପାଖରେ ପୁଣି ନିଦରେ ଶୁଅନ୍ତି । ଉଲଙ୍ଗ ଆକାଶ ତଳେ ଏହି ଉଲଙ୍ଗ ଅଗ୍ନି ହିଁ ତାଙ୍କ ଦେବତା ।

ସଂପତ୍ତି ବୋଇଲେ ଗୋଟିଏ ଲୋଟା, ଗୋଟାଏ ଚିମୁଟା ଏବଂ ଖଣ୍ଡିଏ ଚର୍ମାସନ । ଆଉ, ପ୍ରକୃତରେ ଯେତେବେଳେ ଧ୍ୟାନ କରନ୍ତି, ସେତେବେଳେ ଲୋକେ ଭାବନ୍ତୁ ଯେ ସେ ଗୋଡ଼-ହାତ ଲମ୍ବେଇ ଶୋଇଛନ୍ତି, ଏଥିଲାଗି ଘୋଡ଼ଇ ହେବା ସକାଶେ ଖଣ୍ଡିଏ ଚଦର ।

ଲୋଟା ଓ ଚିମୁଟା ପ୍ରତିଦିନ ମାଜିବା ଦରକାର । ସେହି ଭଳି ବ୍ରହ୍ମଲାଭ ପରେ ମଧ୍ୟ ପ୍ରତ୍ୟହ ଧ୍ୟାନାଭ୍ୟାସ ଦରକାର । ଦରକାର ଯମ-ନିୟମ-ଆସନ-ପ୍ରାଣାୟାମ ।

ରାମକୃଷ୍ଣ ଦିନେ କହିଲେ, 'ବ୍ରହ୍ମଲାଭ ତ କରି ସାରିଛ । ପୁଣି ପ୍ରତିଦିନ ଏଇ ଧ୍ୟାନାଭ୍ୟାସ କରୁଛ କାହିଁକି ?'

ପାଖରେ ରହିଥିଲା ଲୋଟାଟି । ମଜା ଘଷା ହୋଇ ଚକ୍ ଚକ୍ କରୁଛି । ସେହି ଆଡକୁ ଇଙ୍ଗିତ କଲେ ତୋତାପୁରୀ । କହିଲେ, 'ପ୍ରତିଦିନ ମାଜି ରଖୁଛି, ତେଣୁ ଏଇଟା ଏତେ ଉଜ୍ଜ୍ୱଳ ଦେଖାଯାଉଛି । ଯଦି ମଜା ମଜି ନ କରି ପକେଇ ରଖେ, ତେବେ ତା' ଉପରେ ମଇଳା ଜମିଯିବ । ମନ ଠିକ୍ ଏଇ ଭଳି । ଅଭ୍ୟାସ ଦ୍ୱାରା ପ୍ରତିଦିନ ତା'ର ମାର୍ଜନା ଦରକାର । ମାଜି ଘଷି ନ ରଖିଲେ ମଇଳା ହୋଇଯିବ ।'

କଥାଟା ଅବଶ୍ୟ ମନକୁ ପାଇଲା ଭଳି । କିନ୍ତ, ଏହା ପରେ ବି ଆହୁରି କଥା ଅଛି ।

ରାମକୃଷ୍ଣ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ ଗୁରୁଙ୍କ ଆଡ଼କୁ । କହିଲେ, 'କିନ୍ତୁ ଲୋଟା ଟା ଯଦି ସୁନାର ହୋଇଥାଏ ?'

ଠିକ୍ କଥା । ତା' ହେଲେ ଆଉ ଘଷା ମଜା ରଦକାର ନାହିଁ । ନିକୃଷ୍ଟ ଧାତୁ ପିତଳରେ ତିଆରି ହୋଇଛି ବୋଲି ସିନା ଲୋଟାଟିକୁ ନିତି ମାଜିବା ଦରକାର ପଡୁଛି ।

ତେତାପୁରୀ ହସିଲେ କହିଲେ, 'କିନ୍ତୁ ସଂସାରରେ ସୁନାର ଲୋଟା କେବଳ ସେହି ଗୋଟିଏ ।'

ଧୂନି ପାଖରେ ବସିଛନ୍ତି ଦୁଇ ଜଣ । ଅଦ୍ୱୈତ-ଧ୍ୟାନରେ ପ୍ରାୟ ଅଚୈତନ୍ୟ । ଜଣେ ଲୋକ ଅସିଲା । ଚିଲମ ଧରେଇବା ପାଇଁ ତା'ର ନିଆଁ ଦରକାର । ଧୂନିରେ କାଠ ଜଳୁଛି । ସେଇଥିରୁ

ଖଣ୍ଡିଏ ଜଳନ୍ତା କାଠ ଟାଣି ଆଣିଲା ସନ୍ତର୍ପଣରେ । ତୁମେ, ବାବା, ଆଖି ବୁଜି ବସି ଧ୍ୟାନ କରୁଛ, କର; ମୁଁ ମୋର ଆଖି ବୁଜି ଟିକିଏ ଚିଲମ ଟାଣିବି ।

କିନ୍ତୁ ଆରାମରେ ଚିଲମ ଟାଣିବାର ଉପାୟ ନାହିଁ । ତୋତାପୁରୀଙ୍କର ସବୁଠାରୁ ପବିତ୍ର ଜିନିଷ ହେଉଛି ତାଙ୍କ ଧୂନି,; ସେହି ଧୂନିରେ ଲୋକଟା ହାତ ମାରି ଦେଇଛି । ଏତେ ବଡ଼ ଅନାଚାର ଅସହ୍ୟ ତାଙ୍କ ପାଇଁ । ମୁହୂର୍ତ୍ତକ ଭିତରେ ଧ୍ୟାନ ଭାଙ୍ଗିଗଲା । ନିଆଁ ପରି ଜଳି ଉଠିଲେ କ୍ରୋଧରେ । ଯାହା ମୁହଁକୁ ଆସିଲା ଗାଳି ଦେଇଗଲେ କଦର୍ଯ୍ୟ ଭାଷାରେ । ସେତିକିରେ ବି କ୍ଷାନ୍ତି ଆସିଲା ନାହିଁ, ଚିମୁଟା ଉଠାଇ ଲୋକଟାକୁ ମାରିବାକୁ ଉଦ୍ୟତ ହେଲେ ।

'ଦୂର୍ ଶଳା ! ଦୂର୍ ଶଳା !' ଅର୍ଦ୍ଧବାହ୍ୟଦଶାରେ ହସି ଉଠିଲେ ରାମକୃଷ୍ଣ ।

ଲୋକଟାକୁ ନୁହେଁ, ତାଙ୍କୁ ହିଁ ଲକ୍ଷ୍ୟ କରି ଏ କଥା କହୁଛନ୍ତି, ବୁଝିଲେ ତୋତାପୁରୀ । ଲୋକଟା ବି ମାଡ଼ ଭୟରେ କୁଆଡ଼େ ପଳେଇଗଲାଣି ।

କିନ୍ତୁ ଏଥିରେ ହସିବାର କଅଣ ଅଛି ? ଅନ୍ୟାୟ କାମ ଦେଖି ତୁମେ ହସୁଛ ?

ରାମକୃଷ୍ଣ ଆହୁରି ହସୁଛନ୍ତି, ହସି ହସି ବେଦମ୍ ।

'କାହିଁକି ଏମିତି ହସୁଛ ହୋ ? ଦେଖିଲ ତ ଲୋକଟା କେଡ଼େ ଅନ୍ୟାୟ କାମ କରୁଥିଲା ?'

'ଦେଖିଲି ତ । ତା' ସହିତ ଆହୁରି ବି ଦେଖିଲି ତୁମ ବ୍ରହ୍ମଜ୍ଞାନର ଦୌଡ଼ କେତେ ଦୂର । ଟିକିଏ ଆଗରୁ ପରା କହୁଥିଲ, ବ୍ରହ୍ମ ଛଡ଼ା ଦ୍ୱିତୀୟ ସତ୍ତା ନାହିଁ - ଜୀବ ମାତ୍ର ହିଁ ବ୍ରହ୍ମର ପ୍ରତିବିମ୍ବ । ଏବେ ପୁଣି ସେହି ବ୍ରହ୍ମରୂପୀ ଜୀବକୁ ମାରିବାକୁ ଧାଉଁଛ ! ସେଇଥିପାଇଁ ହସୁଛି । ମାୟାର କି ପ୍ରଭାବ !'

ତୋତାପୁରୀ ଗମ୍ଭୀର ହୋଇଗଲେ । ମନେ ମନେ ଭାବି ଦେଖିଲେ, କାମ ତ୍ୟାଗ କରିଛନ୍ତି ସତ୍ୟ, କ୍ରୋଧ-ତ୍ୟାଗ ହୋଇନାହିଁ । କହିଲେ, 'ତୁମେ ଠିକ୍ କହିଛ । ମୋର କ୍ରୋଧ ତ୍ୟାଗ ହୋଇନାହିଁ । ଆଜି ଠାରୁ ତ୍ୟାଗ କଲି ସମସ୍ତ କ୍ରୋଧ !'

ଗୁରୁ ମିଳେ ତୋ ଲାଖ୍, ଚେ଼ଲା ମିଳେ ଏକ୍ - ଠିକ୍ କଥା କହିଥିଲେ ତୋତାପୁରୀ । ସକଳ ଗୁରୁଙ୍କର ଗୁରୁ ଏହି ରାମକୃଷ୍ଣ ।

ଗୋଟାଏ କଙ୍କି । ଡେଣାରେ କିଏ ଗୋଟାଏ କାଠି ଫୋଡ଼ି ଦେଇଛି । ନିଶ୍ଚୟ କୌଣସି ଦୁଷ୍ଟ ପିଲାର କାମ । ରାମକୃଷ୍ଣଙ୍କ ମନ ବେଦନାରେ ମଳି ହୋଇଗଲା । ପର ମୁହୂର୍ତ୍ତରେ ପୁଣି ହସି ପକେଇଲେ । କହିଲେ, 'ତୁମେ ନିଜେ ତ ନିଜର ଏଇ ଦୁର୍ଦ୍ଦଶା ଘଟାଇଛ । କଙ୍କି ତୁମେ, ଦୁଷ୍ଟ ପିଲାଟି ବି ତୁମେ ।'

କାଳୀ ମନ୍ଦିର ଆଗ ପଡ଼ିଆରେ ନୂଆ ଘାସ କଅଁଳିଛି । ରାମକୃଷ୍ଣ ଅନୁଭବ କରୁଛନ୍ତି ତାହା ଯେପରି ତାଙ୍କ ନିଜ ଅଙ୍ଗ । ଜଣେ କିଏ ପାଦରେ ଚାଲି ଚାଲି ଯାଉଥିଲା ସେହି ନରମ ଘାସ ଉପର ଦେଇ । ଯନ୍ତ୍ରଣାରେ ଚିତ୍କାର କରି ଉଠିଲେ ରାମକୃଷ୍ଣ 'ଆରେ, ଆରେ, ଯା-ନା, ଯା- ନା ! ମୋ ଛାତି ଫାଟି ଯାଉଛି ରେ ! ସହି ହେଉ ନାହିଁ - '

ଗଙ୍ଗା ଘାଟରେ ମାଝିମାନଙ୍କ ଭିତରେ କଳିଆ ଲାଗିଛି । ଭୀଷଣ ପାଟିଗୋଳ ।

ପାଟିତୁଣ୍ଡରୁ ମରାମରି । ଜଣେ ରାଗିଯାଇ ଆଉ ଜଣକ ପିଠିରେ ବସାଇ ଦେଲା ଗୋଟାଏ ନିର୍ଘାତ ଚାପୁଡ଼ା । ରାମକୃଷ୍ଣ ଘାଟ ପାଖରେ ଠିଆ ହୋଇଥିଲେ, ହଠାତ୍ ବଡ଼ ପାଟିରେ କାନ୍ଦି ପକାଇଲେ, ଭୟରେ ନୁହେଁ, ଯନ୍ତ୍ରଣାରେ ।

ହୃଦୟ ମନ୍ଦିର ଭିତରେ ଥିଲା । କାନ୍ଦଣା ଶୁଣି ଧାଇଁ ଆସିଲା । କଅଣ ହେଲା ? କଅଣ ହେଲା ? କାନ୍ଦିଲ କାହିଁକି ? ଦେଖିଲା, ରାମକୃଷ୍ଣଙ୍କ ପିଠି ଫୁଲି ଯାଇ ଲାଲ ପଡ଼ିଯାଇଛି ।

'ଇଏ କଅଣ ! କିଏ ମାଇଲା ତୁମକୁ ? କୁହ, କିଏ ମାଇଲା, ଦେଖି ନେବି ତାକୁ ମୁଁ ଆଜି !'

ରାମକୃଷ୍ଣ କିଛି କହିଲେ ନାହିଁ, କେବଳ କାନ୍ଦିବାକୁ ଲାଗିଲେ । ବହୁତ ବେଳ ପରେ କାନ୍ଦ ବନ୍ଦ ହେଲାରୁ କହିଲେ, 'ଜଣେ ମାଝି ଆଉ ଜଣେ ମାଝିକୁ ମାଇଲା, ମୋତେ ନୁହେଁ । କିନ୍ତୁ ତାକୁ ମାରିବା ଯାହା ମୋତେ ମାରିବା ସେଇଆ । ତା' ନ ହୋଇଥିଲେ ମୋତେ ଏତେ କାଟିଲା କାହିଁକି ? କାନ୍ଦିଲି କାହିଁକି ଏତେ ବେଳଯାଏ ?'

ଏହାକୁ କହନ୍ତି ଅଦ୍ୱୈତ ଭାବ । ସେ ଭାବରେ 'ତୁମେ' ନାହିଁ କି 'ମୁଁ' ନାହିଁ । ଏକ ନାହିଁ, କିମ୍ବା ଦୁଇ ମଧ ନାହିଁ । ଅର୍ଥାତ୍ ସୀମା ନାହିଁ, କି ସଂଖ୍ୟା ନାହିଁ । କେବଳ ଗୋଟାଏ ବିମଳ ବୋଧର ଘନତା । ଏହା ହିଁ ଆତ୍ମବୋଧ । ନିରବଧି ଆକାଶରୁ କ୍ଷୁଦ୍ର ଧୂଳିକଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ଆତ୍ମମୟତା । ଏହି ଭାବନାତୀତ ଭାବ ସମୁଦ୍ରକୁ କିଏ ହୁଏତ ଖାଲି ଦୂରରୁ ଦେଖି ଦେଇ ଫେରି ଆସେ, କିଏ ହୁଏତ କେବଳ ଟିକିଏ ଛୁଇଁ ଦିଏ । ଆଉ, ଯଦି କେହି ସେହି ସମୁଦ୍ରର ଜଳ ଗଣ୍ଡୂଷେ ମାତ୍ର ପିଇ ଦିଏ, ତା'ର ଯେ କଅଣ ହୋଇଯାଏ ସେ ନିଜେ ବି ଜାଣି ପାରେ ନାହିଁ ।

ନାରଦ ଦୂରରୁ ଦେଖି ଦେଇ ଫେରି ଆସିଥିଲେ । ଶୁକଦେବ କେବଳ ଛୁଇଁଥିଲେ । ମାତ୍ର ଶିବ ସାହସ କରି ପିଇ ଦେଇଥିଲେ ତିନି ଗଣ୍ଡୂଷ ଜଳ । ପିଇ ଦେଇ ତାଙ୍କର କଅଣ ହେଲା କେଜାଣି ! ଶବ ହୋଇ ପଡ଼ି ରହିଛନ୍ତି ।

ସେହି ଅଦ୍ୱୈତ ଭାବର ଭୂମିରେ ଯଦି ଜଣେ ମୁହୂର୍ତ୍ତକ ପାଇଁ ବି ପହଞ୍ଚିପାରେ, ତେବେ ତା'ର ନିର୍ବିକଳ୍ପ ସମାଧି ।

ଦିନେ ନୁହେଁ କି ଅଧେ ନୁହେଁ, ଏକାଦିକ୍ରମେ ଛ' ମାସ ରାମକୃଷ୍ଣ ରହିଥିଲେ ଏହି ନିର୍ବିକଳ୍ପ ଅବସ୍ଥାରେ । ଅତି ବେଶୀରେ ଏକୋଇଶ ଦିନ ରହିବା ସମ୍ଭବ, ତା' ପରେ ଦେହର ବିନାଶ ସୁନିଶ୍ଚିତ । ଅଥଚ ରାମକୃଷ୍ଣ ରହିଗଲେ ଛଅମାସ ! କଅଣ ଦେଖୁଥିଲେ, କଅଣ ଶୁଣୁଥିଲେ କିଏ କହିବ ? ଲବଣ-ପିତୁଳୀ ଯାଇଛି ସମୁଦ୍ରର ପରିମାପ କରିବାକୁ । ପାଦ ଦେବା ମାତ୍ରେ ମିଳେଇ ଗଲା ।

ବିଚାର ଯେଉଁଠି ପହଞ୍ଚି ଅଟକି ଯାଏ ତାହା ହିଁ ବ୍ରହ୍ମ । ଯାହା ଦେଖିଲା ପରେ ଆଉ କିଛି ଦେଖିବାର ନାହିଁ, ଯାହା ଜାଣିବା ପରେ ଆଉ କିଛି ଜାଣିବାର ନାହିଁ, ଯାହା ହେବା ପରେ ଆଉ କିଛି ହେବାର ନାହିଁ । କିନ୍ତୁ କଅଣ ଦେଖିଲ, କଅଣ ଜାଣିଲ, କଅଣ ହେଲ, ତାହା କଅଣ ତୁମେ ବୁଝାଇ କହିପାରିବ ? ସଂସାରର ସମସ୍ତ ଜ୍ଞେୟ ବସ୍ତୁ ଉଚ୍ଛିଷ୍ଟ ହୋଇ ସାରିଛି । ବେଦ କୁହ, ପୁରାଣ କୁହ, କେତେ ପଠନ-ପାଠନ, କେତେ ବିଚାର-ବିତର୍କ ହୋଇ ସାରିଛି ସେ-ସବୁକୁ ନେଇ ମଣିଷ

ତୁଣ୍ଡରେ । କେତେ ଉଚ୍ଚାରଣ, କେତେ ବିଶ୍ଳେଷଣ । କିନ୍ତୁ ବ୍ରହ୍ମ ? ବ୍ରହ୍ମ ହିଁ ଏକମାତ୍ର ଅନୁଚ୍ଚାରିତ ।

କେତେବେଳେ ରାତି ପାହି ଦିନ ଆସୁଛି, ପୁଣି ଦିନ ଯାଇ ରାତି ଆସୁଛି, ଜଣା ପଡୁନାହିଁ ରାମକୃଷ୍ଣଙ୍କୁ । ପ୍ରଥମ ଅବସ୍ଥାରେ ସମାଧିରେ ମା ମା କହି କ୍ରନ୍ଦନ କରୁଥିଲେ । ବର୍ତ୍ତମାନ ଚାଲି ଆସିଛନ୍ତି ବାକ୍ୟ-ମନର ପର ପାରକୁ । ଜାଗରଣ ନୁହେଁ, ସ୍ୱପ୍ନ ନୁହେଁ, ସୁଷୁପ୍ତି ମଧ୍ୟ ନୁହେଁ - ଚାଲି ଆସିଛନ୍ତି ସ୍ୱରୂପବୋଧର ସ୍ୱଚ୍ଛତାକୁ । ନାକ ଭିତରେ, ମୁହଁ ଭିତରେ, ମାଛି ପଶି ଯାଉଛି, ତଥାପି ଦେହରେ ସ୍ପନ୍ଦନ ନାହିଁ । ମୁଣ୍ଡର ବାଳରେ ଧୂଳି ଜମି ଜଟ ହୋଇଗଲାଣି । ନିଜର ଅଜ୍ଞାତରେ ଶୌଚ ହୋଇ ଯାଉଛି, ଖିଆଲ ନାହିଁ । ଶୂନ୍ୟ ନୁହେଁ, ଅଶୂନ୍ୟ ମଧ୍ୟ ନୁହେଁ, ସର୍ବଜଗତ-ବ୍ୟାପୀ ଚିନ୍ମାତ୍ରବିସ୍ତାର ।

ସେହି ଚେତନାରେ ଶିବ ଶବୀଭୂତ ।

ଦେହ କ୍ରମଶଃ ଭାଙ୍ଗି ପଡୁଥିଲା ରାମକୃଷ୍ଣଙ୍କର । ହଠାତ୍ କେଉଁଠୁ କେଜାଣି, ଜଣେ ସାଧୁ ଆସି ଏତିକି ବେଳେ ହାଜର ଦକ୍ଷିଣେଶ୍ୱରରେ । ହାତରେ ଗୋଟାଏ ମୋଟା ଠେଙ୍ଗା । ସେହି ଠେଙ୍ଗାରେ ସେ ମଝିରେ ମଝିରେ ପାହାର ଦିଏ ରାମକୃଷ୍ଣଙ୍କୁ ।

'କଅଣ ? ଖାଇବୁ ନାହିଁ ? ଅଲବତ୍ ଖାଇବୁ !' ମାଡ଼ ବସାଏ, ଶାସନ କରେ ସାଧୁ ।

କହେ, 'ଏଇ ଦେହକୁ ଏପରି ଭାବରେ ନଷ୍ଟ ହେବାକୁ କଦାପି ଦେବି ନାହିଁ । ସେ ଦେହରେ ମା'ଙ୍କର ଆହୁରି ଅନେକ କାମ କରିବାର ଅଛି । ବାକି ଅଛି କେତେ ଲୋକ-କଲ୍ୟାଣ । ଉଠ୍-ଖା- ।' କହୁଥାଏ ପୁଣି ପାହାର ବସାଉଥାଏ ।

ଏହିପରି ଭାବରେ ଚେତା ଅଣେଇବାକୁ ଚେଷ୍ଟା କରୁଥାଏ । ମାତ୍ର ବସି ଟିକିଏ ହୋସ ଆସିଲା ମାତ୍ରେ ମୁହଁ ଭିତରେ ଖାଇବା ଜିନିଷ ପୂରେଇ ଦେଉଥାଏ । ଏହିପରି ଭାବରେ ସାଧୁ ବଞ୍ଚେଇ ରଖିଲା ରାମକୃଷ୍ଣଙ୍କୁ ।

ଦୀର୍ଘ ଛଅ ମାସ ।

ଶେଷକୁ ଦିନେ ଜଗଦମ୍ବା ଆସି ଦେଖା ଦେଲେ । କହିଲେ, 'ହଉ, ହେଲା । ଏଥର ଓହ୍ଲେଇ ଆ । ଆଜିଠାରୁ ତୁ ଭାବମୁଖ*ରେ ରହ । ଲୋକଶିକ୍ଷା ପାଇଁ ଭାବୈଶ୍ୱର୍ଯ୍ୟ ଧାରଣ କର ।'

ରାମକୃଷ୍ଣଙ୍କର ରକ୍ତ-ଆମାଶୟ ଆରମ୍ଭ ହେଲା । ସେହି ରୋଗରେ ଆକ୍ରାନ୍ତ ହେବା ଫଳରେ ମନ କ୍ରମଶଃ ଦେହକୁ ଓହ୍ଲାଇ ଆସିଲା ।

'ଛାତ ଉପରେ ଲୋକ କେତେ ସମୟ ରହିପାରେ ? କିଛି ସମୟ ରହି ପୁଣି ତଳକୁ ଓହ୍ଲାଇ ଆସେ । ସା-ରେ-ଗା-ମା-ପା-ଧା-ନି-, ନି-ରେ ପହଞ୍ଚି କେତେ ସମୟ ରହିବ ସେଇଠି ଅଟକି ? ପୁଣି ତ ଖସି ଖସି ସା।-କୁ ଆସିବ । ସମାଧିସ୍ଥ ହୋଇ ଯିଏ ବ୍ରହ୍ମକୁ ଦେଖୁଥାଆନ୍ତି, ସମାଧିରୁ ଓହ୍ଲାଇ ଆସି ପୁଣି ଦେଖନ୍ତି ସେଇ ବ୍ରହ୍ମ ହିଁ ଜୀବ-ଜଗତ ଆଦି ସମସ୍ତ ହୋଇଛନ୍ତି । ଯିଏ

---

*ଭାବମୁଖ- ନିର୍ଗୁଣ ଓ ସଗୁଣର ମଧ୍ୟବର୍ତ୍ତୀ ଅବସ୍ଥା । ମୁଁ-ତ୍ୱ ରହିଥାଏ, ଅଥଚ ମନ ଭିତରେ ଅଖଣ୍ଡ ଭାବର ସ୍ଫୁରଣ ହେଉଥାଏ । ତୁମେ ଯାହା, ମୁଁ ମଧ୍ୟ ସେଇଆ; ତୁମ ଇଚ୍ଛା ମୋ ଇଚ୍ଛା- ଏହି ଅନୁଭବ । ତୁମରି ଭିତରେ ରହିଥିବି, ନିରନ୍ତର ତୁମରି ଉପରେ ଦୃଷ୍ଟି ରଖିଥିବି; ମାତ୍ର ଲୋକ-କଲ୍ୟାଣ ପାଇଁ ବାହାରକୁ ମଧ୍ୟ ଦୃଷ୍ଟି ଦେଇ ପାରୁଥିବି ।

ବ୍ରହ୍ମ ସେହି ଭଗବାନ । ବ୍ରହ୍ମ ଗୁଣାତୀତ, ଭଗବାନ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ । ଏହି ଜୀବ-ଜଗତ, ମନ ବୁଦ୍ଧି ଭକ୍ତି ଜ୍ଞାନ ତ୍ୟାଗ ବୈରାଗ୍ୟ - ଏ ସମସ୍ତ ତାଙ୍କର ଐଶ୍ୱର୍ଯ୍ୟ । ବ୍ରହ୍ମ ଜ୍ଞାନ-ମୁଖରେ, ଭଗବାନ ଭାବ-ମୁଖରେ । ଆମ ପାଇଁ ଭାବ-ମୁଖରେ ଥିବା ଭଗବାନ ହିଁ ଭଲ । ତାଙ୍କର ଘର-ଦ୍ୱାର ଅଛି, ଧନ-ଦୌଲତ ଅଛି; ସେଥିପାଇଁ ତାଙ୍କର ଏତେ ଖାତିର, ଏତେ ନାମ-ଡାକ । କିନ୍ତୁ ବ୍ରହ୍ମ ହେଉଛନ୍ତି ଦେଉଳିଆ, କାଣି-କଉଡ଼ିଟାଏ ବି ନାହିଁ ତାଙ୍କ ହାତରେ । ଯେଉଁ ବାବୁଙ୍କର ନିଜର ଘର-ଦ୍ୱାର ନାହିଁ, ସିଏ ପୁଣି କୋଉ ବାବୁପଣରେ ଲେଖା ।'

ବାବୁରାମ ଘୋଷ, ପରବର୍ତ୍ତୀ କାଳରେ ଯେ ସ୍ୱାମୀ ପ୍ରେମାନନ୍ଦ ନାମରେ ପ୍ରସିଦ୍ଧି ଲାଭ କରିଥିଲେ, ଦିନେ ରାତିରେ ଦକ୍ଷିଣେଶ୍ୱରରେ ଥିଲେ, ଶୋଇଥିଲେ ଠାକୁର ଯେଉଁ ଘରେ ଶୁଅନ୍ତି ସେଇ ଘରେ । ହଠାତ୍ କଅଣ ଶବ୍ଦ ଶୁଣି ବାବୁରାମଙ୍କ ନିଦ ଭାଙ୍ଗିଗଲା । କାନ ଡେରି ଶୁଣିଲେ, ଘର ଭିତରେ କିଏ ଚାଲ-ବୁଲ କରୁଛି । କିଏ ଆଉ ଚାଲିବ ? ଦେଖିଲେ, ଠାକୁର ଅସ୍ଥିର ଭାବରେ ଘର ଭିତରେ ଏ-ପାଖ ସେ-ପାଖ ହେଉଛନ୍ତି । ପିନ୍ଧିଥିବା ଲୁଗାଟିକୁ ଖୋଲି ପକାଇ କାଖ ତଳେ ଜାକି ଧରିଛନ୍ତି । ଦୁମ୍-ଦାମ୍ ପାଦ ପକେଇ ଚାଲୁଛନ୍ତି ଏବଂ କହୁଛନ୍ତି ଉତ୍ତେଜିତ ଭାବରେ, 'ସେଗୁଡ଼ାକ ମୋର ଦରକାର ନାହିଁ । ତୁ ଫେରେଇ ନେଇ ଯା ସେ ସବୁ । ସେ ଗୁଡ଼ାକ ମୋର କୋଉ କାମରେ ଲାଗିବ ? ଛି !'

ତରୁଣ ଶିଷ୍ୟ ବାବୁରାମ ବିସ୍ମୟରେ କାଠ ପାଲଟି ଯାଉଛି ।

ପୁଣି ପାଦଶବ୍ଦ । ପୁଣି ସେହି ସଘୃଣ ପ୍ରତ୍ୟାଖ୍ୟାନ ।

କିଛି ସମୟ ପରେ ରାମକୃଷ୍ଣ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ । ବାବୁରାମ ପଚାରିଲା, 'ସେତେବେଳେ ସେଭଳି ହେଉଥିଲେ କାହିଁକି ?'

'ଆରେ ! ତୁ ଦେଖି ପକେଇଲୁ କି ? ଅଧ ରାତିରେ ନିଦ ଭାଙ୍ଗିଗଲା । ଦେଖିଲି ମା ଆସିଛନ୍ତି ଘର ଭିତରକୁ । ହାତରେ ଗୋଟାଏ ଥଳି । କହିଲେ, ଏଇ ଥଳି ଭିତରେ ଯାହା ଅଛି, ସେ ସବୁ ତୋରି ପାଇଁ ଆଣିଛି । ନେ, ହାତ ପତା । କଅଣ ଆଣିଛୁ, ଆଗ ଦେଖେ । ଚାହିଁ ଦେଇ ଦେଖିଲି, ଥଳି ଭିତରେ ରହିଛନ୍ତି ନାମ-ଯଶ, ଲୋକମାନ୍ୟ, କେତେ କଅଣ । ଥଳି ଭିତରୁ ମୁହଁ ବାହାର କରି ଅନେଇଛନ୍ତି । ବାପ୍ ରେ ! କି ବୀଭତ୍ସ ସେ ଗୁଡ଼ାକ ଦେଖିବାକୁ ! ମୁଁ ଚିତ୍କାର କରି କହିଲି, ତୁ ସେଗୁଡ଼ାକ ସବୁ ଫେରେଇ ନେଇଯା ! ଫେରେଇ ନେଇ ଯା, କହୁଛି !! ମୁଁ ଚାହେଁ ନା ସେ ସବୁ ଜିନିଷ ! ମୋତେ ଲୋଭ ଦେଖା ନା, ମା, ତୋ ଗୋଡ଼ ତଳେ ପଡୁଛି -'

'ତା' ପରେ ?'

'ତା' ପରେ, ଆଉ କଅଣ ? ମା ଟିକିଏ ହସିଦେଲେ । ଚାଲି ଗଲେ ଥଳି ନେଇ !'

## ୨୯

'ଆରେ, କେଉଁ ରୋଟି ଠୋକ୍‌ତେ ହୋ ?'

ହାତରେ ତାଳି ଦେଇ ହରିନାମ କରୁଛନ୍ତି ରାମକୃଷ୍ଣ । ପ୍ରତିଦିନ ସକାଳ ସନ୍ଧ୍ୟାରେ ଏଇଟା

ତାଙ୍କର ନିତିଦିନିଆ ଅଭ୍ୟାସ । ହରି ବୋଲ, ହରି ବୋଲ୍, କିମ୍ବା ହରି ଗୁରୁ, ଗୁରୁ ହରି ! ମୁଁ ଯନ୍ତ୍ର, ତୁମେ ଯନ୍ତ୍ରୀ; କିମ୍ବା ମନ କୃଷ୍ଣ, ପ୍ରାଣ କୃଷ୍ଣ ।

ନିର୍ବିକଳ୍ପ ସମାଧି ଲାଭ ପରେ ପୁଣି ଏ ସବୁ ପିଲାଳିଆ ଢଙ୍ଗ କାହିଁକି ? ଏହି ସବୁ ବାହ୍ୟ ଅନୁଷ୍ଠାନର କଅଣ ଆବଶ୍ୟକତା ?

ଟିକିଏ ବିରକ୍ତ ହେଲେ ବୋଧହୁଏ ତୋତାପୁରୀ । ଥଟ୍ଟା କଲା ଭଳି କହିଲେ, 'କି ହୋ, କଥା କଅଣ ? ହାତରେ ବାଡ଼େଇ ରୁଟି ତିଆରି କରୁଛ, ନା କଅଣ ?'

'ହେଃ ! ମୁଁ ପରା ଈଶ୍ୱରଙ୍କ ନାମ କରୁଛି - ଶୁଣି ପାରୁ ନ ?'

'ଈଶ୍ୱରଙ୍କ ନାମ କରୁଛ ତ ତାଳି ମାରୁଛ କାହିଁକି ?'

କାହିଁକି ମାରୁଛି, କିଏ ଜାଣେ ? ତର୍କ କରି ଲାଭ ନାହିଁ । ଏ ସବୁ ହେଲା ଭାବର କଥା, ତୋତାପୁରୀ ବୁଝି ପାରିବେ ନାହିଁ । ସେ କେବଳ ବ୍ରହ୍ମକୁ ନେଇ ମସ୍‌ଗୁଲ । ବ୍ରହ୍ମର ସଙ୍ଗିନୀ ଯେଉଁ ମାୟା, ଯେଉଁ ଭାବରୂପିଣୀ ଶକ୍ତି, ତାଙ୍କ ଖବର ତୋତାପୁରୀଙ୍କ ପାଖରେ ନାହିଁ । ବିଚାର-ବିତର୍କରେ ଈଶ୍ୱରଙ୍କ ସନ୍ଧାନ ମିଳେ ସିନା । ମାତ୍ର ତାଙ୍କୁ ଯେ ଭଲ ପାଇହୁଏ, ତାଙ୍କ ପାଇଁ ମଣିଷ କାନ୍ଦି ପାରେ, ହସିପାରେ, ନାଚିପାରେ, ଏ କଥା ତାଙ୍କ ଧାରଣାର ଅତୀତ । ସେ ମନନ-ଚିନ୍ତନ ବୁଝନ୍ତି, ମାତ୍ର କୀର୍ତ୍ତନ-ଭଜନ ବୁଝନ୍ତି ନାହିଁ । ଶମ-ଦମ କଥା ଜାଣନ୍ତି, ବାତ୍ସଲ୍ୟ-ମାଧୁର୍ଯ୍ୟ ବୁଝନ୍ତି ନାହିଁ । ଭକ୍ତି ତାଙ୍କ ପାଖରେ ନିଛକ ପ୍ରଳାପୋଚ୍ଛ୍ୱାସ । ବୁଦ୍ଧିର ବିକ୍ଲିନ୍ନ ବିକାର ।

ସେ ଅଭୀତ । ତାଙ୍କ ଧୂନିର ଅଗ୍ନି ପରି ସେ ମାୟାଶୂନ୍ୟ, ନିଷ୍କଳଙ୍କ ।

ରାତି ଦି' ପହରରୁ ଅଧିକ ହେଲାଣି । ଧ୍ୟାନରେ ବସିବା ପାଇଁ ଯାଉଛନ୍ତି ତୋତାପୁରୀ । ମନ୍ଦିର ଚୂଡ଼ା ଉପରୁ ପେଚାଟାଏ ରାବିଲା । ନିଝୁମ ରାତି, ଚାରିଆଡ଼େ ସ୍ତବ୍ଧତା ।

ହଠାତ୍ ଜଣେ ଦୀର୍ଘାକାର ଲୋକ ଗଛ ଉପରୁ ଓହ୍ଲାଇ ଆସିଲା ତଳକୁ । ଆସି ଛିଡ଼ା ହେଲା ଆଗରେ ।

ଠିକ୍ ତାଙ୍କରି ପରି ଉଲଗ୍ନ ।

'କିଏ ତୁମେ ?' ପଚାରିଲେ ତୋତାପୁରୀ ।

'ମୁଁ ଭୂତ - ଭୈରବ । ଗଛ ଉପରେ ଥାଏଁ । ଏହି ଦେବସ୍ଥାନ ରକ୍ଷା କରେଁ । କିନ୍ତୁ ତୁମେ କିଏ ?'

ବିନ୍ଦୁ ମାତ୍ର ବିଚଳିତ ହେଲେ ନାହିଁ ତୋତା । କହିଲେ, 'ତୁମେ ଯାହା ମୁଁ ବି ସେଇଆ ।'

'ମୁଁ ତ ଭୂତ !'

'ହୁଅ ପଛେ । ତୁମେ ବି ବ୍ରହ୍ମର ପ୍ରକାଶ, ମୁଁ ବି ବ୍ରହ୍ମର ପ୍ରକାଶ । ତୁମ-ମୋ ଭିତରେ କୌଣସି ତଫାତ ନାହିଁ । ଆସ, ବସ ଏଇଠି ମୋ ପାଖରେ । ଧ୍ୟାନ କର ।'

ନିମେଷ ମଧ୍ୟରେ ଭୂତ ମିଳେଇ ଗଲା ଶୂନ୍ୟରେ ।

ତହିଁ ଆର ଦିନ ତୋତା କହିଲେ ସବୁ କଥା ରାମକୃଷ୍ଣଙ୍କୁ ।

'ଜାଣେ । ମୁଁ ତାକୁ ଅନେକ ଥର ଦେଖିଛି ।' ଉଦାସ ଭଙ୍ଗୀରେ କହିଲେ ରାମକୃଷ୍ଣ ।

'କଅଣ ? ଦେଖିଛ ? ଡରି ଯାଇ ନାହଁ ?'

'ଡରିବି କାହିଁକି ? ମୋତେ ସେ ଅନେକ ଭବିଷ୍ୟତ କଥା କହି ଦେଇଛି । ଥରେ କଅଣ ହେଲା ଜାଣ - ?'

କୋମ୍ପାନୀ ମୁଣ୍ଡରେ ଖିଆଲ ପଶିଲା ପଞ୍ଚବଟୀ-ଜମିକୁ ଦଖଲ କରି ନେଇ ସେଠି ଗୋଟାଏ ବାରୁଦ-ଗୋଦାମ ଖୋଲିବ । ଟିକିଏ ନିରୋଳାରେ ବସି ମା'ଙ୍କୁ ଡାକେ, ସେଇ ଜାଗାଟା ଚାଲିଯିବ ? କୋମ୍ପାନୀ ନାଁରେ ମଥୁରବାବୁ ମୋକଦ୍ଦମା ଦାୟର କଲେ । ବହୁତ ଲଢ଼ିଲେ । କିଏ ଜିତିବ, କିଏ ହାରିବ, ଏ ଘେନି ଉଭୟ ପକ୍ଷ ସନ୍ତ୍ରସ୍ତ । ହଠାତ୍ ଦିନେ ରାତିରେ ଦେଖିଲି, ସେହି ଭୈରବ ତଳକୁ ଗୋଡ଼ ଲମ୍ବେଇ ବସିଛନ୍ତି ଗଛ ଉପରେ । 'ଖବର କଅଣ ?' ଇଶାରାରେ କହିଲେ, ଡରିବାର କିଛି ନାହିଁ, ମୋକଦ୍ଦମାରେ କୋମ୍ପାନୀ ହାରିବ ।

ହେଲା ବି ସେଇଆ । ମୋକଦ୍ଦମାର ରାୟ ବାହାରିଲା । କୋମ୍ପାନୀର ଡିସ୍‌ମିସ୍ ।

ତୁମେ ଜ୍ଞାନରେ ନିର୍ଭୟ, ମୁଁ ପ୍ରେମରେ ନିର୍ଭୟ । ତୁମେ ବ୍ରହ୍ମ ପାଇ ସେହି ବ୍ରହ୍ମରେ ରହିଛ, ମୁଁ କିନ୍ତ ବ୍ରହ୍ମକୁ ପାଇ ମଧ ଜୀବକୁ ନେଇ ରହିବି । ତୁମର ହେଲା ଜ୍ଞାନରୁ ଜ୍ଞାନ, ଜ୍ଞାନରୁ ଆରମ୍ଭ, ଜ୍ଞାନରେ ଶେଷ । ମୋର କିନ୍ତୁ ଭକ୍ତିରୁ ଜ୍ଞାନ, ଜ୍ଞାନରୁ ପୁଣି ଭକ୍ତି; ଜ୍ଞାନରୁ ଭଲ ପାଇବା । ମୋର କେତେବେଳେ ପୂଜା, କେତେବେଳେ ଜପ, କେତେବେଳେ ଧ୍ୟାନ, କେତେବେଳେପୁଣି କେବଳ ନାମ-ଗୁଣ ଗାନ । କେବେ ପୁଣି ଦୁଇ ବାହୁ ଟେକି ନୃତ୍ୟ । ମୁଁ ଶାକ୍ତମାନଙ୍କୁ ସ୍ୱୀକାର କରେ, ବୈଷ୍ଣବମାନଙ୍କୁ ସ୍ୱୀକାର କରେ, ପୁଣି ବେଦାନ୍ତବାଦୀମାନଙ୍କୁ ବି ସ୍ୱୀକାର କରେ । ଏବେ ପୁଣି ଯେଉଁ ନୂଆ ବ୍ରହ୍ମଜ୍ଞାନୀମାନେ ବାହାରିଛନ୍ତି ତାଙ୍କୁ ବି ସ୍ୱୀକାର କରେ । ତୁମେ ଏକମୁହାଁ, ଏକବାଗିଆ । ମୁଁ ବିଚିତ୍ର । ମୁଁ ବହୁଳ । ମୋର ସର୍ବ ସମନ୍ୱୟ ।

ଭକ୍ତି-ଭଲ ପାଇବା ଆଦିରେ ବିଶ୍ୱାସ ନାହିଁ ସିନା, ମାତ୍ର ତୋତାପୁରୀ ଯେତେବେଳେ ରାମକୃଷ୍ଣଙ୍କ କଣ୍ଠର ଗୀତ ଶୁଣନ୍ତି, ଆଖିରୁ ଲୁହ ଝରିଆସେ ।

ଭକ୍ତିର ବୀଜ ସତେ କି ଯାଉ ନାହିଁ । ଯେତେ ତା' ଉପରେ ଜ୍ଞାନର ଚାପା ଦିଅ ପଛକେ, ସେଥିରୁ ଗଜା ବାହାରିବ, ଡାକ-ପତ୍ର ମେଲିବ, ଫୁଲ-ଫଳ ଧରିବ । ଜ୍ଞାନର ବିଚାର ଯେତେ କରୁଥାଅ ପଛକେ, ପୁଣି ଫେରି ଆସି ସେଇ ମା - ମା, ସେହି ହରିବୋଲ- ହରିବୋଲ ।

ତୁମେ ତୁମ ଅଦ୍ୱୈତ ଜ୍ଞାନକୁ ନେଇ ନିଶ୍ଚଳ ହୋଇ ବସିଥାଅ । ମୁଁ କିନ୍ତୁ ଅଦ୍ୱୈତ ଜ୍ଞାନକୁ କାନିରେ ବାନ୍ଧି ରଖି କାମରେ ଲାଗିବି । ମୋର କେତେ କାମ, କେତେ କଥା । ମୁଁ ନ କହିଲେ ଶୁଣିବ କିଏ ? ମୁଁ ନକଲେ ସେମାନେ କରିବେ ବା କାହିଁକି ? ଆଉ ଏଇ 'ମୁଁ' ଟି ମୁଁ ନୁହେଁ, କେହି ନୁହେଁ । ସବୁ ସେ, ସବୁ ତୁମେ ।

'ସେ' - କଥାଟି ଜ୍ଞାନ । 'ତୁମେ' ପ୍ରେମ ।

ଅଦ୍ୱୈତଭାବ କିଭଳି ଜିନିଷ ଜାଣୁ ? ମନେ କର, ଜଣେ ବହୁ ଦିନର ପୁରୁଣା ଚାକର । ଭାରି ବିଶ୍ୱସ୍ତ । ମୁନିବ ତା' ଉପରେ ବହୁତ ସନ୍ତୁଷ୍ଟ । ସବୁ କଥାରେ ତାକୁ ବିଶ୍ୱାସ କରନ୍ତି । ସବୁ କଥାରେ ପରାମର୍ଶ କରନ୍ତି । ଦିନେ କଅଣ କଲେ, ନା, ତା' ହାତ ଧରି ନେଇ ନିଜ ଗଦି ଉପରେ ବସେଇ ଦେବାକୁ ଚାହିଁଲେ । ଆଜ୍ଞା, ଏ କଅଣ କରୁଛନ୍ତି ? ଏ କଅଣ କରୁଛନ୍ତି ? ଚାକର ସଂକୋଚରେ ଘୁଞ୍ଚି ଆସିବାକୁ ଚାହିଁଲା । ଆଃ, ଆସ ମ, ବସ ତୁମେ ଏଇଠି - କହି ମୁନିବ ଜୋର

କରି ତାକୁ ଟାଣି ନେଇ ବସେଇ ଦେଲେ ଗଦି ଉପରେ । କହିଲେ, ଆରେ, ତୁ ଯିଏ, ମୁଁ ସେଇ । ତୁ ମୁଁ ସମାନ । ଅଦ୍ୱୈତ ଭାବ ଏହି ଭଳି ।

ପଦ୍ମଲୋଚନ ପ୍ରକାଣ୍ଡ ବୈଦାନ୍ତିକ । ଦେଶ ତମାମ ତାଙ୍କର ପ୍ରସିଦ୍ଧି । ବର୍ଦ୍ଧମାନ ରାଜାଙ୍କ ସଭା-ପଣ୍ଡିତ ହୋଇ ରହିଥାଆନ୍ତି । ରାମକୃଷ୍ଣ ମଥୁରବାବୁଙ୍କୁ ଥରେ କହିଲେ, ମୋତେ ଥରେ ବର୍ଦ୍ଧମାନ ନେଇ ଚାଲ । ଥରେ ପଣ୍ଡିତଙ୍କୁ ଦେଖି ଆସିବି ।

ପାଣ୍ଡିତ୍ୟ ଓ ଭକ୍ତିର ଯେଉଁଠି ମିଳନ, ସେହିଠାରେ ହିଁ ଭଗବାନଙ୍କ ଅଧିଷ୍ଠାନ । ତାହା ହିଁ ତୀର୍ଥ କ୍ଷେତ୍ର । ସେଇଠି ଜାଣିବ, ହାତୀଦାନ୍ତରେ ସୁନା ଛିଆଣି ହୋଇଛି ।

ଯିବା ଆଉ ଦରକାର ପଡ଼ିଲା ନାହିଁ। ପଦ୍ମଲୋଚନ ନିଜେ ଆସି ପହଞ୍ଚିଲେ କମାରହାଟିରେ । ଦକ୍ଷିଣେଶ୍ୱରରୁ ଅଳ୍ପ ଦୂର । ନଷ୍ଟ ସ୍ୱାସ୍ଥ୍ୟ ଫେରେଇ ଆଣିବା ପାଇଁ ରହିଛନ୍ତି ଗଙ୍ଗା କୂଳରେ ।

ଦିନେ ହୃଦୟକୁ ଡାକି ରାମକୃଷ୍ଣ କହିଲେ, 'ଥରେ ଯାଇ ପଣ୍ଡିତଙ୍କ ଖବର ବୁଝି ଆ ତ !'

'କିଏ ? କୋଉ ପଣ୍ଡିତ ?'

ଜାଣି ନାହୁଁ ? ଭାରି ବଡ଼ ପଣ୍ଡିତ । ଈଶ୍ୱର-ପ୍ରେମିକ । ବିଦ୍ୟା ବୁଦ୍ଧିରେ ପ୍ରଚଣ୍ଡ, ପୁଣି ଭକ୍ତିରେ ମେଦୁର । ଯେଉଁଭଳି ସଦାଚାର ଇଷ୍ଟନିଷ୍ଠା ସେଇ ଭଳି ପୁଣି ଔଦାସୀନ୍ୟ ଓ ଔଦାର୍ଯ୍ୟ । ଯେମିତି ସରଳ ସେମିତି ସ୍ପଷ୍ଟବାଦୀ । ଥରେ ରାଜସଭାରେ ତର୍କ ଆରମ୍ଭ ହେଲା, କିଏ ବଡ଼ - ଶିବ ନା ବିଷ୍ଣୁ ? ମୀମାଂସା ହୋଇ ପାରୁନାହିଁ, ଡାକ ପଦ୍ମଲୋଚନ ପଣ୍ଡିତଙ୍କୁ । ଆସିଲେ ପଦ୍ମଲୋଚନ । କହିଲେ, ମୁଁ ସେ କଥାର କଅଣ ଜାଣେ ? ମୋ ଚଉଦ ପୁରୁଷରେ କେହି ଶିବଙ୍କୁ ଦେଖି ନାହିଁ, ବିଷ୍ଣୁଙ୍କୁ ବି ଦେଖି ନାହିଁ । କିଏ ବଡ଼ କିଏ ସାନ କେମିତି କହିବି ? ଯିଏ ଯାହାକୁ ବଡ଼ ମନେ କରେ ସିଏ ତା' ପାଇଁ ବଡ଼ ।

'ଯାଇ କଅଣ କରିବି ?' ପଚାରିଲା ହୃଦୟ ।

'ଯାଇ ଦେଖି ଆସିବୁ ତାଙ୍କ ଭିତରେ ଅଭିମାନ ଅଛି ନା ନାହିଁ ।'

ହୃଦୟ ଯାଇ ଦେଖି ଆସିଲା ପଦ୍ମଲୋଚନଙ୍କୁ । ଆସି କହିଲା, 'ସେ ତୁମ ପାଇଁ ବାଟ ଚାହିଁ ବସିଛନ୍ତି । ମୁଁ ତୁମ ଭଣଜା ବୋଲି ଜାଣିଲାରୁ ବହୁତ ଆଦର-ଯତ୍ନ କଲେ ।'

ସଙ୍ଗେ ସଙ୍ଗେ ଉଠିଲେ ରାମକୃଷ୍ଣ । ଜୀବନ ସରି ଆସୁଛି, ଯେତେ ପାରୁଛ ସତ୍‌ସଙ୍ଗ କରି ନିଅ । ଦିନ ଥାଉ ଥାଉ ଦେଖି ନିଅ ଦିନମଣିଙ୍କୁ ।

ପଦ୍ମଲୋଚନ ଦେଖିଲେ ତାଙ୍କ ଘରକୁ ଆସିଛନ୍ତି ପଦ୍ମପଳାଶଲୋଚନ ।

ଦେଖି ପକେଇ ପରସ୍ପରକୁ ତରଳି ଗଲେ ଦୁଇ ଜଣ ଯାକ । ଆରମ୍ଭ ହେଲା କଥାର ହୋରି ଖେଳ । ରାମକୃଷ୍ଣ ଗୀତ ଗାଇଲେ । ପଦ୍ମଲୋଚନଙ୍କ ଆଖିରେ ଆନନ୍ଦର ଅଶ୍ରୁପ୍ଳାବନ ।

'ଏତେ ବଡ଼ ଜ୍ଞାନୀ ପଣ୍ଡିତ,' ଦିନେ କହିଲେ ଠାକୁର, 'ଅଥଚ ମୋ ମୁହଁରୁ ରାମପ୍ରସାଦୀ ଗୀତ ଶୁଣି କାନ୍ଦି ଭସେଇ ଦେଲେ । ସତରେ, କଥା କହି ଏତେ ସୁଖ ଆଉ କେଉଁଠି ପାଇନାହିଁ ।'

ଆଉ ପଦ୍ମଲୋଚନ କଅଣ କହିଲେ ? କହିଲେ, 'ଗଦା ଗଦା ବହି ପଢ଼ି ମୁଁ ଯାହା ଜାଣିଛି,

ସେ ପୁସ୍ତକଟିଏ ବି ନ ପଢ଼ି ତା' ଠାରୁ ବେଶୀ ଜାଣନ୍ତି ।'

ପଦ୍ମଲୋଚନ ବେଦାନ୍ତବାଦୀ, ମାତ୍ର ତନ୍ତ୍ରସାଧନାରେ ସିଦ୍ଧ । ଇଷ୍ଟଦେବୀଙ୍କ ଶକ୍ତି ବଳରେ ସେ ତର୍କରେ ସର୍ବଜୟୀ । କିନ୍ତୁ ଏହା ଭିତରେ ଗୋଟାଏ ପ୍ରଚ୍ଛନ୍ନ ରହସ୍ୟ ଥିଲା । ସବୁବେଳେ ତାଙ୍କ ପାଖରେ ରହୁଥିଲା ଗୋଟାଏ ଜଳ-ପୂର୍ଣ୍ଣ ଲୋଟା ଓ ଖଣ୍ଡିଏ ଗାମୁଛା । ତର୍କରେ ବସିବା ଆଗରୁ ସେହି ଜଳରେ ସେ ମୁହଁ ଧୋଇ ନେଉଥିଲେ । ଥରେ ମୁହଁଟା ଧୋଇ ନେଇ ପାରିଲେ କିଲ୍ଲା ଫତେ । କେହି ଆଉ ତାଙ୍କୁ ହରେଇ ପାରିବ ନାହିଁ ତର୍କରେ । ତାଙ୍କରି ପ୍ରାଧାନ୍ୟ ଅକ୍ଷୁଣ୍ଣ ରହିବ ।

ଗୋଟାଏ ଅତି ସାଧାରଣ ଆଚରଣ । ବାଗ୍‌ଦେବୀଙ୍କୁ ଜିହ୍ବାଗ୍ରକୁ ଆଣିବା ପୂର୍ବରୁ ମୁହଁଟାକୁ ଧୋଇ ପକାଇବା ।

କିନ୍ତୁ କଥାର ମର୍ମଟା ରାମକୃଷ୍ଣ ଜାଣିଗଲେ । ଜଗଦମ୍ବା କହିଦେଲେ ।

ତା' ପରେ, ଦିନେ ତର୍କ ପାଇଁ ଆୟୋଜନ ହୋଇଛି । ତର୍କ ଆରମ୍ଭ କରିବା ପୂର୍ବରୁ ପଦ୍ମଲୋଚନ ଉଠିଗଲେ ମୁହଁ ଧୋଇବାକୁ । କିନ୍ତୁ ଲୋଟା-ଗାମୁଛା କାହିଁ ? ଆରେ ! ମୋ ଲୋଟା-ଗାମୁଛା କୁଆଡ଼େ ଗଲା ? ମୁହଁ ନ ଧୋଇଲେ ତ ଶାସ୍ତ୍ର ଆଲୋଚନା ଆରମ୍ଭ କରିବେ ନାହିଁ ! ଆଶ୍ଚର୍ଯ୍ୟ କଥା ! ଏଇଠି ଥିଲା ମୋ ଲୋଟା ଗାମୁଛା । ନେଲା କିଏ ?-

କିଏ ଆଉ ? ରାମକୃଷ୍ଣ ନିଜେ ଆଣି ଲୁଚେଇ ରଖିଛନ୍ତି ।

'କଅଣ ହେଲା ? ଆସ, ଆଲୋଚନା ଆରମ୍ଭ କର !' ରାମକୃଷ୍ଣଙ୍କ ମୁହଁରେ ମୁରୁକି ହସ ।

'ଆଶ୍ଚର୍ଯ୍ୟ !' ପଦ୍ମଲୋଚନ ହତବାକ୍; 'ତୁମେ ଜାଣିଲ କେମିତି ? ତୁମେ କଅଣ ଅନ୍ତର୍ଯ୍ୟାମୀ ?'

ପଦ୍ମଲୋଚନଙ୍କ ଦୁଇ ଆଖିରୁ ଝର ଝର ହୋଇ ଲୁହ ଝରିପଡ଼ିଲା । ଦୁଇ ହାତ ଯୋଡ଼ି ସ୍ତବ ଆରମ୍ଭ କଲେ ରାମକୃଷ୍ଣଙ୍କୁ । ତା'ପରେ କହିଲେ, 'ମୁଁ ନିଜେ ଗୋଟାଏ ସଭା ଡକେଇବି । ଆମନ୍ତ୍ରଣ କରିବି ସବୁ ବଡ଼ ବଡ଼ ପଣ୍ଡିତଙ୍କୁ । ତାଙ୍କରି ଆଗରେ କହିବି, ତୁମେ ଈଶ୍ୱରାବତାର । ଦେଖିବି ଭଲା, କିଏ ମୋ କଥା ଖଣ୍ଡନ କରିପାରିବ ।'

ଏ ସଭା ଡାକିବାର ସୁଯୋଗ କିନ୍ତୁ ପାଇଲେ ନାହିଁ ପଦ୍ମଲୋଚନ । ଦେହର ଅସୁସ୍ଥତା ଦିନକୁ ଦିନ ବଢ଼ି ଚାଲିଲା ।

ଦିନେ କହିଲେ ରାମକୃଷ୍ଣଙ୍କୁ, 'ଭକ୍ତ-ସଙ୍ଗ କରିବାର ଇଚ୍ଛା ବର୍ଜନ କର । ତା' ନକଲେ ନାନା ପ୍ରକାର ଲୋକ ଆସିବେ ତୁମ ପାଖକୁ, ତୁମକୁ ପତିତ କରାଇଦେବେ ।'

ରାମକୃଷ୍ଣ ହସିଲେ । କହିଲେ, 'ସେହି ପତିତ-ଅଭାଜନଙ୍କ ଭିତରେ ହିଁ ତ ଏଣିକି ମୋର ସ୍ଥାନ । ମୋତେ ପୁଣି କିଏ ପତିତ କରେଇବ ?'

ଦକ୍ଷିଣେଶ୍ୱରରେ ମଥୁରବାବୁ ଥରେ ବିରାଟ ଦାନ ମହୋତ୍ସବର ଆୟୋଜନ କଲେ । ବ୍ରାହ୍ମଣ-ବିଦାୟ ମହୋତ୍ସବ । ଏକ ହଜାର ମହଣ ଚାଉଳ, ତା' ସହିତ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ, ସୁନା-ରୂପା ସହିତ । ସବୁ ବଣ୍ଟାଯିବ । ଭଜନ-କୀର୍ତ୍ତନର ମଧ୍ୟ ଆୟୋଜନ ହୋଇଛି । ବହୁତ ଗାୟକ ଆସିଛନ୍ତି ବିଭିନ୍ନ ସ୍ଥାନରୁ, ଆମନ୍ତ୍ରିତ ହୋଇ । ଯିଏ ଗୀତରେ ଯେତେ ବେଶୀ ଭାବ-ବିହ୍ବଳ

କରେଇ ଦେଇ ପାରିବେ ରାମକୃଷ୍ଣଙ୍କୁ, ତାଙ୍କୁ ସେତେ ବେଶୀ ପୁରସ୍କାର ମିଳିବ - ଟଙ୍କା, ମିଳିବ ଶହ ହିସାବରେ, ତା'ଛଡ଼ା ଶାଲ, ମଠା, ପାଟ, କେତେ କଅଣ । ମଥୁର ବାବୁଙ୍କର ଭାରି ଇଚ୍ଛା, ପଣ୍ଡିତ ପଦ୍ମଲୋଚନ ଆସନ୍ତେ । କିନ୍ତୁ ସେ ଯେଉଁ ଭଳି ନୈଷ୍ଠିକ ଲୋକ, ହୁଏ ତ ନିମନ୍ତ୍ରଣ ଗ୍ରହଣ କରିବେ ନାହିଁ । ଶେଷକୁ ରାମକୃଷ୍ଣଙ୍କୁ କହିଲେ, 'ତୁମେ ଥରେ ତାଙ୍କୁ କୁହ ।'

'କଅଣ ? ତୁମେ ଦକ୍ଷିଣେଶ୍ୱର ଯିବ ନାହିଁ ?' ରାମକୃଷ୍ଣ ଯାଇ ପଚାରିଲେ ପଦ୍ମଲୋଚନଙ୍କୁ ।

ପରମ ନିଷ୍ଠାଚାରୀ ବ୍ରାହ୍ମଣ । ଅଶୂଦ୍ରପ୍ରତିଗ୍ରାହୀ । କହିଲେ, 'ତୁମେ ସାଙ୍ଗରେ ଥିଲେ ମୁଁ ଯାଇ ହାଡ଼ି ଘରେ ବି ଖାଇ ଆସି ପାରିବି । ଇଏ ତ କୈବର୍ତ୍ତ ଘରର ଆୟୋଜନ । ଯିବି ନାହିଁ କାହିଁକି ?'

କିନ୍ତୁ ଶେଷ ପର୍ଯ୍ୟନ୍ତ ଯାଇ ପାରିଲେ ନାହିଁ । ଦେହର ଅବସ୍ଥା ଅନୁକୂଳ ହେଲା ନାହିଁ । ରାମକୃଷ୍ଣଙ୍କ ପାଖରୁ ବିଦାୟ ନେଇ କାଶୀ ଯାତ୍ରା କଲେ । ଆଉ ଫେରିଲେ ନାହିଁ ।

ସିଁଥିର ଉଦ୍ୟାନରେ ଆସି ରହିଛନ୍ତି ଆଉ ଜଣେ ପଣ୍ଡିତ । ନାମ ଦୟାନନ୍ଦ ସରସ୍ୱତୀ । ଆର୍ଯ୍ୟ-ସମାଜର ପ୍ରତିଷ୍ଠାତା ।

ରାମକୃଷ୍ଣ ଗଲେ ତାଙ୍କୁ ସାକ୍ଷାତ କରିବା ପାଇଁ । ଯେଉଁଠି ପ୍ରସିଦ୍ଧି ସେଇଠି ଈଶ୍ୱରଙ୍କ ବିଭୂତି । ଆଉ, ଯେଉଁଠି ଈଶ୍ୱରଙ୍କ ବିଭୂତି, ସେଇଠି ରାମକୃଷ୍ଣଙ୍କ ସ୍ୱୀକୃତି ।

'କି ଭଳି ? କଅଣ ଦେଖିଲ ସରସ୍ୱତୀଙ୍କୁ ?'

'ଦେଖିଲି, ଶକ୍ତି ଆସିଛି- ଛାତି ରକ୍ତବର୍ଣ୍ଣ । କଥା କହୁଛନ୍ତି ବହୁତ, ଯାହାକୁ କହନ୍ତି ବୈଖରୀ ଅବସ୍ଥା । ବ୍ୟାକରଣ ସୂତ୍ରକୁ ଧରି ଶାସ୍ତ୍ର-ବାକ୍ୟର ବ୍ୟାଖ୍ୟା କରୁଛନ୍ତି । ମୁଁ ନିଜେ ଗୋଟାଏ କିଛି କରିବି, ଗୋଟାଏ ନୂଆ ମତ ଚଳେଇବି - ଏଇ ଅହଂକାର ଷୋହଳ ଅଣା ।'

'ଆଉ,ଜୟ ନାରାୟଣ ପଣ୍ଡିତ ?'

'ଆହା ! ତା' କଥା କୁହ ନା । ଏତେ ବଡ଼ ବିଦ୍ୱାନ, ତିଳେ ହେଲେ ଅହଂକାର ନାହିଁ । ନିଜ ମରଣ କଥା ଜାଣି ପାରିଥିଲେ ଆଗରୁ । ଜାଣି ପାରି କହିଲେ, କାଶୀ ଯାଉଛି ।'

ଆଉ, ଏଁଡ଼େଦାର କୃଷ୍ଣକିଶୋର -ତାଙ୍କର ଜ୍ୱଳନ୍ତ ବିଶ୍ୱାସ । କଅଣ ? ଥରେ ତାଙ୍କ ନାମ ଉଚ୍ଚାରଣ କରି ସାରିଛି, ମୋର ପୁଣି ପାପ ? ଅସମ୍ଭବ !

ଯେଉଁ ଗାଈ ଶୁଙ୍ଘି ଶୁଙ୍ଘି ବାଛ-ବିଚାର କରି ଖାଏ, ସେ ଚୁର୍‌କେ ଚୁର୍‌କେ ଦୁଧ ଦିଏ । ଆଉ ଯେଉଁ ଗାଈ ଘାସ-ପତ୍ର, ଭୁଷି-କୁଣ୍ଡା ଯାହା ପାଏ ସବୁ ଗବ୍-ଗାବ୍ କରି ଖାଇଦିଏ, ସେ ହୁଡ୍ ହୁଡ୍ କରି ଦୁଧ ଦିଏ । କୃଷ୍ଣକିଶୋରର ଉଗ୍ର ବିଶ୍ୱାସ । ଶୋଷ ଲାଗିଛି; ପଥ-ଶ୍ରମରେ କ୍ଳାନ୍ତ । କୂଅ ପାଖରେ କିଏ ଜଣେ ଛିଡ଼ା ହୋଇଛି, ତାକୁ କହିଲେ, ଜଳ ଦିଅ, ପିଇବି । ଲୋକଟି ଦୋ-ଦୋ-ପାଞ୍ଚ ହେଲା । କହିଲା, ଆଜ୍ଞା, ମୁଁ ମୋଚି, ଛୋଟ ଜାତି । କିଛି ଯାଏ ଆସେ ନା । ଥରେ ଶିବ ନାମ କହି ଦିଅ, ସଙ୍ଗେ ସଙ୍ଗେ ଶୁଚି-ଶୁଦ୍ଧ ହୋଇଯିବ । ମାତ୍ର ଥରେ କହିଦେଲେ ହେବ ? ହଁ, କହିଲି ପରା, ଥରେ ମାତ୍ର ନାମ ନେଲେ ହେବ । ଥରକ ହିଁ ଯଥେଷ୍ଟ । ଲୋକଟି ମୁହଁରେ ଥରେ 'ଶିବ'

ନାମ ଉଚ୍ଚାରଣ କଲା । କୂଅରୁ ଜଳ କାଢ଼ି ଦେଲା କୃଷ୍ଣକିଶୋରଙ୍କୁ । ପରମତୃପ୍ତିରେ ପିଇଲେ କୃଷ୍ଣକିଶୋର ।

କୃଷ୍ଣକିଶୋର କହନ୍ତି, ତୁମେ ସବୁ ରାମ ନାମ କୁହ, ମୁଁ କହେ 'ମରା' 'ମରା' । 'ରାମ' ଠାରୁ 'ମରା' ର ଶକ୍ତି ବେଶୀ । ମରା ମରା କହି ରତ୍ନାକରର ଉଦ୍ଧାର, ମୃତର ପୁନର୍ଜୀବନ ।

ତୁମମାନଙ୍କର ମନ୍ତ୍ର କ'ଣ ମୁଁ ଜାଣେ ନା, ମୋର କିନ୍ତୁ ଏଇ ମରା-ମନ୍ତ୍ର ।

ବିଷୟୀ ଲୋକଙ୍କ ସଙ୍ଗ ସହି ପାରୁ ନଥିଲେ; ରାମକୃଷ୍ଣ ତେଣୁ ଅନେକ ସମୟରେ ଆସୁଥିଲେ କୃଷ୍ଣ କିଶୋରଙ୍କ ପାଖକୁ । କୃଷ୍ଣକିଶୋରଙ୍କ ଈଶ୍ୱର ବିନା ବାକ୍ୟ ନାହିଁ, ଈଶ୍ୱର ବିନା ସ୍ତବ୍ଧତା ବି ନାହିଁ । କୃଷ୍ଣକିଶୋର ସଚଳ ତୀର୍ଥ, ଉଦ୍‌ଘାଟିତ ଶାସ୍ତ୍ର ।

ହଳଧାରୀକୁ ବି' ଆଖିରେ ଦେଖି ପାରୁ ନଥିଲେ ।

ଥରେ ରାମକୃଷ୍ଣ ଓ କୃଷ୍ଣକିଶୋର ସାଙ୍ଗ ହୋଇ ଯାଉଥିଲେ ଜଣେ ସାଧୁଙ୍କ ଦର୍ଶନ ପାଇଁ । ତୁମେ ଯିବ ? ପଚାରିଲେ ହଳଧାରୀକୁ । ହଳଧାରୀ ଉତ୍ତର ଦେଲା, 'ପଞ୍ଚଭୂତର ଗୋଟାଏ ପଞ୍ଜୁରି-ତାକୁ ଦେଖି ଲାଭ କଅଣ ?'

କୃଷ୍ଣକିଶୋର କ୍ରୁଦ୍ଧ ହେଲେ । 'ଯେଉଁ ଲୋକ ସବୁବେଳେ ଈଶ୍ୱରଙ୍କ ନାମ କରୁଛି, ଈଶ୍ୱରଙ୍କୁ ଧ୍ୟାନ କରୁଛି; ଈଶ୍ୱରଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରି ଚାଲିଆସିଛି, ସେ ଗୋଟାଏ ପଞ୍ଜୁରି ? ସେ କଅଣ ଜାଣେ ନାହିଁ ଯେ ଭକ୍ତର ହୃଦୟ ଚିନ୍ମୟ ?'

ବାଜେ କଥା । ତା' ହୋଇଥିଲେ ଅଜାମିଳକୁ ଦୁଷ୍କର ତପସ୍ୟା କରିବାକୁ ପଡ଼ି ନଥାଆନ୍ତା । ଥରେ ମାତ୍ର 'ନାରାୟଣ' ଉଚ୍ଚାରଣ କରି ଦେଇ ତରି ଯାଇଥାଆନ୍ତା ।

କିନ୍ତୁ କୃଷ୍ଣକିଶୋର ମାନିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ଭକ୍ତି ତମୋଗୁଣୀ ଭକ୍ତି- ମାର, ଧର, ହାଣ- ଜବରଦସ୍ତ ଭକ୍ତି । କେତେ ଥର କହିବି ? ଥରେ ତ କହିଛି, ସେତିକି ଯଥେଷ୍ଟ । ସେତିକିରେ ଆଦାୟ କରି ଆଣିବି ଜୋର କରି । ମୁଁ କ'ଣ ଭିକାରି ? ଭିକ ମାଗୁଛି ? ମୁଁ ଡକାୟତ !

ଦକ୍ଷିଣେଶ୍ୱରକୁ ଆସୁଥିଲେ ଫୁଲ ତୋଳିବା ପାଇଁ । ହଳଧାରୀ ସହିତ ଭେଟ ହୋଇଗଲେ ମୁହଁ ବୁଲେଇ ନିଅନ୍ତି । ଏତେ କ୍ଷୁଦ୍ର ଯାହାର ବିଶ୍ୱାସ, ଯିଏ ତୁର୍‌କେ ତୁର୍‌କେ ଦୁଧ ଦିଏ, ତା' ମୁହଁ ଚାହିଁବେ ନାହିଁ ।

ରାମକୃଷ୍ଣ ଦିନେ ଯାଇଥିଲେ ତାଙ୍କ ପାଖକୁ । ଯାଇ ଦେଖିଲେ, କୃଷ୍ଣକିଶୋର ବସି ବସି କଅଣ ଭାବୁଛନ୍ତି । କଅଣ ହେଲା ? ମନର ସରାଗ ନାହିଁ କାହିଁକି ?'

'ଟିକସବାଲା ଆସିଥିଲା ଟିକସ ପାଇଁ; ଧମକ ଦେଇ ଯାଇଛି, ଟିକସ-ଟଙ୍କା ନ ଦେଲେ ବେଲା-କାଂସା ବିକ୍ରି କରେଇ ଟଙ୍କା ଆଦାୟ କରିବ ।'

'ଏଇ କଥାକୁ ଏତେ ଭାବୁଛ ?' ହସି ଦେଲେ ରାମକୃଷ୍ଣ; 'ବେଲା-କଂସା ନବ, ନେଇ ଯାଉ । କିମ୍ବା ଧର, ତୁମକୁ ବି ବାନ୍ଧି ନେଇଯିବ; ଯାଉ । କିନ୍ତୁ ତୁମକୁ ତ ସତରେ ଆଉ ନେଇ ପାରିବ ନାହିଁ ! ତୁମେ ପରା 'ଖ' । ତୁମେ ତ ଆକାଶବତ୍ ।'

ଠିକ୍ କଥା । ମୋତେ କିଏ ନେବ ? ମୋତେ କିଏ ବାନ୍ଧି ପାରିବ ?... କିନ୍ତୁ ତୁମେ ଯେ ଏ କଥାଟା କହିଦେଲ, ତୁମେ କିଏ ?

ତୁମେ 'ଅ' । ''ଅକ୍ଷରାଣାଂ ଅକାରୋଽସ୍ମି ।'' ତୁମେ ସେହି ଅ-କାର । ତୁମେ ପ୍ରଣବର ଆଦ୍ୟ ଅକ୍ଷର ।

ଏଭଳି ଯେଉଁ କୃଷ୍ଣକିଶୋର, ତାଙ୍କର ପୁତ୍ରଶୋକ ଉପସ୍ଥିତ ହେଲା । ଦୁଇ-ଦୁଇ ଜଣ ଯୋଗ୍ୟ ପୁଅ, ମରିଗଲେ ଅକାଳରେ, ଜଣକ ପରେ ଜଣେ । ଏତେ ଜ୍ଞାନ, କିଛି କାମକୁ ଆସିଲା ନାହିଁ । ଶୋକରେ ଉଦ୍‌ଭ୍ରାନ୍ତ ହୋଇ ପଡ଼ିଲେ କୃଷ୍ଣକିଶୋର ।

ଆରେ, ଅର୍ଜୁନ ଭଳି ଜ୍ଞାନୀ ପୁରୁଷ, ସେ ତ ଶୋକରେ ଅଧୈର୍ଯ୍ୟ ହୋଇ ପଡ଼ିଥିଲେ; ଇଏ ତ କୃଷ୍ଣକିଶୋର । ଯାହା ପାଇଁ ଏଡ଼େ ବଡ଼ ଗୀତା, ଯାହା ପାଇଁ ଆତ୍ମାର ଏତେ ବିଶ୍ଳେଷଣ, ସିଏ ତ ଅଭିମନ୍ୟୁ ପାଇଁ ଶୋକରେ ମୂର୍ଚ୍ଛା ହୋଇଗଲେ । ପାଖରେ ପୁଣି ଅଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ, ଯିଏ ତାଙ୍କୁ ଏତେ ରକମ ଶିକ୍ଷା-ଦୀକ୍ଷା ଦେଇଥିଲେ । କୌଣସିଥିରେ କିଛି ହେଲା ନାହିଁ । ଆଖିର ଲୁହରେ ସବୁ କୁଆଡ଼େ ଭାସିଗଲା । ଏତେ ବଡ଼ ଜ୍ଞାନୀ ପୁରୁଷ ବଶିଷ୍ଠ, ସିଏ ବି ପୁତ୍ର ଶୋକରେ ଅସ୍ଥିର । ଲକ୍ଷ୍ମଣ ସେତେବେଳେ କହିଲେ, ଇଏ ତ ଅତି ଆଶ୍ଚର୍ଯ୍ୟ କଥା । ଏଭଳି ଲୋକ ପୁଣି ଏତେ ଶୋକାର୍ତ୍ତ ହୋଇ ପଡୁଛନ୍ତି ! ତହୁଁ ରାମ କହିଲେ, 'ଭାଇ ରେ, ଯାହାର ଜ୍ଞାନ ଅଛି ତା' ଠାରେ ଅଜ୍ଞାନ ମଧ୍ୟ ରହିଛି । ଯାହାର ସୁଖବୋଧ ଅଛି ତାହାର ଦୁଃଖବୋଧ ମଧ୍ୟ ଅଛି । ତେଣୁ ତୋତେ କହି ରଖୁଛି, ତୁ ଏ ଦୁଇଟି ଯାକ ଅତିକ୍ରମ କରି ଯା । ସୁଖ-ଦୁଃଖ, ଜ୍ଞାନ-ଅଜ୍ଞାନର ଆରପାରିକୁ ଚାଲି ଯା ।'

ଯେତେବେଳେ ରାବଣ ବଧ ହେଲା, ଲକ୍ଷ୍ମଣ ଧାଇଁଗଲେ ଦେଖିବା ପାଇଁ । ଦେଖିଲେ ରାବଣର ହାଡ଼ରେ ଶହ ଶହ ଛିଦ୍ର । ଏମିତି ସ୍ଥାନ ନାହିଁ, ଯେଉଁଠି ଛିଦ୍ର ନାହିଁ । ଆସି ରାମଙ୍କୁ କହିଲେ, ତୁମ ବାଣର କି ଅଦ୍ଭୁତ ମହିମା ! ରାବଣ ଦେହରେ ଏମିତି ଜାଗା ନାହିଁ ଯେଉଁଠି ଛିଦ୍ର ନ ହୋଇଛି । ରାମ କହିଲେ, ନା ରେ, ସେଇ ଛିଦ୍ର ଗୁଡ଼ାକ ବାଣ ଯୋଗୁଁ ନୁହେଁ । ଶୋକରେ ତା' ହାଡ଼ ଜର-ଜର ହୋଇଯାଇଛି । ଛିଦ୍ର ସବୁ ସେହି ଶୋକର ଚିହ୍ନ ।

ତେଲି ଘର ପିଲା ଗୋବିନ୍ଦ । ବରାନଗରରେ ଥାଏ । ଅଳ୍ପ ବୟସ । ବେଳେ ବେଳେ ଆସେ ଦକ୍ଷିଣେଶ୍ୱର । ରାମକୃଷ୍ଣଙ୍କ କଥାମୃତ ଶୁଣେ ।

ଦିନେ ପଚାରିଲା, 'ଗୋପାଳକୁ ଆଣିବି ଏଠିକି ?'

'ଗୋପାଳ କିଏ ?'

'ମୋର ଜଣେ ସାଙ୍ଗ । ମୋ'ରି ବୟସର ।'

'ହଉ, ନେଇ ଆସିବୁ, ଦିନେ ।'

ଗୋପାଳ ଆସିଲା ଗୋବିନ୍ଦ ସହିତ । ରାମ୍‌କୃଷ୍ଣଙ୍କ ମୁହଁରୁ କଥା ଶୁଣୁ ଶୁଣୁ ବେହୋସ ଭଳି ହୋଇଗଲା । ରାମକୃଷ୍ଣଙ୍କର ଯେଉଁ ଭଳି ସମାଧି ହୁଏ, ପ୍ରାୟ ସେହିଭଳି ।

ଦିନେ ଗୋପାଳ ଆସି ରାମକୃଷ୍ଣଙ୍କ ପାଦଧୂଳି ନେଇ ମୁଣ୍ଡରେ ଲଗେଇଲା । କହିଲା, 'ଯାଉଛି ।'

'କଅଣ ରେ ? କୁଆଡ଼େ ଯିବୁ ?' ପଚାରିଲେ ରାମକୃଷ୍ଣ ।

'କହି ପାରିବି ନାହିଁ ।ଏ ସଂସାର ଆଉ ଭଲ ଲାଗୁନାହିଁ, ଆଉ ରହିବି ନାହିଁ ଏଠି ।'

ଗଲା କିଛି ଦିନ । ପିଲା ଦୁଇଟିଙ୍କର ଆଉ ଦେଖା ନାହିଁ । ଏ ଆଡ଼କୁ ଆଉ ଆସୁ ନାହାନ୍ତି । କଅଣ ହେଲା କେ-ଜାଣି !

ଦିନେ ଗୋବିନ୍ଦ ଆସି ପହଞ୍ଚିଲା ।

'କି ରେ ? ଖବର କଅଣ ?'

'ଗୋପାଳ ମରି ଯାଇଛି ।'

ମରି ଯାଇଛି ? ରାମକୃଷ୍ଣ କାତର ହୋଇ ପଡ଼ିଲେ ।

କିଛିଦିନ ପରେ ପୁଣି ଖବର ପାଇଲେ ଗୋବିନ୍ଦ ବି ଚାଲି ଯାଇଛି ଆର ପୁରକୁ ।

ଭାଗ୍ୟକୁ ସେମାନେ ମୋର କେହି ନୁହନ୍ତି !

ସେମାନେ ମୋର କିଏ ! ରାମକୃଷ୍ଣ କହୁଥାଆନ୍ତି, ବାରମ୍ବାର ଆଖି ପୋଛୁଥାଆନ୍ତି ।

## ୩୦

ତୋତାପୁରୀ ଜଗଦମ୍ବାଙ୍କୁ ମାନନ୍ତି ନାହିଁ, କିନ୍ତୁ ତୋତାପୁରୀଙ୍କ ପ୍ରତି ଜଗଦମ୍ବାଙ୍କର ଅପାର କରୁଣା । କରୁଣା ଥିବାରୁ ତାଙ୍କ ସାଧନାର ପଥ ସହଜ କରି ଦେଇଛନ୍ତି । ତାଙ୍କୁ ଦେଖାଇ ନାହାନ୍ତି ନିଜର ରଙ୍ଗିନୀ ମାୟାର ଖେଳ । ଅବିଦ୍ୟାରୂପିଣୀ ମୋହିନୀ ମାୟାର ଇନ୍ଦ୍ରଜାଲ । ଦେଖାଇ ନାହାନ୍ତି ତାଙ୍କୁ ତାଙ୍କର ସର୍ବଗ୍ରାସିନୀ କରାଳୀ ମୂର୍ତ୍ତି । ପ୍ରକଟିତ ବଦନା ବିଭୀଷିକା । ବରଂ ତାଙ୍କୁ ଦେଇଛନ୍ତି ସୁଦୃଢ଼ ସ୍ୱାସ୍ଥ୍ୟ, ସରଳ ମନ ଓ ବିଶୁଦ୍ଧ ସଂସ୍କାର । ତେଣୁ ନିଜର ପୁରୁଷକାର ବଳରେ ସହଜ ପଥରେ ଉଠି ଯାଇଛନ୍ତି ଶିଖରକୁ । ଆତ୍ମଜ୍ଞାନକୁ, ଈଶ୍ୱରଦର୍ଶନ ସ୍ତରକୁ, ନିର୍ବିକଳ୍ପ ସମାଧିଭୂମିକୁ । ବର୍ତ୍ତମାନ ମହାମାୟା ଭାବିଲେ, ଏଥର ତାଙ୍କୁ ଟିକିଏ ବୁଝାଇ ଦିଏ ପ୍ରକୃତ ଅବସ୍ଥାଟା କଅଣ !

ଲୁହା ପରି ଟାଣ ଦେହ ତୋତାପୁରୀଙ୍କର, ଲୁହା ଚୋବାଇ ଗିଳି ଦେଇ ହଜମ କରି ଦେଇ ପାରିବେ – ହଠାତ୍ ତାଙ୍କର ରକ୍ତ ଆମାଶୟ ଆରମ୍ଭ ହେଲା ।

ସବୁ ସମୟରେ ପେଟରେ ଅସହ୍ୟ ଯନ୍ତ୍ରଣା । ମନ କ'ଣ ଆଉ ଧ୍ୟାନରେ ବସୁଛି ? ବ୍ରହ୍ମ ଛାଡ଼ି ମନ ସବୁବେଳେ ଦେହ ଚିନ୍ତାରେ ବ୍ୟସ୍ତ । ମନରୁ ଉଭେଇଗଲା ଶାନ୍ତିର ମୌନ, ଅହର୍ନିଶ କେବଳ ଶାରୀରିକ ଆର୍ତ୍ତନାଦ ।

ବ୍ରହ୍ମ ଏଥର ଧରା ପଡ଼ିଛନ୍ତି ପଞ୍ଚଭୂତର ଫାନ୍ଦରେ ।ଏଥର ମହାମାୟାଙ୍କ କୃପା ନ ହେଲେ ଆଉ ରକ୍ଷା ନାହିଁ ।

ତୋତାପୁରୀ ଭାବିଲେ ବଙ୍ଗ ଦେଶର ଜଳବାୟୁ ତାଙ୍କ ଦେହରେ ଯାଉ ନାହିଁ, ଏଥର ଚାଲି ଯିବେ ଏଠୁ । କିନ୍ତୁ, ଦେହ ଭଲ ରହୁନାହିଁ, ଏହି କାରଣ ଦେଖେଇ ପଳେଇବି ଏଠୁଁ ? ହାଡ଼-ମାଂସର ଗୋଟାଏ ପଞ୍ଜୁରି ଏ ଦେହ, ଏଇଟାକୁ ଏତେ ବଡ଼ ବୋଲି ମନେ କରିବି ? ଏହାରି ଲାଗି ଛାଡ଼ିଯିବି ଏଇ ଈଶ୍ୱର ସଙ୍ଗ ? ଯେଉଁଠାକୁ ବା ଯିବି, ସେଠାକୁ ବି ତ ଦେହ ଯିବ, ପୁଣି ଦେହ ସହିତ

ରୋଗ ବି ଯିବ । ତା'ଛଡ଼ା, ରୋଗକୁ ବା ଏତେ ଡର କାହିଁକି ? ଦେହ ଯେତେବେଳେ ଅଛି, ରୋଗ ତ ରହିବ । ଭୋଗିବ, ଦିନେ ପୁଣି ଶେଷ ବି ହୋଇଯିବ । ସେଇ ଦେହଟା ପାଇଁ ଏତେ ମମତା କାହିଁକି ? ଯାଉ ମିଳେଇ ମାଟିରେ । କ୍ଷୟହୀନ ଆତ୍ମା ତ ରହିଛି ଅନିର୍ବାଣ ହୋଇ । ରୋଗ ଜରା ମୃତ୍ୟୁ କେହି ହେଲେ ତାକୁ ସ୍ପର୍ଶ କରି ପାରିବେ ନାହିଁ । ସେ ପ୍ରଦୀପ୍ତ ଚୈତନ୍ୟ, ଶରୀର-ବହିର୍ଭୂତ ।

ନାନା ପ୍ରକାର ତର୍କ-ବିଚାର କରି ମନକୁ ସ୍ତବ୍ଧ କରେଇଲେ ତୋତାପୁରୀ ।

କିନ୍ତୁ ରୋଗ କଅଣ ଧର୍ମ-ବାଣୀ ଶୁଣିବା ଲୋକ ! କ୍ରମେ କ୍ରମେ ତାହା ଶିଖା ବିସ୍ତାର କରିବାକୁ ଲାଗିଲା- ଯନ୍ତ୍ରଣାରଶିଖା । ତୋତା ମନେ ମନେ ଭାବିଲେ, ଦକ୍ଷିଣେଶ୍ୱରରେ ରହି ଆଉ ଚଳି ହେବ ନାହିଁ, ରାମକୃଷ୍ଣଙ୍କ ପାଖରୁ ଶେଷ ବିଦାୟ ନେବାକୁ ପଡ଼ିବ । କିନ୍ତୁ ମୁହଁ ଖୋଲି ସେ କଥା ରାମକୃଷ୍ଣଙ୍କୁ କହି ପାରିଲେ ନାହିଁ । କିଏ ଯେପରି ତାଙ୍କ ମୁହଁ ଚାପି ଧରୁଛି । ହଉ, ଆଜି ଦିନକ ଯାଉ, କାଲିକି କହିବି । ଥରକୁ ଥର ଏହି ଭାବନା ତାଙ୍କୁ ନିରସ୍ତ କରାଇ ରଖୁଛି । 'ଆଜି' ଗଲା, 'କାଲି' ମଧ୍ୟ ସେ ପଞ୍ଚବଟୀରେ ବସି ରାମକୃଷ୍ଣଙ୍କ ସହିତ ବେଦାନ୍ତ ଆଲୋଚନା କଲେ; ରୋଗ ହୋଇଥିବା କଥା ମୁହଁ ଖୋଲି କହିପାରିଲେ ନାହିଁ ।

ରାମକୃଷ୍ଣ କିନ୍ତୁ ବୁଝି ପାରିଲେ । ମଥୁର ବାବୁଙ୍କୁ କହି ଚିକିତ୍ସାର ବନ୍ଦୋବସ୍ତ କରାଇଲେ ।

ମନକୁ ସମାଧିସ୍ଥ କରାଇ ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ଚେଷ୍ଟା କରୁଛନ୍ତି ତୋତାପୁରୀ । ମୁଁ ଦେହ ନୁହେଁ, ମୁଁ ଆତ୍ମା । ମୁଁ ଜୀବ ନୁହେଁ, ମୁଁ ବ୍ରହ୍ମ । ଏହି ଦିବ୍ୟବୋଧରେ ନିମଗ୍ନ ହୋଇ ରହିବାକୁ ସମସ୍ତ ପ୍ରଯତ୍ନ କରୁଛନ୍ତି । ଶରଣ ନେଉଛନ୍ତି ଯୋଗଜ ପ୍ରଜ୍ଞାର ।

କିନ୍ତୁ କେତେ ଦିନ ?

ଦିନେ ରାତିରେ ଶୋଇଛନ୍ତି, ହଠାତ୍ ପେଟରେ ଅସହ୍ୟ ଯନ୍ତ୍ରଣା ଅନୁଭବ କଲେ । ଉଠି ବସିଲେ ତୋତାପୁରୀ । କଅଣ କଲେ ଏ ଯନ୍ତ୍ରଣାର ଉପଶମ ହେବ ? ମନକୁ ଦେହରୁ ବିଚ୍ଛିନ୍ନ କରି ପଠେଇ ଦେବାକୁ ଚାହିଁଲେ ଅଦ୍ୱୈତଭୂମିକୁ । କିନ୍ତୁ ମନ ଆଉ ଯିବାକୁ ପ୍ରସ୍ତୁତ ନୁହେଁ । ଟିକିଏ ଉପରକୁ ଉଠେ, ପୁଣି ପେଟର ଯନ୍ତ୍ରଣାରେ ତଳକୁ ଓହ୍ଲାଇ ଆସେ । ଶରୀରବୋଧର ବିଚ୍ୟୁତି କୌଣସି ଉପାୟରେ ହୋଇପାରୁ ନାହିଁ । ଅତ୍ୟନ୍ତ ବିରକ୍ତ ବୋଧ କଲେ ତୋତାପୁରୀ । ଯେଉଁ ଅପଦାର୍ଥ ଦେହଟା ଯୋଗୁଁ ମନକୁ ବଶକୁ ଆଣିପାରୁ ନାହିଁ, ସେ ଦେହ ରଖି ଲାଭ କଅଣ ? ତୁଚ୍ଛ ଏଇ ଦେହଟା ପାଇଁ ଏତେ ନିର୍ଯାତନା ଭୋଗିବି ? ଅସମ୍ଭବ । ଏଇଟାକୁ ବିସର୍ଜନ ଦେଇ ମୁକ୍ତ, ଶୁଦ୍ଧ, ଅସଙ୍ଗ ହୋଇଯିବି ।

ତୋତାପୁରୀ ସ୍ଥିର କଲେ ଗଙ୍ଗାରେ ଝାସ ଦେଇ ଜୀବନ ହାରିବେ ।

ଉଠି ଚାଲି ଆସିଲେ ଗଙ୍ଗା ଘାଟକୁ । ପାହାଚ ପରେ ପାହାଚ ଅତିକ୍ରମ କରି ଧୀରେ ଧୀରେ ପଶିଲେ ଜଳ ଭିତରେ । ଆଗେଇ ଗଲେ ଗଭୀରରୁ ଗଭୀରକୁ, ପ୍ରାୟ ମଝି ନଈକୁ ।

ଆଶ୍ଚର୍ଯ୍ୟ ! ଗଙ୍ଗା କଅଣ ଆଜି ଶୁଖି ଯାଇଛି ? ଚାଲି ଚାଲି ନଈ ଭିତରକୁ ପ୍ରାୟ ଅଧା-ଅଧି ଚାଲି ଆସିଲେଣି, ତଥାପି ଜଳ ଛାତିଏରୁ ଆଉ ବେଶୀ ହେଉ ନାହିଁ, ବୁଡ଼ିବା ଭଳି ହେଉ ନାହିଁ ! ଏଇଟା କ'ଣ ଗଙ୍ଗା ନା ଗୋଟାଏ ନାଳ ? ପ୍ରାୟ ଆର ପାଖରେ ଆସି ପହଞ୍ଚିଗଲେ,

ଏବେ ପୁଣି ମାତ୍ର ଆଣ୍ଠୁଏ ଜଳ । ଅତି ଆଶ୍ଚର୍ଯ୍ୟ କଥା । ବୁଡ଼ି ମରିବା ଭଳି ଜଳ ବି ଆଜି ଗଙ୍ଗାରେ ନାହିଁ ।

'ୟେ କ୍ୟା ଦେବୀ ମାୟା !' ଅସହାୟ ପରି ଚିତ୍କାର କରି ଉଠିଲେ ତୋତାପୁରୀ ।

ହଠାତ୍ ତାଙ୍କ ଆଖି ଆଗରୁ ପରଦା ଅପସରି ଗଲା । ଯେଉଁ ଅବ୍ୟୟ-ଅଦ୍ୱୈତ ବ୍ରହ୍ମଙ୍କୁ ସେ ଧ୍ୟାନ କରି ଆସିଛନ୍ତି ଏତେ କାଳ, ତାଙ୍କୁ ହିଁ ସେ ବର୍ତ୍ତମାନ ଦେଖିଲେ ମାୟାରୂପିଣୀ ଶକ୍ତି ରୂପରେ । ଯାହା ବ୍ରହ୍ମ ତାହା ହିଁ ବ୍ରହ୍ମଶକ୍ତି । ବ୍ରହ୍ମ ନିର୍ଲିପ୍ତ, ମାତ୍ର ଶକ୍ତିରେ ହିଁ ଜୀବ-ଜଗତ । ବ୍ରହ୍ମ ନିତ୍ୟ, ଶକ୍ତି ଲୀଳା । ଠିକ୍ ଯେପରି ସର୍ପ ଏବଂ ତା'ର ତିର୍ଯ୍ୟକ୍ ଗତି । ଯେପରି ମଣି ଏବଂ ତା'ର ବିଭା ।

ସେହି ବିଭାବତୀ ଜ୍ୟୋତିର୍ମୟୀଙ୍କୁ ଦେଖିଲେ ତୋତାପୁରୀ । ଦେଖିଲେ ଜଗଜ୍ଜନନୀ ସମସ୍ତ ଚରାଚର ଆବୃତ କରି ରହିଛନ୍ତି । ଯେତେ କିଛି ଦୃଶ୍ୟ ଦର୍ଶନ ଓ ଦ୍ରଷ୍ଟା ସବୁ ସେ । ଶରୀର-ମନ ରୋଗ ସ୍ୱାସ୍ଥ୍ୟ-ଜ୍ଞାନ-ଅଜ୍ଞାନ ଜୀବନ-ମୃତ୍ୟୁ— ଏ ସମସ୍ତ ତାଙ୍କରି ରୂପଛଟା ।

''ଏକୈବ ସା ମହାଶକ୍ତିସ୍ତୟା ସର୍ବମିଦଂ ତତମ୍ ।''

ମା'ଙ୍କର ଏହି ବିଶ୍ୱବ୍ୟାପ୍ତ ରୂପ୍ ଦର୍ଶନ କରି ଅଭିଭୂତ ହୋଇପଡ଼ିଲେ ତୋତା ।

ଲୁପ୍ତ ହେଲା ତାଙ୍କର ବ୍ୟାଧି-ବୋଧ । ନଈରୁ ଉଠି ଆସି ପୁଣି ଫେରିଲେ ଦକ୍ଷିଣେଶ୍ୱର । ଯାଇ ପଞ୍ଚବଟୀରେ ଧୂନି ପାଖରେ ବସିଲେ ନୀରବ ନିସ୍ତବ୍ଧ ହୋଇ । ଧ୍ୟାନରେ ଚକ୍ଷୁ ବନ୍ଦ କରି ଦର୍ଶନ କଲେ ଜଗଦମ୍ବାଙ୍କୁ । ଚିତ୍‌ସତ୍ତାସ୍ୱରୂପିଣୀ ପରମାନନ୍ଦମୟୀଙ୍କୁ ।

ସକାଳେ ତୋତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ରାମକୃଷ୍ଣ । ଦେହରେ ବ୍ୟାଧିର ଚିହ୍ନ-ବର୍ଣ୍ଣ ବି ନାହିଁ । ସର୍ବତ୍ର ସହର୍ଷ-ପ୍ରକାଶ ।

'କଅଣ ହେଲା ? କେମିତି ଅଛ ?'

'ରୋଗ ଭଲ ହୋଇଯାଇଛି ।'

'ଭଲ ହୋଇ ଯାଇଛି ? କେମିତି ହେଲା ?'

'କାଲି ତୁମ ମା'ଙ୍କୁ ଦେଖିଲି ।' ତୋତାଙ୍କ ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇ ଉଠିଲା ।

'ମୋ ମା'ଙ୍କୁ ?'

'ହଁ, ମୋ ମା'ଙ୍କୁ ମଧ୍ୟ । ଜଗତର ମା'ଙ୍କୁ । ସର୍ବତ୍ର ତାଙ୍କରି ଆତ୍ମଲୀଳାର ସ୍ଫୂର୍ତ୍ତି-ଚିଦୈଶ୍ୱର୍ଯ୍ୟର ବିସ୍ତାର -'

'ହେଲା ତ ? ମୁଁ କହି ନ ଥିଲି ?' ରାମକୃଷ୍ଣ ଉଲ୍ଲସିତ ହୋଇ ଉଠିଲେ : 'ସେତେବେଳେ ପରା କହୁଥିଲ ମୋର ସବୁ କଥା ଭ୍ରାନ୍ତି ? ତୁମକୁ ଆଉ ଅଧିକ କଅଣ କହିବି ? ମୋ ମା ଯେ ଭ୍ରାନ୍ତି ରୂପରେ ମଧ୍ୟ ସଂସ୍ଥିତା - । ହଉ, କଅଣ ଦେଖିଲ ?'

'ଦେଖିଲି, ଯାହା ବ୍ରହ୍ମ ତାହା ହିଁ ଶକ୍ତି । ଯାହା ଅଗ୍ନି ତାହା ହିଁ ଦାହିକା, ଯାହା ପ୍ରଦୀପ ତାହା ହିଁ ପ୍ରଭା; ଯାହା ବିନ୍ଦୁ ତାହା ହିଁ ସିନ୍ଧୁ । କ୍ରିୟାହୀନ ଅବସ୍ଥାରେ ବ୍ରହ୍ମବାଚ୍ୟ, କ୍ରିୟାଯୁକ୍ତ ହେଲେ ମହାମାୟା ।'

'ଦେଖିଲ ତ ? ଦେଖିଲ ତ ଏବେ ?' ରାମକୃଷ୍ଣଙ୍କ ଆନନ୍ଦର ସୀମା ନାହିଁ । 'ମୋ ମା'ଙ୍କୁ ନ ଦେଖି ତୁମେ କ'ଣ ଯାଇ ପାରିଥାଆନ୍ତ ଏଠୁ ? ଯୋଗରେ ବସି ଏତେ ସବୁ ଦେଖୁଛ, ଅଥଚ

ମୋ ମହାଯୋଗିନୀ ମା'ଙ୍କୁ ଦେଖିବ ନାହିଁ ?'

ଯାହା ମନ୍ତ୍ର ତାହା ହିଁ ମୂର୍ତ୍ତି । ଏକ ବିନ୍ଦୁ ବୀର୍ଯ୍ୟରୁ ଏହି ଅପୂର୍ବ ସୁନ୍ଦର ଦେହ, କ୍ଷୁଦ୍ର ଗୋଟାଏ ବୀଜରୁ ସୁବିଶାଳ ବନସ୍ପତି, ତୁଚ୍ଛ ଗୋଟାଏ ସ୍ଫୁଲିଙ୍ଗରୁ ବିସ୍ତୀର୍ଣ୍ଣ ଦାବାନଳ । ଠିକ୍ ସେହି ଭଳି ବ୍ରହ୍ମରୁ ଏହି ଶକ୍ତିର ଆତ୍ମଲୀଳା ।

'ଏଥର ତୁମ ମା'ଙ୍କୁ କହି ମୋତେ ଛୁଟି କରେଇ ଦିଅ ।'

'ମୁଁ କାହିଁକି କହିବି ? ତୁମ ମା, ତୁମେ କହୁ ନ ?' ହସି ହସି ଉତ୍ତର ଦେଲେ ରାମକୃଷ୍ଣ ।

ତୋତା ଆସିଲେ ଭବତାରିଣୀଙ୍କ ମନ୍ଦିରକୁ । ସାଷ୍ଟାଙ୍ଗ ପ୍ରଣାମ କଲେ ମା'ଙ୍କୁ । ପ୍ରସନ୍ନ ମନରେ ମା ତାଙ୍କୁ ଯିବା ପାଇଁ ଅନୁମତି ଦେଲେ ।

ରାମକୃଷ୍ଣଙ୍କ ଠାରୁ ବିଦାୟ ନେଇ କାଳୀ-ମନ୍ଦିରରୁ ବାହାରି ଆସିଲେ ତୋତା । ଆସି ଚାଲିଗଲେ ।

କୁଆଡ଼େ ଗଲେ କେହି ଜାଣନ୍ତି ନାହିଁ ।

## ୩୧

ତୋତାପୁରୀ ଗଲେ, ଆସିଲେ ଗୋବିନ୍ଦ ରାୟ ।

ଗୋବିନ୍ଦ ରାୟ ଜାତିରେ କ୍ଷତ୍ରିୟ, କିନ୍ତୁ ଆରବୀ-ଫାର୍ସୀରେ ସୁପଣ୍ଡିତ । ଇସଲାମର ଏକ-ଭ୍ରାତୃତ୍ୱର ଆଦର୍ଶରେ ଅନୁପ୍ରାଣିତ ହୋଇ ମୁସଲମାନ ଧର୍ମ ଗ୍ରହଣ କରିଛନ୍ତି ।

ବୁଲି ବୁଲି ଆସି ପହଞ୍ଚି ଯାଇଛନ୍ତି ଦକ୍ଷିଣେଶ୍ୱରରେ । ରହିଛନ୍ତି କାଳୀ-ମନ୍ଦିରର ବଗିଚାରେ । ସେତେବେଳର ବ୍ୟବସ୍ଥା ଏହି ଭଳି ଉଦାର ଥିଲା । ରାଣୀ ରାସମଣିଙ୍କ ପୁଣ୍ୟର ଆକର୍ଷଣରେ ହିନ୍ଦୁ ସନ୍ନ୍ୟାସୀଙ୍କ ପରି ମୁସଲମାନ ଫକୀରମାନେ ମଧ୍ୟ ସେଠାରେ ଅବସ୍ଥାନ କରୁଥିଲେ । ଭାବ-ଭକ୍ତିର ରାଜ୍ୟରେ କଅଣ ଜାତି-ବିଚାର ଥାଏ ? ତା'ଛଡ଼ା ରାଣୀ ତ ଅନ୍ନପୂର୍ଣ୍ଣା ।

ଗୋବିନ୍ଦ ରାୟ ଦରବେଶ । ସୁଫୀ-ପନ୍ଥୀ । ପ୍ରେମ-ଭାବରେ ଉନ୍ମାଦ । ଭାବ-ପସରା ମୁଣ୍ଡରେ ଧରି ଭବ-ହାଟରେ ବିକା କିଣା କରନ୍ତି ।

ରାମକୃଷ୍ଣଙ୍କ ନଜର ପଡ଼ିଲା ଗୋବିନ୍ଦଙ୍କ ଉପରେ । ଭାବେଶ୍ୱରୀ ନିଜେ ତାଙ୍କୁ ବାଟ କଢ଼େଇ ନେଲେ ।

'କଅଣ, ଆସିଲ ?' ଧାଇଁ ଯାଇ ପାଖରେ ପହଞ୍ଚିଗଲେ ରାମକୃଷ୍ଣ ।

'ତୁମେ ପରା ଡାକିଲ ! ଆଉ ନ ଆସି ରହି ପାରନ୍ତି ?' ମହାନନ୍ଦରେ ହସିଲେ ଗୋବିନ୍ଦ ରାୟ ।

ଚୁମ୍ବକର ଆହ୍ୱାନରେ ଚାଲି ଆସିଛି ଲୁହା ।

ଯେଉଁଠାରେ ଅନୁଭୂତିର ଗଭୀରତା ସେହିଠାରେ ହିଁ ସ୍ୱଚ୍ଛ ସାରଲ୍ୟ । ଯେଉଁଠି ଜ୍ଞାନର ବିସ୍ତୃତି ସେହିଠାରେ ପ୍ରେମର ସଦାନନ୍ଦ ।

ଗୋବିନ୍ଦ ରାୟଙ୍କ ବିତର୍କବିହୀନ ବିଶ୍ୱାସ ଓ ପ୍ରଶ୍ନହୀନ ପ୍ରେମରେ ମୁଗ୍ଧ ହେଲେ ରାମକୃଷ୍ଣ ।

ଦେଖିଲେ, ଈଶ୍ୱରଙ୍କ ପାଖରେ ପହଞ୍ଚିବା ପାଇଁ ଇଏ ବି ଗୋଟାଏ ବାଟ । ଏଇ ବାଟରେ ତ ମା ପୁଣି କେତେ ଲୋକଙ୍କୁ ଟାଣି ନେଇ ଚାଲିଛନ୍ତି, ନେଇ ପହଞ୍ଚେଇ ଦେଉଛନ୍ତି ବିଶ୍ୱନିୟନ୍ତାଙ୍କ ପାଦପଦ୍ମରେ । ବାଟଟା ଥରେ ଦେଖି ଆସିଲେ କ୍ଷତି କଅଣ ? ଆଉ ଗୋଟାଏ ବାଟ ଅଛି ଯେତେବେଳେ, ସେଇଟା ବା ତାଙ୍କ ପାଇଁ ରୁଦ୍ଧ ହୋଇ ରହିଯିବ କାହିଁକି ? ସମସ୍ତ ରସର ରସିକ ସେ । ସମସ୍ତ ପଥର ପର୍ଯ୍ୟଟକ ।

ଯେତେ ମତ ତେତେ ପଥ । ନଦୀ କେତେ ପଥରେ ଗତି କରେ, ମାତ୍ର ଶେଷରେ ଯାଇ ପଡ଼େ ସମୁଦ୍ରରେ । ଛାତ ଉପରକୁ ଯିବା ପାଇଁ ନାନା ଉପାୟ ରହିଛି - ନାନା ପ୍ରକାର ସିଡ଼ି । ପକ୍କା ସିଡ଼ି, କାଠ ସିଡ଼ି, ଲୁହା ସିଡ଼ି, ଆହୁରି କେତେ ରକମ ସିଡ଼ି । ମନ କଲେ କେବଳ ଖଣ୍ଡିଏ ଦଉଡ଼ି ସାହାଯ୍ୟରେ ବି ଉଠି ଯାଇପାରିବ । ତେବେ ଯେମିତି ଉଠ ପଛକେ, କିଛି ଗୋଟାଏ ଧରି, କିଛି ଗୋଟାଏକୁ ଆଶ୍ରା କରି, ତେବେ ତ ଉଠିବ । ଦୁଇ ସିଡ଼ିରେ ପାଦ ଦେଇଥିଲେ ପଡ଼ିଯିବ ମୁହଁ ମାଡ଼ି । ଯେଉଁ ଗୋଟାକ ଧରିଛ, ଟାଣ କରି ଧରିଥାଅ ସେଇଟାକୁ । ଦେଖ, ଠିକ୍ ଉଠି ପାରୁଛ କି ନାହିଁ ।

ଧର୍ମ ତ ଈଶ୍ୱର ନୁହେଁ । ଧର୍ମ ହେଉଛି କେବଳ ଗୋଟାଏ ଧରିବାର ଜିନିଷ - ଯେଉଁଟାକୁ ଧରି ଉଠିବ ଉପରକୁ, ପର୍ବତ ଚୂଡ଼ାକୁ - ଯେଉଁଠି ଈଶ୍ୱର ବିରାଜମାନ । ଯେଉଁଟା ଧରୁଛ ଧର, ଟାଣ କରି ଧର । ଗୋଡ଼ ଖସି ଯେମିତି ପଡ଼ି ନଯାଅ ।

କାଳୀଘାଟ ଯିବା ପାଇଁ ନାନା ବାଟ ରହିଛି, ନାନା ରକମ ଯାନବାହନ ବି ରହିଛି । ତୁମେ ହୁଏତ ଦୂରରୁ ଆସୁଛ । ଗାଡ଼ି ଘୋଡ଼ା କିଛି ପାଇଲ ନାହିଁ । ଚିନ୍ତା ନାହିଁ । ପାଦରେ ଚାଲି ଚାଲି ଚାଲି ଆସ ମନ୍ଦିରକୁ । ଅତି ସହଜ, ଅତି ସରଳ, ଭକ୍ତି ବିଶ୍ୱାସର ବାଟ ଧରି ।

ରାମକୃଷ୍ଣ ଯାଇ ପହଞ୍ଚିଲେ ଗୋବିନ୍ଦ ରାୟଙ୍କ ପାଖରେ । କହିଲେ, 'ମୁଁ ମୁସଲମାନ ହେବି ।'

ଚିତ୍ରାର୍ପିତ ପରି ଚାହିଁ ରହିଲେ ଗୋବିନ୍ଦ ରାୟ । ଦେଖିଲେ, ଗୋଟାଏ ଅପୂର୍ବ ମହାଭାବ ବିଦ୍ୟୁତି ଖେଳି ବୁଲୁଛି ରାମକୃଷ୍ଣଙ୍କ ଆଖିରେ, ମୁହଁରେ । ଦେଖିଲେ, ଭକ୍ତି-ପ୍ରେମର ପ୍ରଚଣ୍ଡ ଝଞ୍ଜା ପବନରେ ଉଡ଼ି ଯାଇଛି ସମସ୍ତ ବିଧି- ନିଷେଧ, ସମସ୍ତ ସଂସ୍କାର-ସଂକୀର୍ଣ୍ଣତା । ଉଡ଼ି ଯାଇଛି ଅଭିମାନର ଜଞ୍ଜାଳ-ସ୍ତୂପ ।

ନିଜ କାନକୁ ବିଶ୍ୱାସ କରି ପାରିଲେ ନାହିଁ ଗୋବିନ୍ଦ ରାୟ । ପଚାରିଲେ, 'କଅଣ ହେବ ?'

'ମୁସଲମାନ ହେବି । ଇସ୍‌ଲାମର ପଥ— ସିଏ ବି ତ ଗୋଟାଏ ପଥ । କେତେ ସାଧକ ତ ପୁଣି ସେଇ ପଥରେ ଯାଇ ବାଞ୍ଛିତ ଧାମରେ ପହଞ୍ଚି ପାରୁଛନ୍ତି । ମୁଁ ବା ସେ ପଥଟି ଛାଡ଼ିବି କାହିଁକି ?'

'ସତ କହୁଛ ? ମୁସଲମାନ ହେବ ?'

'ହଁ ତୁମେ ମୋତେ ଦୀକ୍ଷା ଦିଅ । ମୁଁ ଆଉ ବିଳମ୍ବ ସହି ପାରୁନାହିଁ । ପେଟରେ ଭୋକ

ଥିଲାବେଳେ ହିଁ ମୋର ଆସ୍ୱାଦନ ଲୋଡ଼ା ।'

ଗୋବିନ୍ଦ ରାୟ ରାମକୃଷ୍ଣଙ୍କୁ ଯଥାବିଧି ଦୀକ୍ଷା ଦେଲେ ।

ରାମକୃଷ୍ଣ କଚ୍ଛା ଖୋଲି ପକାଇଲେ । ଖଣ୍ଡିଏ ଚାରି-ହାତି ଲୁଗା ଆଣି ଲୁଙ୍ଗି ପରି ପିନ୍ଧିଲେ । ତୁଣ୍ଡରେ ଆଉ ମା ମା ଉଚ୍ଚାରଣ ନାହିଁ, କେବଳ 'ଆଲ୍ଲା', 'ଆଲ୍ଲା' । ମନ୍ଦିରର ତ୍ରିସୀମା ପର୍ଯ୍ୟନ୍ତ ସ୍ପର୍ଶ କଲେ ନାହିଁ । ଯେଉଁ ଶ୍ୟାମା ଥିଲେ ତାଙ୍କ ନୟନ ପିତୁଳୀ, ଚକ୍ଷୁର ଚକ୍ଷୁ, ତାଙ୍କୁ ଦେଖିବା ପାଇଁ ଆଉ ତିଳେ ହେଲେ ବ୍ୟାକୁଳତା ନାହିଁ । ବରଂ ଦେବ-ଦେବୀଙ୍କ ନାମ ଶୁଣିଲା ମାତ୍ରେ ଉଗ୍ର-ମୂର୍ତ୍ତି ହୋଇ ଉଠୁଛନ୍ତି । ସେହି ଏକେଶ୍ୱର ଖୋଦାତାଲ୍ଲାଙ୍କୁ ଭଜନ କରୁଛନ୍ତି ।

ରହିଲେ ଯାଇ ମଥୁର ବାବୁଙ୍କ ଘରର ଗୋଟାଏ ପାଖରେ । ଆଖି ଆଗରେ ଏତେ ବଡ଼ ଗୋଟାଏ ମନ୍ଦିର, ଭୁଲରେ ବି ଅନାନ୍ତି ନାହିଁ ସେ ଆଡ଼କୁ । ସକାଳେ ସନ୍ଧ୍ୟାରେ ଆରତି ହୁଏ, ଘଣ୍ଟା ବାଜେ । କାନରେ ପଡ଼େନାହିଁ ଘଣ୍ଟା ଶବ୍ଦ । ତଦ୍‌ଗତ ଭାବରେ ନମାଜ ପଢ଼ନ୍ତି ଦିନକୁ ପାଞ୍ଚଥର । ନମାଜ ପଢ଼ିବା ଆଗରୁ ପୋଖରୀକୁ ଯାଇ ଉଜୁ କରି ଆସନ୍ତି ।

ଦିନେ ମଥୁର ବାବୁଙ୍କୁ କହିଲେ, 'ମୁସଲମାନି ରାନ୍ଧଣା ଖାଇବି ।'

'କ'ଅଣ କହିଲେ ।'

'ହଁ, ମୁସଲମାନି ରାନ୍ଧଣା । ପ୍ରଚୁର ଲଙ୍କା ପିଆଜ ରସୁଣ ପଡ଼ିବ । ଉଗ୍ର ଖାଦ୍ୟ । ରୋଷେଇର ବାସ୍ନା ଚାରିଆଡ଼କୁ ଖେଳିଯାଉଥିବ ।'

ମଥୁର ବାବୁ ରାଜି ହେଲେ ନାହିଁ । ମାତ୍ର ରାମକୃଷ୍ଣ କ'ଣ ଛାଡ଼ିବା ଲୋକ ?

ହଉ, ତା' ହେଲେ ମୁସଲମାନ ବବୁର୍ଚ୍ଚି ବତେଇ ଦେବ, ରାନ୍ଧିବ ବ୍ରାହ୍ମଣ ପୂଝାରୀ । ରାଜି । ଶୀଘ୍ର ବସାଅ ରୋଷେଇ । ଭୋକରେ ପେଟ ଜଳି ଯାଉଛି ।

ଆମାଶୟ-ରୋଗୀ । ଲଙ୍କା ପଡୁ ନଥିବା ଝୋଳ ତରକାରୀ ଓ ଭାତ ତାଙ୍କର ପଥ୍ୟ । ଅଥଚ ତାଙ୍କରି ପାଇଁ କରିବାକୁ ପଡୁଛି ଏହି ପ୍ରଚଣ୍ଡ ବ୍ୟବସ୍ଥା । ଉପାୟ ନାହିଁ । ରାମକୃଷ୍ଣ ଯେତେବେଳେ ଜିଦ୍ ଧରି ବସିଛନ୍ତି, ମାନିବାକୁ ହିଁ ପଡ଼ିବ । ମୁସଲମାନ ବବୁର୍ଚ୍ଚି ବତେଇ ଦେଉଛି, ରାନ୍ଧୁଛି ଜଣେ ହିନ୍ଦୁ ବ୍ରାହ୍ମଣ । ପାଖରେ ଠିଆ ହୋଇ ଦେଖୁଛନ୍ତି ରାମକୃଷ୍ଣ, ପବନରୁ ବାସନା ନେଉଛନ୍ତି ।

ହଠାତ୍ ଡକେଇ ଆଣିଲେ ମଥୁରବାବୁଙ୍କୁ । କହିଲେ, 'ନା, ଠିକ୍ ହେଉ ନାହିଁ । ପାଚକକୁ କୁହ, କଚ୍ଛା ଖୋଲି ରାନ୍ଧିବ । ପୂଝାରୀ ଓ ବବୁର୍ଚ୍ଚି ମଧ୍ୟରେ କୌଣସି ତଫାତ ନାହିଁ, ଏହି କଥାଟି ମୁଁ ଯେମିତି ଭାବି ପାରେ ।'

ମଥୁର ବାବୁଙ୍କ ନିର୍ଦ୍ଦେଶରେ ପାଚକ-ବ୍ରାହ୍ମଣ ମୁକ୍ତକଚ୍ଛ ହେଲା ।

ମାଟି ସରାରେ ଭାତ ଖାଇଲେ ରାମକୃଷ୍ଣ । ପାଣି ପିଇଲେ ବଦ୍‌ନାରେ ।

ଏ' କଅଣ ହେଲା ରାମକୃଷ୍ଣଙ୍କର ? ମଥୁର ବାବୁ ମହା ଚିନ୍ତାରେ ପଡ଼ିଲେ । ହୃଦୟ କିନ୍ତୁ ରାଗରେ ନିଆଁବାଣ ହୋଇଗଲା । ଧାଇଁ ଆସିଲା ଉଗ୍ର ମୂର୍ତ୍ତିରେ ।

'କଅଣ ଏ' ସବୁ ପାଗଳାମି ହେଉଛି ? ନିଷ୍ଠାଚାରୀ ବ୍ରାହ୍ମଣ ଘରର ପିଲା, ଇଏ ତୁମର କି ପ୍ରକାର କାରବାର ? ପଇତା ବାହାର କରି ଦେଇଛ, ଦିଅ, ତା' ବୋଲି କଚ୍ଛା ମାରିବ ନାହିଁ ? କଚ୍ଛା

ଖୋଲି ଦେଇ ନମାଜ ପଢ଼ିବ ଉଠ-ବସ୍ ହୋଇ ? ବନ୍ଦ କର ଏ ପାଗଳାମି । ଯାଅ, ମନ୍ଦିରକୁ ଯାଅ, ବସ ଯାଇ ମା'ଙ୍କ ପାଖରେ । ମା'ଙ୍କୁ ପ୍ରାର୍ଥନା କର ।'

ଟାଣି ଓଟାରି ଠେଲି ପେଲି ପଠେଇ ଦେଲା ମନ୍ଦିର ଆଡ଼କୁ । କିଛି ସମୟ ପରେ ହୃଦୟ ନିଜେ ଆସିଲା ମନ୍ଦିର ଭିତରକୁ ଦେଖି ଯିବା ପାଇଁ, କଅଣ କରୁଛନ୍ତି । ରାମକୃଷ୍ଣଙ୍କର ପତ୍ତା ନାହିଁ । ଗଲେ କୁଆଡ଼େ ମାମୁଁ ? ଅସ୍ତ ବ୍ୟସ୍ତ ହୋଇ ଏଣେ ତେଣେ ଖୋଜିବା ଆରମ୍ଭ କରିଦେଲା । ମଥୁରବାବୁଙ୍କ ଘରର ପିଣ୍ଡାରେ ନାହାନ୍ତି, ଗଙ୍ଗା-କୂଳରେ ବି ନାହାନ୍ତି । ପଞ୍ଚବଟୀ ବଗିଚାରେ ଥିବେ ପରା ! ବଗିଚା ଶୂନ୍ୟ । ଗଲେ କୁଆଡ଼େ ? କେଉଁଠି ଛପିଲେ ? ଖୋଜି ଖୋଜି ଚାଲି ଆସିଲା ରାସ୍ତାକୁ । ରାସ୍ତାକୁ ଛାଡ଼ି ଖଣ୍ଡେ ଦୂରରେ ମସ୍‌ଜିଦ ।

ଯାଇ ଦେଖିଲା, ସେଇ ମସ୍‌ଜିଦ ଭିତରେ ନମାଜ ପଢୁଛନ୍ତି ରାମକୃଷ୍ଣ ।

ସାନ ପିଲା, ଦୁଷ୍ଟାମି କରୁ କରୁ ଧରା ପଡ଼ି ଯାଇଛି ଅଭିଭାବକ ହାତରେ । ହୃଦୟ ସେହି ରକ୍ତଚକ୍ଷୁ ଅଭିଭାବକ, ଆଉ ରାମକୃଷ୍ଣ ଅବୋଧ, ଭଲ-ମନ୍ଦ ଜାଣି ନଥିବା ପିଲାଟିଏ ।

କହିଲେ, 'ମୁଁ କଅଣ କରିବି ? ମୋର କିଛି ଦୋଷ ନାହିଁ । କିଏ ଯେମିତି ମୋତେ ଜୋର କରି ଟାଣି ନେଇ ଆସିଛି ଏଠିକି । ମୋର ବା ଚାରା କଅଣ ?'

ରାତି ପାହି ଆସୁଛି । ମସ୍‌ଜିଦରୁ ପାହାନ୍ତି ପହରର ଆଜାନ ଆରମ୍ଭ ହୋଇଛି । ରାମକୃଷ୍ଣ ଉଠି ପଡ଼ି ଧାଇଁଲେ ।

'କିଏ ? ତୁମେ କିଏ ?' ପ୍ରଥମ ଦିନ ପଚାରିଥିଲେ ମୁସଲମାନ ଲୋକ କେତେ ଜଣ ।

ତାଙ୍କରି ଭିତରୁ କିଏ ଜଣେ କହିଲା, 'ତାକୁ ଚିହ୍ନି ନାହିଁ ? ସେ ସେଇ ମନ୍ଦିରରେ ଥାଏ, ପୂଜା-ପୂଜି କରେ -'

'କରେ ନୁହେଁ, କରୁଥିଲା । ମୁଁ ବର୍ତ୍ତମାନ ଇସଲାମର ଦୀକ୍ଷା ନେଇଛି । ମୋ ଭାଇମାନଙ୍କ ସହିତ ଏକାଠି ବସି ଉପାସନା କରିବି ।'

ସମସ୍ତେ ଭାବିଲେ, ବୋଧହୁଏ ପାଗଳ ହୋଇଯାଇଛି । କିନ୍ତୁ 'ପାଗଳ'କୁ ବାହାର କରି ଦେବାର ସାହସ କାହାରି ନାହିଁ । ନମାଜର ପ୍ରତିଟି ବିଧି-ବିଧାନ ତାଙ୍କୁ ଭଲ ଭାବରେ ଜଣା । ସବୁଠାରୁ ମର୍ମସ୍ପର୍ଶୀ-ତାଙ୍କ ମୁହଁର ଭାବଟି— ଯେଉଁ ଭାବ ଆସେ କେବଳ ଅନ୍ତରର ସ୍ୱଚ୍ଛ ସରଳତାରୁ, ବ୍ୟାକୁଳତାରୁ ।

ଏହିପରି ଇସ୍‌ଲାମ-ଭାବରେ ରହିଲେ ତିନି ଦିନ ।

ରାମକୃଷ୍ଣ ଦିନେ ମସ୍‌ଜିଦକୁ ଆସିଛନ୍ତି ନମାଜ ପଢ଼ିବା ପାଇଁ । ହଠାତ୍ ତାଙ୍କ ଆଗରେ ଆବିର୍ଭୂତ ହେଲେ ଜଣେ ଜ୍ୟୋତିର୍ମୟ ପୁରୁଷ । ବୃଦ୍ଧ ଫକୀର ଭଳି ବେଶ, ମୁଣ୍ଡରେ କେଶ ସବୁ ଧଳା, ନିଶ-ଦାଢ଼ି ମଧ୍ୟ ଧଳା, ଗଳାରେ କାଚ-ମାଳି, ହାତରେ ବାଡ଼ି । କହିଲେ, 'ତୁମେ ଆସିଛ ? ହଉ, ଭଲ -' କହି ହସିଲେ, ହାତ ଟେକି ଆଶୀର୍ବାଦ କଲେ । ସେହି ପୁରୁଷ-ପ୍ରବର ଆଉ କେହି ନୁହନ୍ତି, ବିରାଟ ବ୍ରହ୍ମଙ୍କର ପ୍ରତିଭାସ ।

କେତେ ଦିନ ପରେ ତାଙ୍କୁ ଆହୁରି ଥରେ ଦେଖିଥିଲେ ଠାକୁର ।

ପରବର୍ତ୍ତୀ କାଳରେ ଦିନେ କଥା ପ୍ରସଙ୍ଗରେ କହିଲେ,' ମା ସମସ୍ତ ଭେଦ-ବୁଦ୍ଧି ମନରୁ

ଦୂର କରେଇ ଦେଲେ । ବରଗଛ ମୂଳରେ ବସି ଧ୍ୟାନ କରୁଥିଲି । ମା ଦେଖେଇଲେ, ଜଣେ ବୁଢ଼ା ମୁସଲମାନ ମାଟି ସରାରେ ଭାତ ଧରି ଆଗକୁ ଆସିଲା । ସରାରୁ ଭାତ ନେଇ ମ୍ଲେଚ୍ଛମାନଙ୍କୁ ଖୁଆଇଲା, ମୋତେ ବି ମୁଠାଏ ଦେଲା । ମା, ଦେଖେଇ ଦେଲେ ସବୁ ଏକ । ଏକ ବିନା ଆଉ ଦୁଇ ନାହିଁ ।'

ମା'ଙ୍କ ମନ୍ଦିରରେ ବସି ତୁମେ ସବୁ ଯେତେବେଳେ ଧ୍ୟାନ କରୁଥାଅ, ଆଖି ବୁଜି ଥାଅ କାହିଁକି ? ସାକ୍ଷାତ୍ ମା ଚିନ୍ମୟୀ ଉଭା ହୋଇଛନ୍ତି - ମନ ପୂରେଇ ଦେଖି ନିଅ ତାଙ୍କୁ, ଦେଖ ତାଙ୍କର ଆୟତ ଶାନ୍ତ ଦୁଇ ଆଖି, ଦେଖ ତାଙ୍କର ପାଦ-ପଦ୍ମ ଦୁଇଟି । ଯେତେବେଳେ ନିଜ ମା ପାଖକୁ ଯାଅ, ମା'ଙ୍କୁ ଦେଖିବା ପାଇଁ, ସେତେବେଳେ କ'ଣ ଆଖି ବନ୍ଦ କରି ମା ପାଖରେ ବସ ? ନା, ବସି-ବସି ମାଳି ଗଡ଼ାଅ ?

ଭଲ କରି ଚାହିଁ ଦେଖ - ଇଏ କଅଣ ତୁମ ନିଜ ମା ନୁହନ୍ତି ?

ଶିଖମାନେ କହିଲେ, ଈଶ୍ୱର ଦୟାଳୁ । ମୁଁ କହିଲି, ସେ ପରା ଆମ ବାପା-ମା, ସେ ପୁଣି ଦୟାଳୁ କଅଣ ? ଯେଉଁ ବାପ-ମା ପିଲାକୁ ଜନ୍ମ ଦେଇଛନ୍ତି ସେମାନେ ସେଇ ପିଲାର ଲାଳନ-ପାଳନ କରିବେ ନାହିଁ ତ କଅଣ ଆର ସାହିର ଲୋକେ ଆସି କରିବେ ?

କାଳୀ ମନ୍ଦିରର ଚଉତରା ଉପରେ ବସି ସ୍ତବ ପାଠ କରୁଛନ୍ତି ରାମକୃଷ୍ଣ ।

ମା ! ମା ! ଓଁକାର ରୂପିଣୀ ମା ! ଏମାନେ ସବୁ କେତେ କଥା କହୁଛନ୍ତି, ମା ! ମୁଁ କିଛି ବୁଝି ପାରୁନାହିଁ । ମୁଁ କିଛି ଜାଣେ ନାହିଁ, ମା । କେବଳ ଶରଣାଗତ । ଶରଣାଗତ ! କେବଳ ଏତିକି କର ମା, ତୁମ ଶ୍ରୀପାଦ-ପଦ୍ମରେ ଶ୍ରଦ୍ଧାଭକ୍ତି ଆସୁ । ତୁମ ଭୁବନମୋହିନୀ ମାୟାରେ ମୁଗ୍ଧ କରାଅ ନାହିଁ । ଶରଣାଗତ ! ଶରଣାଗତ !'

## ୩୨

ଏଇ ହେଲେ ଯଦୁ ମଲ୍ଲିକ ।

ତୁମେ ଭାରି ହିସାବୀ ଲୋକ, ବହୁତ ଭାବି ଚିନ୍ତି କାମ କର, ନୁହେଁ ? ବ୍ରାହ୍ମଣ ଗାଇଟିଏ ରଖିଥିଲା । ବ୍ରାହ୍ମଣର ଇଚ୍ଛା, ଗାଇଟା ଖାଆନ୍ତା କମ୍, ଗୋବର ଦିଅନ୍ତା ବହୁତ ଏବଂ ଦୁଧ ଦିଅନ୍ତା ବାଲ୍ତି-ଭର୍ତ୍ତି-

କଅଣ କହିଲେ ?

ତୁମେ ଭାରି ଅନ୍ୟମନସ୍କ । ଈଶ୍ୱର ଚିନ୍ତାରେ ନୁହେଁ, ବିଷୟଚିନ୍ତାରେ । କେଉଁ ତରକାରୀଟା ଲୁଣିଆ, କେଉଁଟା ଅଲଣା ତୁମକୁ ଜଣାପଡ଼େ ନାହିଁ । କେହି ଯଦି କହିଦିଏ, ଏଇଟା ଅଲଣା ହୋଇଛି, ସେତେବେଳେ କୁହ, ଏଁ -ଅଲଣା ? ସେତିକି ବେଳେ ତୁମର ଖିଆଲ ଆସେ । କେହି ନ କହିଁଦେଲେ-

ଆପଣ କହି ଦିଅନ୍ତୁ ।

ତୁମେ ହେଲ ସେଇ ରାମଜୀବନପୁରର ପଥର ଭଳି - ଅଧେ ଗରମ ଅଧେ ଥଣ୍ଡା ।

ଈଶ୍ୱରଙ୍କ ଆଡ଼କୁ ମନ ଅଛି, ପୁଣି ସଂସାରରେ ବି ମନ ଅଛି ।

ପୂରାପୂରି ଗରମ କରି ଦିଅନ୍ତୁ ।

ଅସମ୍ଭବ । କଥା ଦେଇ କଥା ରଖ ନା କାହିଁକି ? ଚଣ୍ଡୀ ପାଠ କରେଇବ କହିଥିଲ । କଲଣି ? କେତେ ଦିନ ହେଲାଣି- ?

ବହୁତ ଝଞ୍ଜଟ - ବହୁତ ଜଞ୍ଜାଳ-

ତୁମେ ଠିକ୍ ପୁରୁଷ-ଲୋକ ତ ? ତେବେ କଥା ଦେଇ କଥା ରଖିବ ନାହିଁ କାହିଁକି ? ମର୍ଦ୍ଦ-ପିଲାର ଗୋଟାଏ କଥା । ମାନୁଛ ତ ?

ନିଶ୍ଚୟ ମାନୁଛି ।

ଯଦି ମାନୁଛ, ମାନ ଆଡ଼କୁ ଯଦି ହୋସ୍ ଥାଆନ୍ତା ତେବେ ତ 'ମାନୁଷ' (ମଣିଷ) ହୋଇ ଯାଇ ଥାଆନ୍ତ । 'ମାନ-ହୁଁସ୍-ମାନୁଷ' । ତା'ଛଡ଼ା ପୁରୁଷ-ମଣିଷ କହନ୍ତି କାହାକୁ ? ପୁରୁଷର ସମ୍ପଦ କଅଣ ?

ଯଦୁ ମଲ୍ଲିକ ଏଣିକି ତେଣିକି ଅନେଇଲେ ।

କଥା ଭୁଲିଗଲ ? ହାତୀକା ଦାନ୍ତ, ଆଉ ମରଦ୍‌କା ? ମରଦ୍ କା ବାତ୍ । ପୁରୁଷ ଲୋକର ସଂପଦ ତା' କଥା । ଯେଉଁ ଲୋକର ଗୋଟାଏ କଥା ସେଇ ହେଉଛି ଖାଣ୍ଟି ଲୋକ ।

ସେଇ ଯଦୁ ମଲ୍ଲିକ । ତାଙ୍କର ଉଦ୍ୟାନ-ଗୃହକୁ ଦିନେ ରାମକୃଷ୍ଣ ଆସିଛନ୍ତି ବୁଲିଯିବା ପାଇଁ । ବୈଠକଖାନା ଘରେ ବସି କଥାବାର୍ତ୍ତା ହେଉଛନ୍ତି ଯଦୁ ସହିତ । ହଠାତ୍ ନଜର ପଡ଼ିଲା କାନ୍ଥରେ ଟଙ୍ଗା ହୋଇଥିବା ଗୋଟାଏ ଛବି ଉପରେ । ଅତି ମଧୁର ଭାବର ଦ୍ୟୋତକ ସେଇ ଛବିଟି ।

ମା ଆଉ ପୁଅ । ମା'ର କୋମଳ ବାହୁ-ବେଷ୍ଟନୀରେ ପବିତ୍ର ଗୋଟାଏ ଶିଶୁ, ଉଷାର ଆକାଶରେ ପ୍ରଥମ ଉଦୟଭାନୁ । ମା'ର ବଡ଼ ବଡ଼ ବିଭୋର ଆଖି ଦୁଇଟିରେ ଦ୍ରବୀଭୂତ ସ୍ନେହ, ମୁହଁରେ ପରିତୃପ୍ତିର ହସ । ଆଉ ଶିଶୁର ସମଗ୍ର ମୁଖ-ମଣ୍ଡଳରେ ଯେଉଁ ନିଷ୍ପାପ ସାରଲ୍ୟ - ରାମକୃଷ୍ଣ ତାହା ଯେପରି ଭାବରେ ବୁଝିଲେ, କିଏ ଆଉ ସେ ଭଳି ବୁଝିବ ?

'କାହା ଛବି ? କିଏ ଏମାନେ ?'

ଜଣେ ମେମ୍-ସାହେବ୍ ଆଉ ତାଙ୍କ ପୁଅ ।

ହେଇଥିବ, ହୁଏତ । ରାମକୃଷ୍ଣ ଅନ୍ୟ ଆଡ଼କୁ ମୁହଁ ବୁଲେଇ ନେବାକୁ ଯାଉଥିଲେ । କିନ୍ତୁ ଆଖି ଆଉ ଛବି ଉପରୁ ଫେରେଇ ନେଇ ପାରିଲେ ନାହିଁ । ସତ କହିଲ, ଏମାନେ କିଏ ? ମୁଁ ତ ଦେଖୁଛି, ଏ ଗୋଟାଏ ଜ୍ୟୋତିର୍ମୟ ଦେବଶିଶୁ, ଆଉ ତା' ମା-ପୁଣ୍ୟମୟୀ ପବିତ୍ରତା ।

'ମାତା ମେରୀ ଆଉ ତାଙ୍କ ପୁଅ ଯୀଶୁଖ୍ରୀଷ୍ଟ ।

ତନ୍ମୟ ହୋଇ ଚାହିଁ ରହିଲେ ରାମକୃଷ୍ଣ । ଦେଖିବେ଼ଲ, ମାତା ଯଶୋଦା ଏବଂ ତାଙ୍କ କୋଳରେ ନଧରକାନ୍ତି ବାଳଗୋପାଳ ।

ଯାଇ ପହଞ୍ଚିଲେ ଶମ୍ଭୁ ମଲ୍ଲିକଙ୍କ ପାଖରେ । କହିଲେ, 'ଯୀଶୁଖ୍ରୀଷ୍ଟଙ୍କ କଥା ମୋତେ କୁହ ।

ଶମ୍ଭୁ ମଲ୍ଲିକ - ଡାକ୍ତରଖାନା ବସେଇବା, ରାସ୍ତା ତିଆରି କରେଇବା, କୂଅ ଖୋଳେଇବା-

ଏଇ ସବୁ କାମରେ ତାଙ୍କର ପ୍ରବଳ ଆଗ୍ରହ । ହଉ, କରୁଛ, କର । ଯଦି ଅନାସକ୍ତ ଭାବରେ କରୁଥିବ ତେବେ ଭଲ । ତା ଯଦି ହୋଇ ନଥିବ, ତେବେ ଖାଲି ନିଜର ବଡ଼ିମା ଦେଖେଇବା ସାର ହେବ ସିନା । ସେଇଟା ହେଲା ଢ଼ୋଲ ପିଟା । କାଳୀଘାଟ ଆସିଛ, ଆସି ଯଦି ଖାଲି ଦାନ-ଦକ୍ଷିଣା କରୁଥିବ, କାଳୀ-ଦର୍ଶନ କରିବ କେତେବେଳେ ? ଆଗେ ଠେଲି-ପେଲି ଭିତରକୁ ପଶିଯାଇ ମା'ଙ୍କ ଦର୍ଶନଟା କରି ନିଅ । ତା' ପରେ ମନ ହେଲେ ଦାନ କର, ନହେଲେ ନ କର । ଈଶ୍ୱର ତୁମ ପାଖରେ ଆସି ପହଞ୍ଚି କହିଲେ, କେଉଁ ବର ଚାହୁଁଛ ? ତୁମେ କଅଣ କହିବ ? କହିବ, କେତେଟା ଡିସ୍‌ପେନ୍‌ସାରୀ-ହସ୍‌ପିଟାଲ କରିଦିଅ ? ନା, ପାଦପଦ୍ମରେ ଆଶ୍ରୟ ଦିଅ ? କେଉଁ କଥାଟା ମାଗିବ ତାଙ୍କୁ ?

ଗୌର ବର୍ଣ୍ଣ, ସୁପୁରୁଷ । ମୁଣ୍ଡରେ ଜରି-ଲଗା ପଗଡ଼ି । ଭାବ-ଚକ୍ଷୁରେ ଥରେ ତାଙ୍କୁ ଦେଖିଥିଲେ ରାମକୃଷ୍ଣ, ଦେଖିଥିଲେ ସେବାୟତ ରୂପରେ । ମଥୁର ବାବୁଙ୍କ ପରେ ରସଦାର ହେଲେ ଏଇ ଶମ୍ଭୁ ମଲ୍ଲିକ ।

ବାଗ୍‌ବଜାରରୁ ବାହାରି ଚାଲି ଚାଲି ଆସନ୍ତି ଦକ୍ଷିଣେଶ୍ୱର । କିଏ କେମିତି ପଚାରି ଦିଅନ୍ତି, ଏତେ ଗୁଡ଼ାଏ ବାଟ, ଗାଡ଼ିରେ ନ ଆସି ଚାଲି ଚାଲି ଆସୁଛନ୍ତି କାହିଁକି ? ବାଟରେ କିଛି ବିପଦ-ଆପଦ ଘଟିପାରେ । ଶମ୍ଭୁ ଟାଣ କରି ଉତ୍ତର ଦିଅନ୍ତି, କଅଣ ? ମାଙ୍କ ନାଁ ତୁଣ୍ଡରେ ଧରି ଘରୁ ବାହାରିଛି, ମୋର ପୁଣି ବିପଦ ! କହୁ କହୁ ମୁହଁ ଲାଲ ପଡ଼ିଯାଏ ।

'ଶାସ୍ତ୍ର-ପୁରାଣ ମୁଁ କିଛି ପଢ଼ି ନାହିଁ । ତଥାପି ତ ଦେଖୁଛ, ମୁଁ ମା-ଙ୍କ ନାମ କରେଁ ବୋଲି ସମସ୍ତେ ମୋତେ ମାନୁଛନ୍ତି ।' ଏଇ କଥା ଦିନେ ଶମ୍ଭୁ ମଲ୍ଲିକ ପାଖରେ କହିଥିଲେ ରାମକୃଷ୍ଣ ।

'ମୁଁ କ'ଣ ଜାଣେ ନାହିଁ ସେ କଥା ?' ହସି ଦେଇ ସରଳ ଭାବରେ କହିଲେ ଶମ୍ଭୁ ମଲ୍ଲିକ, 'ଢାଲ୍ ନାହିଁ, ତରୁଆଲ ନାହିଁ, ନିଧିରାମ ସରଦାର !'

ତୁମେ ତେବେ ଜାଣିଛ ମୋର ବିଦ୍ୟା-ବୁଦ୍ଧି କେତେ । ହଉ, ହେଲା । ଏଥର ମୋତେ ଟିକିଏ ବାଇବେଲ୍ ପଢ଼ି ଶୁଣାଅ ।

ଶମ୍ଭୁ ମଲ୍ଲିକ ବାଇବେଲ୍ ଖୋଲି ବସିଲେ । ଏକାଗ୍ର ତନ୍ମୟ ଚିତ୍ତରେ ଶୁଣିବାକୁ ଲାଗିଲେ ରାମକୃଷ୍ଣ । ଭୂମାଭିମୁଖୀ ମନ ଓହ୍ଲାଇ ଆସିଲା ଅବଗାହନ ପାଇଁ ।

କେତେ ଦିନ ପରେ ପୁଣି ଦିନେ ବୁଲୁ ବୁଲୁ ଅନ୍ୟମନସ୍କ ଭାବରେ ଚାଲି ଆସିଲେ ଯଦୁ ମଲ୍ଲିକଙ୍କ ସେଇ ଉଦ୍ୟାନ ଗୃହକୁ । ଯଦୁ ମଲ୍ଲିକ ଘରେ ନ ଥିଲେ । ଚାକର ମାନେ ବୈଠକଖାନା ଖୋଲିଦେଲେ । ରାମକୃଷ୍ଣ ଯାଇ ବସିଲେ ସେହି ଶିଶୁ-ସହିତ- ମା ଛବି ପାଖରେ ।

'ମା ! ମା ଗୋ ! ତୁ ମୋତେ ଏ ସବୁ କଅଣ ଦେଖାଉଛୁ ?'

ରାମକୃଷ୍ଣ ଦେଖିଲେ, ସେହି ଛବି ଯେପରି ଧୀରେ ଧୀରେ ଜୀବନାୟିତ ହୋଇ ଉଠୁଛି । ମାତା-ପୁତ୍ରଙ୍କ ଦିବ୍ୟ ଅଙ୍ଗ -ଜ୍ୟୋତିରେ ଚତୁର୍ଦ୍ଦିଗ ଉଦ୍‌ଭାସିତ ହୋଇ ଉଠୁଛି । ସେହି ଜ୍ୟୋତିସ୍ନାନରେ ଧୋଇ ହୋଇ ଯାଉଛି ତାଙ୍କ ଅନ୍ତର-ବାହାର । ଏତେ ଦିନର ଦୃଢ଼ମୂଳ ସଂସ୍କାର ଉନ୍ମୂଳିତ ହୋଇ ପଡୁଛି । ବିଶ୍ୱ-ସଂସାରରେ କେହି ଆଉ ବିରାଜମାନ ନାହିଁ - ଏକମାତ୍ର ପୀୟୂଷ ପ୍ରେମମୟ ଯୀଶୁ । କୃଷ୍ଣ ନାହାନ୍ତି, ଖ୍ରୀଷ୍ଟ । ଈଶାନ ନାହାନ୍ତି, ଈଶା ।

ଦେଖିଲେ, ଘରଟା ସତେ କି ଗୀର୍ଜା ହୋଇଯାଉଛି । ବହୁ ଧୂପ ଦୀପ ମହମବତୀ ଜଳାଇ ପ୍ରାର୍ଥନା କରୁଛନ୍ତି କେଜାଣି କେତେ ପାଦ୍ରି- ସମସ୍ତେ ଯେପରି ବ୍ୟାକୁଳତାର ମୌନ ପ୍ରତିମୂର୍ତ୍ତି । ସମ୍ମୁଖରେ କ୍ଳେଶଭାରକ୍ଳିଷ୍ଟ ଅଥଚ ଅକ୍ଳିଷ୍ଟକାନ୍ତି ଦେବତା ।

କିଏ ତୁମେ ପରମ ଯୋଗୀ, ପରମ ପ୍ରେମିକ ? କିଏ ତୁମେ 'ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍' ? ସଂସାର-ଦୁଃଖ-ଗହନ ଭିତରୁ ଜୀବର ଉଦ୍ଧାର ପାଇଁ ଢାଳି ଦେଲ ବୁକୁର ରକ୍ତ ? ଯାହାକୁ ତ୍ରାଣ କରିବା ପାଇଁ ଆସିଥିଲ ତାହାରି ହାତରେ ପ୍ରାଣ ଦେଲ ହସି ହସି ? ଯେଉଁ ଯନ୍ତ୍ରଣାର ନିବାରଣ ପାଇଁ ଆସିଥିଲ ସେହି ଯନ୍ତ୍ରଣା ହିଁ ଶେଷରେ ଉଦ୍‌ଭାସିତ ହେଲା କ୍ଷମାରୂପେ, ପ୍ରେମ ରୂପେ, ଶାନ୍ତି ରୂପେ !

ବଡ଼ ରାସ୍ତା କଡ଼ରେ ଗୋଟାଏ ବଡ଼ ଗୀର୍ଜା । ଚାଲୁ ଚାଲୁ ଆସି ପହଞ୍ଚିଗଲେ ସେଇ ଗୀର୍ଜା ଆଗରେ । ଭିତରେ ବିଦେଶୀ ବିଜାତୀୟମାନଙ୍କର ଭିଡ଼ । 'ରଜା-ପୁଅ' ନ ହୁଅନ୍ତୁ, ରଜାଙ୍କ ଜାତିର ଲୋକ ସେମାନେ । ଭିତରକୁ ଯିବାକୁ ସାହସ କରି ପାରିଲେ ନାହିଁ ରାମକୃଷ୍ଣ ।

'ମା, ଖ୍ରୀଷ୍ଟିଆନମାନେ ଗୀର୍ଜାରେ ତୁମକୁ କେଉଁ ପ୍ରକାରେ ଡାକନ୍ତି ମୋତେ ଥରେ ଦେଖେଇ ଦିଅ । ଭିତରକୁ ଯାଆନ୍ତି, ହେଲେ ଲୋକେ କଅଣ କହିବେ ? ଯଦି କିଛି ଗୋଳମାଳ ହୋଇଯାଏ ? ଯା' ପରେ ଯଦି ମୋତେ କାଳୀ ମନ୍ଦିରକୁ ଯିବାକୁ ନ ଦିଅନ୍ତି ? ହଉ, ମା, ତେବେ ମୋତେ ଗୀର୍ଜାର ଦୁଆର ପାଖରୁ ଦେଖେଇ ଦିଅ - ।'

ଗୀର୍ଜାର ଦୁଆର ପାଖରେ ଆସି ଠିଆ ହେଲେ ରାମକୃଷ୍ଣ । ଚାହିଁଲେ ଭିତରକୁ । ସର୍ବତଶ୍ଚକ୍ଷୁ ରାମକୃଷ୍ଣଙ୍କ ଆଖିରେ ବର୍ତ୍ତମାନ ''ପରମ ପଶ୍ୟନ୍ତୀ ଦୃଷ୍ଟି'' । ଦେଖିଲେ, ଗୀର୍ଜା ନୁହେଁ, କାଳୀ-ମନ୍ଦିର । ଭିତରେ ବେଦୀ ଉପରେ ମା ବସି ରହିଛନ୍ତି । ମା ଜଗଦମ୍ବା । ମା ଭବତାରିଣୀ । ସବ୍ୟେ ଖଡ଼ଗ ମୁଣ୍ଡକରା, ଅସବ୍ୟେ ବରାଭୟଦାତ୍ରୀ- ସେହି ମା, ଯେ କରାଳୀ, ପୁଣି କୈବଲ୍ୟଦାୟିନୀ । ରାମକୃଷ୍ଣଙ୍କ ଦୁଇ ଆଖିରୁ ବହି ଆସିଲା ଆନନ୍ଦର ଅଶ୍ରୁ ଧାରା ।

ସବୁଠାରେ ଏହି ମା'ଙ୍କ ଭଜନ । ସବୁ ସ୍ଥାନ ମାତୃସ୍ଥାନ । କଜ୍ଜଳ-ଘରେ ରହିଲେ ଦେହରେ ଅବଶ୍ୟ କଳା ଲାଗିବ, କିନ୍ତୁ କେଉଁଠି ବା କଜ୍ଜଳ-ଘର ନାହିଁ ? - ସର୍ବତ୍ର ଯେ କାଳୀ-ଘର ।

ଯେ ଯୀଶୁଖ୍ରୀଷ୍ଟ ସେ ପୁଣି ମୋକ୍ଷକରୀ ଶିବକରୀ ମାହେଶ୍ୱରୀ ।

ତିନି ଦିନ ରହିଲେ ଏହି ଖ୍ରୀଷ୍ଟିଆନ ଭାବରେ । ଚତୁର୍ଥ ଦିନ ପଞ୍ଚବଟୀରେ ବୁଲୁଛନ୍ତି, ଦେଖିଲେ ଜଣେ ଗୌରବର୍ଣ୍ଣ ସୁପୁରୁଷ ଆସି ହଠାତ୍ ତାଙ୍କ ଆଗରେ ଛିଡ଼ା ହୋଇଗଲେ । ସହଜରେ ବୁଝି ହେଉଥାଏ, ଆଗନ୍ତୁକ ବିଦେଶୀ, ବିଜାତି । କିନ୍ତୁ ତାଙ୍କ ସୌମ୍ୟ ମୁଖମଣ୍ଡଳରେ ଅପାର ସୌନ୍ଦର୍ଯ୍ୟ, ସର୍ବାଙ୍ଗରେ ଦେବ-ଦ୍ୟୁତି । କିଏ ତୁମେ ? ତୁମେ କଅଣ ସେହି ପୁରୁଷୋତ୍ତମ ଯୀଶୁ ? ସେହି ତମାଳ-ଶ୍ୟାମଳ ବନମାଳୀ ?

ଧୀରେ ଧୀରେ ସମୀପକୁ ଚାଲି ଆସିଲେ ସେହି ଦେବମାନବ । ଆସି ଆଲିଙ୍ଗନ କଲେ ରାମକୃଷ୍ଣଙ୍କୁ । ଏକ ଦେହରେ ଲୀନ ହୋଇଗଲେ ଦୁଇ ଜଣ । ଲୀନ ହୋଇଗଲେ ବ୍ରହ୍ମାତ୍ମବୋଧରେ ।

ଦିନେ ରାମକୃଷ୍ଣ ଭକ୍ତମାନଙ୍କୁ ପଚାରିଲେ, 'ତୁମେ କେହି ବାଇବେଲ୍ ପଢ଼ିଛ ? ବାଇବେଲ୍‌ରେ ଯୀଶୁଙ୍କ ଚେହେରାର କୌଣସି ବର୍ଣ୍ଣନା ଅଛି ?'

ନା, ବାଇବେଲ୍‌ରେ ସେ କଥା ନାହିଁ ।

'କହି ପାରିବ, ଯୀଶୁ ଦେଖିବାକୁ କି ଭଳି ଥିଲେ ?'

କହି ହେବ ନାହିଁ । ତେବେ ଇହୁଦି ଜାତିର ଲୋକ, ତେଣୁ ଦେହର ବର୍ଣ୍ଣ ଗୌର ହୋଇଥିବ, ଆଖି ଲମ୍ବା ଏବଂ ନାକ ସରୁ ଓ ଉଚ୍ଚ ହୋଇଥିବ ନିଶ୍ଚୟ ।

'କିନ୍ତୁ ମୁଁ ଯେତେବେଳେ ଦେଖିଲି, ଦେଖିଲି ତାଙ୍କ ନାକ ଟିକିଏ ଚେପ୍‌ଟା । କାହିଁ କି ଦେଖିଲି, କେଜାଣି !'

କଳ୍ପନାରେ ଦେଖିଥିବା ମୂର୍ତ୍ତି ଅବିକଳ ବାସ୍ତବ ମୂର୍ତ୍ତି ପରି ହେବା କଅଣ ସମ୍ଭବ ? କିନ୍ତୁ ଯୀଶୁଖ୍ରୀଷ୍ଟଙ୍କ ଆକୃତିର ଯେଉଁ ବର୍ଣ୍ଣନା ମିଳିଛି, ସେଥିରେ ତାଙ୍କ ନାକ ଚେପ୍‌ଟା ବୋଲି ଉଲ୍ଲେଖ ଅଛି ।

'ମା, ସମସ୍ତେ କହୁଛନ୍ତି, ମୋ ଘଡ଼ି ଠିକ୍ ଚାଲୁଛି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍, ବ୍ରହ୍ମଜ୍ଞାନୀ ସମସ୍ତେ କହୁଛନ୍ତି, ମୋରି ଧର୍ମଟା ଠିକ୍ । କିନ୍ତୁ ମା, କାହାରି ଘଡ଼ି ତ ଠିକ୍ ଚାଲୁ ନାହିଁ । କେହି ଜଣେ ହେଲେ ତୁମ ଘଡ଼ି ସହିତ ତାଙ୍କ ନିଜ ଘଡ଼ି ମିଳାଇ ନେଉ ନାହାନ୍ତି । ସମସ୍ତଙ୍କ ଆଖି କେବଳ ନିଜ ଘଡ଼ିର କଣ୍ଟା ଉପରେ, ତୁମକୁ ତ କେହି ଦେଖୁ ନାହାନ୍ତି ।'

ମିଶ୍ର ମହୋଦୟ ଆସିଛନ୍ତି ଠାକୁରଙ୍କ ସହିତ ଦେଖା କରିବା ପାଇଁ । ଧର୍ମରେ ଖ୍ରୀଷ୍ଟିଆନ, ଘର ପଶ୍ଚିମ ମୁଲକରେ । ଭାଇ ଯାଇଥିଲା ବାହା ହେବାକୁ, ବିଭା-ବେଦୀରେ ଚାନ୍ଦୁଆ ତଳେ ଚାପା ପଡ଼ି ମରିଗଲା । ଏକୁଟିଆ ନୁହେଁ, ସାଙ୍ଗରେ ଆହୁରି ଗୋଟାଏ ଭାଇ ବି ଯାଇଥିଲା ବରଯାତ୍ରୀ ହୋଇ, ସିଏ ବି ମଲା । ସେହି ଦିନ ଠାରୁ ମିଶ୍ର ସନ୍ନ୍ୟାସୀ । ପିନ୍ଧିଛନ୍ତି ପ୍ୟାଣ୍ଟ-କୋଟ, କିନ୍ତୁ ଭିତରେ ରହିଛି ଗେରୁଆ ଲେଙ୍ଗୁଟି ।

ରାମକୃଷ୍ଣଙ୍କୁ ଦେଖି ମିଶ୍ର କେବଳ କହୁଛନ୍ତି 'ଇଏ ଈଶ୍ୱର, ଇଏ ରାମ, ଇଏ କୃଷ୍ଣ -'

ଠାକୁର କେବଳ ହସୁଛନ୍ତି । କହିଲେ, 'ପୋଖରୀରେ ଅନେକ ତୁଠ । ଗୋଟାଏ ତୁଠରେ ହିନ୍ଦୁମାନେ ଜଳ ପିଉଛନ୍ତି, କହୁଛନ୍ତି 'ଜଳ' । ଆଉ ଗୋଟିଏ ତୁଠରେ ଖ୍ରୀଷ୍ଟିଆନ୍‌ମାନେ ପିଉଛନ୍ତି, କହୁଛନ୍ତି 'ଓୟାଟର' । ସେ ପାଖ ତୁଠାରେ କେତେ ଜଣ ମୁସଲମାନ, କହୁଛନ୍ତି 'ପାନି' ।

ମିଶ୍ରଙ୍କ ମୁହଁକୁ ଅନାଇ ପଚାରିଲେ ଠାକୁର, 'କିଛି ଦେଖି ପାରୁଛ ?'

'କେବଳ ଆପଣଙ୍କୁ ଦେଖୁଛି । ଆପଣ ଏବଂ ଯୀଶୁ ଏକ ।'

ଠାକୁରଙ୍କର ସତେ ଅବା ଯୀଶୁ-ଭାବ ଆସିଗଲା । ବସିଥିଲେ, ଉଠି ଛିଡ଼ା ହୋଇ ପଡ଼ିଲେ ଏବଂ ସଙ୍ଗେ ସଙ୍ଗେ ସମାଧିସ୍ଥ ହୋଇଗଲେ । ଭାବାବେଶରେ ମିଶ୍ରଙ୍କ ଆଡ଼କୁ ଅନାଇ ହସିବାକୁ ଲାଗିଲେ । ହାତ ବଢ଼ାଇ ସେକ୍‌ହ୍ୟାଣ୍ଡ କଲେ ।

ସମସ୍ତଙ୍କ ସହିତ ମିଶି ଏକ ହୋଇଯିବ । ତା' ପରେ ପୁଣି ଫେରି ଆସିବ ନିର୍ଜନ-ନିଭୃତକୁ, ନିଜ ଘରକୁ । ନିଜ ଘରେ ଯାଇ ଶାନ୍ତିରେ ବସିବ । ଗାଈଆଳ-ପିଲାମାନେ ଭିନ୍ନ ଭିନ୍ନ ଲୋକଙ୍କ ଘରୁ ଗୋରୁ ଆଣନ୍ତି ଚରେଇବା ପାଇଁ, ନେଇ ଛାଡ଼ି ଦିଅନ୍ତି ପଦାରେ । ସେଠି ସବୁ

ଘରର ସବୁ ଗୋରୁ ମିଶି ଯାଆନ୍ତି ଏକାକାର ହୋଇ । ଗୋଠରୁ ବାହୁଡ଼ି ଆସି ପୁଣି ଯାଆନ୍ତି ଯେ ଯାହାର ନିଜ ଘରକୁ, ଯାଇ ରହନ୍ତି ନିଜ ନିଜ ଜାଗାରେ ଏକା ଏକା ହୋଇ ।

କିଲ୍ଲା-ମଇଦାନକୁ ଯାଇଛନ୍ତି ବୁଲିବା ପାଇଁ । ଆଜି ବେଲୁନ ଉଡ଼ାଣ ହେବ । ମଇଦାନରେ ପ୍ରବଳ ଲୋକ ଭିଡ଼ । ନିରୋଳା ଦେଖି ଗୋଟାଏ ପାଖକୁ ଠିଆ ହୋଇଛନ୍ତି । ହଠାତ୍ ନଜର ପଡ଼ିଲା, ଗଛକୁ ଆଉଜି ତ୍ରିଭଙ୍ଗ ଠାଣିରେ ଛିଡ଼ା ହୋଇଛି ଗୋଟାଏ ସାହେବ ପିଲା । ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ-ଭାବର ଉଦ୍ଦୀପନ ଆସିଲା । ସମାଧିରେ ବୁଡ଼ିଗଲେ ରାମକୃଷ୍ଣ ।

ଉଲୋ-ଗାଁରେ ଘର । ନାଁ ବାମନ ଦାସ । ସେ କିନ୍ତୁ ଖାଣ୍ଟି କଥାଟି କହନ୍ତି । କହନ୍ତି, 'ବାବ୍‌ବାଃ ! ବାଘ ଯେମିତି ମଣିଷକୁ ଧରେ, ୟା'ଙ୍କୁ ଠିକ୍ ସେଇମିତି ଧରିଛନ୍ତି ଈଶ୍ୱରୀ ।'

## ୩୩

ମଧୁସୂଦନ ଦକ୍ଷିଣେଶ୍ୱର ଆସିଛନ୍ତି - ମାଇକେଲ ମଧୁସୂଦନ ଦତ୍ତ ।*

ଆସିଛନ୍ତି ବାରିଷ୍ଟର ହିସାବରେ । ମଥୁର ବାବୁଙ୍କ ବଡ଼ ପୁଅ ଦ୍ୱାରିକା ତାଙ୍କୁ ଡାକି ଆଣିଛନ୍ତି । ବାରୁଦ-ଘର ନେଇ ଗୋରା ସାହେବମାନଙ୍କ ସହିତ ଯେଉଁ ମୋକଦ୍ଦମାର ଆୟୋଜନ ଚାଲିଛି, ସେହି ଉପଲକ୍ଷ୍ୟରେ ।

କଚେରୀ ଘରକୁ ଲାଗି ଆଉ ଗୋଟାଏ ବଡ଼ ଘର । ସେଇ ଘର ଭିତରେ ବସିଛନ୍ତି ମାଇକେଲ୍ । କହିଲେ, 'ଶ୍ରୀରାମକୃଷ୍ଣଙ୍କୁ ଥରେ ଦେଖିବି ।'

ରାମକୃଷ୍ଣଙ୍କ ପାଖକୁ ଖବର ଗଲା । ମାତ୍ର ରାମକୃଷ୍ଣ ଆସିବାକୁ ରାଜି ନୁହନ୍ତି । ଏତେ ବଡ଼ ଜଣେ ଗଣ୍ୟମାନ୍ୟ ଲୋକ, ଦୁର୍ଦ୍ଧାନ୍ତ ସାହେବ, ତାଙ୍କ ଆଗରେ ଯାଇ ଠିଆ ହେବି ମୁଁ ! ହୃଦୟକୁ କହିଲେ, 'ତୁ ଯା ।'

କିନ୍ତୁ ହୃଦୟ ଗଲେ ତ ଚଳିବ ନାହିଁ । ମାଇକେଲ୍ ଦେଖିବାକୁ ଚାହାନ୍ତି ଖୋଦ୍ ରାମକୃଷ୍ଣଙ୍କୁ । ଦ୍ୱାରିକା ପୁଣି ଥରେ ଡାକି ପଠେଇଲେ ।

ପାଖରେ ଥିଲେ ନାରାୟଣ ଶାସ୍ତ୍ରୀ । ରାମକୃଷ୍ଣ କହିଲେ, 'ତୁମେ ବି ଚାଲ ମୋ ସହିତ । ଇଂରାଜୀ-ଫିଂରାଜୀ ମୁଁ ତ ଜାଣେ ନା, କଅଣ କହୁ କହୁ କଅଣ କହି ପକାଇବି - ।'

ଦୁଇ ଜଣ ଆସିଲେ ସାଙ୍ଗ ହୋଇ । ଛିଡ଼ା ହେଲେ ମାଇକେଲ୍‌ଙ୍କ ଆଗରେ । ରାମକୃଷ୍ଣ ନାରାୟଣ ଶାସ୍ତ୍ରୀଙ୍କୁ ଆଗକୁ ଠେଲି ଦେଲେ । କହିଲେ, 'ତୁମେ କଥା ଆରମ୍ଭ କର ।'

ନାରାୟଣ ଶାସ୍ତ୍ରୀ ସଂସ୍କୃତରେ କଥା ଆରମ୍ଭ କଲେ ।

ମାଇକେଲ୍ କହିଲେ, 'ବଙ୍ଗଳାରେ କହନ୍ତୁ ।'

ନାରାୟଣ ଶାସ୍ତ୍ରୀ ପ୍ରଶ୍ନ କଲେ, 'ତୁମେ ନିଜର ଧର୍ମ ଛାଡ଼ିଲ କାହିଁକି ?'

---

* ମାଇକେଲ୍ ମଧୁସୂଦନ ଦତ୍ତ– ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ବଙ୍ଗୀୟ କବି । ଇଂରାଜୀ ଓ ଫରାସୀ ସାହିତ୍ୟର ଅନୁକରଣରେ ଭାରତୀୟ ଭାଷାରେ ସର୍ବ ପ୍ରଥମେ ଅମିତ୍ରାକ୍ଷର ଛନ୍ଦରେ କାବ୍ୟ ରଚନା କରି ସାହିତ୍ୟରେ ଏକ ନୂତନ ଧାରା ପ୍ରବର୍ତ୍ତନ କରିଥିଲେ ।

ମାଇକେଲ ନିଜର ପେଟ ଦେଖେଇଲେ । କହିଲେ, 'ପେଟ ପାଇଁ ।'

'ପେଟ ପାଇଁ ?' ଶାସ୍ତ୍ରୀ ଉତ୍ତେଜିତ ହୋଇ ଉଠିଲେ । 'ପେଟ ପାଇଁ ତୁମେ ଧର୍ମ ତ୍ୟାଗ କଲ ? ତୁମ ବାପ-ଗୋସବାପଙ୍କ ଧର୍ମ ? ପେଟ ପାଇଁ ଯେଉଁ ଲୋକ ଧର୍ମ ତ୍ୟାଗ କରିପାରେ ତା' ସହିତ କଥାବାର୍ତ୍ତା କଅଣ ହେବି ?' ଘୃଣାରେ ମୁହଁ ବୁଲାଇ ନେଲେ ।

'କିନ୍ତୁ ଆପଣ କିଛି କହନ୍ତୁ' - ମାଇକେଲ୍ ମିନତି କଲା ପରି କହିଲେ ରାମକୃଷ୍ଣଙ୍କୁ ।

ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ରହିଲେ ରାମକୃଷ୍ଣ । ଆଶ୍ଚର୍ଯ୍ୟ କଥା । କିଛି କହିପାରୁ ନାହାନ୍ତି । କିଏ ଯେମିତି ମୁହଁରେ ହାତ ଚାପି ଧରିଛି ।

ବୟସରେ ମାଇକେଲ୍ ରାମକୃଷ୍ଣଙ୍କ ଠାରୁ ବାରବର୍ଷ ବଡ଼ । ତଥାପି ଦୁଇ ହାତ ଯୋଡ଼ି ଅନୁନୟ କଲା ପରି କହିଲେ, 'ମୋ ପ୍ରତି ଆପଣଙ୍କର କୃପା ହେବ ନାହିଁ ? ମୁଁ ଆପଣଙ୍କର ଭକ୍ତ-'

'ସେ କଥା ନୁହେଁ । ମୁଁ ତ ଚାହୁଁଛି କଥା କହିବା ପାଇଁ । କିନ୍ତୁ ଯେତେଥର ତୁଣ୍ଡ ଖୋଲୁଛି କିଏ ଯେମିତି ମୋ ପାଟି ଚାପି ଧରୁଛି । ତୁଣ୍ଡ ଖୋଲିବାକୁ ଦେଉ ନାହିଁ ।'

ଲଜ୍ଜାରେ ସଂକୁଚିତ ହୋଇ ପଡ଼ିଲେ ମାଇକେଲ୍ । ସେ କ'ଣ ଏତେ ଅଭାଜନ ? ଏତେ ପରିତ୍ୟାଜ୍ୟ ?

ରାମକୃଷ୍ଣଙ୍କ ପ୍ରାଣକୁ ବି ବାଧିଲା ବୋଧହୁଏ । କହିଲେ, 'ଗୀତ ଗାଉଛି, ଶୁଣ । ଗୀତ ଶୁଣିଲେ ଶାନ୍ତି ପାଇବ ।'

ରାମପ୍ରସାଦୀ ଗାନ ଗାଇବା ଆରମ୍ଭ କଲେ ରାମକୃଷ୍ଣ । ରକ୍ତାକ୍ତ କ୍ଷତରେ କିଏ ଯେପରି ଶୀତଳ ପ୍ରଲେପ ଲଗାଇଦେଲା । ଶାନ୍ତିରେ ଆଖି ବୁଜିଲେ ମାଇକେଲ୍ ।

କିନ୍ତୁ ନାରାୟଣ ଶାସ୍ତ୍ରୀଙ୍କ ରାଗ ମେଣ୍ଟିଲା ନାହିଁ । ଫେରିବା ବେଳେ ରାମକୃଷ୍ଣଙ୍କ ଘର ଆଗରେ ଗୋଟାଏ ଗାଛରେ କୋଇଲାରେ ବଡ଼ ବଡ଼ ବଙ୍ଗଳା ଅକ୍ଷରରେ ଲେଖିଦେଲେ, 'ପେଟ ପାଇଁ ଧର୍ମ ତ୍ୟାଗ କରିବା ମୂଢ଼ତା ।'

ମଥୁରବାବୁଙ୍କୁ ବ୍ରାହ୍ମଣୀ କହନ୍ତି, ପ୍ରତାପରୁଦ୍ର । ଠାକୁରଙ୍କ ମନର ସାଧ ମେଣ୍ଟେଇବା ପାଇଁ କେତେ କଅଣ କରି ସାରିଲେଣି । ସାଧୁ-ସେବା ପାଇଁ ସ୍ୱତନ୍ତ୍ର ଭଣ୍ଡାର ଖୋଲି ଦେଇଛନ୍ତି । ଗାଡ଼ି, ପାଲିଙ୍କି- ଆଦି ଯାହା ଯେତେବେଳେ ଯାହାକୁ ଦେବା ପାଇଁ କହିଛନ୍ତି, ରାମକୃଷ୍ଣ, ସବୁ ସେ ଦେଇଛନ୍ତି ଅକୁଣ୍ଠ ଚିତ୍ତରେ । ଥରେ ଠାକୁର ମନ କଲେ, ଜରି-ପୋଷାକ ପିନ୍ଧିବେ, ରୂପାର ଗୁଡ଼ଗୁଡ଼ି ହୁକାରେ ଧୂଆଁ ପିଇବେ । ସବୁ ଜିନିଷ କିଣି ପଠେଇ ଦେଲେ ମଥୁର ବାବୁ । ସୁନା ରୂପାର ଜରି ଲଗା ପୋଷାକ ପିନ୍ଧି ରାଜକୀୟ ଠାଣିରେ ବସିଲେ ରାମକୃଷ୍ଣ । ରୂପା-ତିଆରି ଗୁଡ଼-ଗୁଡ଼ିର ନଳ ହାତରେ ଧରି ଧୂଆଁ ଟାଣିଲେ - ଥରେ ଏ ପାଖରୁ, ଥରେ ସେ ପାଖରୁ; ଉପରୁ, ତଳୁ- ନାନା ରୀତିରେ, ନାନା ଭଙ୍ଗୀରେ । ମନକୁ କହିଲେ, ବୁଝିଲୁ ମନ, ଏଇଆକୁ କହନ୍ତି ଅୟସ କରିବା । ବୁଝିଲୁ ? କହି ସଙ୍ଗେ ସଙ୍ଗେ ଖୋଲି ପକାଇଲେ ଜରି ପୋଷାକ, ହାତରୁ ଫୋପାଡ଼ି ଦେଲେ ଗୁଡ଼ଗୁଡ଼ିର ନଳ ।

'କାମନା ଥିବା ପର୍ଯ୍ୟନ୍ତ, ଭୋଗ-ଲାଳସା ଥିବା ପର୍ଯ୍ୟନ୍ତ ମୁକ୍ତି ନାହିଁ । ତେଣୁ ମନକୁ ଯେତେବେଳେ ଯେଉଁ ଇଚ୍ଛା ଆସିଛି ମୁଁ ତାହା କରିଛି । ବଡ଼ ବଜାରର ରଙ୍ଗୀନ ସନ୍ଦେଶ ଖାଇବାକୁ ମନ ହେଲା । ଖାଇଲି । ବହୁତ ଖାଇଲି । ତା' ପରେ ଦେହ ଖରାପ । ଧନେଖାଲିର ଖଇ-ଲଡୁ, କୃଷ୍ଣନଗରର ସରପୁଳି ଖାଇବାକୁ ମନ ହେଲା - ତାକୁ ବି ବାଦ୍ ଦେଇ ନାହିଁ ।'

ମଥୁରବାବୁ ଆସି କହିଲେ, ତାଙ୍କ ସ୍ତ୍ରୀ ଜଗଦମ୍ବାଙ୍କ ଦେଇ ଅତ୍ୟନ୍ତ ଖରାପ । ମରଣାପନ୍ନ ଅବସ୍ଥା । ଡାକ୍ତର-କବିରାଜମାନେ ଆଶା ଛାଡ଼ି ଦେଇ ସାରିଲେଣି । ସ୍ତ୍ରୀ ତ ଯିବେ, ତାଙ୍କ ସହିତ ତାଙ୍କ ବିଷୟ-ସଂପତ୍ତି ମଧ୍ୟ ଯିବ ।

ଶୋକରେ ପ୍ରାୟ ପାଗଳ ହୋଇ ଯାଇଛନ୍ତି ମଥୁର ବାବୁ । ବୁଝେଇ ଶୁଝେଇ ପାଖରେ ତାଙ୍କୁ ବସେଇଲେ ରାମକୃଷ୍ଣ । କଅଣ ହୋଇଛି ? ଏତେ ବ୍ୟସ୍ତ ହେବାର କଅଣ ଅଛି ?

ମଥୁରବାବୁ ରାମକୃଷ୍ଣଙ୍କ ପାଦ ଧରି ଲମ୍ବ ହୋଇ ପଡ଼ିଗଲେ । କହିଲେ, 'ମୋର ତ ଯାହା ହେବାର ହୋଇଯିବ । କିନ୍ତୁ, ବାବା, ତୁମ ସେବା ଯେ ଆଉ କରିପାରିବି ନାହିଁ !' କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ମଥୁରବାବୁ ।

କରୁଣାରେ ବିଗଳିତ ହୋଇଗଲା ରାମକୃଷ୍ଣଙ୍କ ଅନ୍ତର । କହିଲେ, 'ଉଠ, ଘରକୁ ଯାଅ । ତୁମ ସ୍ତ୍ରୀ ଭଲ ହୋଇଯାଇଛନ୍ତି ।'

ଆଶ୍ୱସ୍ତ ମନରେ ଘରକୁ ଆସିଲେ ମଥୁର ବାବୁ । ଘରେ ଗୋଡ଼ ଦେଇ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସ୍ତ୍ରୀଙ୍କ ଦେହରେ କୌଣସି ରୋଗ ନାହିଁ । କୁହୁକ, ନା କଅଣ ?

'କୁହୁକ ନୁହେଁ,' ପରେ ଏ ସଂପର୍କରେ ଠାକୁର କହିଥିଲେ ଭକ୍ତମାନଙ୍କୁ, 'କୁହୁକ ନୁହେଁ, ଜଗଦମ୍ବାଙ୍କ ରୋଗଟାକୁ (ନିଜ ଦେହକୁ ଦେଖାଇ) ଏଇ ଦେହକୁ ଟାଣି ଆଣିଲି ।'

ଛଅ ମାସ କାଳ ଭୋଗିଥିଲେ ସେଥିପାଇଁ ନିଜେ, ନାନା ରୋଗରେ ।

ବର୍ଷା ଋତୁ ଆସିଲା । ମଥୁରବାବୁଙ୍କ ଚିନ୍ତା ବଢ଼ିଲା । ଗଙ୍ଗାର ଜଳ ଏବେ ଲୁଣିଆ ହୋଇଯିବ, ପିଇ ହେବ ନାହିଁ । ଅଥଚ ସେହି ଗଙ୍ଗା ନଦୀର ଜଳ ଛଡ଼ା ପିଇବା ପାଇଁ ଆଉ କୌଣସି ପ୍ରକାର ଜଳ ବି ନାହିଁ । ସେହି ଜଳ ପିଇଲେ ପେଟର ରୋଗ ବାହାରିବ ରାମକୃଷ୍ଣଙ୍କର ।ଏବେ ଉପାୟ ?

ଗୋଟାଏ ଉପାୟ ଅଛି । କିଛି ଦିନ ପାଇଁ ରାମକୃଷ୍ଣ ଯାଇ ନିଜ ଗାଁରେ ରହନ୍ତୁ ।

ମନ୍ଦ ନୁହେଁ ପ୍ରସ୍ତାବଟା । ଥରେ ଯାଇ ଦେଖି ଆସେଁ ନିଜର ଜନ୍ମସ୍ଥାନ । ଆଠ ବର୍ଷ ହେଲା ଯାଇ ନାହିଁ । ସାରଦାଙ୍କୁ ବି ଥରେ ଦେଖି ଆସିବି ।

'ମା, ତୁମେ କାମାରପୁକୁର ଯିବ ?' ଚନ୍ଦ୍ରମଣିଙ୍କୁ ପଚାରିଲେ ରାମକୃଷ୍ଣ ।

'ନାଇଁରେ ବାପା, ଗଙ୍ଗା କୂଳ ଛାଡ଼ି ଆଉ କୁଆଡ଼େ ଯିବି ନାହିଁ । କେତେଟା ଦିନ ବା ଆଉ ବଞ୍ଚିବି ? ସେଇ କେତେଟା ଦିନ ଏଇଠି ଏଇ ଗଙ୍ଗା କୂଳରେ କଟିଯାଉ । ତୁ ବରଂ ବ୍ରାହ୍ମଣୀକୁ ସାଙ୍ଗରେ ନେଇ ଯା ।'

ବ୍ରାହ୍ମଣୀ ତ କହିବା ଆଗରୁ ପ୍ରସ୍ତୁତ ।

ଆଉ କିଏ ଯିବ ସାଙ୍ଗରେ ?

କାହିଁକି, ହୃଦୟ !

ଗାଁରେ ରାଷ୍ଟ୍ର ହୋଇ ଯାଇଛି, ରାମକୃଷ୍ଣ ପାଗଳ ହୋଇ ଯାଇଛନ୍ତି ! କଚ୍ଛା ଖୋଲି ଦେଇ ଆଲ୍ଲା-ଆଲ୍ଲା କହୁଛନ୍ତି । ସ୍ତ୍ରୀ ବେଶ ହୋଇ ଗହଣା ପିନ୍ଧି ମନ-ରସିଆ ଗୀତ ଗାଉଛନ୍ତି ।

ଥରେ ସମସ୍ତଙ୍କୁ ଦେଖେଇ ଦେଇ ଆସେ ଅସଲ ରୂପଟା ।

ମଥୁରବାବୁ ଓ ତାଙ୍କ ସ୍ତ୍ରୀ ମିଶି ସବୁ ଜିନିଷ ସଜାଡ଼ି ଦେଲେ, ଯେମିତି ଗାଁକୁ ଯାଇ ରାମକୃଷ୍ଣଙ୍କର କୌଣସି କଥାରେ ସାମାନ୍ୟତମ ଅସୁବିଧା ନ ହୁଏ । କାମାରପୁକୁରର ଘର ତ ଅଭାବ ଅନଟନର ଘର । ଜାଣିଥିଲେ ସେମାନେ । ସମସ୍ତ ଘର-କରଣା ଜିନିଷ ସାଙ୍ଗରେ ଦେଲେ । ଝିଅକୁ ପ୍ରଥମ ଥର ଶାଶୁଘରକୁ ପଠାଇଲାବେଳେ ବାପା-ମା' ଯିମିତି ଭାର-ଥୋର ସଜାଡ଼ି ଦିଅନ୍ତି । ସଞ୍ଜ ସଳିତା ଠାରୁ ଆରମ୍ଭ କରି ଦାନ୍ତ ଖୁଣ୍ଟା ପର୍ଯ୍ୟନ୍ତ ।

ଗାଁରେ ସତେ କି ଆନନ୍ଦର ହାଟ ବସିଗଲା । ହେଇଟି ଶୁଣିଲଣି ? ରାମକୃଷ୍ଣ ଆସିଛନ୍ତି । ସାଙ୍ଗରେ ଆସିଛନ୍ତି ଜଣେ ଭୈରବୀ । ହାତରେ ଏତେ ବଡ଼ ତ୍ରିଶୂଳ । ଚାଲ, ଦେଖି ଆସିବ ।

ସାରଦା ସେତେବେଳେ ଜୟରାମବାଟିରେ ଥିଲେ । ତାଙ୍କ ପାଖକୁ ଖବର ପଠାଇଲେ ରାମକୃଷ୍ଣ । ବ୍ରାହ୍ମଣୀ ଆସିଛନ୍ତି, ତୁମେ ଆସ । ତୁମେ ନ ଥିଲେ ତାଙ୍କ କଥା ବୁଝିବ କିଏ ? ମା ଆସି ନାହାନ୍ତି ମୋ ହସିତ, ଏବେ ଏଇ ହେଉଛନ୍ତି ତୁମ ଶାଶୁ ।

ସ୍ୱାମୀଙ୍କୁ ଠିକ୍ ଭାବରେ ଦେଖିବା ଏଇଟା ସାରଦାଙ୍କର ପ୍ରଥମ । ଚଉଦ ପୂରି ପନ୍ଦର ଚାଲିଛି । ସେ ବର୍ତ୍ତମାନ ସ୍ୱଭାବସୁନ୍ଦରାଙ୍ଗୀ କିଶୋରୀ । ଶୁଭାନନା । ସର୍ବକଲ୍ୟାଣକାରିଣୀ । ''କୀର୍ତ୍ତିର୍ଲକ୍ଷ୍ମୀଧୃତିର୍ମେଧାପୁଷ୍ଟିଃଶ୍ରଦ୍ଧାକ୍ଷମାମତିଃ''-ର ସମାହାର ।

ସ୍ୱାମୀଙ୍କୁ ପ୍ରଥମେ ଦେଖିଥିଲେ ବୟସ ଯେତେବେଳେ ଛଅ କି ସାତ । ସବୁ କଥା ଠିକ୍ ଠିକ୍ ମନେ ପଡୁ ନାହିଁ । ପାଦ ଧୋଇ ଦେଇ ମୁଣ୍ଡର କେଶରେ ପାଦ ପୋଛି ଦେଇଥିଲେ - ଏତିକି ମନେ ପଡୁଛି ଝାପ୍‌ସା ଭାବରେ । ବିବାହ ସମୟରେ ଲୋକେ କହୁଥିଲେ ପାଗଳା ବର । ଶିବ ଆସିଛନ୍ତି ଶ୍ୱଶୁର ଘରକୁ, ସମସ୍ତେ କହି ଲାଗିଲେ, ହାୟ ହାୟ ଉମା, ତୋ କପାଳରେ ଏଇଆ ଥିଲା ! ଶେଷକୁ ଗୋଟାଏ ଗଞ୍ଜୋଡ଼ ହାତରେ ପଡ଼ିଲୁ ? ଏବେ ତ ଆହୁରି କେତେ କଥା କାନକୁ ଆସୁଛି । ଯାଇ ପହଞ୍ଚି କଅଣ ଦେଖିବି କେଜାଣି ।

ଘର ଭିତରେ କେଉଁଠି ଲୁଚି ରହିଛନ୍ତି ସାରଦା । କିନ୍ତୁ ହୃଦୟର ନଜର ଏଡ଼େଇ ଯିବାର ଉପାୟ ନାହିଁ । ସେ ଠିକ୍ ଠାବ କରି ପକେଇଲା ସାରଦାଙ୍କୁ । କହିଲା, 'ହେଇ ଦେଖ, ତୁମ ପାଇଁ କେତେ ପଦ୍ମ ଫୁଲ ନେଇ ଆସିଛି ।' ସାରଦା ଲଜ୍ଜାରେ ସଂକୁଚିତ ହୋଇ ପଡ଼ିଲେ । କେମିତି ଖସି ଚାଲିଯିବେ, କନ କନ ହୋଇ ଚାହିଁଲେ ଏଣିକି ତେଣିକି । 'ନା, ନା, ଟିକିଏ ରୁହ । ଏଇ ପଦ୍ମ ଫୁଲରେ ତୁମ ପାଦ-ପଦ୍ମ ଦୁଇଟି ପୂଜା କରି ଦିଏ ।'

କିନ୍ତୁ ଯାହାଙ୍କର ପାଦ ପଦ୍ମ ଦର୍ଶନ ଆଶାରେ ସାରଦା ଧାଇଁ ଆସିଛନ୍ତି ସେ କାହାନ୍ତି ? କେଉଁଠି ଅଛନ୍ତି ?

ଦୂରରୁ ଦେଖିଲେ ରାମକୃଷ୍ଣଙ୍କୁ । କି ରୂପ ! କି ରଙ୍ଗ ! ସୌନ୍ଦର୍ଯ୍ୟ ସେ ଦେହରେ ସ୍ଥିର ହୋଇ ବସି ନାହିଁ, ଆନନ୍ଦରେ ଯେପରି ଖେଳି ବୁଲୁଛି ।

ଘରୁ ବାହାରି ଦାଣକୁ ପାଦ ବଢ଼ାଇଲା ମାତ୍ରେ ସ୍ତ୍ରୀ ପୁରୁଷ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖନ୍ତି ରାମକୃଷ୍ଣଙ୍କୁ ! ଦିନେ ଯାଉଛନ୍ତି ବୁଲିବାକୁ ଭୂତି-ଖାଲ ଜୋର ଆଡ଼କୁ, ସାଙ୍ଗରେ ହୃଦୟ । ସ୍ତ୍ରୀଲୋକମାନେ କଳସୀ ଧରି ଆସିଛନ୍ତି ଜୋରକୁ ପାଣି ନେବା ପାଇଁ । ପାଣି ନେବେ କଅଣ ? ସମସ୍ତେ ଚାହିଁ ଦେଖୁଛନ୍ତି ଏକ ଲୟରେ । କୁହା କୁହି ହେଉଛନ୍ତି, ହେଇ, ହେଇ ଠାକୁର- ହେଇ ରାମକୃଷ୍ଣ ! ଆଙ୍ଗୁଠିରେ ଦେଖେଇ ଦେଉଛନ୍ତି ପରସ୍ପରକୁ ।

'ଆରେ ହୃଦୁ, ମୋ ମୁଣ୍ଡରେ ଓଢ଼ଣା ପକେଇ ଦେରେ, ଓଢ଼ଣା ପକେଇ ଦେ -'

ହୃଦୟ ଅବାକ୍ । ଅନେଇଲା ମୁହଁକୁ ।

'ଆରେ, ସେମାନେ ମୋର ଏଇ ବାହାରର ରୂପଟାକୁ ଦେଖୁଛନ୍ତି । ସବୁ ସରିଗଲା ! ଚଞ୍ଚଳ ମୋ ମୁଣ୍ଡରେ ଓଢ଼ଣା ଦେ । ନ ହେଲେ ମୁଁ ଏଇ ମୁହୂର୍ତ୍ତରେ ଲଙ୍ଗଳା ହୋଇ ପଡ଼ିବି !'

'ନା, ନା, ମାମୁଁ, ଏଠି ସେ ସବୁ କିଛି କର ନାହିଁ ।' ହୃଦୟ କହିଲା ଗମ୍ଭୀର ଭାବରେ: 'ଏଠି ଲଙ୍ଗଳା ହେଲେ ଲୋକେ କହିବେ କଅଣ ?'

'ଆରେ, ନ ହେଲେ ଯେ ଯିବେ ନାହିଁ ଏମାନେ ।'

'ହଉ, ରୁହ, ମୁଁ ତୁମ ମୁହଁ ଢାଙ୍କି ଦେଉଛି । ଆଉ କେହି ଦେଖି ପାରିବେ ନାହିଁ ।' ରାମକୃଷ୍ଣଙ୍କ କାନ୍ଧରେ ଖଣ୍ଡିଏ ଚଦର ପଡ଼ିଥିଲା । ସେଇଟା ଆଣି ମୁଣ୍ଡ ଉପରେ ପକାଇ ମୁହଁ ଘୋଡ଼ାଇ ଦେଲା ।

ରାତି ଥାଉ ଥାଉ ରାମକୃଷ୍ଣ ଉଠନ୍ତି ବିଛଣାରୁ । ଉଠି ପଡ଼ି ସଙ୍ଗେ ସଙ୍ଗେ ବରାଦ୍ କରନ୍ତି ସାରଦାଙ୍କୁ ଏବଂ ଲକ୍ଷ୍ମୀ-ମା'ଙ୍କୁ, ଆଜି ଏଇ ଏଇ ଜିନିଷ ରାନ୍ଧ, ଏଇୟା ସବୁ ଖାଇବି । ଫରମାସ ମୁତାବକ ସବୁ ଜିନିଷ ଯୋଗାଡ଼ କରି ଦୁଇ ଜଣ ମିଶି ରାନ୍ଧନ୍ତି । ଦିନେ ଦେଖିଲା ବେଳକୁ ଫୁଟଣ ନାହିଁ । ଲକ୍ଷ୍ମୀ-ମା କହିଲେ, 'ନ ଥାଉ । ନାହିଁ ତ ନାହିଁ । କଅଣ ଆଉ କରାଯିବ ? ସେମିତି ରାନ୍ଧି ଦିଅ ।' କଥାଟା ପଡ଼ିଗଲା ରାମକୃଷ୍ଣଙ୍କ କାନରେ । କହି ଉଠିଲେ, 'କଅଣ ହେଲା ? ଫୁଟଣ ନାହିଁ ? କାହାକୁ ପଠେଇ ପଇସା-କର ନେଇ ଆସୁନ ଦୋକାନରୁ ? ଯେଉଁଥିରେ ଯାହା ଲାଗେ ସେଇଟା ନ ପଡ଼ିଲେ ଚଳିବ କେମିତି ? ତୁମର ଏଇ ଫୁଟଣ -ଛୁଙ୍କ ତରକାରୀ ଲୋଭରେ ଦକ୍ଷିଣେଶ୍ୱରର ମାଛ-ମୁଣ୍ଡ ପାୟସ ଛାଡ଼ି ଧାଇଁ ଆସିଛି ଏଠିକି; ତୁମେ କହୁଛ କଅଣ ନା ଫୁଟଣ ନାହିଁ ତ ସେମିତି ବଘାରି ଦିଅ !'

ଲାଜରେ ସତେ କି ମରିଗଲେ ଦି' ଯା ।

ପର ମୁହୂର୍ତ୍ତରେ ପୁଣି କଥା ବଦଳେଇ କହନ୍ତି, 'ମୋର ଇଏ ହେଲା କଅଣ ? ସକାଳୁ ଉଠିବା ବେଳୁ ଖାଲି କଅଣ ଖାଇବି, କଅଣ ଖାଇବି, ଏଇ ଚିନ୍ତା ! ରାମ୍ ରାମ୍ !'

ଦିନେ ଦୁଇ ଜଣ ଏକାଠି ଖାଇ ବସିଛନ୍ତି - ରାମକୃଷ୍ଣ ଆଉ ହୃଦୟ । ରାନ୍ଧିଛନ୍ତି ବି ସେଇ ଦୁଇ ଜଣ - ଲକ୍ଷ୍ମୀ-ମା ଆଉ ସାରଦା ।

ଲକ୍ଷ୍ମୀ-ମା ପକ୍କା ରାନ୍ଧୁଣୀ, ତାଙ୍କ ତରକାରୀରେ ବେଶୀ ସୁଆଦ । ଆଉ, ସାରଦା, ପିଲା ଲୋକ, ତାଙ୍କ ରାନ୍ଧଣା ଖାଇବା ଭଳି ନୁହେଁ ।

ଲକ୍ଷ୍ମୀ—ମା ଯେଉଁ ତରକାରୀ ରାନ୍ଧିଥିଲେ ସେଇଟା ମୁହଁରେ ଦେଇ ରାମକୃଷ୍ଣ କହିଲେ, 'ବୁଝିଲୁରେ ହୃଦୟ, ଏଇଟା ଯିଏ ରାନ୍ଧିଛି ସିଏ ରାମଦାସ ବୈଦ୍ୟ ।' ତା' ପରେ ସାରଦାଙ୍କ ରନ୍ଧା ତରକାରୀରୁ ଟିକିଏ ପାଟିରେ ଦେଇ କହିଲେ, 'ଆଉ, ଏଇଟା ଯିଏ ରାନ୍ଧିଛି ସିଏ ଶ୍ରୀନାଥ ସେନ ।'

ରାମଦାସ ନାମଜାଦା ଚିକିତ୍ସକ । ଶ୍ରୀନାଥ ଗାଉଁଲି ଅନାଡ଼ି କବିରାଜ ।

ବୋଧହୁଏ ଟିକିଏ ଖୁଣ୍ଟିଦେଲେ ସାରଦାଙ୍କୁ ।

ହୃଦୟ କହିଲା, 'ହେଉ ପଛେ; ତେବେ ଏଇ ଗାଉଁଲି ଶ୍ରୀନାଥକୁ ସବୁବେଳେ ପାଇବ । ଦରକାର ପଡ଼ିଲେ ଗୋଡ଼- ହାତ ଘଷି-ଆଉଁସି ବି ଦେବ । ଖାଲି ଡାକି ଦେଲେ ହେଲା । ଆଜ୍ଞାକୁ ଅବଧାନ । ଆଉ, ରାମଦାସ ବୈଦ୍ୟ ? ତାଙ୍କ ଭିଜିଟ-ପାଉଣା କେତେ ଜାଣିଛ ? ବହୁତ ଟଙ୍କା । ସବୁବେଳେ ବି ପାଇବ ନାହିଁ ତାଙ୍କୁ । ଏଇ ଗାଉଁଲି କବିରାଜକୁ ଲୋକେ ଆଗେ ଡାକନ୍ତି । ସିଏ ହେଲା ସବୁ ବେଳର ବାନ୍ଧବ ।'

'ଠିକ୍ କଥା କହିଲୁ', ହସିଲେ ରାମକୃଷ୍ଣ: 'ସିଏ ସବୁ ବେଳ ପାଇଁ ଅଛି ।'

ଖୁବ୍ ଅସରାଏ ବର୍ଷା ହୋଇ ଛାଡ଼ି ଯାଇଛି । ଭୂତି-ଖାଲ ଢୋର ଆଡୁ ଫେରୁଛନ୍ତି ରାମକୃଷ୍ଣ । ଏକୁଟିଆ । କେହି ଆଉ ନାହିଁ ସାଙ୍ଗରେ । ପାଦରେ କଅଣ ଗୋଟାଏ ଲାଗିଲା । ଚାହିଁଦେଲେ ତଳକୁ, ଗୋଟାଏ ବିରାଟ ବଡ଼ ମାଗୁର ମାଛ । ନୂଆ ବର୍ଷା ଜଳ ପାଇ ପୋଖରୀରୁ ଉଠି ରାସ୍ତା ଉପରକୁ ଚାଲି ଆସିଛି । ମାଛଟାକୁ ପାଦରେ ଠେଲି ଠେଲି ଆଣି ଛାଡ଼ି ଦେଲେ ପୋଖରୀରେ । 'ପଳା ! ପଳା !! ପଳେଇ ଯା । ହୃରୁଦା ଦେଖି ପକେଇଲେ ତୁ ଆଉ ଜୀବନ ପାଇବୁ ନାହିଁ !'

ଫେରି ଆସି ହୃଦୟକୁ କହିଲେ, 'ଏତ୍ତେ ବଡ଼ ମାଗୁରଟାଏ - ହଳଦୀ ଗଣ୍ଠି ପରି ରଙ୍ଗ- ପୋଖରୀରୁ ଉଠି ଆସିଥିଲା ରାସ୍ତା ଉପରକୁ-'

'କାହିଁ ? ଗଲା କୁଆଡ଼େ ? କଲ କଅଣ ?' - ହୃଦୟ ଅନେଇଲା ଏ-ପାଖ ସେ-ପାଖ ।

'ପୋଖରୀରେ ଛାଡ଼ି ଦେଲି ।'

'କଅଣ କଲ ତୁମେ, ମାମୁଁ ! ଏଡ଼େ ବଡ଼ ମାଛଟାକୁ ଛାଡ଼ିଦେଲ ? ଆଃ, ନେଇ ଆସିଥାଆନ୍ତ ଯଦି,କେଡ଼େ ବଢ଼ିଆ ଝୋଳ ହେଇ ଥାଆନ୍ତା-'

ଜୟରାମବାଟିର ଘଟଣା । ରାତି ପାହି ବେଳ ଆନ୍ଦାଜ ଘଡ଼ିଏ । ବାଛୁରୀଟାଏ ଗଳା ଫଟାଇ ହମ୍ବାଳିବାରେ ଲାଗିଛି । ଗାଈ ଦୁହାଁ ହେଉଛି । ବାଛୁରୀଟାକୁ ତା' ମା ପାଖରୁ ଅଲଗା କରି ନେଇ ଖୁଣ୍ଟରେ ବାନ୍ଧି ରଖା ହୋଇଛି । ବାଛୁରୀ ଅସମ୍ଭାଳ, ମା ସ୍ତନର କ୍ଷୀର ପାଇଁ ଆର୍ତ୍ତନାଦ କରୁଛି ।

ଘର ଭିତରେ କେଉଁଠି ଥିଲେ । ବାଛୁରୀର ହମ୍ବା-ରଡ଼ି କାନକୁ ଶୁଭିଗଲା । 'ହଁ, ହଁ, ମା, ଯାଉଛି । ଯାଉଛି ରେ !' କହି ଘର ଭିତରୁ ବ୍ୟସ୍ତ ବିକଳ ହୋଇ ବାହାରି ଆସିଲେ, ସାରଦା,

କରୁଣାରୂପିଣୀ କିଶୋରୀ, 'ଯାଉଛିରେ, ଛାଡ଼ି ଦେବି !'

ଆସି ବାଛୁରୀକୁ ବନ୍ଧନମୁକ୍ତ କରି ଦେଲେ ସାରଦା ।

## ୩୪

ମାଈଁ, କଅଣ ହେଉଛି ଏ' ସବୁ ?

ଚମକି ପଡ଼ିଲେ ସାରଦା । ଲକ୍ଷ୍ମୀ ମଧ । ଦୁଇ ଜଣ ବସି ବର୍ଣ୍ଣ ପରିଚୟ ପଢୁଥିଲେ । ପଛରୁ ଆସି ହୁଙ୍କାର କରି କହିଲା ହୃଦୟ, 'ବହି ପଢ଼ା ହେଉଛି ?'

ସାରଦାଙ୍କ ହାତରୁ ବହି ଛଡ଼ାଇ ନେଲା । କହିଲା, 'ଝିଅ ପିଲାଙ୍କର ପାଠ ପଢ଼ିବା ମନା, ଜାଣି ନ' ? ଶେଷକୁ ନାଟକ ନଭେଲ ପଢ଼ିବ, ନା କଅଣ ?'

ଲକ୍ଷ୍ମୀ ହାତରୁ ବି ବହି ଛଡ଼ାଇ ଆଣିବାକୁ ଗଲା, ପାରିଲା ନାହିଁ ।

ସିଏ ତ ଝିଆରୀ । କାହିଁକି ଶୁଣିବ ହୃଦୟର କଥା ? ସିଧା ଗଲା ପଢ଼ିବା ପାଇଁ ପାଠଶାଳାକୁ ।

ସାରଦା ମଧ ଲୁଚେଇ କରି ଆଉ ଖଣ୍ଡିଏ ବର୍ଣ୍ଣ ପରିଚୟ ବହି କିଣେଇ ଆଣିଲେ । ଲକ୍ଷ୍ମୀ ପାଠଶାଳାରୁ ପଢ଼ି ଆସି ସାରଦାଙ୍କୁ ପଢ଼ାଏ ।

ଲେଖା-ପଢ଼ା ଶିଖି ଲାଭ କଅଣ ?

ପାଞ୍ଜି କହୁଛି ଏତେ ବର୍ଷା ହେବ, କିନ୍ତୁ ପାଞ୍ଜିକୁ ଧରି ଚିପୁଡ଼ିଲେ ଟୋପାଏ ହେଲେ ଜଳ ବାହାରିବ ନାହିଁ । ବେଶୀ ନ ହେଉ, ମାତ୍ର ଟୋପାଏ ପଡ଼; ନା, ତା' ବି ନୁହେଁ ।

ପଢ଼ିବା ଅପେକ୍ଷା ଶୁଣିବା ଭଲ । ଶୁଣିବା ଠାରୁ ଦେଖିବା ଭଲ । ଗୁରୁଙ୍କ ମୁହଁରୁ ଅଥବା ସାଧୁଙ୍କ ମୁହଁରୁ ଶୁଣିଲେ ବେଶୀ ଧାରଣା ହୁଏ । ଶାସ୍ତ୍ରର ଅସାର ଅଂଶ ଗୁଡ଼ାକ ଉପରେ ଆଉ ମୁଣ୍ଡ ଖେଳେଇବାକୁ ପଡ଼େ ନାହିଁ । ଶୁଣିବା ଠାରୁ ଦେଖିବା ଆହୁରି ଭଲ । ଦେଖିଦେଲା ପରେ ଆଉ ସନ୍ଦେହ ରହେ ନାହିଁ । ଶାସ୍ତ୍ରରେ ତ ଅନେକ କଥା ରହିଛି । କିନ୍ତୁ ଈଶ୍ୱର ଦର୍ଶନ ଯଦି ହୋଇ ନ ପାରିଲା, ତାଙ୍କ ପାଦପଦ୍ମରେ ଯଦି ଭକ୍ତି ନ ଆସିଲା, ତେବେ ସବୁ ବୃଥା ।

ତୋତାପୁରୀ କହିଥିଲେ, ସ୍ତ୍ରୀକୁ ନିଜ ପାଖରେ ରଖିବ । ସ୍ତ୍ରୀ ପାଖରେ ଥାଇ ମଧ ଯାହାର ତ୍ୟାଗ-ବୈରାଗ୍ୟ-ବିବେକ-ବିଜ୍ଞାନ ଅତୁଟ ରହିପାରେ, ସେହି ହେଉଛି ପ୍ରକୃତ ବ୍ରହ୍ମଜ୍ଞ ।

ସାରଦାଙ୍କୁ ପାଖକୁ ଡାକି ଆଣିଲେ ରାମକୃଷ୍ଣ । ଈଶ୍ୱର-କଥା ଶୁଣାଇଲେ ।

'ଜହ୍ନ ମାମୁଁ ସବୁ ପିଲାଙ୍କ ମାମୁଁ । ସେହିଭଳି ଈଶ୍ୱର ସମସ୍ତଙ୍କର ଆପଣାର ଲୋକ । ତୁମେ ଯଦି ଡାକିବ, ତୁମକୁ ବି ଦେଖା ଦେବେ ।' ପାଖରେ ବସାଇ କଥାରେ ସ୍ନେହ ମିଶାଇ କହିଲେ, 'ବହି, ଶାସ୍ତ୍ର, ଏମାନେ ସବୁ ଈଶ୍ୱରଙ୍କ ପାଖକୁ ଯିବାର ବାଟଟା ବତେଇ ଦିଅନ୍ତି । ଥରେ ବାଟ ଚିହ୍ନି ଗଲେ ଆଉ ବହି-ଶାସ୍ତ୍ର କଅଣ ଦରକାର ? ସେତେବେଳେ ନିଜେ କାମ କରିବା ଦରକାର ।'

ବନ୍ଧୁ ଘରକୁ ବେଭାର ଯିବ । ଜିନିଷ ପତ୍ରର ତାଲିକା ସହିତ ଚିଠି ଆସିଛି - ଏଇ ଏଇ

ସବୁ ଜିନିଷ ପଠେଇବ । ଚିଠିଟା ମିଳୁ ନାହିଁ । ବହୁତ ଖୋଜା ଖୋଜି ପରେ ମିଳିଲା । ସମସ୍ତେ ଖୁସି । ଦେଖିଲ, ଚିଠିରେ କଅଣ ଲେଖା ହୋଇଛି, କଅଣ ସବୁ ପଠେଇବା ପାଇଁ ବରାଦ୍ ଆସିଛି । ହାଣ୍ଡିଏ ମିଠା ଆଉ ଖଣ୍ଡିଏ ଲୁଗା । ବେଶ୍, ହେଇଗଲା । ଆଉ କଅଣ ହେବ ଚିଠି ? ଏଣିକି ଉଡ଼ି ଯାଉ କି ପୋଡ଼ି ଯାଉ, ପରବାଏ ନାହିଁ । ଅସଲ ଖବର ତ ଜଣା ପଡ଼ି ସାରିଛି । ଚିଠି ଦରକାର ସେ ପର୍ଯ୍ୟନ୍ତ ଯେଉଁ ପର୍ଯ୍ୟନ୍ତ ତତ୍ତ୍ୱର ଖବର ଜଣା ଯାଇ ନାହିଁ । ଜାଣିଗଲା ପରେ, କେବଳ ଜିନିଷ ସଂଗ୍ରହର ଚେଷ୍ଟା ।

କୃପା ହେଲେ ଯାଇ ପାଇବ । କିନ୍ତୁ ସେଇ କୃପା ପାଇବ କେମିତି ? କୃ ଆଉ ପା, ଏଇ ଦୁଇଟି ମିଶି କୃପା । କର, କଲେ ପାଇବ । ଅତଏବ କାମ କର । କର୍ତ୍ତବ୍ୟ କର । 'ଶରୀରଂ କେବଳଂ କର୍ମଂ ।'

'ତୁମେ ହେବ ମୋର ବିଦ୍ୟାରୂପିଣୀ ସ୍ତ୍ରୀ,' ସାରଦାଙ୍କୁ କହିଲେ ରାମକୃଷ୍ଣ ।

ବିଦ୍ୟାରୂପିଣୀ ସ୍ତ୍ରୀ ଭଗବାନଙ୍କ ଆଡ଼କୁ ନେଇଯାଏ । ଆଉ, ଅବିଦ୍ୟାରୂପିଣୀ ସ୍ତ୍ରୀ ଈଶ୍ୱରଙ୍କ କଥା ମନରୁ ଭୁଲେଇ ଦିଏ, ସଂସାର କଥାରେ ମନକୁ ବୁଡ଼େଇ ରଖେ । ଯେଉଁଠି ବିଦ୍ୟାର ସଂସାର, ସେଠି ସ୍ୱାମୀ ସ୍ତ୍ରୀ ଦୁଇ ଜଣ ଯାକ ଈଶ୍ୱରଙ୍କ ଭକ୍ତ । ଈଶ୍ୱର ହିଁ ତାଙ୍କ ପାଇଁ ଏକମାତ୍ର ଆପଣାର ଲୋକ, କାଳ କାଳ ପାଇଁ ଆପଣାର । ସେମାନେ ହେଲେ ପାଣ୍ଡବଙ୍କ ଭଳି । ସୁଖ ଆସୁ, ଦୁଃଖ ଆସୁ, କେବେ ହେଲେ ତାଙ୍କୁ ମନରୁ ଅନ୍ତର କରନ୍ତି ନାହିଁ ।

କିନ୍ତୁ ଅବିଦ୍ୟାରୁ ଯଦି ଅଜ୍ଞାନ ଆସୁଥାଏ, ତେବେ ଈଶ୍ୱର ଏଇ ଅବିଦ୍ୟା ଭିଆଇଛନ୍ତି କାହିଁକି ?

ଏଇଟା ତାଙ୍କ ଲୀଳା । ମନ୍ଦ ନ ରହିଲେ ଭଲଟାକୁ ବୁଝିବ କେମିତି ? ଉପରର ଚୋପା ଅଛି ବୋଲି ସିନା ଆମ୍ବ ବଡ଼ ହୁଏ, ପାଚେ । ପୂରା ବଡ଼ ହୋଇ ପାଚିଗଲା ପରେ ଚୋପାଟାକୁ ବାହାର କରି ଫୋପାଡ଼ି ଦିଆଯାଏ । ମାୟା-ରୂପକ ଆବରଣଟି ଅଛି ବୋଲି କ୍ରମେ କ୍ରମେ ବ୍ରହ୍ମସ୍ୱାଦ ଆସେ ।

ବ୍ରାହ୍ମଣୀ କିନ୍ତୁ ମହା ରୁଷ୍ଟ । ସାରଦାଙ୍କ ସହିତ ରାମକୃଷ୍ଣଙ୍କର ଏତେ ଘନିଷ୍ଠତା ତାଙ୍କର ପସନ୍ଦ ନୁହେଁ । ସେ କହନ୍ତି, ଏହା ଦ୍ୱାରା ବ୍ରହ୍ମଚର୍ଯ୍ୟ ହାନି ହେବ ।

ସାରଦା ତ ସହଜେ ସରଳା । କଥା ଶୁଣି ଡରି ଯାଆନ୍ତି । ରାମକୃଷ୍ଣ ହସନ୍ତି ।

ଦିନେ ବ୍ରାହ୍ମଣୀ ରାମକୃଷ୍ଣଙ୍କୁ ଗୌରାଙ୍ଗ ବେଶରେ ସଜାଇ ଦେଲେ । ସଜାଇ ଦେବା ମାତ୍ରେ ରାମକୃଷ୍ଣଙ୍କର ଗୌରାଙ୍ଗ-ଭାବ ଆସିଗଲା ।

ସାରଦାଙ୍କୁ ଡକାଇ ଆଣିଲେ ବ୍ରାହ୍ମଣୀ । ପଚାରିଲେ, 'କିଭଳି ହୋଇଛି ?'

ଭାବାବେଶ ଅବସ୍ଥା ଦେଖି ଡରିଗଲେ ସାରଦା । କୌଣସି ପ୍ରକାରେ ନିଜକୁ ସମ୍ଭାଳି ନେଇ ପ୍ରଣାମ କରି ତରତର ହୋଇ ପଳାଇ ଆସିଲେ ।

ବ୍ରାହ୍ମଣୀଙ୍କର ନିଜ ମନର ଧାରଣା, ରାମକୃଷ୍ଣଙ୍କର ଯାହା କିଛି ଦିବ୍ୟ ବେଦନା, ସେ ସବୁ ତାଙ୍କରି ଯୋଗୁଁ । ସତେ ଯେପରି ଅନ୍ଧକୁ ସେ ଚକ୍ଷୁଷ୍ମାନ କରାଇ ଦେଇଛନ୍ତି ।

ମହାମାୟାଙ୍କର ବିଚିତ୍ର ଲୀଳା । ବ୍ରାହ୍ମଣୀଙ୍କ ମନକୁ ଅହଂକାର ଗ୍ରାସିଲା । କେଉଁ କଥାରୁ କଅଣ ହେଲା କେହି କିଛି ବୁଝିପାରିଲେ ନାହିଁ ।

ଚିନୁ ଶଙ୍ଖାରୀ ସେ ପର୍ଯ୍ୟନ୍ତ ବଞ୍ଚିଥାଏ । ବହୁତ ବୁଢ଼ା ହୋଇ ଗଲାଣି । ପ୍ରାୟ ଅଥର୍ବ । ରାମକୃଷ୍ଣଙ୍କ ପାଖକୁ ଆସିଛି, ପ୍ରସାଦ ପାଇବା ପାଇଁ । ତା' ଭକ୍ତିରେ ବ୍ରାହ୍ମଣୀ ବହୁତ ଖୁସି । ପ୍ରସାଦ ପାଇ ସାରି ଅଇଁଠାପତ୍ର ଉଠେଇବାକୁ ଯାଉଛି ଚିନୁ, ବ୍ରାହ୍ମଣୀ କହିଲେ, ଥାଉ, ଥାଉ, ମୁଁ ଉଠେଇ ଦେବି ।' ଚିନୁ ମାନିବାକୁ ନାରାଜ । କିନ୍ତୁ ବ୍ରାହ୍ମଣୀଙ୍କ କଠୋର ନିଷେଧ ଶୁଣି ତା' ହାତ ଅଟକି ଗଲା । ମାତ୍ର ହୃଦୟ ଧାଇଁ ଆସିଲା ପାଟି କରି । ଇଏ କି ଅନାଚାର !

ଗାଁର ଆଉ ଯେଉଁ କେତେ ଜଣ ବ୍ରାହ୍ମଣ ଘରର ଝିଅ-ବୋହୂ ସେଠି ଥିଲେ ସେମାନେ ମଧ୍ୟ ବ୍ରାହ୍ମଣୀ କଥାର ବିରୋଧ କଲେ । ଏ ସବୁ ଅନୀତି ଏଠି ଚଳିବ ନାହିଁ ।

ବ୍ରାହ୍ମଣୀ ଗର୍ଜି ଉଠିଲା । 'ଚିନୁ ଜଣେ ଭକ୍ତ । ତା' ଅଇଁଠା ଉଠେଇବାରେ ଦୋଷ କେଉଁଠି ?'

ହୃଦୟ ଚିତ୍କାର କରି କହିଲା, ' ଶଙ୍ଖାରୀର ଅଇଁଠା ଉଠେଇବ, ଯା' ପରେ ରହିବ କେଉଁଠି ? କିଏ ଜାଗା ଦେବ ତୁମକୁ ରହିବା ପାଇଁ ? ଶୋଇବ କେଉଁଠି ?'

ସମାନ ତାଳ ଦେଇ ଉତ୍ତର ଦେଲେ ବ୍ରାହ୍ମଣୀ,' ମନସା ଶୋଇବ ଶୀତଳାଙ୍କ ଘରେ ।'

ଏଇ କଥାରୁ ଆରମ୍ଭ ହୋଇଗଲା ଭୀଷଣ ଝଗଡ଼ା । ''ଯେ ଦେଶେ ଯାଇ ସେ ଫଳ ଖାଇ ।'' ଯେଉଁଠି ଯେଉଁ ରୀତି ତାକୁ ମାନିବା ଉଚିତ । ଏହି ସାଧାରଣ ନୀତି-କଥାଟି ଭୁଲିଗଲେ ବ୍ରାହ୍ମଣୀ । ହୃଦୟ ବି ଛାଡ଼ିବା ଲୋକ ନୁହେଁ । କ୍ରୋଧରେ ହତଜ୍ଞାନ । କଥା କଟାକଟିରୁ ହାତ ଉଠା-ଉଠି । ବ୍ରାହ୍ମଣୀ ଧାଇଁ ଆସିଲେ ତ୍ରିଶୂଳ ଉଞ୍ଚେଇ । ହାତ ପାଖରେ କଅଣ ଗୋଟାଏ ପଡ଼ିଥିଲା, ହୃଦୟ ସେଇଟା ଉଠେଇ ଛାଟି ଦେଲା ବ୍ରାହ୍ମଣୀଙ୍କ ଉପରକୁ, ଆସି ଲାଗିଲା ବ୍ରାହ୍ମଣୀଙ୍କ କାନ ପାଖରେ । ଝର ଝର ହୋଇ ରକ୍ତ ବହି ପଡ଼ିଲା । ବ୍ରାହ୍ମଣୀ ବସି ପଡ଼ି କାନ୍ଦିବାକୁ ଲାଗିଲେ ।

ବ୍ୟସ୍ତ ହୋଇ ପଡ଼ିଲେ ରାମକୃଷ୍ଣ । 'ତୁ କାହିଁକି ଏ କାମ କଲୁ ରେ, ହୃଦୁ ? ଆରେ, ସିଏ ପରା ଭକ୍ତିମତୀ ଯଶୋଦା । ଏ ଭଳି ହେଲେ ଏଠି ଲୋକ ଭିଡ଼ ଜମିବ, ବଦ୍‌ନାମ ହେବ-'

ହେଲେ, ଯାହା ତ ହେବାର ହୋଇସାରିଲାଣି । ଏବେ ଉପାୟ ? ରାମକୃଷ୍ଣ ନିଜେ ଉପାୟ ବାହାର କଲେ । ବ୍ରାହ୍ମଣୀଙ୍କ ମନରେ ଭାବ ଆଣିଦେଲେ, ଭୟର ଭାବ ।

ବସିଛନ୍ତି, ହଠାତ୍ ଭୟରେ ଆଖି ତରାଟି ଉପରକୁ ଅନେଇ ରହି ଯାଉଛନ୍ତି । ଥରେ ନୁହେଁ, ବାରମ୍ବାର । ପ୍ରସନ୍ନମୟୀଙ୍କୁ ନାଁ ଧରି ଡାକି କହିଲେ, 'ଆଲୋ ପ୍ରସନ୍ନ, ମୋର ଏ' କଅଣ ହେଲା ? ମୁଁ ଏବେ କରିବି କଅଣ ? କୋଉଠିକି ଯିବି ? ଜଗନ୍ନାଥ ଯିବି, ନା ବୃନ୍ଦାବନ ଯିବି ?'

ଦିନେ ସତରେ କେଉଁଆଡ଼େ ଚାଲିଗଲେ ବ୍ରାହ୍ମଣୀ, କେହି କିଛି ଜାଣି ପାରିଲେ ନାହିଁ । ନିରବଚ୍ଛିନ୍ନ ଛଅ ବର୍ଷ ରହିବାର ମାୟା ତୁଟିଗଲା ଗୋଟାଏ ମୁହୂର୍ତ୍ତରେ ।

ଚତୁର୍ମାସ୍ୟା ସମୟରେ ଏବେ ରାମକୃଷ୍ଣ ବରାବର ଆସନ୍ତି କାମାରପୁକୁର । ସେଥର

ଆସି ଅସୁସ୍ଥ ହୋଇପଡ଼ିଲେ । ପେଟର ରୋଗ । ପଥ୍ୟ ସାଗୁ-ବାର୍ଲି ।

ରାତିରେ ଖିଆପିଆ, ପରେ ସବୁ ପାଇଟି ଛିଣ୍ଡେଇ ଶୋଇବାକୁ ଗଲେ ସ୍ତ୍ରୀଲୋକମାନେ । ହଠାତ୍ ଭାବାବେଶରେ ଟଳ ମଳ ହୋଇ ଘରର ଦରଜା ଖୋଲି ବାହାରି ଆସିଲେ ରାମକୃଷ୍ଣ । ଲକ୍ଷ୍ମୀ-ମାଙ୍କୁ ଉଦ୍ଦେଶ୍ୟ କରି ବଡ଼ ପାଟିରେ କହିଲେ, 'କଥା କଅଣ ? ତୁମେ ସବୁ ଶୋଇ ପଡ଼ିଲ, ମୋତେ ଖାଇବାକୁ ଦେବ ନାହିଁ ?'

କଥା ଶୁଣି ବୁଦ୍ଧି ହଜିଗଲା ସମସ୍ତଙ୍କର । ଲକ୍ଷ୍ମୀ-ମା ସାହସ କରି କହିଲେ, 'କି କଥା କହୁଛ ? ତୁମେ ପରା ଏବେ ଖାଇଲ ଦୁଧ-ବାର୍ଲି ?'

'କାହିଁ ? କେତେବେଳେ ଖାଇଲି ? ମୁଁ ତ ଏଇ ସିଧା ଆସୁଛି ଦକ୍ଷିଣେଶ୍ୱରରୁ । କେତେବେଳେ ମୋତେ ଖାଇବାକୁ ଦେଲ ?'

ସମସ୍ତେ ବୁଝିଲେ, ଭାବାବେଶ ହୋଇଛି । ହେଲେ, ଏବେ କରାଯିବ କଅଣ ? ଘରେ ତ ତାଙ୍କୁ ଖାଇବାକୁ ଦେବା ଭଳି ନାହିଁ କିଛି ସେମିତି । କଅଣ ଦିଆଯିବ ଏଇ ପେଟ-ରୋଗୀ ଲୋକକୁ ? ଏଇ ଅବେଳରେ ?

'ଘରେ ତ ନାହିଁ କିଛି ସେ ଭଳି...' ଦୋ-ଦୋ ପାଞ୍ଚ ହୋଇ କହିଲେ ଲକ୍ଷ୍ମୀ ମା, ' କେବଳ ମୁଢ଼ି ଅଛି । ଖାଇବ ? ଅଳ୍ପ ଦି'ଟା ଖାଇ ଦିଅ । କିଛି ଖରାପ କରିବ ନାହିଁ ।'

ଗୋଟାଏ ଥାଳିରେ ମୁଢ଼ି ଆଣି ରଖିଲେ ଆଗରେ । ମୁହଁ ବୁଲାଇ ନେଲେ ରାମକୃଷ୍ଣ । 'ଖାଲି ମୁଢ଼ି ଖାଇବି ନାହିଁ ।'

କିନ୍ତୁ ଘରେ ତ ଆଉ କିଛି ବୋଲି କିଛି ନାହିଁ । ଏଣେ, ତୁମର ତ ପେଟ ରୋଗ, କଅଣ ବା ଆଉ ଦିଆଯାଇ ପାରିବ ତୁମକୁ ? ଦୋକାନ ବଜାର ତ ବନ୍ଦ ହୋଇ ସାରିଲାଣି । ସାଗୁ-ବାର୍ଲି କିଣି ଆଣି ରାନ୍ଧି ଦିଆଯିବ - ତା'ର ବି ଉପାୟ ନାହିଁ । ...'

ମୁଁ ଏଇ ଖାଲି ମୁଢ଼ି ଖାଇବି ନାହିଁ । ଅଭିମାନରେ ମୁହଁ ଭାରି କଲେ ରାମକୃଷ୍ଣ ।

ନିରୁପାୟ ହୋଇ ଡାକି ଉଠେଇଲେ ପୁତୁରା ରାମଲାଲକୁ । ଦୋକାନକୁ ଗଲା । ଦୋକାନ ବନ୍ଦ କରି ଶୋଇ ପଡ଼ିଛି ଦୋକାନୀ । ଡକା-ଡକି କରି ତାକୁ ନିଦରୁ ଉଠେଇଲା ରାମଲାଲ । ସେରେ ମିଠେଇ କିଣିଲା । ଘରକୁ ଆସି ସବୁ ତକ ଥୋଇ ଦେଲା ମୁଢ଼ି-ଥାଳି ପାଖରେ । ରାମକୃଷ୍ଣଙ୍କ ଆଖିରେ ହସ ଫୁଟି ଉଠିଲା । କହିଲେ, 'ଆଉ ଗଣ୍ଡେ ମୁଢ଼ି ଦିଅ !'

ଆଉ କିଛି ମୁଢ଼ି ଆଣି ଥାଳିରେ ଦେଲେ ଲକ୍ଷ୍ମୀ-ମା । ମନ ଖୁସିରେ ଖାଇଲେ ରାମକୃଷ୍ଣ ।

ପାପ ଛୁଇଁଲା ସମସ୍ତଙ୍କ ମନକୁ । ମାସର ଅଧେ ଦିନ ସାଗୁ-ବାର୍ଲି ଖାଇ ରହିବା ଲୋକ । ତା'ର ଏଇ ଅସୁର ଭଳି ଖାଇବା, ରାତି ଅଧରେ ! ପୁଣି ପେଟର ଏଇ ଅବସ୍ଥାରେ ! ଏଥରକ ବୋଧହୁଏ ଡାକ୍ତର କବିରାଜ ସବୁ ହଟିଯିବେ ।

ନାନା ଆଶଙ୍କା ଉଦ୍‌ବେଗ ଭିତରେ ରାତିଟା କଟିଲା ସାରଦାଙ୍କର । ଲକ୍ଷ୍ମୀ-ମାଙ୍କ ମନରେ ବି ଡର । କଅଣ ହେବ, କିଏ ଜାଣିଲା ?

ରାତି ପାହିଲା । ସମସ୍ତେ ଦେଖୁଛନ୍ତି, ରାମକୃଷ୍ଣ ସଂପୂର୍ଣ୍ଣ ସୁସ୍ଥ, ସ୍ୱାଭାବିକ । ଦେହରେ ରୋଗର ଚିହ୍ନବର୍ଣ୍ଣ ବି ନାହିଁ । କିଏ ତାଙ୍କ ଦେହ ଭିତରେ ବସି ରାତିରେ ଖାଇଥିଲା ସେଭଳି, କିଏ କହିବ ସେ କଥା !

ସେ'ଥର ଯାଇଛନ୍ତି ଜୟରାମବାଟି, ଶ୍ୱଶୁର ଘରକୁ । ଗୋଟାଏ ଶ୍ରାଦ୍ଧ କି କଅଣ ଥିଲା ସେଦିନ । ବହୁତ ଲୋକ ଖାଇଲେ । ଖିଆ-ପିଆ କାମ କାମ ସାରି ବହୁତ ଡେରିରେ ସମସ୍ତେ ଶୋଇବାକୁ ଗଲେ । ରାତି ସେତେବେଳକୁ ବହୁତ ହେଲାଣି । ସମସ୍ତେ ନିଘୋଡ଼ ନିଦରେ ଶୋଇଛନ୍ତି । ହଠାତ୍ ରାମକୃଷ୍ଣ ବିଛଣାରୁ ଉଠି ପଡ଼ିଲେ । କହିଲେ, 'ମୁଁ କ'ଣ ଖାଇ ନାହିଁ ? ଭାରି ଭୋକ ଲାଗୁଛି । କଅଣ ଅଛି ଆଣ ଚଞ୍ଚଳ, ମୁଁ ଖାଇବି ।'

କଅଣ କରାଯିବ ? ଘରେ ତ ଏବେ ଆଉ କିଛି ନାହିଁ । ହାଣ୍ଡି ପୋଛା ପୋଛି । ସ୍ତ୍ରୀଲୋକମାନେ ମୁଣ୍ଡରେ ହାତ ଦେଇ ବସିଲେ ।

ଅଣ୍ଡାଳି ଦେଖିଲେ, ହାଣ୍ଡିରେ ପଖାଳ-ଭାତ କିଛି ରହିଛି । ହେଲେ, ଜୋଇଁ-ପୁଅଙ୍କୁ କଅଣ ଏଇଆ ଦେଇ ହେବ ଖାଇବାକୁ ? ଏଇ ପଖାଳ ?

ଭୟରେ କାକୁସ୍ଥ ହୋଇ ସାରଦା ଆସି କହିଲେ, ଡରି ଡରି, 'ହାଣ୍ଡିରେ ଖାଲି ପଖାଳ ଗଣ୍ଡାଏ ପଡ଼ିଛି । ଆଉ କିଛି ନାହିଁ ।'

'ଆଣ ସେଇଆକୁ,' ଅଧୈର୍ଯ୍ୟ ଭାବରେ କହିଲେ ରାମକୃଷ୍ଣ ।

ସାରଦା ତଥାପି କୁଣ୍ଠିତା । 'ତରକାରୀ ପତ୍ର କିଛି ନାହିଁ —'

'ଅଛି !' ଜୋର ଦେଇ କହିଲେ ରାମକୃଷ୍ଣ । 'ମାଛର ଯେଉଁ ବେସର ଦିଆ ବାଟି-ବସା ହୋଇଥିଲା, ଦେଖ, ଟିକିଏ ଅଧେ ଥିବ ।'

ସାରଦା ଧାଇଁଲେ ରୋଷେଇ ଘରକୁ । ଦେଖିଲେ, ବାଟିର ଗୋଟାଏ କୋଣକୁ ବକଟେ ମହୁରାଳି ମାଛ ପଡ଼ିଛି, ତା' ପାଖରେ ଅଳ୍ପ ଅଳ୍ପ ବେସର ।

ପଖାଳ ବାଢ଼ି ଆଣି ଦେଲେ, ତରକାରୀ ସେହି ମହୁରାଳି ମାଛଟି !

ରାମକୃଷ୍ଣଙ୍କର ଆନନ୍ଦ କଅଣ ଦେଖିବ ! ସେହି ଗୋଟାଏ ମାତ୍ର ମହୁରାଳି ମାଛ ଲଗାଇ ପୂରା କଂସାଏ ପଖାଳ ଖାଇଦେଲେ ।

ଛିଡ଼ା ହୋଇ ନୀରବରେ ଦେଖୁଥିଲେ ସାରଦା । ଏ କ'ଣ ଆହାର ନା ଆହୁତି !

ପାଗଳାମି ନୁହେଁ ତ ଆଉ କଅଣ ? ମନେ ମନେ ଅବଶୋଷ କରୁଥିଲେ ସାରଦାଙ୍କ ମା ।

କେବଳ ମନେ ମନେ ନୁହେଁ । ଦିନେ ମୁହଁ ଖୋଲି ମନର ଦୁଃଖ କହି ପକାଇଲେ । 'କି ପାଗଳ ଜୋଇଁ ହାତରେ ଦେଲି ମୋ ସାରଦାକୁ ! ନା ଘର-ସଂସାର କରି ପାରିଲା ନା ପୁଅ-ଝିଅଙ୍କ ମା ହୋଇପାରିଲା ! ମା- ଡାକ ଶୁଣି ପାରିଲା ନାହିଁ-'

କଥାଟା ପଡ଼ିଗଲା ରାମକୃଷ୍ଣଙ୍କ କାନରେ ।

କହିଲେ, ଆଶ୍ୱାସନା ଦେଇ, 'ମା, ଆପଣ ସେଥିପାଇଁ ଦୁଃଖ କରନ୍ତୁ ନାହିଁ । ଆପଣଙ୍କ

ଝିଅର ଏତେ ପୁଅ-ଝିଅ ହେବେ ଯେ ଦେଖିବେ, ଶେଷକୁ ମା-ଡାକ ଶୁଣି ଶୁଣି ସେ ଅଥୟ ହୋଇପଡ଼ିବ ।-'

'ଯାହା କହିଥିଲେ ଠାକୁର, ହେଇଛି ବି ଠିକ୍ ସେଇଆ, ମା । ଏଇ କଥା ଦିନେ କହିଲେ ଶ୍ରୀମା ତାଙ୍କ ସ୍ତ୍ରୀ-ଭକ୍ତମାନଙ୍କୁ । 'ମୋ ନରେନ୍, ବାବୁରାମ, ରାଖାଲ, ଶରତ । ମୋ ଦୁର୍ଗାଚରଣ ନାଗ -'

ଭକ୍ତ-ସ୍ତ୍ରୀଲୋକମାନେ ଘେରି ବସିଲେ ଶ୍ରୀମାଙ୍କୁ ।

'ମଠରେ ସେଥର ପ୍ରଥମ ଥର ପାଇଁ ଦୁର୍ଗାପୂଜା କରେଇଲା ନରେନ୍ । ମୋତେ ନେଇ ଯାଇଛି । ମୋ ହାତରେ ପଚିଶ ଟଙ୍କା ଦକ୍ଷିଣା ଦିଆ କରେଇଲା । ପୂଜାରେ ଚଉଦ ଶହ ଟଙ୍କା ଖରଚ କଲା ନରେନ୍ । ଆସି ପହଞ୍ଚିଗଲା ମୋ ପାଖରେ । କହିଲା, ମା, ମୋତେ ଜ୍ୱର କରେଇ ଦିଅ ।'' ଆଶ୍ଚର୍ଯ୍ୟ କଥା, ଟିକିଏ ପରେ ସତକୁ ସତ ଭୀଷଣ କମ୍ପ ଦେଇ ଜର ଆସିଗଲା । ଏବେ କଅଣ ହେବ !

''ଜାଣି ଶୁଣି ଜ୍ୱରକୁ ଡାକି ଆଣିଲି, ମା । ପିଲାଗୁଡ଼ାକ ଏତେ ପରିଶ୍ରମ କରୁଛନ୍ତି, ତଥାପି କାଳେ କେତେବେଳେ କିଛି ଭୁଲ-ଭଟକା କରି ପକେଇବେ, ମୁଁ ରାଗି ଯାଇ ଚାପୁଡ଼ାଟାଏ କଷି ଦେବି । ତେଣୁ ଭାବିଲି, ସେମାନେ ସବୁ କଅଣ କରୁଛନ୍ତି କରୁଥାଆନ୍ତୁ, ମୁଁ କିଛି ସମୟ ଜ୍ୱରରେ ଶୋଇ ରହେ ।'' ସବୁ କାମ ସରିଲା । ତା' ପରେ ମୁଁ ଯାଇ ଡାକିଲି, ''ନରେନ୍, ଏବେ ଉଠ'' । ''ହଁ ମା, ଉଠୁଛି'' କହି ଧଡ଼ପଡ଼ କରି ଉଠି ବସିଲା ନରେନ୍ ।

## ୩୪

ହାତେ ଲମ୍ୱ ଓଢ଼ଣା ଟାଣି ସ୍ୱାମୀଙ୍କ ପାଖକୁ ଆସନ୍ତି ସାରଦା । ଯେତେବେଳେ ପାଖରେ ଆସି ବସନ୍ତି ସେତେବେଳେ ବି ଓଢ଼ଣା ।

ଦୀପରେ ସଳିତାଟି କେମିତି ଦେବାକୁ ହୁଏ- ଏଇଠୁ ଆରମ୍ଭ କରି କିପରି ଭାବରେ ଯିବାକୁ ହୁଏ ଟ୍ରେନ୍‌ରେ ବା ନୌକାରେ, ସବୁ ତାଙ୍କୁ ଶିଖେଇଲେ ରାମକୃଷ୍ଣ । ଘର-ଗାରସ୍ଥିର ଟିକି ନିଖି କାମ, ପ୍ରତିଦିନର ଘର-କରଣା ପାଇଟି । କିଏ ନିମନ୍ତ୍ରଣ କରିଛି, ଭୋଜି ଖାଇବାକୁ ଯାଇଛ, ସେଠି କଅଣ କରିବ, କାହା ସହିତ କି ଭଳି କଥା କହିବ, ନିଜ ଘରର ଶାଗ-ସାରୁ ତିଅଣ, ସେଟା କେମିତି ହେବ, ସବୁ । ଘରେ କିଏ କି ପ୍ରକାର ଲୋକ, କାହା ସହିତ କି ପ୍ରକାର ବ୍ୟବହାର କରିବାକୁ ହେବ, ସେକଥା । କେବଳ କଅଣ ନିଜ ଘରେ ? ମନେ କର, କାହା ଘରକୁ ବୁଲିବାକୁ ଯାଇଛ, ସେଠି କି ଭଳି ଆଚାର ବ୍ୟବହାର କରିବ, ତା' ବି ଜାଣି ରଖ । ମୁଁ ସିନା ଟଙ୍କା ପଇସା ଛୁଇଁ ପାରେ ନାହିଁ, କିନ୍ତୁ ତୁମ ହାତକୁ ଟଙ୍କା ଆସିବ । ଦେବତା-ଅତିଥି ସେବା, ଭକ୍ତ-ବନ୍ଧୁ ପରିଚର୍ଯ୍ୟା, କେତେ କଅଣ କରିବାକୁ ପଡ଼ିବ ତୁମକୁ । ସବୁ କଥାର ଟିକି ନିଖି ହିସାବ ମନେ ମନେ ରଖୁଥିବ । ହିସାବଟା ଯେମିତି ଏପାଖ-ସେପାଖ ନ ହୁଏ, ଆୟକୁ ବ୍ୟୟ ଠିକ୍ ମେଳ ଖାଉଥିବ ।

କେବଳ କ'ଣ ସେତିକି ? ଏ ସବୁକୁ ଛାଡ଼ି ପୁଣି ଅଛି ଈଶ୍ୱର-ସମ୍ବାଦ । ଖାଲି କଅଣ ଏଇ ରନ୍ଧା-ବଢ଼ା ଆଉ ଘର-କରଣା କଥା ବୁଝି ଦେଇ ଚୁପ୍ ହୋଇ ବସିବ ? ସେହି ସର୍ବ-ସାକ୍ଷୀ ଭଗବାନଙ୍କର ସମ୍ଭାଷଣ ଶୁଣିବ ନାହିଁ ? କଇଁଛ ଜଳରେ ଥାଏ ସତ, କିନ୍ତୁ ତା' ମନ ରହିଛି ଆଡ଼ି ଉପରେ, ଯେଉଁଠି ତା' ଅଣ୍ଡା ଅଛି । ସ୍ତ୍ରୀଲୋକଟିଏ, ଚାକରାଣୀ କାମ କରୁଛି ବାବୁଙ୍କ ଘରେ, ତା' ମନ କିନ୍ତୁ ରହିଛି ନିଜ ଗାଁରେ, ନିଜ ଘରେ । ବାବୁଙ୍କ ପିଲାଙ୍କୁ କହୁଛି ମୋ ରାମ, ମୋ ହରି, କିନ୍ତୁ ମନେ ମନେ ସେ ଠିକ୍ ଜାଣେ ଏମାନେ ତା'ର କେହି ନୁହନ୍ତି । ଠିକ୍ ସେହିଭଳି, ସଂସାରରେ ରହି କାମ କରୁଥିବ, କିନ୍ତୁ ମନ ରଖିଥିବ ଈଶ୍ୱରଙ୍କ ଠାରେ ।

ଆଉ, ଏଇଟା ବି ଠିକ୍ କଥା ଯେ ଈଶ୍ୱର କେବଳ ଏଇ ମନଟାକୁ ହିଁ ଦେଖନ୍ତି । ଏକଲବ୍ୟ ମାଟିରେ ଦ୍ରୋଣଙ୍କ ମୂର୍ତ୍ତି ଗଢ଼ି ତା'ରି ଆଗରେ ଧନୁର୍ବିଦ୍ୟା ଅଭ୍ୟାସ କଲା । ତା' ମନର ଏକାଗ୍ରତାରେ ହିଁ ସେହି ମାଟିର ମୂର୍ତ୍ତି ତା' ପାଇଁ ବାସ୍ତବ ଗୁରୁ ହୋଇଗଲେ । କିନ୍ତୁ ମନଟାକୁ ଯଦି ବିଷୟରେ ବୁଡ଼ାଇ ରଖିବ, ସେଇଟା ହୋଇଯିବ ଓଦା ଦିଆସିଲି । ଯେତେ ଘଷିଲେ ବି ଜଳିବ ନାହିଁ ।

ଗାଁ ରେ ଲୋକେ ମାଛ ଧରିବା ପାଇଁ ବିଲରେ ଅନ୍ଧୁଲି ବସାନ୍ତି, ଦେଖିଛ ? ଅନ୍ଧୁଲି ଭିତରେ ଝିର ଝିର କରି ପାଣି ଯାଉଥାଏ, ତାକୁ ଦେଖି ସାନ ସାନ ମାଛଙ୍କର ଭାରି ଫୂର୍ତ୍ତି । ଖେଳୁ ଖେଳୁ ପଶିଯାଆନ୍ତି ଭିତରେ । ଯେଉଁ ବାଟେ ଯାଇଛନ୍ତି ସେହି ବାଟ ଦେଇ ପୁଣି ବାହାରି ବି ଆସିପାରନ୍ତେ । କିନ୍ତୁ ପାଣିର ଝର-ଝର ମିଠା ଶବ୍ଦରେ ମୋହିତ ହୋଇ ଏବଂ ଅନ୍ୟ ମାଛଙ୍କ ସହିତ ଖେଳରେ ମାତି ରହି ଥାଆନ୍ତି ଭିତରେ, ବାହାରି ଆସିବାକୁ ଚେଷ୍ଟା କରନ୍ତି ନାହିଁ । ଶେଷକୁ ଧରା ପଡ଼ି ମରନ୍ତି । ଠିକ୍ ସେହି ଭଳି ସଂସାରର ବାହାର ଚକ ମକ ଦେଖି ଲୋକମାନେ ଭାରି ଖୁସିରେ ପଶି ଯାଆନ୍ତି ତା' ଭିତରକୁ, ତା' ପରେ ମାୟା-ମୋହରେ ଛନ୍ଦି ହୋଇ ଆଉ ବାଟ ଖୋଜି ପାଆନ୍ତି ନାହିଁ । ଅନ୍ଧୁଲି ଭିତରୁ ବାହାରି ଆସିବାର ବାଟ ଥାଇ ବି ମାଛ ବାହାରି ଆସେ ନାହିଁ ।

କିନ୍ତୁ ସେଇ ମାଛଙ୍କ ଭିତରେ ପୁଣି ଏ ଭଳି ମାଛ ବି ଥାଆନ୍ତି, ଅନ୍ଧୁଲି ପାଖକୁ ଯାଇ ଘଟଣା ଦେଖି ଡେଇଁ ପଡ଼ି ଅନ୍ୟ ଆଡ଼କୁ ପଳାଇ ଯାଆନ୍ତି ।

ଏଥର ଅନ୍ୟ ଆଡ଼କୁ ଦୃଷ୍ଟି ଦିଅ । ଆକାଶ ଆଡ଼କୁ । 'ଯଃ ସର୍ବତଃ ସର୍ବଂ ଜଗଦ୍ ପ୍ରକାଶୟତି ସ ଆକାଶଃ ।' ଯେ ଚାରିଆଡ଼ରୁ ଜଗଦ୍‌କୁ ପ୍ରକାଶିତ କରୁଛନ୍ତି ସେ ଆକାଶ । ଯେ ସାମର୍ଥ୍ୟବାନ ତାଙ୍କରି ନାମ ଈଶ୍ୱର । ସର୍ବଦା ଓ ସର୍ବତ୍ର ଅଛନ୍ତି, ତେଣୁ ସେ ଭବ । ସର୍ବ-ସଂହାରକ, ତେଣୁ ଶର୍ବ । ରୋଦନ କରାନ୍ତି, ତେଣୁ ରୁଦ୍ର । ପରମ ଐଶ୍ୱର୍ଯ୍ୟବାନ, ତେଣୁ ଈଶାନ । କଲ୍ୟାଣକର୍ତ୍ତା, ତେଣୁ ଶିବ । ପଶୁ ଓ ପାଶର ଈଶ୍ୱର, ତେଣୁ ପଶୁପତି । ସମସ୍ତ ବିଶ୍ୱରେ ପୂର୍ଣ୍ଣ ହୋଇ ରହିଛନ୍ତି,ତେଣୁ ପୁରୁଷ । ସର୍ବ-ବ୍ୟାପକ ଓ ସର୍ବ-ନିୟାମକ, ତେଣୁ ଅନ୍ତର୍ଯ୍ୟାମୀ । ଭଜନର ଯୋଗ୍ୟ, ତେଣୁ ଭଗବାନ । ପୁନଶ୍ଚ, ସେ ଉତ୍ପତ୍ତି ଓ ପ୍ରଳୟ ପରେ ମଧ୍ୟ ଅବଶିଷ୍ଟ ରହନ୍ତି, ତେଣୁ ତାଙ୍କର ଅନ୍ୟ ଏକ ନାମ ବା ଆଦି-ନାମ ''ଶେଷ'' ।

ତାଙ୍କୁ ପ୍ରଣିପାତ କର । ନିଜକୁ ନିଃଶେଷ ଭାବରେ ନିବେଦନ କରି ଦିଅ ।

କିନ୍ତୁ ଜାଣି ରଖ, ସେ ଆମ ପାଇଁ କୌଣସି ଦୂରର ଜିନିଷ ବା ଦୁଷ୍ପ୍ରାପ୍ୟ ଜିନିଷ ନୁହନ୍ତି । ସେ ଆମର ବାପା-ମା । ପାଳନ କରନ୍ତି ବୋଲି ବାପା । ସନ୍ତାନର ସୁଖ-ସମୃଦ୍ଧି କାମନା କରନ୍ତି ବୋଲି ମା ।

ସ୍ତ୍ରୀ ସଙ୍ଗରେ ବସି ଏହି ସବୁ ଅସଙ୍ଗ ଆଳାପ ।

ଘୃତକୁମ୍ଭସମା ନାରୀ । ଜଳଦ୍‌ବହ୍ନି ସମାନ ପୁରୁଷ । ରଖିବ ନାହିଁ ପାଖାପାଖି । କିନ୍ତୁ ନାରୀ ଏଠି ଘୃତ ନୁହେଁ, ସମ୍ମୁଖରେ ଜଳୁଛି ଯେଉଁ ଅର୍ଚିଷ୍ମାନ୍ ଅଗ୍ନି ସେ ସେହି ଅଗ୍ନିର ଦାହିକା । ଯେଉଁ ଭାସ୍ୱର ସୂର୍ଯ୍ୟ ସେ ତାଙ୍କର ଦୀଧିତି । ''ଦେବତା ସା ନ ମାନୁଷୀ ।''

ସେଇ କଉପୁନି-ପିନ୍ଧା ସାଧୁଙ୍କ କଥା ଜାଣିଛ ?

ଗୁରୁ କହିଲେ ସାଧୁଙ୍କୁ, ନିର୍ଜନରେ ଯାଇ ସାଧନା କର । ସାଧୁ ଯାଇ ବଣ ଭିତରେ ଗୋଟାଏ ନିଛାଟିଆ ଜାଗାରେ କୁଡ଼ିଆ ଘର କରି ସେଇଠି ରହି ସାଧନ ଭଜନରେ ମନ ଦେଲେ । କିଛି ଦିନ ଗଲା । ଗୋଟାଏ ମୂଷା କୁଆଡୁ ଆସି ସେଠି ଉତ୍‌ପାତ ଆରମ୍ଭ କଲା । ଆଉ କିଛି କରେ ନା, କେବଳ ସାଧୁ ଯେତେବେଳେ ଗାଧୋଇ ସାରି ତାଙ୍କ ଓଦା ଲେଙ୍ଗୁଟିକୁ ଶୁଖାଇ ଦିଅନ୍ତି, ସେତିକିବେଳେ ଆସି ସେଇଟା ଦାନ୍ତରେ କାଟି ଟିକି ଟିକି କରି ଦିଏ । ଗାଁ ଗଣ୍ଡାକୁ ଯେତେବେଳେ ଭିକ୍ଷା କରିବାକୁ ଯାଆନ୍ତି ସାଧୁ, ଲୋକଙ୍କୁ କହନ୍ତି ନିଜର ଏଇ ଦୁର୍ଦ୍ଦଶା କଥା । ନିଇତି ଗୋଟାଏ ଗୋଟାଏ ଲେଙ୍ଗୁଟି ଆପଣଙ୍କୁ କିଏ ଦବ ? ଗୋଟାଏ ବିରାଡ଼ି ପୋଷନ୍ତୁ । ଏହି ଭଳି ପରାମର୍ଶ କେହି କେହି ଦେଲେ । ହଉ, ଭଲ କଥା । ସାଧୁ ସଙ୍ଗେ ସଙ୍ଗେ ଗୋଟାଏ ବିରାଡ଼ି ଛୁଆ ଯୋଗାଡ଼ କଲେ । ବିରାଡ଼ି ଭୟରେ ମୂଷା ପଳେଇଲା । କିନ୍ତୁ ବିରାଡ଼ି ଖାଇବ କଅଣ ? ତା' ପାଇଁ ପୁଣି ପ୍ରତିଦିନ ଯା' ତା' ପାଖରୁ ଦୁଧ ମାଗି ଆଣିଲେ । ସବୁ ଦିନେ ଆପଣାକୁ ଦୁଧ କିଏ ଦବ ? ବରଂ ଗୋଟାଏ ଗାଈ ରଖନ୍ତୁ, ବିରାଡ଼ି ପିଇବ, ଆପଣ ନିଜେ ବି ପିଇବେ । କଥାଟା ସାଧୁଙ୍କ ମନକୁ ପାଇଲା । ଗୋଟାଏ ଦୁହାଁଳ ଗାଈ ଆଣି ରଖିଲେ । ଗାଈ ପାଇଁ ଦରକାର ପଡ଼ିଲା ନଡ଼ା-କୁଟା । ଲୋକେ କିଛି ଦିନ ଦେଲେ, ତା' ପରେ ବିରକ୍ତି ପ୍ରକାଶ କଲେ । ନିତି ନିତି ଆପଣଙ୍କୁ ଛଣ-କୁଟା କିଏ ଯୋଗେଇବ ? ଆପଣ ଗୋଟାଏ କାମ କରନ୍ତୁ । ଆପଣଙ୍କ କୁଡ଼ିଆ ପାଖରେ ବହୁତ ଅନାବାଦୀ ଜମି ପଡ଼ିଛି, ଆପଣ ତାକୁ ଆବାଦ କରି ଚାଷ କରନ୍ତୁ । ଭଲ କଥାଟାଏ ତ ! ସାଧୁ ହଳ-ବଳଦ ଆଣି ଅନାବାଦୀ ଜମିରେ ଚାଷ ଆରମ୍ଭ କଲେ । ତା' ପରେ ଖଳା, ତା' ପରେ ଅମାର, ଚାଲିଲା ପଛକୁ ପଛ ଗୋଟାଏ ପରେ ଗୋଟାଏ କାମ । ସାଧୁ ଦିନରାତି କାମରେ ଲାଗିଛନ୍ତି, ଟିକିଏ ହେଲେ ଫୁରସତ୍ ନାହିଁ । ଦିନେ ଗୁରୁ ଆସି ପହଞ୍ଚିଗଲେ । ଚାରି ଆଡ଼କୁ ଚାହିଁ, ଘଟଣା ଦେଖି ଅବାକ୍ । ପଚାରିଲେ, ଏ ସବୁ କଅଣ ? ସାଧୁ ଟିକିଏ ଅପ୍ରତିଭ ବୋଧ କଲେ । ଶେଷକୁ କହିଲେ, 'ଏକ କୌପୀନ୍‌କା ଓଆସ୍ତେ ।'

ଗୋଟାଏ କୌପୁନୀ ପାଇଁ ଏତେ କଥା, ଏତେ କଷ୍ଟ ! ଏତେ ଯନ୍ତ୍ରଣା ? ତା'ହେଲେ ସଂସାରୀ ଲୋକର ସ୍ତ୍ରୀ-ପୁତ୍ର, ଚାକିରି-ବାକିରି, ଘର-ବାଡ଼ି, ଜିନିଷ-ପତ୍ର, ଟଙ୍କା-ପଇସା,

ଲୋକ-ଲୌକିକତା– ଏତେ କଥାକୁ ନେଇ ଯନ୍ତ୍ରଣାର ଶେଷ କାହିଁ ? ଚୈତନ୍ୟଦେବ ସେଥିପାଇଁ କହିଲେ, 'ଶୁଣ ଶୁଣ ନିତ୍ୟାନନ୍ଦ ଭାଇ, ସଂସାରୀ ଜୀବର ଗତି ନାହିଁ ।'

ତେବେ ତାଙ୍କ ଉପାୟ ? ରାମକୃଷ୍ଣ ହସିଲେ । କହିଲେ, ଉପାୟ ତୁମେ ।

ହଁ, ତୁମେ । ତୁମେ ସମସ୍ତ ଜୀବର ଜନନୀ । ତୁମେ ସଂସାରସାରଭୂତା ସୁରେଶ୍ୱରୀ ।

କିନ୍ତୁ ଏ ସବୁ କଥାରେ ସାରଦାଙ୍କ ମନକୁ ଷୋହୋଳ ଅଣା ସୁଖ ଆସିପାରେ ନାହିଁ । ସାହିର ସମସ୍ତେ ତାଙ୍କୁ 'ପାଗଳର ସ୍ତ୍ରୀ' ବୋଲି କହି ଚିଡ଼ାନ୍ତି । କିଶୋରୀ ବଧୂ– ସ୍ୱାମୀନିନ୍ଦା ଅସହ୍ୟ ଲାଗେ । ଘରକୁ ଅନେକ ସମୟରେ ସାହି-ପଡ଼ିଶାରୁ ଝିଅ-ବୋହୂମାନେ ବୁଲିବାକୁ ଆସନ୍ତି । କଥାରେ କଥାରେ କାଳେ କାହା ତୁଣ୍ଡରୁ ସ୍ୱାମୀନିନ୍ଦା ଶୁଣିବାକୁ ପଡ଼ିବ, ସେଥିପାଇଁ ସାରଦା ସମସ୍ତଙ୍କ ଅଜାଣତରେ ଚାଲି ଆସନ୍ତି ଭାନୁ-ପିଇସୀ ଘରକୁ । ତାଙ୍କ ଘରର ପିଣ୍ଡାରେ ପଣତ ପାରି ଶୋଇ ରହନ୍ତି । ଜାଗାଟା ନିରୋଳା ।

ଜୟରାମବାଟି ଗାଁରେ କ୍ଷେତ୍ର ବିଶ୍ୱାସଙ୍କ ଘର । ଭାନୁ-ପିଇସୀ ତାଙ୍କରି ଝିଅ । କୋଡ଼ିଏ ବର୍ଷରେ ବିଧବା ହୋଇ ଚାଲି ଆସିଲେ ବାପ ଘରକୁ । ସେହି ଦିନୁଁ ରହିଛନ୍ତି । ସାରଦାଙ୍କ ପ୍ରତି ଭାରି ସ୍ନେହ । ତା'ଛଡ଼ା ରାମକୃଷ୍ଣ ଯେତେବେଳେ ଜୟରାମବାଟି ଆସନ୍ତି, ଅନ୍ୟ ସ୍ତ୍ରୀଲୋକମାନେ ତାଙ୍କୁ 'ପାଗଳା-ଜୋଇଁ' ବୋଲି ଥଟ୍ଟା କରୁଥିଲେ ମଧ୍ୟ ଭାନୁ-ପିଇସୀ ସେ ଭଳି କିଛି କହନ୍ତି ନାହିଁ, ବରଂ ମୁଗ୍ଧ ହେଲା ପରି କେବଳ ଚାହିଁ ଦେଖନ୍ତି ନୀରବରେ ।

ପାଗଳ ? ପାଗଳ ମୁହଁକୁ ବାଡ଼ବତା ଆସିବ କୁଆଡୁ ? ଏମିତି ସବୁ କଥା କହନ୍ତି ରାମକୃଷ୍ଣ, ହସି ହସି ସ୍ତ୍ରୀଲୋକମାନଙ୍କର ପେଟ ବଥା ହୋଇଯାଏ, ଲାଜରେ ଛାଟିପିଟି ହୋଇ ପଳେଇ ଯାଆନ୍ତି ।

'ଭଲ ହେଲା । ଆଜେ-ବାଜେ ଯିଏ ସବୁ ଥିଲେ ପଳେଇଗଲେ,' କହିଲେ ରାମକୃଷ୍ଣ: 'ଏଥର ତୁମେ ସବୁ ବସ ଏଇଠି, କଥା କହିବା ।'

ପବନ ଟିକିଏ ଜୋର ନ ହେଲେ ଖରା ଦିନଟା ଭଲ ଲାଗିବ ?

ଦିନେ ଭାନୁ-ପିଇସୀଙ୍କୁ ରାମକୃଷ୍ଣ ପଚାରିଲେ, 'ତୁମ ନାଁ କଅଣ ?'

'ମାନଗରବିଣୀ ।'

ସାରଦାଙ୍କୁ ଦେଖେଇ ପୁଣି ପଚାରିଲେ, 'ଇଏ ତୁମର କଅଣ ହେବେ ? କଅଣ ବୋଲି ଡାକନ୍ତି ତୁମକୁ ?'

'ପିଇସୀ ବୋଲି ।'

'ତା' ହେଲେ, ଆଜି ଠାରୁ ତୁମ ନାଁ ହେଲା ଭାନୁ-ପିଇସୀ ।' କହି ଗୀତ ଆରମ୍ଭ କଲେ ରାମକୃଷ୍ଣ: 'ଗରବିଣୀ ନାମ ଘୁଚେଛେ' । (ଗରବିଣୀ ନାମ ଏଥର ଘୁଞ୍ଚିଲା ।)

ମୁଖାର୍ଜୀ ଘରର ପାଗଳା ଜୋଇଁ ପାଖକୁ ଭାନୁ-ପିଇସୀଙ୍କ ଯିବା ଆସିବାରେ ତାଙ୍କ ଭାଇ ଗୌରଙ୍କ ଭାରି ଆପତ୍ତି । କଥା ଶୁଣାଉଛନ୍ତି, ହଠାତ୍ ପାଟି କରି କହି ଦିଅନ୍ତି, 'ହେଇ,

ଗୌର ଭାଇ ଆସୁଛନ୍ତି ।’ ସଙ୍ଗେ ସଙ୍ଗେ ଭାନୁ-ପିଇସୀ ଭୟରେ କାଠ ପାଲଟି ଯାଆନ୍ତି । ତାଙ୍କ ଭାବ ଭଙ୍ଗୀ ଦେଖି ରାମକୃଷ୍ଣ ହସି ହସି କହନ୍ତି, ‘ଲଜ୍ଜା ଘୃଣା ଭୟ, ତିନ୍ ଥାକ୍‌ତେ ନୟ ।’ (ଲଜ୍ଜା ଘୃଣା ଭୟ- ଏହି ତିନୋଟି ଦୋଷ ଥିବା ପର୍ଯ୍ୟନ୍ତ ଇଷ୍ଟ ଲାଭ ହୋଇପାରିବ ନାହିଁ ।)

ମୁହଁ ଶୁଖେଇ ଭାନୁ ପିଇସୀ କହିଲେ, ‘ଆପଣଙ୍କ ପାଖକୁ ବେଳେ ଅଧେ ଆସୁଛି ବୋଲି ମୋତେ ବହୁତ ଗଞ୍ଜଣା ସହିବାକୁ ପଡୁଛି ।’

‘ଭଲ କଥା । ଗୋଟାଏ କାମ କରିବୁ । ତୋ ଭାଇ ଯେତେବେଳେ ଗାଳି ଦେବାକୁ ଆରମ୍ଭ କରିବ, ତୁ ସେତେବେଳେ ଦୁଇ ହାତ ଉପରକୁ ଟେକି ନାଚ ଆରମ୍ଭ କରି ଦେବୁ, ଆଉ ତୁଣ୍ଡରେ କହିବୁ ‘ଭଜ ମନ ଗୌର ନିତାଇ, ଭଜ ମନ ଗୌର ନିତାଇ ।’ ତୋ ଭାଇ ଭାବିବ ତୁ ପାଗଳ ହୋଇ ଯାଇଛୁ, ଆଉ ତୋତେ କିଛି କହିବ ନାହିଁ ।’

ଜୟରାମବାଟିରୁ କାମାରପୁକୁର ଫେରି ଯାଉଛନ୍ତି ରାମକୃଷ୍ଣ । ଅଳ୍ପ ଦୂର ଯାଇଛନ୍ତି, ହଠାତ୍ ବାଟରେ ଭେଟ ହୋଇଗଲା ଭାନୁ ସହିତ । କହିଲେ, ‘ମୋତେ ଖଣ୍ଡେ ଭଙ୍ଗା ପାନ ଖୁଆଇ ପାରିବୁ ?’

ସଙ୍ଗେ ସଙ୍ଗେ ଭାନୁ ଦଉଡ଼ିଲା ଘରକୁ ପାନ ବନେଇବା ପାଇଁ । ବନେଇ ସାରି ପାନ ଖିଲ ହାତରେ ଧରି ଆସି ଦେଖେ ତ ରାମକୃଷ୍ଣ ଅନେକ ଦୂରକୁ ଚାଲି ଗଲେଣି । ଦୌଡ଼ିଲା ପଛେ ପଛେ । କିନ୍ତୁ, ଯେତେ ହେଲେ, ସ୍ତ୍ରୀଲୋକ, କେତେ ବାଟ ଦୌଡ଼ି ପାରିବ ! ରାମକୃଷ୍ଣ ବି ଚାଲିଛନ୍ତି ବେଗେ ବେଗେ ପାହୁଣ୍ଡ ପକେଇ- ଏଇଟା ତାଙ୍କର ସବୁ ଦିନର ଅଭ୍ୟାସ । ନାଁ ଧରି ପଛରୁ ଡାକିବ, ଏ ସାହସ ବି ଆସୁନାହିଁ ଭାନୁର ମନକୁ । ତଥାପି ସେ ଅଟକୁ ନାହିଁ, ଧାଉଁଛି ପ୍ରାଣ ପଣେ । ଗୋଟାଏ ଦି’ଟା ଗାଁ ବି ଟପି ଚାଲି ଆସିଲାଣି । ତଥାପି ତା’ ଧାଇଁବାର ବିରାମ ନାହିଁ । କାହିଁକି କେଜାଣି, ରାମକୃଷ୍ଣ ହଠାତ୍ ପଛକୁ ବୁଲି ପଡ଼ି ଅଟକି ଗଲେ । ଆଖି ପଡ଼ିଲା ଭାନୁ-ପିଇସୀ ଉପରେ । ଚାହିଁ ରହିଲେ ଏଡ଼େ ଏଡ଼େ ଆଖିରେ ।

‘ଆରେ ! ତୁ ଏତେ ବାଟ ଚାଲି ଆସିଲୁ ?’

‘ଆପଣ ସେତେବେଳେ ପାନ ମାଗିଲେ । ମୁଁ ଘରକୁ ଯାଇ ଭାଙ୍ଗି ନେଇ ଆସିଛି ।’ ଭାନୁ ପିଇସୀର ମନରେ ପରିପୂର୍ଣ୍ଣ ଆନନ୍ଦର ଢେଉ ।

ଆହୁରି ଢେର ବେଶୀ ଆନନ୍ଦ ରାମକୃଷ୍ଣଙ୍କର । କହିଲେ, ‘ତୋର ହବ ରେ, ହବ ! ତୋର ହବ !’ କହି ହାତରୁ ପାନ ନେଇ ହସି ହସି ପଚାରିଲେ, ‘କଅଣ ହବ, କହିଲୁ ?’

ଭାନୁ-ପିଇସୀ ମୁହଁ ତଳକୁ କଲା । ସେ’ ବା କେମିତି ଜାଣିବ କଅଣ ହେବ !

‘ତୋ ଉପରେ ଆଜି ପ୍ରହାର ହେବ । ସ୍ତ୍ରୀ ଲୋକ ହୋଇ ଏତେ ବାଟ ଚାଲି ଆସିଲୁ, ଆଜି ଘରକୁ ଫେରିଲେ ନିସ୍ତୁକ ମାଡ଼ ! ଗୋଟାଏ କାମ କର । ବାଟରେ କୁମ୍ଭାର ଘର । କୁମ୍ଭାର ଘରୁ ଗୋଟାଏ ନୂଆ ଆଟିକା ନେଇ ହାତରେ ଧରି ଘରକୁ ଫେରିବୁ । ସମସ୍ତେ ଭାବିବେ ତୁ କୁମ୍ଭାର ଘରକୁ ଆଟିକା ଆଣିବା ପାଇଁ ଯାଇଥିଲୁ-’

ସେହି ଦିନ ଠାରୁ ଭାନୁ -ପିଇସୀ ଭକ୍ତମାନଙ୍କୁ ବରାବର ପାନ ଖୁଆନ୍ତି । କହନ୍ତି, ଠାକୁରଙ୍କ ପ୍ରସାଦୀ ପାନ । ଠାକୁର କହି ଯାଇଛନ୍ତି, ତୁମେ ମୋତେ ପ୍ରତିଦିନ ପାନ ଖୁଆଇବ । ଭକ୍ତମାନଙ୍କର ସେବା ମୋ ପାଇଁ ଠାକୁରଙ୍କ ସେବା ।

ଶ୍ୟାମାସୁନ୍ଦରୀ - ସାରଦାଙ୍କ ମା, ତାଙ୍କର ବି ଧୀରେ ଧୀରେ ମନ ବଦଳିଲା । ନିରୋଳାରେ ବସି ଠାକୁରଙ୍କ ଆରାଧନା ଆରମ୍ଭ କଲେ ।

ଭାନୁ ପିଇସୀ ତାଙ୍କୁ ଥଟା କରି କହନ୍ତି, 'କଅଣ ହେଲା ? କହୁଥିଲ ପରା ପାଗଳା-ଢୋଇଁ ! କି ଅଦ୍ଭବ ଲୋକଟା ହାତରେ ଝିଅ ଦେଲି- ମୋ ସାରଦା ଭାଗ୍ୟରେ ଏତେ ଦୁଃଖ ଥିଲା ! ନିଜେ ଏବେ ଇଏ କଅଣ କରୁଛ ? ସେଇ ପାଗଳା.ଢୋଇଁଙ୍କ ଫଟ ପୂଜା କରୁଛ !'

ଶ୍ୟାମାସୁନ୍ଦରୀ କିଛି ଉତ୍ତର ଦେଇ ପାରନ୍ତି ନାହିଁ । ନିଷ୍ପଲକ ଆଖିରେ କେବଳ ଚାହିଁ ରହନ୍ତି । ମେନକା ମଧ୍ୟ ଦିନେ ବସିଥିଲେ ଶିବଙ୍କ ଆରାଧନା କରିବା ପାଇଁ ।

କାମାରପୁକୁରରେ ଥିବା ସମୟରେ ଥରେ ଶିଓଡ଼ ଯାଇଥିଲେ, ହୃଦୟର ଘରକୁ । ଉଦ୍ଦେଶ୍ୟ ବଡ଼ ଭଉଣୀ ହେମାଙ୍ଗିନୀଙ୍କୁ ଦେଖି ଆସିବେ । ସେଠି ଘଟିଲା ଗୋଟାଏ ଅଦ୍ଭବ ଘଟଣା । ଅପା ଚାଙ୍ଗୁଡ଼ାରେ ଫୁଲ ଧରି ଆସିଲେ, କହିଲେ, ତୁମ ପାଦ-ପଦ୍ମ ବନ୍ଦନା କରିବି ।

ଯେତେ ମନା କଲେ ବି ଶୁଣିଲେ ନାହିଁ । ନିଜ ରୂପକୁ ଯେତେ ଲୁଚେଇ ରଖିଲେ ମଧ୍ୟ ମୋତେ ଆଉ ଉଣ୍ଡେଇ ପାରିବ ନାହିଁ । କହିଲେ, ଦରିଦ୍ର ଘରେ ଆଜି ଦରିଦ୍ର-ସଖା ପାଦ ଦେଇଛନ୍ତି । ଛାଡ଼ିବି ନାହିଁ ତୁମକୁ । ଜଳରେ ପାଦ ଧୋଇ ଦେଇ କେଶରେ ପୋଛିବି । କେବଳ ଗୋଟିଏ ମାତ୍ର ମୋର ମାଗୁଣି– କାଶୀ ଧାମରେ ମରିବି ।

ତଥାସ୍ତୁ । ସଜ୍ଞାନରେ କାଶୀ-ଧାମରେ ହିଁ ପ୍ରାଣ ତ୍ୟାଗ କରିଥିଲେ ହେମାଙ୍ଗିନୀ ।

ଭାନୁ-ପିଇସୀଙ୍କର ବାୟୁ ବିକାର ରୋଗ । ରାତିରେ ନିଦ୍ଦ ହେଉ ନାହିଁ । ଉଠି ବସିଲେ ଅନ୍ଧାର ଭିତରେ । 'କାହିଁକି ମୋତେ ନିଦ ଆସୁନାହିଁ ?' କହୁ କହୁ କାନ୍ଦି ପକାଇଲେ ।

'ନିଦ ଯଦି ନ ଆସୁଛି, ସେଥି ପାଇଁ ତ ଔଷଧ ରହିଛି !' କିଏ ଯେପରି କହି ଦେଲା ଅନ୍ଧାର ଭିତରେ ।

'କି ଔଷଧ ?'

'ଭୁଲିଗଲ ? ସେଇ ''ଭଜ ମନ ଗୌର ନିତାଇ'' ?

ମନେ ପଡ଼ିଗଲା ଭାନୁ-ପିଇସୀଙ୍କର । ସେଇ ଅନ୍ଧାର ଭିତରେ ଉଠି ପଡ଼ିଲେ ବିଛଣା ଛାଡ଼ି । ଦୁଇ ହାତ ଉପରକୁ ଟେକି ନାଚିବାକୁ ଆରମ୍ଭ କରିଦେଲେ, ତୁଣ୍ଡରେ କହି ଚାଲିଲେ, ଭଜ ମନ ଗୌର ନିତାଇ ।

କହିଲେ, 'ଠାକୁର, ତୁମେ ଦେଖୁଥାଅ, ମୁଁ ନାଚୁଥାଏ ।'

''ଦେ ମୋତେ ବାଇଆ କରି, ଆରେ ମୋର ବାଇଆ-ରଜା,
ନାଚିବି ମୁଁ ଲଙ୍ଗଳା ହୋଇ, ତୁ ତାଳି ମାରି ଦେଖିବୁ ମଜା ।''

ତୁମେ ଦେଖ, ମୁଁ ନାଚେ ।

ତୁମେ କରାଅ, ମୁଁ କରେ । କର୍ମ ନ କଲେ ଦର୍ଶନ ହେବ କେମିତି ? ଦଳ ସଫା ନ କଲେ ଜଳ ଦେଖିବ କେମିତି ?

ତୁମେ ଅଛ, ଏତିକି କେବଳ ଜାଣି ଦେଇ ବସି ଗଲେ ଚଳିବ ? କାଠରେ ନିଆଁ ଅଛି, ଜଣା କଥା, ମାତ୍ର କେବଳ ଏଇ ଜାଣିବା ଦ୍ୱାରା ଭାତ ରାନ୍ଧି ହେବ ? ପୋଖରୀ ଆଡ଼ିରେ ବସି ରହିଲେ ମାଛ ପାଇବ ?

କର୍ମ କର । କର୍ମ ହିଁ ଫଳ । ଖେଳିବାଟା ହେଉଛି ବଡ଼ କଥା, ହାରିବା-ଜିତିବା କିଛି ନୁହେଁ । କର୍ମରୁ କୃପା । କର୍ମରୁ ଭକ୍ତି । କର୍ମ କରୁ କରୁ କର୍ମ-ତ୍ୟାଗ । ଗୋଟାଏ ହାତରେ ଈଶ୍ୱରଙ୍କୁ ଧରି ଆର ହାତରେ କାମ କରୁଥାଅ । ଶେଷକୁ ଦିନେ ଦୁଇ ହାତରେ ଈଶ୍ୱରଙ୍କୁ ଧରି ପକାଇବ ।

ଥରେ ଯଦି ଭକ୍ତି-ଲାଭ ହୋଇ ଯାଇ ପାରିବ, ତେବେ ବିଷୟ କର୍ମ ବିଷ ପରି ଲାଗିବ । ତାଳ-ମିଶ୍ରି ପଣା ପିଇ ସାରିଲା ପରେ ଗୁଡ଼-ପାଣି ପିଇବାକୁ ଆଉ ମନ ବଳିବ ?

ତେଣୁ ତୁମେ ଦେଖ, ମୁଁ ନାଚେ ।

କାମାରପୁକୁରରେ କିଛି ଦିନ ରହିବା ଫଳରେ ରାମକୃଷ୍ଣଙ୍କର ସ୍ୱାସ୍ଥ୍ୟର ଉନ୍ନତି ଆସିଛି । ଏଥର ଦକ୍ଷିଣେଶ୍ୱର ଫେରିବା ଦରକାର ।

ଆରେ ହୃଦୁ, ଚାଲ ଏବେ ମାଙ୍କ ପାଖକୁ ଯିବା ।

ବର୍ଦ୍ଧମାନ ଆଉ ଅଳ୍ପ ଦୂର ଅଛି, ଗୋଟାଏ ପଡ଼ିଆ ମଝିରେ ବସି ପଡ଼ିଲେ ରାମକୃଷ୍ଣ ।

କଅଣ ହେଲା ? ବସି ପଡ଼ିଲ କାହିଁକି ଏଠି ?

ଦେଖୁ ନୁ, କେତେ ଗଇଣ ଫୁଲ ଫୁଟିଛି, ପଡ଼ିଆ ତମାମ ? ଜାଣିନୁ ? ଗଇଣ ଫୁଲକୁ ମହାଦେବ ଭାରି ଭଲ ପାଆନ୍ତି । ଏଇ ଫୁଲରେ ପୂଜା କଲେ ଶୂଳପାଣି ପ୍ରସନ୍ନ ହୁଅନ୍ତି ।

କିନ୍ତୁ ଏ ପଡ଼ିଆ ତମାମ ଚାରିଆଡ଼େ ତ ଖାଲି ବିଷ୍ଠା ! କଡ଼ା ଗଳାରେ କହିଲା ହୃଦୟ ।

ରାମକୃଷ୍ଣଙ୍କ ପାଇଁ ବିଷ୍ଠା-ଚନ୍ଦନରେ ଭେଦ ନାହିଁ । ସେଇ ପଡ଼ିଆ ମଝିରେ ବସି ଶିବ-ପୂଜା ଆରମ୍ଭ କରିଦେଲେ ।

କଥାଟା ଭଲ ହେଉ ନାହିଁ, ମାମୁଁ । କଲିକତା ଯିବା ପାଇଁ ଏଇ ଗୋଟାଏ ମାତ୍ର ଟ୍ରେନ୍ ଆଜି ଦି'ପହରେ । ଯା' ପରେ ରାତିରେ ବି ଆଉ ଗାଡ଼ି ନାହିଁ । ଏଇ ଗାଡ଼ିଟା ଧରି ନ ପାରିଲେ ପୂରା ଗୋଟାଏ ଦିନ ଗୋଟାଏ ରାତି ଷ୍ଟେସନରେ ପଡ଼ି ରହିବାକୁ ହେବ ।

କିଏ ଶୁଣୁଛି କଥା ! ରାମକୃଷ୍ଣ ଶିବ-ଧ୍ୟାନରେ ନିଶ୍ଚଳ, ସମାହିତ ।

ଅଦ୍‌ଭୁତ ପ୍ରକାର ଉନ୍ମାଦ ଏ ଲୋକଟା ! ଶୁଚି-ଅଶୁଚି ବିଚାର ନାହିଁ । ମନେ ମନେ ଭାରି ଚିଡ଼ି ଗଲା ହୃଦୟ । ଏଣେ ଗାଡ଼ି ଯଦି ଚାଲିଯାଏ, ସେତେବେଳେ ଉପାୟ ?

ହଠାତ୍ ହୃଦୟର ମନେ ପଡ଼ିଗଲା ସେହି ସାଧୁଙ୍କ କଥା । ସେହି ଜ୍ଞାନୋନ୍ମାଦ-ଜ୍ଞାନପାଗଳ ସାଧୁ । ଉଲଙ୍ଗ ଦେହ, ପାଦ ଠାରୁ ମୁଣ୍ଡର କେଶ ପର୍ଯ୍ୟନ୍ତ ଦେହ ଯାକ ଧୂଳି,

ତୈଳହୀନ ଲମ୍ବ କେଶ, ଲମ୍ବ ଦାଢ଼ି, ବଡ଼ ବଡ଼ ନଖ, କାନ୍ଧରେ ଗୋଟାଏ ଛିଣ୍ଡା କନ୍ଥା- କୋଉଠି ମଶାଣିରେ ବୋଧହୁଏ ପଡ଼ିଥିଲା, ଉଠେଇ ଆଣିଛନ୍ତି । କାଳୀ ମନ୍ଦିର ଆଗରେ ଛିଡ଼ା ହୋଇ ଉଦାତ୍ତ କଣ୍ଠରେ କାଳୀ-ସ୍ତବ ପାଠ କରୁଛନ୍ତି, ମନ୍ଦିରଟା ପର୍ଯ୍ୟନ୍ତ ସେହି ଧ୍ୱନିର ଆଘାତରେ ଦୋହୋଲି ଉଠିଲା ପରି ମନେ ହେଉଛି । ପ୍ରସାଦ ସେବାର ସମୟ ଆସିଲା । କାଙ୍ଗାଳ ଭିଖାରିମାନେ ଯେଉଁଠି ପତର ପକାଇ ବସିଥିଲେ, ଯାଇ ବସିଲେ ସେଇଠି, ତାଙ୍କରି ମେଳରେ । ତାଙ୍କ ଚେହେରା, ତାଙ୍କ ବେଶ-ଭୂଷା ଦେଖି ସେମାନେ ବି ଘୃଣାରେ ତାଙ୍କୁ ସେଠୁ ଦୂର ଦୂର୍ କରି ଘଉଡ଼େଇ ଦେଲେ । ଘଉଡ଼େଇ ଦେଲେ ସିନା, ମାତ୍ର ସାଧୁ ଅଭୁକ୍ତ ରହିଲେ ନାହିଁ । ଖାଇ ସାରି ସେହି ଭିଖାରିମାନେ ଯେଉଁଠି ଅଇଁଠା ପତ୍ର ପକେଇ ଦେଲେ, ସେଇଠି, କୁକୁରଙ୍କ ମଝିରେ ପଶି, ପତରରେ ଲାଗିଥିବା ଅଇଣ୍ଠା ଭାତ ଚାଟି ଆଣି ଖାଇବାକୁ ଲାଗିଲେ ।

ମାମୁଁ କହିଥିଲେ, ଆରେ ହୃଦୟ, ଏ ଲୋକ ଏମିତି-ସେମିତି ଉନ୍ମାଦ ନୁହେଁ, ଇଏ ଜ୍ଞାନୋନ୍ମାଦ ।

ହୃଦୟ ଧାଇଁଗଲା ତାଙ୍କୁ ଦେଖିବା ପାଇଁ । ମନ୍ଦିର ହତାରୁ ବାହାରି ସାଧୁ ଚାଲି ଯାଉଛନ୍ତି, ହୃଦୟ ଚାଲିଲା ତାଙ୍କ ପଛେ ପଛେ । ପଛରୁ ଡାକି କହିଲା, ମହାରାଜ, ଭଗବାନଙ୍କୁ କେମିତି ପାଇବି, କିଛି ଉପାୟ କହି ଯାଆନ୍ତୁ ।

ପାଗଳ ଅନେଇଲା ବି ନାହିଁ, କିଏ ଡାକୁଛି, କିଏ କହୁଛି । ହୃଦୟ ବି ଛାଡ଼ିବା ଲୋକ ନୁହେଁ । ଚାଲିଛି ପଛେ ପଛେ । ମୁହଁରେ ସେଇ ଗୋଟାଏ କଥା । ଭଗବାନଙ୍କୁ କେମିତି ପାଇବି, କେବେ ପାଇବି, କେଉଁଠି ପାଇବି ?-

ଚାଲୁ ଚାଲୁ ହଠାତ୍ ଛିଡ଼ା ହୋଇ ପଡ଼ିଲେ ସାଧୁ । ବୁଲି ପଡ଼ି କଟମଟ କରି ଅନେଇଲେ ହୃଦୟକୁ । ରାସ୍ତା କଡ଼ରେ ଖୋଲା ନର୍ଦ୍ଦମା । ସେଇ ଆଡ଼କୁ ହାତ ଦେଖେଇ କହିଲେ, 'ଏଇ ନର୍ଦ୍ଦମାର ଜଳ ଆଉ ଗଙ୍ଗା ଜଳ ଯେଉଁଦିନ ଏକ ବୋଲି ଜାଣିବୁ, ସେଇଦିନ ପାଇବୁ- ।'

ଏତିକି ? ଏଇଟା କ'ଣ ଗୋଟାଏ ମନକୁ ପାଇବା ଭଳି କଥା ହେଲା ? ନିଶ୍ଚୟ ଏହା ଭିତରେ ଆହୁରି ଅନେକ ତର୍କ-ତତ୍ତ୍ୱ ଅଛି । ପୁଣି ପିଛା ଧରିଲା । କହିଲା, 'ମହାରାଜ, ମୋତେ ଆପଣଙ୍କ ଚେଲା କରି ସାଙ୍ଗରେ ନେଇ ଚାଲନ୍ତୁ-'

କଅଣ କହିଲୁ ? ତଳେ ପାଦ ପାଖରେ ପଡ଼ିଥିଲା ଖଣ୍ଡିଏ ଇଟା-ଢେଲା । ସେଇଟା ହାତରେ ଉଠେଇ ଆଣି ହୃଦୟ ଆଡ଼କୁ ଖେଦି ଆସିଲେ । ଭୟରେ ପଡ଼ି-ଉଠି ପଳେଇ ଆସିଲା ହୃଦୟ । ପାଗଳ ହଠାତ୍ କେଉଁଆଡ଼େ ଚାଲିଗଲେ, ଜାଣି ବି ପାରିଲା ନାହିଁ ।

ମାମୁଁଙ୍କର ତ ଦେଖୁଛି ଏବେ ସେଇ ଅବସ୍ଥା । ନହେଲେ, ଗୋଟା ପଡ଼ିଆଟା କେବଳ ବିଷ୍ଠା, ତାହାରି ମଝିରେ ବସି ଶିବ-ପୂଜା କରନ୍ତେ !

ଶୁଚି-ଅଶୁଚି ଜ୍ଞାନ-ଅଜ୍ଞାନର ଆର ପାରିକୁ ଚାଲି ଯାଇ ନ ପାରିଲେ ଭଗବାନଙ୍କ ସ୍ପର୍ଶ ପାଇ ହେବ ନାହିଁ । ଏହି ଦ୍ୱନ୍ଦ୍ୱବୋଧର ଊର୍ଦ୍ଧ୍ୱରେ ରହିଛି ସେହି ଭୂମା-ଭୂମି ।

''ଶୁଚି-ଅଶୁଚିରେ ଲୟେ ଦିବ୍ୟ ଘରେ କବେ ଶୁବି,

ତାଦେର ଦୁଇ ସତୀନେ ପିରୀତ ହଲେ ତବେ ଶ୍ୟାମା ମାରେ ପାବି ।''

(ଶୁଚି-ଅଶୁଚି ଦୁହେଁ ସଉତୁଣୀ ପରି । ମନରେ ଦିବ୍ୟ ପବିତ୍ର ଭାବ ଆଣି ଏ ଦୁହିଁଙ୍କୁ ଯେଉଁ ଦିନ ସମାନ ଭାବରେ ପ୍ରେମ କରି ପାରିବୁ ସେହି ଦିନ ଶ୍ୟାମା-ମା'ଙ୍କୁ ପାଇବୁ ।)

କେତେ ବେଳ ପରେ ପୂଜା ଶେଷ ହେଲା । ଯାଇ ପହଞ୍ଚିଲେ ଷ୍ଟେସନରେ । ଯାହା ଭାବିଥିଲା ହୃଦୟ, ଠିକ୍ ସେଇଆ । କଲିକତା ଗାଡ଼ି ଯାଇ ସାରିଛି । ପର ଦିନ ପର୍ଯ୍ୟନ୍ତ ଆଉ ଗାଡ଼ି ନାହିଁ ।

ଖିଙ୍କାରି ଉଠିଲା ହୃଦୟ, 'ମୁଁ ସେତେବେଳେ କହୁଛି, ମୋ କଥା ଶୁଣିଲ ନାହିଁ । ଏବେ କରିବ କଅଣ ? ରହିବ କୋଉଠି ? ଏଠି ତ ଚିହ୍ନା ଜଣା ବନ୍ଧୁ ବାନ୍ଧବ କେହି ନାହାନ୍ତି । ରହିବ କୋଉଠି ? ଖାଇବ କଅଣ ?'

ରାମକୃଷ୍ଣ ନିରୁତ୍ତର । ଆତ୍ମନ୍ୟେବାତ୍ମନା ତୁଷ୍ଟଃ । ସ୍ଥିତି-ଗତି ଉଦ୍ୟତି-ବିରତି ସବୁ ତାଙ୍କ ପାଇଁ ସମାନ ।

ଷ୍ଟେସନ ଅଫିସ୍‌କୁ ଗଲା ହୃଦୟ ବୁଝିବା ପାଇଁ । ଷ୍ଟେସନ ମାଷ୍ଟର କହିଲେ, ନା, ନିୟମିତ ଗାଡ଼ି ଆଜି ଆଉ ନାହିଁ । ତେବେ ଗୋଟାଏ ସୁବିଧା ହୋଇପାରେ । କାଶୀରୁ ଆସୁଛି ଗୋଟାଏ ସ୍ପେଶାଲ ଟ୍ରେନ୍, ଜଣେ ଉପର ସାହେବ ଆସୁଛନ୍ତି । ଅଳ୍ପ ସମୟ ପରେ ପହଞ୍ଚିବ । ଦେଖେଁ, ଯଦି ସେଥିରେ ସୁବିଧା ହୋଇପାରେ । ଗାଡ଼ି କଲିକତା ଯିବ ।

ସାଧାରଣ ଯାତ୍ରୀଙ୍କୁ ସେ ଗାଡ଼ିରେ ଯିବା ମନା । କିନ୍ତୁ ଷ୍ଟେସନ ମାଷ୍ଟରଙ୍କ ମନକୁ କଅଣ ଭାବ ଆସିଲା କେଜାଣି, ମାମୁଁ-ଭଣଜା ଦୁହିଁଙ୍କୁ ନେଇ ଗୋଟାଏ ଫାଙ୍କା ବଗିରେ ବସେଇ ଦେଲେ ନିଶ୍ଚିନ୍ତ ମନରେ । ଗାଡ଼ି ଛାଡ଼ିଲା ।

ରାମକୃଷ୍ଣ ହୃଦୟର ମୁହଁକୁ ଚାହିଁ ଦେଇ ଖାଲି ଟିକିଏ ହସି ଦେଲେ ।

ଦକ୍ଷିଣେଶ୍ୱରରେ ପହଞ୍ଚି ଶୁଣିଲେ ମଥୁର ବାବୁ ସସ୍ତ୍ରୀକ ତୀର୍ଥ ଯାତ୍ରାର ଆୟୋଜନ କରୁଛନ୍ତି । ତାଙ୍କର ଭାରି ଇଚ୍ଛା ରାମକୃଷ୍ଣ ସାଙ୍ଗରେ ଯାଆନ୍ତେ । ଯିବ ?

ଗଲେ ହୁଅନ୍ତା । ଯେଉଁଠାରେ ବହୁ ଲୋକ ବହୁ କାଳ ଧରି ଈଶ୍ୱର-ପ୍ରାପ୍ତିର ବ୍ୟାକୁଳତା ନେଇ ଏକତ୍ର ହେଉଛନ୍ତି ସେ ସ୍ଥାନରେ ଈଶ୍ୱର ନିଶ୍ଚୟ ପ୍ରକାଶିତ । ଯେଉଁ ସ୍ଥାନକୁ ଏତେ ଏତେ ସାଧୁ ଭକ୍ତ ଯୋଗୀ ସନ୍ନ୍ୟାସୀ ଯାଇ ଈଶ୍ୱରଭାବରେ ଉଦ୍ଦୀପ୍ତ ହୋଇ ପାରୁଛନ୍ତି ସେ ସ୍ଥାନର ମାହାତ୍ମ୍ୟ ଅସ୍ୱୀକାର କରି ହେବ ? ଯେ କୌଣସି ଜାଗାରେ ତ ମାଟି ଖୋଳିଲେ ତଳୁ ଜଳ ବାହାରିବ, ମାତ୍ର ଯେଉଁଠି କୂଅ-ପୋଖରୀ ଆଦି ଅଛି, ସେଠି ଜଳ ସହଜରେ ମିଳେ, ସେଠି ଆଉ ମେହନତ୍ କରି ମାଟି ଖୋଳିବାକୁ ପଡ଼େ ନାହିଁ । ଯେ କୌଣସି ଜାଗାରେ ତ ଚୁଲି କରି ଭାତ ରନ୍ଧା ଯାଇପାରେ, ମାତ୍ର ରୋଷେଇ ଘର ଭିତରେ ରାନ୍ଧିବା ସବୁଠୁ ସୁବିଧା ।

ତେବେ ମୁଁ ଯଦି ଯିବି, ମୋ ସହିତ ହୃଦୟ ମଧ୍ୟ ଯିବ ।

ହଉ । ଯିବ ।

ଶହେରୁ ଅଧିକ ଲୋକ ଯିବା ପାଇଁ ସଜ ହୋଇ ରହିଛନ୍ତି । ପୂରାପୂରି ଗୋଟାଏ

ପଲଟଣ । ତିନି ଖଣ୍ଡ ଥାର୍ଡ଼ କ୍ଲାସ ଓ ଦୁଇ ଖଣ୍ଡ ସେକେଣ୍ଡ କ୍ଲାସ ବଗି ରିଜର୍ଭ କରାହୋଇଛି । ଇଚ୍ଛା ଅନୁସାରେ ଯେ କୌଣସି ଜାଗାରେ ଗାଡ଼ିରୁ ଅଲଗା କରି ନେଇ ଅଟକି ଯାଇ ହେବ । ଗାଡ଼ିର ଶେଷ ଗନ୍ତବ୍ୟ କାଶୀ ଧାମ ।

କା ଶୀତଳା ଗଙ୍ଗା ? କାଶୀତଳା ଗଙ୍ଗା । ସେହି କାଶୀ ।

ମାଘ ମାସ । ୧୮୬୮ ମସିହା, ଜାନୁଆରୀ । ତୀର୍ଥ ଯାତ୍ରାରେ ବାହାରିଲେ ରାମକୃଷ୍ଣ । ଯିବା ଆଗରୁ ଭବତାରିଣୀଙ୍କୁ ପ୍ରଣାମ କଲେ । କହିଲେ, 'ମା, ତୋତେ ଅନ୍ୟ ଦେଶରେ ଅନ୍ୟ ବେଶରେ ଦେଖିବାକୁ ଯାଉଛି । ବେଦରେ ଯାହା କଥା କୁହାହୋଇଛି, ତନ୍ତ୍ରରେ ବି ତାହାରି କଥା କୁହାହୋଇଛି, ପୁଣି ପୁରାଣରେ ବି ତାହାରି କଥା । ସବୁ ତୁ । ତୁ ଖାଲି ବେଶ ବଦଳାଇ ମନ ଭୁଲାଉ ।'

ହଳଧାରୀ ଅନେକ ଆଗରୁ ପୂଜକ ପଦରୁ ଅବସର ନେଇଛି । ଏବେ ପୂଜା ଦାୟିତ୍ୱ ଅକ୍ଷୟ ଉପରେ । ଯିଏ ତୋ ପୂଜା କରୁଛି, କରୁ, ମୁଁ ଏବେ ପରିତ୍ୟକ୍ତକର୍ମା ପରମାତ୍ମା ।

ପ୍ରଥମ ରହଣି ବୈଦ୍ୟନାଥ ଧାମରେ ।

କିନ୍ତୁ ରାମକୃଷ୍ଣଙ୍କ ନଜର ପଡ଼ିଲା ଦରିଦ୍ର ଅନାଥଙ୍କ ଉପରେ । ଗୋଟାଏ ଗାଁ ଭିତର ଦେଇ ଯାଉଛନ୍ତି । ଦେଖିଲେ, ସେ ଗାଁର ଲୋକମାନଙ୍କର ପିନ୍ଧିବା ପାଇଁ ଲୁଗା ନାହିଁ, ତେଲ ଅଭାବରୁ ମୁଣ୍ଡ ବାଳ ନୁଖୁରା । ଚାଲୁ ଚାଲୁ ଅଟକି ଗଲେ । କହିଲେ ମନକୁ ମନ, କେଉଁ ବୈଦ୍ୟନାଥଙ୍କୁ ଦେଖିବାକୁ ଯାଉଛି ? କେଉଁଠି ସେ ? କେତେ ଦୂର ?

ବୈଦ୍ୟନାଥଙ୍କୁ ତୁମେ କେହି ଚିହ୍ନି ପାରିବ ନାହିଁ । ଦେଖି ନିଅ ଥରେ ଏହି ଅନାଥର ନାଥଙ୍କୁ ।

ମଥୁର ବାବୁଙ୍କୁ କହିଲେ, 'ତୁମେ ହେଉଛ ମାଙ୍କ ଦେଓ୍ୱାନ । ଏଇ ଲୋକମାନଙ୍କୁ ମୁଣ୍ଡରେ ଭଲ କରି ଲଗାଇବା ପାଇଁ ତେଲ ଦିଅ, ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ ଲୁଗା ଦିଅ । ଆଉ, ଦିନେ ପେଟ ପୂରା ଖୁଆଇ ଦିଅ ସମସ୍ତଙ୍କୁ ।

ମଥୁର ବାବୁ ଦ୍ୱନ୍ଦରେ ପଡ଼ିଲେ । କହିଲେ, 'ବାବା, ଆମେ ତୀର୍ଥ କରିବା ପାଇଁ ଆସିଛୁଁ । ତୀର୍ଥରେ ଅନେକ ଖରଚ ଅଛି । ଏଠି ଏଇ ମଝି ବାଟରେ ଏତେ ଗୁଡ଼ାଏ ଲୋକଙ୍କ ଖାଇବା-ପିନ୍ଧିବା ବ୍ୟବସ୍ଥା କରିବାକୁ ଗଲେ ଅସଲ ବେଳକୁ ଅଭାବ ପଡ଼ିବ । ଅବସ୍ଥା ଅସମ୍ଭାଳ ହୋଇ ପଡ଼ିବ । ଏତେ କଥାକୁ ପାରି ଉଠିବି ନାହିଁ ।'

କରୁଣା-କୋମଳ ରାମକୃଷ୍ଣ ମୁହୂର୍ତ୍ତକେ ହୋଇ ଉଠିଲେ ପ୍ରଚଣ୍ଡ ନିଷ୍ଠୁର । କହିଲେ 'ଯାଃ ଶଳା, ମୁଁ ଯିବି ନି ଆଉ କାଶୀ । ତୁ ଯା ତୋ ଦଳବଳ ନେଇ, ମୁଁ ରହିଲି ଏଇଠି, ୟାଙ୍କରି ପାଖରେ । ୟାଙ୍କୁ ଛାଡ଼ି ପାଦେ ହେଲେ ଆଉ ଯିବି ନି କୁଆଡ଼େ ।'

ଅଟଳ ପ୍ରତିଜ୍ଞା । ନତ ହେଲେ ମଥୁର ବାବୁ । କଲିକତାରୁ ଲୁଗା ଅଣାଇଲେ । ସ୍ଥାନୀୟ ବଜାରରୁ ତେଲ କିଣା ହେଲା । ମହାପ୍ରସାଦ ଭୋଗର ବ୍ୟବସ୍ଥା ହେଲା ଦିନକ ପାଇଁ ।

ଗାଁ ଲୋକଙ୍କ ଆନନ୍ଦରେ ରାମକୃଷ୍ଣଙ୍କ ଆନନ୍ଦ । ତୁମେ ଯଦି ଦାରିଦ୍ର୍ୟ-ମୋଚନ ନ କର,

ତେବେ କେଉଁ ବଡ଼ ପଣକୁ ତୁମେ ବୈଦ୍ୟନାଥ ?

କାଶୀ ଯିବା ସାତ ଦିନ ଡେରି ହେଲା । ହଉ ପଛେ । କିନ୍ତୁ ମା, ମୋତେ କେବଳ ଶୁଖିଲା ସନ୍ନ୍ୟାସୀଟିଏ କର ନାହିଁ । ମୋତେ କରୁଣା କୋମଳତା ଦେ, ମୋତେ ରସରେ ରଖ, ବଶରେ ରଖ । ମୁଁ ଚିନି ହେବାକୁ ଚାହୁଁ ନାହିଁ, ଚିନି ଖାଇବାକୁ ଚାହୁଁଛି । ଟିକିଏ ଅହଂ ରଖି ଦେ ମୋ ଭିତରେ । ସୁନାର ଗୋଟାଏ କଣିକା, ନିଆଁର ଗୋଟାଏ ସ୍ଫୁଲିଙ୍ଗ । ସେତିକି ଟିକିଏ ଅହଂ ନ ରହିଲେ ମୁଁ ବିଳାସ କରିବି କିପରି ? ତୁମେ-ମୁଁ ରସର ଅସ୍ୱାଦନ କରିବି କିପରି ? କିପରି ବା ହେବି ଭକ୍ତଙ୍କ ରାଜା ?

ଖଣ୍ଡେ ଦୂରରୁ ଆଖି ପଡ଼ିଲା କାଶୀ ଉପରେ । 'କାଶୀ ସର୍ବ ପ୍ରକାଶିକା ।' 'ଯେଷାଂ କ୍ୱାପି ଗତିର୍ନାସ୍ତି ତେଷାଂ ବାରାଣସୀ ଗତିଃ ।'

ନୌକାରେ ବସି ପ୍ରବେଶ କଲେ କାଶୀର ସୀମା ମଧ୍ୟକୁ । ଭାବ-ନେତ୍ରରେ ରାମକୃଷ୍ଣ ଦେଖିଲେ କାଶୀ ସ୍ୱର୍ଣ୍ଣମୟୀ । ଇଟା, ମାଟି, କାଠ, ପଥର କିଛି ନାହିଁ, ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତ ସୁବର୍ଣ୍ଣ-ମଣ୍ଡିତ । ଏହାର ଅର୍ଥ– କାଶୀ-ଧାମ ହେଉଛି ଅକ୍ଷୟ ନିତ୍ୟଧାମ । ଜ୍ୟୋତିର୍ମୟ ଭାବ-ଭକ୍ତିରେ ଏହା ନିତ୍ୟ କନକାୟିତ ।

କିନ୍ତୁ ଅଳ୍ପ କେତେଟା ଦିନ ପରେ ହୃଦୟକୁ କହିଲେ, 'ବୁଝିଲୁ ? ଏଠି ଯାହା ସେଠି ବି ସେଇଆ । ସେଠିକା ଆମ୍ବ ଗଛ, ତେନ୍ତୁଳି ଗଛ, ବାଉଁଶ ଗଛ ଯେଉଁ ଭଳି, ଏଠିକାର ବି ଠିକ୍ ସେଇ ଭଳି । ଏଠିକି ତେବେ କଅଣ ଆଉ ଦେଖିବା ପାଇଁ ଆସିଥିଲି ? ସେଠି ଯାହା ଏଠି ସେଇଆ ।'

ଭକ୍ତମାନଙ୍କୁ ଠାକୁର ଅନେକ ସମୟରେ କହୁଥିଲେ, 'ଯାହାର ଏ ପାଖରେ ଅଛି ତା'ର ସେ ପାଖରେ ବି ଅଛି । ଯାହାର ଏଠି ନାହିଁ ତାହାର ସେଠି ବି ନାହିଁ ।'

''ଯଦେବେହ ତଦମୂତ୍ର ଯଦମୂତ୍ର ତଦନ୍ୱିହ ।'' ଏଠାରେ ଯାହା ସେଠାରେ ମଧ୍ୟ ତାହା । ''ତସ୍ୟ ଭାସା ସର୍ବମିଦଂ ବିଭାତି ।''

କେଦାର ଘାଟ ପାଖରେ ଦୁଇଟି ଘର ଭଡ଼ା ନେଇଛନ୍ତି ମଥୁର ବାବୁ । କାଶୀରେ ରହି ମଧ୍ୟ ତାଙ୍କର ରାଜସିକତାର ଅନ୍ତ ନାହିଁ । ମୁଣ୍ଡ ଉପରେ ରୂପା-ବେଣ୍ଟ ଛତା, ଭୃତ୍ୟ ସେବକ ପରିବୃତ, ଚାଲିଛନ୍ତି ରାଜୁଡ଼ା ଠାଣିରେ । ବାହାରକୁ ଐଶ୍ୱର୍ଯ୍ୟର ଆଡ଼ମ୍ବର, କିନ୍ତୁ ଅନ୍ତର ଭିତରେ ଦୀନବନ୍ଧୁର ଦାକ୍ଷିଣ୍ୟ ।

ପ୍ରତିଦିନ ନୌକାରେ ବସି ବିଶ୍ୱନାଥ ଦର୍ଶନ କରିବାକୁ ଯାଆନ୍ତି ରାମକୃଷ୍ଣ । ସେଦିନ ଯାଉଛନ୍ତି । ମଣିକର୍ଣ୍ଣିକା ଘାଟ ପାଖରେ ଶ୍ମଶାନ । ପାଖ ଦେଇ ଗଲା ବେଳେ ଦେଖିଲେ ଚିତା ନିଆଁରେ ଶବ ଦାହ ହେଉଛି, ଚାରିଆଡ଼େ ଧୂଆଁ । ଆଖି ପଡ଼ିଲା ମାତ୍ରେ ମନେ ମନେ ଉତ୍‌ଫୁଲ୍ଲ ହୋଇ ଉଠିଲେ । ଭିତରୁ ବାହାରି ଆସିଲେ, ସଙ୍ଗେ ସଙ୍ଗେ ଦିବ୍ୟ ଭାବରେ ସମାଧିସ୍ଥ ହୋଇଗଲେ । ସଂଜ୍ଞାହୀନ ଅବସ୍ଥାରେ ପଡ଼ି ଯାଉଥିଲେ ବୋଧହୁଏ, ମାଝିମାନେ ଧରି ପକାଇବାକୁ ଧାଇଁ ଆସିଲେ । ଧରିବା ଦରକାର ପଡ଼ିଲା ନାହିଁ । ରାମକୃଷ୍ଣ ନିଜେ ନିଜର

ନିଶ୍ଚେଷ୍ଟତା ଭିତରେ ସ୍ଥିର ହୋଇ ରହିଗଲେ । ମୁଖମଣ୍ଡଳରେ ଦିବ୍ୟ ଦୀପ୍ତିର ପ୍ରସାଦ ।

ଧ୍ୟାନ ଭାଙ୍ଗିଲା ପରେ କହିଲେ, 'କଅଣ ଦେଖିଲି ଜାଣ ? ଦେଖିଲି ଜଣେ ବିରାଟବପୁ ସିତଗାତ୍ର ପୁରୁଷ ଶ୍ମଶାନରେ ପ୍ରତିଟି ଶବ ପାଖରେ ଆସି ଛିଡ଼ା ହେଉଛନ୍ତି । ପ୍ରତ୍ୟେକକୁ ହାତ ଧରି ଉଠାଇ ତା' କାନ ପାଖରେ ତାରକବ୍ରହ୍ମମନ୍ତ୍ର ଉଚ୍ଚାରଣ କରୁଛନ୍ତି । ଶବ ଦେହର ଅପର ପାଖରେ ବସିଛନ୍ତି ଶକ୍ତିମୟୀ ମହାକାଳୀ– ଜୀବର ସମସ୍ତ ସଂସ୍କାର-ବନ୍ଧନ ଖୋଲି ଦେଉଛନ୍ତି ଗୋଟି ଗୋଟି କରି । କେବଳ ସେତିକି ନୁହେଁ, ନିର୍ବାଣର ଦ୍ୱାର ଉନ୍ମୁକ୍ତ କରି ଦେଇ ତାକୁ ପଠାଇ ଦେଉଛନ୍ତି ଅଖଣ୍ଡଙ୍କ ନିକେତନକୁ । ..... ଜନ୍ମ-ଜନ୍ମର ଯୋଗସାଧନା ଫଳରେ ଯାହା ହୁଏତ ମିଳିପାରେ, କେବଳ କାଶୀରେ ମୃତ୍ୟୁ ଘଟିବା ଫଳରେ ବିଶ୍ୱନାଥଙ୍କ ଠାରୁ ତାହା ହିଁ ପାଇ ପାରୁଛନ୍ତି ।

କାଶୀରେ ଦେହ ତ୍ୟାଗର ଅର୍ଥ ନିର୍ବାଣପଦବୀ ପ୍ରାପ୍ତି ।

କାଶୀରେ ଥିବା ସମୟରେ ଦିନେ ଭେଟ ହୋଇଗଲା ତ୍ରୈଲଙ୍ଗ ସ୍ୱାମୀଙ୍କ ସହିତ । ମାଙ୍କୁ ଶ୍ମଶାନରେ ପୋଡ଼ିବା ପାଇଁ ଆସିଥିଲେ, ପୋଡ଼ିଲେ, ମାତ୍ର ଆଉ ଘରକୁ ଫେରିଲେ ନାହିଁ, ସେଇ ଶ୍ମଶାନରେ ରହିଗଲେ । ଏ ସେହି ତ୍ରୈଲଙ୍ଗ ସ୍ୱାମୀ ।

ଥରେ ଗଙ୍ଗା ଉପରେ ପଦ୍ମାସନରେ ବସିଥିଲେ ତ୍ରୈଲଙ୍ଗ ସ୍ୱାମୀ । କାଶୀର ଗୋରା ମାଜିଷ୍ଟ୍ରେଟ୍ ଯାଉଥିଲେ ନୌକାରେ ବସି । ଘଟଣା ଦେଖି ସାହେବ ଅବାକ୍ । ସ୍ୱାମୀଜୀଙ୍କୁ ଉଠାଇ ଆଣିଲେ ନୌକା ଉପରକୁ । କେତେ କଥା କହିଲେ, କେତେ କଥା ପଚାରିଲେ । ସ୍ୱାମୀଜୀ ମୌନ ।

ସାହେବଙ୍କ ଅଣ୍ଟାରେ ଗୋଟାଏ ତରୁଆଲ୍ ଝୁଲୁଥିଲା । ସ୍ୱାମୀଜୀ ସେଇଟା ନିଜ ହାତରେ ନେଇ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । କାହିଁକି କଲେ, ସେ ନିଜେ ଜାଣନ୍ତି । ହଠାତ୍ ସ୍ୱାମୀଜୀଙ୍କ ହାତରୁ ଖସି ଯାଇ ତରୁଆଲ୍‌ଟି ନଈ ଭିତରେ ପଡ଼ିଗଲା । ଏବେ ଉପାୟ ? ସାହେବ ତ କ୍ରୋଧରେ ଅଗ୍ନିଶର୍ମା । ଯାହା ଆସିଲା ମନକୁ, ହିନ୍ଦୀ-ଇଂରାଜୀ ମିଶାଇ କହି ଦେଇଗଲେ ସ୍ୱାମୀଜୀଙ୍କୁ । ମନେ ମନେ ଠିକ୍ କରି ରଖିଲେ କୂଳରେ ପହଞ୍ଚିବା ମାତ୍ରେ ତାଙ୍କୁ ପୋଲିସ୍ ହାତରେ ଦେବେ ।

ନୌକା ଆସି କୂଳରେ ଲାଗିଲା । ସ୍ୱାମୀଜୀ ନଇଁ ପଡ଼ି ଜଳରେ ହାତ ବୁଡ଼ାଇଲେ । ଖଣ୍ଡିଏ ନୁହେଁ, ଏକା ଥରକେ ତିନି ଖଣ୍ଡ ତରୁଆଲ ଉଠାଇ ଆଣିଲେ ନଈ ଭିତରୁ । ଦେଖିଲ, କେଉଁଟା ତୁମର ? ସାହେବଙ୍କ ତୁଣ୍ଡରୁ ଆଉ କଥା ବାହାରୁ ନାହିଁ । ନିଅ ତୁମ ତରୁଆଲ ! କହି, ଯେଉଁଟା ପ୍ରକୃତରେ ତାଙ୍କର ସେଇଟା ବଢ଼େଇ ଦେଲେ ମାଜିଷ୍ଟ୍ରେଟ୍‌ଙ୍କ ହାତକୁ । ବାକି ଦୁଇ ଖଣ୍ଡ ଫିଙ୍ଗି ଦେଲେ ନଈ ଭିତରକୁ ।

ଆଉ ଥରକର ଘଟଣା । ଉଲଙ୍ଗ ଦେହରେ ଗଙ୍ଗା କୂଳରେ ବସିଥିଲେ ତ୍ରୈଲଙ୍ଗ ସ୍ୱାମୀ । ହାକିମଙ୍କ ଆଦେଶରେ ପୋଲିସ୍ ଆସି ଧରି ନେଇଗଲା । ଉଲଙ୍ଗ ହୋଇ ସର୍ବସାଧାରଣ ଜାଗାରେ ବସିବା ଅପରାଧ । ବାରମ୍ବାର ଆଇନ ଅମାନ୍ୟ କରୁଛନ୍ତି ଏଇ ସାଧୁ ଜଣକ, ତାଙ୍କୁ

ନେଇ ଥରେ ହାଜତରେ ପୂରେଇ ଦିଅ । କିଛି ସମୟ ପରେ ହାକିମ ନିଜେ ଗଙ୍ଗା କୂଳକୁ ଆସିଲେ ବୁଲିବା ପାଇଁ । ଦେଖିଲେ ତ୍ରୈଲଙ୍ଗ ସ୍ୱାମୀ ଠିକ୍ ଆଗ ଭଳି ଲଙ୍ଗଳା ହୋଇ ସେଇଠି ବସିଛନ୍ତି । ଆରେ ! ପୋଲିସ୍ ବୋଧହୁଏ କିଛି ହାତଗୁଞ୍ଜା ନେଇ ତାଙ୍କୁ ହାଜତରୁ ଛାଡ଼ି ଦେଇଛି ! ରାଗ ତମ ତମ ହୋଇ ଧାଇଁଲେ ହାକିମ ହାଜତ ତଦାରକ କରିବା ପାଇଁ । ପୁଣି ଆଶ୍ଚର୍ଯ୍ୟ ! ହାଜତ ଭିତରେ ତ ବସିଛନ୍ତି ତ୍ରୈଲଙ୍ଗ ସ୍ୱାମୀ । ପୁଣି ଆସିଲେ ଗଙ୍ଗା କୂଳକୁ । ତ୍ରୈଲଙ୍ଗ ସ୍ୱାମୀ ବସିଛନ୍ତି ସେଇ ଗଙ୍ଗା କୂଳରେ, ଉଲଙ୍ଗ ଦେହରେ ।

ମୁଣ୍ଡ ବିଗିଡ଼ିଗଲା ସାହେବଙ୍କର । ହାଜତରୁ ମୁକ୍ତ କରିଦେଲେ । କାରାଗାର ପ୍ରାଚୀର ଯାହାଙ୍କୁ ଆବଦ୍ଧ କରି ପାରୁ ନାହିଁ, ସାମାନ୍ୟ ବସ୍ତ୍ର ଖଣ୍ଡିଏ ତାଙ୍କୁ କିପରି ଆବୃତ କରିବ ?

ସେହି ତ୍ରୈଲଙ୍ଗ ସ୍ୱାମୀ ।

ରାମକୃଷ୍ଣ ଦେଖିଲେ ସାକ୍ଷାତ ବିଶ୍ୱନାଥ । ସାକ୍ଷାତ ଶ୍ୱେତଶିଖା । ସମଗ୍ର କାଶୀ ଧାମକୁ ଉଜ୍ଜ୍ୱଳ କରି ରହିଛନ୍ତି ।

ଦେହ ଚେତନା ସଂପୂର୍ଣ୍ଣ ଲୁପ୍ତ । ଖରାରେ ବାଲି ତାତି ରହିଛି, ପାଦ ପକାଇଲେ ଫୋଟକା ବାହାରି ପଡ଼ିବ । ସେହି ତତଲା ବାଲି ଉପରେ ଶୋଇଛନ୍ତି ନିର୍ବିକାର ଭାବରେ । ଢୁ ଢୁ ବର୍ଷା ହେଉଛି, ସେମିତି ଶୋଇଥିବେ ନିଶ୍ଚିନ୍ତ ମନରେ ।

ଦିନେ ନିଜ ହାତରେ କ୍ଷୀରି ରାନ୍ଧି ତାଙ୍କୁ ଖୁଆଇଲେ ରାମକୃଷ୍ଣ । ମୌନ ବ୍ରତ ନେଇଛନ୍ତି, ତେଣୁ କଥା କିଛି ହୋଇପାରିଲା ନାହିଁ । ମୁହଁରେ ସିନା ହେଲା ନାହିଁ, କିନ୍ତୁ ଠାରରେ, ଇଙ୍ଗିତରେ ଆଳାପ ଚାଲିଲା ଦୁଇ ଜଣଙ୍କର । ଦୁହେଁ ଯେପରି ଗୋଟାଏ ଦେଶର ଲୋକ, ଦୁହିଁଙ୍କର ଭାଷା ଏକ । ସତେ ଯେପରି ଅନେକ ଦିନର ଚିହ୍ନା-ପରିଚୟ । ରାମକୃଷ୍ଣ ଠାରେ ପଚାରିଲେ, 'ଈଶ୍ୱର ଏକ ନା ଅନେକ ।' ଠାରରେ ଉତ୍ତର ଦେଲେ ତ୍ରୈଲଙ୍ଗ ସ୍ୱାମୀ, 'ସମାଧି ଦୃଷ୍ଟିରେ ଦେଖିଲେ ଏକ ମାତ୍ର ଜ୍ଞାନ ଦୃଷ୍ଟିରେ ଦେଖିଲେ ଅନେକ । ମୁଁ, ତୁମେ, ଏ ଜୀବ-ଜଗତ– ସମସ୍ତ ।'

ସ୍ୱର ଗୋଟିଏ, କେବଳ ରାଗ-ରାଗିଣୀ ଗୁଡ଼ିକର ଭିନ୍ନ ଭିନ୍ନ ନାମ । ସଦ୍‌ବସ୍ତୁ ଏକ, ତା'ର ବର୍ଣ୍ଣନା ବିଚିତ୍ର ।

''ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି ।''

'ବୁଝିଲୁ ରେ ?' ହୃଦୟକୁ କହିଲେ ରାମକୃଷ୍ଣ: ' ଏଇଆକୁ କହନ୍ତି ଖାଣ୍ଟି ପରମହଂସ ଅବସ୍ଥା ।'

## ୩୭

କାଶୀରୁ ପ୍ରୟାଗ । ପ୍ରୟାଗର ପୁଣ୍ୟ ସଂଗମରେ ସ୍ନାନ ଏବଂ ସେଠାରେ ତିନି ରାତ୍ରି ଅବସ୍ଥାନ- ଏ ହେଉଛି ବିଧି । ମଥୁର ବାବୁ ଓ ଅନ୍ୟମାନେ ସେଠାରେ ମୁଣ୍ଡରୁ ବାଳ ପକାଇଲେ । ରାମକୃଷ୍ଣ କହିଲେ, ମୋର ଦରକାର ନାହିଁ । ମୋ ଦେହ ହେଉଛି କାଶୀ କ୍ଷେତ୍ର । ତ୍ରିଭୁବନଜନନୀ ଗଙ୍ଗା ମୋର ଜ୍ଞାନଗଙ୍ଗା । ଭକ୍ତି-ଶ୍ରଦ୍ଧା ମୋର ଗୟା । ଗୁରୁଚରଣଧ୍ୟାନଯୋଗ

ମୋର ପ୍ରୟାଗ । ଆଉ, ଯେ ସକଳଜନମନସାକ୍ଷୀ ସେ ହେଉଛନ୍ତି ମୋ ଅନ୍ତରାତ୍ମା । ''ଦେହେ ସର୍ବଂ ମଦୀୟେ ଯଦି ବସତି ପୁନସ୍ତୀର୍ଥମନ୍ୟ କିମସ୍ତି ।'' ମୋର ଏଇ ଦେହରେ ତ ସମସ୍ତେ ରହିଛନ୍ତି, ମୋ ପାଇଁ ଆଉ ତୀର୍ଥାନ୍ତର କଅଣ ?

ପ୍ରୟାଗରୁ ପୁଣି ସମସ୍ତେ ଫେରିଲେ ବାରାଣସୀ । ''ବିରିଞ୍ଚି-ବିରଚିତା ବାରାଣସୀ ।''

ଦିନେ ରାମକୃଷ୍ଣ ଚୌଷଠି-ଯୋଗିନୀ ପଡ଼ା ଭିତର ଦେଇ ଯାଉଛନ୍ତି, ସାଙ୍ଗରେ ହୃଦୟ । କାହାକୁ ଦେଖି ପକାଇ ହଠାତ୍ ଅଟକି ଗଲେ ।

'ଆରେ ହୃଦୁଦା, ଇଏ ତ ଆମର ସେଇ ବ୍ରାହ୍ମଣୀ, ନୁହେଁ ?'

ପ୍ରକୃତରେ ସେହି ଯୋଗେଶ୍ୱରୀ ଭୈରବୀ । ଆଶ୍ଚର୍ଯ୍ୟ କଥା ! ତୁମେ ଏଠି କେଉଁଠି ଅଛ ?

ଏଇ ପଡ଼ାରେ ରହୁଛି । ମୋକ୍ଷଦା ଘରେ । ମୋକ୍ଷଦା ମୋର ମୂର୍ତ୍ତିମତୀ ପ୍ରଣତି ।

'ତୁମେ ଆମ ସିହତ ବୃନ୍ଦାବନ ଚାଲ ।'

'ଚାଲ ।'

ଗଙ୍ଗା ତୀରରେ ଆସି ଠିଆ ହେଲେ ରାମକୃଷ୍ଣ । କହିଲେ, 'ମା ତୋତେ ଛାଡ଼ି ଏବେ ଯମୁନା ପାଖକୁ ଯାଉଛି । ସେହି ମୁରାରିକାୟକାଳିମାମୟୀ ସଦାସିତା ଯମୁନା । ମା, ତୁ ହେଉଛୁ ଦୁର୍ଗା, ଗଙ୍ଗା, ଗଗନବାସିନୀ । ତୁ ପାଷାଣଭେଦିନୀ ଖଡ୍‌ଗହସ୍ତା । ଜନ୍ମପ୍ରବାହହରଣୀ ପାରାୟଣପରାୟଣା । ଆଉ ଯମୁନା ହେଉଛି ମଧୁବନଚାରିଣୀ ରାସେଶ୍ୱରୀ । ଅଶେଷନାୟିକା କୃଷ୍ଣକାନ୍ତା । ତୁମେ ଦୁଇ ଜଣ ହିଁ ମା, ମହାନନ୍ଦା ମୋକ୍ଷଦାତ୍ରୀ । ଦୁଇଜଣ ହିଁ ପ୍ରାଣଦା ପ୍ରାଣନୀୟା ।

ନିଧୁବନ ପାଖରେ ଘର ଭଡ଼ା ନେଲେ ମଥୁରବାବୁ । କିନ୍ତ ରାମକୃଷ୍ଣ ଏ ସବୁ କଅଣ ଦେଖୁଛନ୍ତି ତାଙ୍କ ଚାରି ପାଖରେ । ଦେଖୁଛନ୍ତି ନୁହେଁ, କାନ୍ଦୁଛନ୍ତି । ଝର ଝର ହୋଇ ଆଖିରୁ ଲୁହ ବହି ଯାଉଛି । କହୁଛନ୍ତି, 'କୃଷ୍ଣ ରେ, ସବୁ ତ ଠିକ୍ ସେଇ ରକମ ରହିଛି, ତୋତେ ହିଁ କେବଳ ଦେଖିବାକୁ ପାଉ ନାହିଁ ।'

ବାଙ୍କବିହାରୀ ମୂର୍ତ୍ତି ଦେଖି ବିହ୍ୱଳ ହୋଇ ପଡ଼ିଲେ । ଧାଇଁଗଲେ ଆଲିଙ୍ଗନ କରିବା ପାଇଁ । ଗୋବର୍ଦ୍ଧନ ଦର୍ଶନରେ ପୁଣି ଭାବାବେଶ । ଭାବାବେଶରେ ଉଠିଗଲେ ଗିରିଚୂଡ଼ାକୁ । ଆଉ ଓହ୍ଲେଇବାକୁ ମନ ବଳୁ ନାହିଁ । କେତେ ଜଣ ବ୍ରଜବାସୀ ଲୋକଙ୍କୁ ପଠାଇ ତାଙ୍କୁ ସେଠୁ ଅଣେଇଲେ ମଥୁର ବାବୁ ।

ସଞ୍ଜ ପାଖେଇ ଆସିଲେ ଯାଇ ଯମୁନା କୂଳରେ ବସନ୍ତି ଏବଂ କଳିନ୍ଦନନ୍ଦିନୀର ଗୁଣ ଗାନ କରନ୍ତି । ଯମୁନାର ବାଲି-ପଠା ଉପର ଦେଇ ଗୋରୁ ଗୋଠ ବାହୁଡ଼େଇ ଘରକୁ ଫେରୁଛନ୍ତି ଗୋପାଳ ବାଳକମାନେ । ଦେଖି ପକାଇଲା ମାତ୍ରେ କୃଷ୍ଣ-ଭାବର ଉଦ୍ଦୀପନା । 'କୃଷ୍ଣ କାହିଁ ? କୃଷ୍ଣ କାହିଁ ?' କହି କହି ଧାଇଁଲେ ତାଙ୍କ ପଛେ ପଛେ । ଆରେ, ଶୁଣ, ଶୁଣ । ତୁମେମାନେ ହିଁ ମୋର ଲୀଳାମାନୁଷବିଗ୍ରହ ନାରାୟଣ ।

କାଳୀୟ-ଦଳନ ଘାଟରେ ପହଞ୍ଚି ପୁଣି ଭାବାବେଶ । ସ୍ନାନ କରିବା ପାଇଁ ଓହ୍ଲେଇଲେ । ମାତ୍ର ଶରୀର ଅଣାୟତ୍ତ । ସାନ ପିଲାଙ୍କୁ ଯେମିତି ସାବଧାନରେ ଧରାଧରି କରି ଗାଧୋଇ ଦେବାକୁ ପଡ଼େ, ଠିକ୍ ସେହି ଭଳି ତାଙ୍କୁ ଗାଧୋଇ ଦେଲା ହୃଦୟ ।

ଏଇଠି ଦେଖା ହେଲା ଗଙ୍ଗାମୟୀଙ୍କ ସହିତ ।

ବୟସ ଷାଠିଏ, ନିଧୁବନ ପାଖରେ କୁଡ଼ିଆଟିଏ କରି ଏକୁଟିଆ ରହନ୍ତି ଗଙ୍ଗାମୟୀ । ନିଜକୁ ଲଳିତା-ସଖୀ ମନେ କରି ରାଧିକାଙ୍କ ସେବାଚର୍ଯ୍ୟା କରନ୍ତି । ପ୍ରେମରୂପା ଭକ୍ତିରେ ତାଙ୍କର ସାଧନ-ମୋଦନ ।

ଦୁହେଁ ଚିହ୍ନିଲେ ଦୁହିଁଙ୍କୁ । ରାମକୃଷ୍ଣ କହିଲେ, ତୁମେ ଲଳିତା ସଖୀ । ଗଙ୍ଗାମୟୀ କହିଲେ, ତୁମେ ରାସେଶ୍ୱରୀ ରାଧିକା । ତୁମେ ମୋର ଦୁଲାଳୀ, ରାଜଦୁଲାଳୀ ।

ରାମକୃଷ୍ଣଙ୍କୁ ଗଙ୍ଗାମୟୀ ଡାକନ୍ତି ଦୁଲାଳୀ ବୋଲି । କୃଷ୍ଣପ୍ରାଣାଧିକା ବିଷ୍ଣୁମାୟା !

ଗଙ୍ଗାମୟୀଙ୍କୁ ପାଇ ସବୁ ଭୁଲିଗଲେ ରାମକୃଷ୍ଣ । କେତେବେଳେ କଅଣ ଖାଉଛନ୍ତି, କେତେବେଳେ ଘରକୁ ଫେରୁଛନ୍ତି କିଛି ଜାଣି ପାରୁନାହାନ୍ତି । ଘର କଥା, ଖାଇବା କଥା ସବୁ ଭୁଲି ହୋଇଗଲା । ଭୋକ୍ତା ନାହିଁ, ଭୋଜ୍ୟ ନାହିଁ, ଅଛି କେବଳ ଭୋଜନର ଆସ୍ୱାଦ ।

ଦିନେ ଦିନେ ଘରୁ ଖାଇବା ଜିନିଷ ନେଇ ଆସେ ହୃଦୟ, ଆଣି ଖୁଆଇ ଦେଇଯାଏ । କେବେ କେବେ ଗଙ୍ଗାମୟୀ ନିଜ ହାତରେ ବି ରାନ୍ଧି ଖୁଆନ୍ତି ।

ବେଳେ ବେଳେ ଭାବ ହୁଏ ଗଙ୍ଗାମୟୀଙ୍କର । ତାଙ୍କର ସେହି ଭାବ ଅବସ୍ଥା ଦେଖିବା ପାଇଁ ଲୋକ ଜମା ହୋଇଯାଆନ୍ତି । ଦିନେ ଭାବାବେଶରେ ଗଙ୍ଗାମୟୀ ଉଠି ବସିଲେ ହୃଦୟର କାନ୍ଧ ଉପରେ ।

'ମହା ବିପଦ ହେଲା ଦେଖୁଛି !' ହାତ ଧରି ଝିଙ୍କି ନେଇ ଟାଣ ଗଳାରେ କହିଲା ରାମକୃଷ୍ଣଙ୍କୁ, 'ଉଠ, ଚାଲ ଏଠୁ । ଚାଲ ଦକ୍ଷିଣେଶ୍ୱର । ଆଉ ଦରକାର ନାହିଁ ବୃନ୍ଦାବନରେ ରହିବା ।'

କିନ୍ତୁ ରାମକୃଷ୍ଣ ସ୍ଥିର କଲେ ଆଉ ଫେରିବେ ନାହିଁ, ଏଇ ବ୍ରଜଧାମରେ ରହିଯିବେ ଗଙ୍ଗାମୟୀଙ୍କ ଆଶ୍ରୟରେ । ଶ୍ରୀମତୀ ହୋଇ ଭଜନା କରିବେ ଶ୍ରୀକୃଷ୍ଣଙ୍କର ।

ମଥୁରବାବୁ ଚିନ୍ତିତ ହେଲେ । ଡାକିଲେ ମନେ ମନେ ମହାମାୟାଙ୍କୁ । ମା, ମୋ ଦକ୍ଷିଣେଶ୍ୱର କ'ଣ ଦକ୍ଷିଣାହୀନ ହୋଇଯିବ ?

ହୃଦୟ ଧମକ ଦେଇ କହିଲା, 'ତୁମର ପରା ପେଟ-ବେମାରି ଅଛି । ଏଠି ତୁମର ହେପାଜତ କରିବ କିଏ ?'

'କାହିଁକି, ମୁଁ କରିବି,' ଗଙ୍ଗାମୟୀ ଉତ୍ତର ଦେଲେ, 'ମୁଁ ସେବା ଯତ୍ନ କରିବି, ଯେତେବେଳେ ଯାହା ଦରକାର ।'

କିନ୍ତୁ, ଖାଇବ କଅଣ ? ଶୋଇବ କେଉଁଠି ?

'ଏଇଠି ଖାଇବି ଉଷୁନା ଚାଉଳର ଭାତ । ଶୋଇବି ବି ଏଇଠି । ଏଇ ଗଙ୍ଗାମୟୀର

ଘରେ । ଘରର ଗୋଟାଏ ପାଖରେ ପଡ଼ିବ ତା' ବିଛଣା, ଆଉ ଗୋଟାଏ ପାଖରେ ମୋ ବିଛଣା । ଆଉ ଚିନ୍ତା କଅଣ ?'

'ରଖ ସେ ସବୁ ବାଜେ କଥା !' ହାତ ଧରି ଝିଙ୍କିଲା ହୃଦୟ । 'ଉଠ, ଚାଲ !'

ଗୋଟାଏ ହାତ ଧରି ହୃଦୟ ଟାଣୁଥାଏ, ଆଉ ଗୋଟାଏ ହାତ ଧରି ଗଙ୍ଗାମୟୀ, ଟାଣୁଥାଆନ୍ତି । କହିଲେ, 'ମୁଁ ଛାଡ଼ିବି ନାହିଁ । ଦେବି ନାହିଁ ଯିବାକୁ ।'

ଦୁଇଜଣଙ୍କ ଟଣା-ଓଟରା ଭିତରେ ରାମକୃଷ୍ଣଙ୍କ ଅବସ୍ଥା ଦି'ଗଣ୍ଡା । ଗୋଟାଏ ପଟେ ରାଧିକା, ଆର ପଟେ କାଳୀ । ଏ ପାଖରେ ମହାଭାବ, ସେ ପାଖରେ ମହାମାୟା ।

ଏହି ଟଣା-ଟଣି ଭିତରେ ହଠାତ୍ ମା'ଙ୍କ କଥା ମନେ ପଡ଼ିଗଲା ରାମକୃଷ୍ଣଙ୍କର । ମାଙ୍କ କଥା, ମାନେ ଚନ୍ଦ୍ରମଣିଙ୍କ କଥା । କାଳୀ ମନ୍ଦିରର ନହବତଘରେ ମା ରହିଛନ୍ତି ଏକୁଟିଆ, ରାମକୃଷ୍ଣ କେବେ ଫେରିବେ, ତାଙ୍କରି ବାଟକୁ ଚାହିଁ ବସିଛନ୍ତି ।

ମନ ସ୍ଥିର କରିବାକୁ ଆଉ ସମୟ ଲାଗିଲା ନାହିଁ । କହିଲେ, 'ନା, ଆଉ ଏଠି ରହିପାରିବି ନାହିଁ । ମୋ ମା ମୋତେ ଡାକୁଛନ୍ତି ।'

ମା ସମସ୍ତ ତୀର୍ଥ ଠାରୁ ବଡ଼ । ମା ସ୍ୱର୍ଗ ଠାରୁ ମଧ ଗରୀୟସୀ ।

ବୁଝିଲ ? ସଂସାର ଭିତରେ ବାପା-ମା ହେଉଛନ୍ତି ପରମ ଗୁରୁ । ଯଥାସାଧ ତାଙ୍କ ସେବା କରୁଥିବ । ଘୋର ଦରିଦ୍ର ଯିଏ, ଶ୍ରାଦ୍ଧ-କାମଟି ବି କରିବା ପାଇଁ ଯାହାର ସାମର୍ଥ୍ୟ ନାହିଁ, ସେ ଅନ୍ତତଃ ନିର୍ଜନ ବନକୁ ଯାଇ ତାଙ୍କ କଥା ମନେ ପକାଇ ଶୁଦ୍ଧ ମନରେ ଟିକିଏ କାନ୍ଦି ତ ପାରିବ । କେବଳ ଈଶ୍ୱରଙ୍କ ପାଇଁ ବାପା-ମା'ଙ୍କ ଆଦେଶ ଲଂଘନ କରାଯାଇପାରେ - ଆଉ କାହାରି ପାଇଁ, କେଉଁଥିପାଇଁ ନୁହେଁ । ବାପାଙ୍କ କଥାରେ ପ୍ରହ୍ଲାଦ କୃଷ୍ଣ ନାମ ଛାଡ଼ିଥିଲେ କି ? କୈକେୟୀଙ୍କ କଥାରେ ଭରତ ରାମ-ସେବାରୁ ବିରତ ହେଲେ କି ? ମା ବାରଣ କରିଥିଲେ, ତଥାପି ଧ୍ରୁବ ବଣକୁ ଗଲେ ତପସ୍ୟା କରିବା ପାଇଁ । ରାମଙ୍କ ଲାଗି ରାବଣର କଥା ଶୁଣିଲେ ନାହିଁ ବିଭୀଷଣ । ଭଗବାନଙ୍କ ପାଇଁ ବଳି ତାଙ୍କ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ମଧ ଅମାନ୍ୟ କଲେ । ଆଉ କୃଷ୍ଣକାମିନୀ ଗୋପିନୀଗଣ ମାନି ନାହାନ୍ତି ପତିମାନଙ୍କର ଆଧିପତ୍ୟ ।

ମା କ'ଣ ସାମାନ୍ୟ ଲୋକ ? ଶଚୀ କହିଲେ, କେଶବ ଭାରତୀଙ୍କୁ ହାଣି ଦେବି । ଚୈତନ୍ୟଦେବ ନାନା ପ୍ରକାର କରି ବୁଝେଇଲେ । କହିଲେ, 'ମା, ତୁମେ ଅନୁମତି ନ ଦେଲେ ମୁଁ ଯିବି ନାହିଁ । କିନ୍ତୁ ତୁମେ ତ ଜାଣିଛ, ମୁଁ ଯଦି ସଂସାରରେ ରହେ, ତେବେ ମୋର ଏଇ ଦେହ ଆଉ ରହିବ ନାହିଁ । ତେବେ ଗୋଟିଏ କଥା କହି ରଖୁଛି, ଯେତେବେଳେ ଚାହିଁବ ମୋତେ ଦେଖି ପାରିବ । ମୁଁ ତୁମ ପାଖେ ପାଖେ ଥିବି ।' ତା' ପରେ ଯାଇ ଶଚୀ ମାତା ଅନୁମତି ଦେଲେ ।

ଆଉ, ନାରଦଙ୍କ କଥା ତ ଜାଣିଥିବ । ଯେତେ ଦିନ ମା ତାଙ୍କର ବଞ୍ଚିଥିଲେ ସେତେ ଦିନ ସେ ତପସ୍ୟା ପାଇଁ ଯାଇ ନାହାନ୍ତି । ସେ ଯଦି ଚାଲିଯିବେ, ମାଙ୍କର ଭଲ-ମନ୍ଦ କିଏ ବୁଝିବ ? ମାଙ୍କ ଦେହ ତ୍ୟାଗ ପରେ ହିଁ ସେ ବାହାରିଲେ ହରି-ସାଧନା ପାଇଁ ।

ପରେ ଦିନେ ସେଇ କଥାକୁ ମନେ ପକାଇ କହିଥିଲେ ରାମକୃଷ୍ଣ, 'ଟଣା-ଓଟରା

ଫଳରେ ମା କଥା ମନେ ପଡ଼ିଗଲା । ସଙ୍ଗେ ସଙ୍ଗେ ସବୁ ଓଲଟ-ପାଲଟ ହୋଇଗଲା । ଭାବିଲି, ମା ବୁଢ଼ା ହେଲେଣି, ମାଙ୍କ ଲାଗି ଯଦି ମନ ଭିତରେ ଉଦ୍‌ବେଗ ରହିଥିବ, ଈଶ୍ୱର-ଫିଶ୍ୱର କୁଆଡ଼େ ସବୁ ଉଡ଼ିଯିବେ । ତେଣୁ ମନେ ମନେ ଠିକ୍ କଲି ସବୁ ଛାଡ଼ି ମା ପାଖକୁ ଯିବି । ସେଇଠି ରହି ନିଶ୍ଚିନ୍ତ ମନରେ ଈଶ୍ୱରଚିନ୍ତା କରିବି ।'

ହାଜରାଙ୍କ ମା ରାମଲାଲ ହାତରେ ଖବର ପଠେଇଛନ୍ତି ଦକ୍ଷିଣେଶ୍ୱରକୁ, ତା' କକା ଥରେ କୁହା-ବୋଲା କରି ହାଜରାକୁ ପଠେଇ ଦେବେ ତାଙ୍କ ପାଖକୁ ।

ଠାକୁର ହାଜରାକୁ କହିଲେ, 'ମା, ବୁଢ଼ା ମଣିଷ, ଯାଅ ଥରେ ଦେଖା କରି ଆସ ।'

ହାଜରା ଶୁଣିଲେ ନାହିଁ । ଯେତେ କହିଲେ ବି ଗଲେ ନାହିଁ । ମା କାନ୍ଦି କାନ୍ଦି ଶେଷକୁ ମଲେ ।

ନରେନ୍ଦ୍ର କହିଲା, 'ଏଇଥର ହାଜରା ତା' ଗାଁକୁ ଯିବ ।'

'ଏଇଥର ଯିବ ! ଶଳା ବେଇମାନ ! ଦୂର୍-ଦୂର୍-'

ଆଚ୍ଛା, ନିଜ ମାର ରୂପକୁ ଧ୍ୟାନ କରାଯାଇପାରେ ଦିନେ ପଚାରିଲେ ମଣି ମଲ୍ଲିକ ।

'ହଁ । ମା ଗୁରୁ । ବ୍ରହ୍ମମୟୀ ସ୍ୱରୂପା । ମା'ଙ୍କୁ ହିଁ ଧ୍ୟାନ କରିବୁ ।'

ମା ଧରିତ୍ରୀ ଜନନୀ ଦୟାର୍ଦ୍ରହୃଦୟା ନିର୍ଦ୍ଦୋଷା ସର୍ବଦୁଃଖହା । ପରମା ମାୟା, ପରମା କ୍ଷମା, ପରମା ଶାନ୍ତି । ମା ଠାରୁ ବଳି ଧ୍ୟାନର ମୂର୍ତ୍ତି ଆଉ କଅଣ ଅଛି ?

ଗିରୀଶ ଘୋଷ ଆସି ବସି ପଡ଼ିଲେ ଠାକୁରଙ୍କ ପାଦ ପାଖରେ । କହିଲେ, ମୋତେ ତ୍ରାଣ କରନ୍ତୁ ।

ମୁଁ କିଏ ତ୍ରାଣ କରିବାକୁ ?

ମନେ ନାହିଁ ଆପଣଙ୍କର, କାମାରପୁକୁରରେ ସେଇ ମାଗୁର ମାଛ କଥା ? ପାଦରେ ଠେଲି ଠେଲି ନେଇ ତାକୁ ପାଣିରେ ଛାଡ଼ି ଦେଇଥିଲେ ? ମାଛଟା ନିରାଶ୍ରୟ ବୋଧ କରି ଚାଲି ଆସିଥିଲା ମାଟି ଉପରକୁ । ଆପଣ ତାକୁ ପଠେଇ ଦେଲେ ତା'ର ସ୍ୱାଧାମକୁ । ସେହି ଭଳି, ପାପାର୍ତ୍ତ କୌଣସି ଜୀବ ଆସି ଯଦି ଆପଣଙ୍କ ପାଦ ତଳେ ପଡ଼ିଯାଏ, ଆପଣ ତାକୁ ପାଦରେ ଠେଲି ଠେଲି ନେଇ ଯିବେ ନାହିଁ ମୋକ୍ଷ ଧାମ ଆଡ଼କୁ ?

ମୁଁ ପାପ ମାନେ ନାହିଁ । କୌଣସି ଲୋକକୁ ପାପୀ ବୋଲି ବିଶ୍ୱାସ କରେ ନାହିଁ । ମୋର ଯେଉଁ ଭଳି ସାଧୁ-ରୂପରେ ନାରାୟଣ, ଠିକ୍ ସେହି ଭଳି ପୁଣି ଛଳ-ରୂପରେ ନାରାୟଣ, ଦୁଷ୍ଟ ରୂପରେ ନାରାୟଣ ।

ମୁଗ୍ଧ ହେଲା ପରି ଚାହିଁ ରହିଲେ ଗିରୀଶ ଘୋଷ ।

'ଗାଡ଼ିରେ ବସି ଯାଉଛି, ଦେଖିଲି ଦାଣ୍ଡ ଦୁଆର ପାଖରେ ଛିଡ଼ା ହୋଇଛନ୍ତି ଦୁଇ ଜଣ ବେଶ୍ୟା । ମୁଁ ଦେଖିଲି ସାକ୍ଷାତ ଭଗବତୀ - ଦେଖି ପ୍ରଣାମ କଲି ତାଙ୍କୁ । ମଲ୍ଲିକ- ମା ପଚାରିଲା, ସେମାନେ କଅଣ ଉଦ୍ଧାର ପାଇବେ ନାହିଁ ? ତା'ର ନିଜର ତ ଅନେକ କୀର୍ତ୍ତି-କଳାପ ଅଛି, ସେଇ କଥାକୁ ମନେ ପକେଇ ବୋଧହୁଏ ପଚାରି ଦେଲା । କହିଲି, ହଁ, ପାଇବେ, ଯଦି କାନ୍ଦି

ପାରିବେ । ଆନ୍ତରିକତାର ସହିତ, ବ୍ୟାକୁଳତାର ସହିତ ଯଦି କାନ୍ଦିବେ । ଖାଲି ତୁଣ୍ଡରେ ହରି-ନାମ ଜପିଲେ କଅଣ ହେବ ? କାନ୍ଦିବା ଦରକାର । ଆନ୍ତରିକତାର ସହିତ । ତେଣୁ ତୋତେ କହି ରଖୁଛି, ତୁ କାନ୍ଦି କାନ୍ଦି ଥରେ ମାଙ୍କୁ ଡାକ ମନ ଭିତରୁ । ତୋର ଯେତେ ପାପ ଥାଉ, କ୍ଲେଦ-ଆବର୍ଜନାରେ ତୁ ପଛେ ବୁଡ଼ି ରହିଥା, ମାଙ୍କୁ ଡାକିଲେ ମା ଆସି ତୋତେ ନିଶ୍ଚୟ ମୁକ୍ତି ଦେବେ-'

ଆଉ ଥରେ ପୁଣି ଗିରୀଶ ଯାଇଥିଲେ ଶ୍ରୀମା'ଙ୍କ ପଦାଶ୍ରୟକୁ । କହିଲେ, ମୋତେ ଉଦ୍ଧାର କରନ୍ତୁ ।

ମୁଁ କିଏ ଯେ ଉଦ୍ଧାର କରିବି ?

ମନେ ନାହିଁ ? ଜୟରାମବାଟିରେ ଗୋଟାଏ ବାଛୁରୀର ବୋବାଳି ଶୁଣି ଆପଣ ଯାଇ ତାକୁ ବନ୍ଧନରୁ ମୁକ୍ତ କରିଥିଲେ ? ତାକୁ ଦେଇଥିଲେ ତା'ର ଅମୃତ- ଲାଭର ଅଧିକାର ? ସେହିଭଳି, ମା, କେତେ କାମନା-ବାସନାର ବନ୍ଧନରେ ବାନ୍ଧି ହୋଇ ରହିଛି । ନିଜ ହାତରେ ଖୋଲି ଦିଅନ୍ତୁ ମୋର ଏ ଶୃଙ୍ଖଳ । ବୁଝିବାକୁ ଦିଅନ୍ତୁ ପରମାର୍ଥର ଆସ୍ୱାଦ ।

'ଠାକୁର କହୁଥିଲେ, ମଞ୍ଜି ଖୋଳପା ବାଦ୍ ଦେଲେ ବେଲ ଆଉ ପୂରା ବେଲ ହୋଇ ରହେ ନାହିଁ । ମଞ୍ଜି ଖୋଳପା ସବୁକୁ ନେଇ ବେଲ । ତୁମେ ହେଉଛ ସଂପୂର୍ଣ୍ଣ ବେଲ । ତୁମେ ତ ଭୈରବ । ତୁମର ପୁଣି ଡରିବାର କଅଣ ଅଛି ?'

ଗିରୀଶ ଘୋଷ ସ୍ତବ ପାଠ ଆରମ୍ଭ କଲେ ।

''ଜଗଜ୍ଜନନ୍ୟୈ ଜଗଦେକପିତ୍ରେ -
ନମଃ ଶିବାୟୈ ଚ ନମଃ ଶିବାୟ...''

## ୩୮

ରାମକୃଷ୍ଣ ମଥୁରା ଗଲେ । ଛିଡ଼ା ହେଲେ ଯାଇ ଧ୍ରୁବ ଘାଟ ପାଖରେ । ଆଖି ଆଗରେ ସ୍ପଷ୍ଟ ଦେଖିବାକୁ ପାଇଲେ ସେହି ଜନ୍ମାଷ୍ଟମୀ ଦିନର ଦୃଶ୍ୟ । ଶିଶୁ କୃଷ୍ଣଙ୍କୁ ଛାତି ଉପରେ ପକାଇ ଯମୁନା ପାର ହୋଇ ଯାଉଛନ୍ତି ବସୁଦେବ ।

ବୃନ୍ଦାବନରେ ଥିଲେ ପ୍ରାୟ ପନ୍ଦର ଦିନ । ଥିଲେ ବୈଷ୍ଣବ ବେଶରେ । ଦେହରେ ଲମ୍ବା ଆଲଖାଲ୍ଲା । ପରିଧାନ ଡୋର-କୌପୁନୀ । କପାଳ-କଣ୍ଠ ବକ୍ଷ-ବାହୁରେ ତିଳକ । କାନ୍ଧରେ ଝୁଲା-ମୁଣି । କଣ୍ଠରେ ତୁଳସୀ-ମାଳା ।

ବ୍ରାହ୍ମଣୀଙ୍କୁ ପଚାରିଲେ, 'କେଉଁଠି ମରିବ ? କାଶୀରେ ନା ବୃନ୍ଦାବନରେ ?'

'କାଶୀ ।'

ତେବେ କାଶୀ ଫେରି ଚାଲ । ସ୍ୱସ୍ଥାନରେ ଯାଇ ଅଧିଷ୍ଠିତ ହୁଅ ।

କାଶୀ ଫେରି ଆସି ଦିନେ ରାମକୃଷ୍ଣ କହିଲେ, 'ବୀଣା ଶୁଣିବି ।'

ମଦନପୁରାରେ ରହନ୍ତି ବିଖ୍ୟାତ ବୀଣାବାଦକ ମହେଶ ସରକାର । ଦେଶ-ବିଦେଶରେ ଭାରି ନାଁ- ଡାକ । ହୃଦୟ ଯାଇ ତାଙ୍କ ଖବର ନେଇ ଆସିଲା, ହଉ, ତେବେ ଚାଲ ଯିବା

ଓସ୍ତାଦ୍‌ଙ୍କ ଘରକୁ । ବୀଣା ଶୁଣି ଆସିବା ।

ମଥୁରବାବୁ କହିଲେ, 'ଆପଣ କାହିଁକି ତାଙ୍କ ଘରକୁ ଯିବେ ? ତାଙ୍କୁ ଏଇଠିକି ଡକେଇ ଆଣିବି । ମନ ଇଚ୍ଛା ବୀଣା ଶୁଣିବେ -'

ରଖ ତୁମର ସେ ବଡ଼ଲୋକି - ତୁମ ମର୍ଯ୍ୟାଦାର ଆଡମ୍ବର । ଏତେ ବଡ଼ ଜଣେ ଗୁଣୀ ଲୋକ- ସେ ଯେ କେତେ ବଡ଼ ସାଧକ ତୁମେ ଜାଣି ପାରିବ ନାହିଁ । ସ୍ୱୟଂ ବିଶ୍ୱଯନ୍ତ୍ରୀ ଈଶ୍ୱର ତାଙ୍କ ହାତର ସ୍ପର୍ଶରେ ସ୍ୱର ରୂପରେ ଝଙ୍କୃତ ହୋଇ ଉଠୁଛନ୍ତି । ସେ ହେଉଛନ୍ତି ବିଭୂତି-ମଣ୍ଡିତ । ଚାଲ୍‌, ହୁରୁଦା, ଶୁଣି ଆସିବା । ଶୁଣିବା ମାନେ ଦେଖିବା । ''ଯାହା ଶୁନି କର୍ଣ୍ଣପୁଟେ ସକଲି ମାର ମନ୍ତ୍ର ବଟେ ।'' (କାନରେ ଯାହା କିଛି ଶୁଣୁଛି ତାହା ସମସ୍ତ ମାଙ୍କ ମନ୍ତ୍ର ।)

ଦୁହେଁ ଆସି ପହଞ୍ଚିଲେ ମଦନପୁରାରେ । ସିଧା ଗଲେ ମହେଶ ସରକାରଙ୍କ ଘରକୁ । ମହେଶ ସରକାର ଦାଣ୍ଡ ଘରେ ବସିଥିଲେ । ରାମକୃଷ୍ଣ କହିଲେ, 'ବୀଣା ବଜାଅ, ଶୁଣିବି ।' ସତେ ଅବା ସ୍ୱୟଂ ବୀଣାପାଣିଙ୍କ ଆଦେଶ ! ମହେଶ ସରକାର ହାତରେ ବୀଣା ଧରି ଝଙ୍କାର ଦେଲେ । ସ୍ୱର-ସାଗର ବକ୍ଷରେ ଖେଳିଗଲା ଅମୃତର ତରଙ୍ଗ । ମୁହୂର୍ତ୍ତକ ଭିତରେ ଭାବାବେଶରେ ବିହ୍ୱଳ ହୋଇ ପଡ଼ିଲେ ରାମକୃଷ୍ଣ । କହିଲେ, 'ମା, ମୋତେ ସମାଧି ଭିତରେ ବୁଡ଼େଇ ଦିଅ ନା । ମୋର ଚେତା ରହୁ । ମୁଁ ଟକିଏ ଭଲ କରି ବୀଣା ଶୁଣିବି ।'

ସମାଧି-ଭୂମିରୁ ଓହ୍ଲାଇ ଆସିଲେ ରାମକୃଷ୍ଣ । ଓହ୍ଲାଇ ଆସିଲେ ଅନୁଭୂତି ସ୍ତରକୁ । ବାହ୍ୟ-ଜ୍ଞାନର ଶେଷ ପ୍ରାନ୍ତକୁ । ତିନି ଘଣ୍ଟା ନିରବଚ୍ଛିନ୍ନ ସେଇଠି ବସି ରହି ବୀଣା ଶୁଣିଲେ ।

କଅଣ କେବଳ ବୀଣା ଶୁଣିଲି ? ଶୁଣିଲି, ସମସ୍ତ ବିଶ୍ୱ-ସୃଷ୍ଟି ଯେମିତି ଗୋଟାଏ ଅପୂର୍ବ ସ୍ୱର-ଝଙ୍କାର ହୋଇଯାଇଛି । ଗ୍ରହ-ନକ୍ଷତ୍ର, ତରୁ-ତୃଣ, ନୀହାରିକାରୁ ଧୂଳିକଣା ପର୍ଯ୍ୟନ୍ତ ପ୍ରତିଟି ପଳାୟମାନ ମୁହୂର୍ତ୍ତରେ ବାଜି ଚାଲିଛି ସେହି ଅନବଦ୍ୟ ଗୀତଛନ୍ଦ । ବହି ଯାଉଛି ଭୁବନ-ପ୍ଲାବନୀ ସ୍ୱର-ଶୈବଳିନୀ ।

ଯାହା ଶ୍ରବଣ ତାହା ହିଁ ଦର୍ଶନ ।

ରାମକୃଷ୍ଣ ଦେଖିଲେ ସେହି ସ୍ୱର-ଶବ୍ଦ ଗୋଟାଏ ଉଜ୍ଜ୍ୱଳ ଚୈତନ୍ୟ ରୂପରେ ପ୍ରତିଭାତ ହୋଇ ଉଠୁଛି । ସତେ ଅବା ରାତ୍ରିର ଆକାଶରେ ସୂର୍ଯ୍ୟୋଦୟର ଦ୍ୟୋତନା । ଇନ୍ଦ୍ରିୟ ଜଗତରେ ଚୈତନ୍ୟର ଆବିର୍ଭାବ । ହୃଦାକାଶରେ ଚିଦାଦିତ୍ୟ ।

ବୀଣା ସହିତ ଗଳା ମିଳାଇ ରାମକୃଷ୍ଣ ଗାନ ଆରମ୍ଭ କଲେ ।

ବୃନ୍ଦାବନରେ ପ୍ରାୟ ପନ୍ଦର ଦିନ ଅତିବାହିତ କରି ସାରି ମଥୁରବାବୁ କହିଲେ, 'ଏଥର ଗୟା ଯିବା । ତୁମେ ଯିବ ତ ?''

ସର୍ବନାଶ ! ଗୟା ଗଲେ ଏ ପିଣ୍ଡ ଆଉ ରହିବ ? ବାପାଙ୍କ ସ୍ୱପ୍ନ କଥା ଜାଣି ନାହିଁ ?

ଗୟା ଯିବା ଆଉ ହୋଇ ପାରିଲା ନାହିଁ । ଜ୍ୟେଷ୍ଠ ମାସର ଅଧା-ଅଧି ବେଳକୁ ମଥୁରବାବୁ ଦଳ ବଳ ସହିତ ଫେରି ଆସି ପହଞ୍ଚିଲେ ଦକ୍ଷିଣେଶ୍ୱରରେ ।

ପୁଣି ସେହି ଅନନ୍ତ-ଆନନ୍ଦ-ତୀର୍ଥ ।

ରାମପ୍ରସାଦ ତାଙ୍କ ଗୀତରେ କହିଥିଲେ, ସଂସାର ଗୋଟାଏ ମିଛ-ମାୟାର ସ୍ଥାନ । ରାମକୃଷ୍ଣ କହିଲେ, ସଂସାର ହେଉଛି ଆନନ୍ଦର ଧାମ ।

'ଏ ସଂସାର ମଜାର କୁଟି,
ଓ ଭାଇ, ଆନନ୍ଦ ବଜାରେ ଲୁଟି ।'

ବୃନ୍ଦାବନର ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡରୁ କିଛି ଧୂଳି ନେଇ ଆସିଥିଲେ ରାମକୃଷ୍ଣ । ସେଥିରୁ କିଛି ଅଂଶ ପଞ୍ଚବଟୀରେ ବୁଣିଦେଲେ, ଆଉ କିଛି ନେଇ ପୋତିଲେ ତାଙ୍କ ସାଧନା-କୁଟୀର ଭିତରେ– ଯେଉଁଠି ତାଙ୍କର ନିର୍ବିକଳ୍ପ ସମାଧି ହୋଇଥିଲା । ହୋଇଥିଲା ବ୍ରହ୍ମ-ସାକ୍ଷାତକାର ।

ବ୍ରହ୍ମ କି ଭଳି ଜିନିଷ, ଟିକିଏ ବୁଝେଇ କୁହ ।

ଘିଅ ଖାଇଛୁ ? କହିଲୁ, ଘିଅ କି ଭଳି ?

ଘିଅ କି ଭଳି ? ଘିଅ ଘିଅ ଭଳି ! ଠିକ୍ ସେହିପରି ବ୍ରହ୍ମର ଉପମା କେବଳ ବ୍ରହ୍ମ । ତାକୁ ବୁଝାଇବି କେମିତି ?

ସେଇ ପଣ୍ଡିତଙ୍କ କଥା ଜାଣିଛ ? ଶୁଣ । ଜଣେ ରାଜା ଥିଲେ । ପଣ୍ଡିତ ପ୍ରତିଦିନ ଯାଇ ରାଜାଙ୍କୁ ଭାଗବତ ପଢ଼ି ଶୁଣାନ୍ତି । ପ୍ରତି ଦିନ ଭାଗବତ ପାଠ ଶେଷରେ ରାଜାଙ୍କୁ ପଚାରନ୍ତି, ରାଜା, ବୁଝିଲ ? ଏ କଥାର ଉତ୍ତରରେ ରାଜା ନିତି କହନ୍ତି, ତୁମେ ନିଜେ ଆଗେ ବୁଝ । ପଣ୍ଡିତ ଘରକୁ ଫେରି ଭାବନ୍ତି, ରାଜା ନିତି-ନିତି ଏଇ କଥାଟା ମୋତେ କାହିଁକି କହୁଛନ୍ତି ? ଭାବୁ ଭାବୁ ତାଙ୍କର ଜ୍ଞାନ ଉଦୟ ହେଲା– ଶାସ୍ତ୍ର-ପାଣ୍ଡିତ୍ୟ ସବୁ ମିଛ, ଅସଲ ହେଉଛି ହରି-ପାଦପଦ୍ମ । ସଂସାର ତ୍ୟାଗ କରି ଚାଲିଗଲେ ସେଇ ମୁହୂର୍ତ୍ତରେ- ବୈରାଗୀ ହୋଇ । ଏତେ ଦିନ ଧରି ପ୍ରତିଦିନ ଲମ୍ବା ଲମ୍ବା ଭାଷଣ ଦେଉଥିଲେ । ଆଜି ଯିବା ଆଗରୁ କହିଗଲେ କେବଳ ଦୁଇଟି କଥା - 'ଏଥର ବୁଝିଛି ।'

ସେଥିପାଇଁ କହୁଛି, ବକ୍ ବକ୍ କରିବା ଅଭ୍ୟାସ ଛାଡ଼ । ଘିଅ କଞ୍ଚା ଥିବା ପର୍ଯ୍ୟନ୍ତ କଳ-କଳ ଶବ୍ଦ କରେ । ସିଦ୍ଧ ହୋଇ ଠିକ୍ ପାଗ ଆସିଗଲେ ଆଉ ଶବ୍ଦ ନ ଥାଏ । ଶୂନ୍ୟ କୁମ୍ଭ ପାଣିରେ ବୁଡ଼େଇଲେ ଉକ୍ ଉକ୍ ଶବ୍ଦ ହୁଏ । କୁମ୍ଭ ପାଣିରେ ପୂରିଗଲେ ଆଉ ଶବ୍ଦ ନାହିଁ । ବିଚାର-ବୁଦ୍ଧି କେତେବେଳ ଯାଏ ? ଯେତେବେଳ ଯାଏ ତାଙ୍କ ଆନନ୍ଦର ସମ୍ବାଦ ନ ମିଳିଛି । ମଧୁପାନର ଆନନ୍ଦ ପାଇଗଲା ପରେ ମହୁମାଛି ଆଉ ଗୁଣୁ ଗୁଣୁ କରେ ?

ମୁଁ କେବଳ କାନ୍ଦୁଥାଏ ଏବଂ କହୁଥାଏ, 'ମା, ବିଚାର-ବୁଦ୍ଧି ଉପରେ ବଜ୍ରାଘାତ ହେଉ ।'

ଶଶଧର ପଣ୍ଡିତ ଜ୍ଞାନମାର୍ଗର ପନ୍ଥୀ । କହିଲେ, 'ସତେ ? ଆପଣଙ୍କର ବି ତା'ହେଲେ ବିଚାର-ବୁଦ୍ଧି ଥିଲା ?'

'ହଁ, ଥିଲା ଟିକିଏ- ଅଧେ ।'

ମନେ ମନେ ଖୁସିହେଲେ ଶଶଧର । କହିଲେ, 'ତେବେ କହନ୍ତୁ, କଅଣ କଲେ ଆମର

ସେଇଟା ଯିବ । ଆପଣଙ୍କର ଗଲା କେମିତି ?

ଠାକୁର କହିଲେ, 'ଗଲା ତ କଅଣ କିମିତି !'

ମୁଁ ଦୁଇ ହାତ ଯାକ ଛାଡ଼ି ଦେଇଛି । ମୁଁ ବଗଲରେ ହାତ ଚାପି ରଖି ନାହିଁ ।

ସମୁଦୁଣୀ ଆସିଛନ୍ତି ସମୁଦୁଣୀ ଘରକୁ । ଘର-ସମୁଦୁଣୀ ସେତେବେଳେ ରଙ୍ଗ-ବେରଙ୍ଗର ସୂତା ନଟେଇରେ ଗୁଡ଼ଉଥିଲେ । ସମୁଦୁଣୀଙ୍କୁ ଦେଖି ଭାରି ଖୁସି । ବସ, ସମୁଦୁଣୀ । କେତେ ଦିନ ପରେ ଆସିଲ ! ଆଉ ? ଖବର ସବୁ ଭଲ ତ ? ବସ ଟିକିଏ ଏଇଠି, ମୁଁ ତୁମ ପାଇଁ ଜଳଖିଆ ନେଇ ଆସେ । କହି ଘର-ସମୁଦୁଣୀ ଉଠିଗଲେ ଘର ଭିତରକୁ । କୁଣିଆ-ସମୁଦୁଣୀଙ୍କ ଆଖି ପଡ଼ିଲା ସୂତା ଉପରେ । ଆଃ, କେତେ ବଢ଼ିଆ ରଙ୍ଗ ! ଲୋଭ ସମ୍ଭାଳି ପାରିଲେ ନାହିଁ । କେରାଏ ରଙ୍ଗୀନ ସୂତା ଉଠେଇ ଆଣି କାଖ ତଳେ ଲୁଚେଇ ଦେଲେ । ଜଳଖିଆ ଧରି ଆସିଲେ ଘର-ସମୁଦୁଣୀ । ବୁଝିଗଲେ କୁଣିଆ-ସମୁଦୁଣୀଙ୍କ କାରସାଦି । ଗୋଟାଏ ଫିକର କଲେ ମନେ ମନେ । କହିଲେ, ସମୁଦୁଣୀ,ଏତେ ଦିନ ପରେ ଆସିଛ, ଆସ,ଆଜି ଦୁହେଁ ମିଶି ଟିକିଏ ମଉଜ କରିବା । କି ମଉଜ ? ଆସ, ନାଚିବା, ଦୁହେଁ ମିଶି । ଭଲ କଥା । ଦୁଇ ସମୁଦୁଣୀ ନାଚ ଆରମ୍ଭ କଲେ । ଘର-ସମୁଦୁଣୀ ଲକ୍ଷ୍ୟ କଲେ, କୁଣିଆ-ସମୁଦୁଣୀ ନାଚୁଛନ୍ତି, କିନ୍ତୁ ହାତ ଟେକୁ ନାହାନ୍ତି । ହାତ ଟେକି ନ-ନାଚିଲେ କ'ଣ ନାଚ ହୁଏ ? ତହୁଁ ଘର-ସମୁଦୁଣୀ କହିଲେ, 'କଅଣ ମ ସମୁଦୁଣୀ, ଆଜିଏତେ ଖୁସିର ଦିନ । ହାତ ଟେକି ନାଚିବ ନାହିଁ ?' ନିଶ୍ଚୟ । କୁଣିଆ-ସମୁଦୁଣୀ ଗୋଟାଏ ହାତ କାଖ ତଳେ ଚାପି ରଖି ଆଉ ହାତଟି ଟେକି ନାଚିବାକୁ ଲାଗିଲେ । ଉହୁଁ, ଏଇଟାକୁ କ'ଣ ନାଚ କହନ୍ତି ? ଦୁଇ ହାତ ଟେକି ନାଚିବା । ହେଇ, ଦେଖ— କହି ଘର-ସମୁଦୁଣୀ ଦୁଇ ହାତ ଉପରକୁ ଟେକିଦେଲେ । କୁଣିଆ-ସମୁଦୁଣୀ କିନ୍ତୁ ଯେମିତି ନାଚୁଥିଲେ, ଗୋଟାଏ ହାତ କାଖ ତଳେ ଚାପି, ସେମିତି ନାଚି ଚାଲିଲେ । ମୁହଁ ଶୁଖେଇଦେଇ କହିଲେ, ବୁଝିଲ ସମୁଦୁଣୀ, ଯିଏ ଯୋଉ ରକମ ଜାଣେ -

ମୁଁ କିଛି ଜାଣେ ନା । ମୁଁ ତେଣୁ ଦୁଇଟି ଯାକ ହାତ ଛାଡ଼ି ଦେଇଛି । ମୋର ସରଳ ଶରଣାଗତି ।

ତୀର୍ଥରୁ ଫେରିଲା ପରଠାରୁ ରାମକୃଷ୍ଣଙ୍କ ମୁହଁରେ ସବୁବେଳେ କେବଳ ସେଇ ତୀର୍ଥ-ଭ୍ରମଣ କଥା । ଆଉ କୌଣସି କଥା ତୁଣ୍ଡରେ ନାହିଁ । ମଦ ପିଇ ମାତାଲ ହେଇଗଲା ପରେତୁଣ୍ଡରୁ କେବଳ ଖୁସି କଥା ବାହାରେ ପରା !

କଅଣ ପାଇଲ ତୀର୍ଥକୁ ଯାଇ ?

କଅଣ ପାଇଲି ? ଜ୍ଞାନ ! ଜ୍ଞାନ ପାଇଲି । ଯେତେବେଳ ଯାଏ ଭାବୁଥିବ ଈଶ୍ୱର ସେଠି ଅଛନ୍ତି, ସେତେବେଳ ଯାଏ ଅଜ୍ଞାନ । ଯେତେବେଳେ ଜାଣିବ, ଏଇଠି, ସେତିକିବେଳେ ଜ୍ଞାନ । ମନ ଯାହା ଲୋଡୁଥାଏ ତା'ରି ପଛରେ ଦଉଡୁଥାଏ । କିନ୍ତୁ ଦଉଡ଼ିବାର କଅଣ ଦରକାର ? ମନ ଯାହା ଖୋଜୁଥାଏ ତାହା ତ ସେଇ ମନ ଭିତରେ । ହାତ ଯାହା ଧରିବାକୁ ଚାହୁଁଛି ତାହା ତ ହାତ ପାଆନ୍ତାରେ- ।

ଚିଲମ ଟାଣିବାକୁ ମନ ହେଲା, ଗଲା ପଡ଼ିଶା ଘରକୁ ନିଆଁ ପାଇଁ । ରାତି ସେତେବେଳକୁ ବହୁତ, ପଡ଼ିଶା ଘରର ଲୋକ ଶୋଇଛନ୍ତି ନିଘୋଡ଼ ନିଦରେ । ଅନେକ ଡକାଡକି କବାଟ-ବାଡ଼ିଆ ପରେ ଉଠିଲା । କବାଟ ଖୋଲି ଆସିଲା ବାହାରକୁ । କଅଣ କଥା ? ଏତେ ରାତିରେ ତୁମେ କୁଆଡ଼େ ? କଅଣ ଆଉ କରିବି କହ, ଭାଇ ? ଟିକିଏ ଚିଲମ ଟାଣିବାକୁ ମନ ହେଲା ଯେ, ଦିଆସିଲି ନାହିଁ । ସେଇଥିପାଇଁ ଏତେ ରାତିରେ ଆସି ଏଠି ପାଟି କରି ସାହି କମ୍ପଉଛ ? ତୁମ ହାତରେ ପରା ଲଣ୍ଠନ ଟେ' ରହିଛି ? ସେଇଥିରୁ ଧରେଇ ହେଲା ନାହିଁ ? କାହିଁକି ତେବେ ଧରିଛ ସେଇଟା ହାତରେ ?

ହୃଦାକାଶରେ ଚିଦାଦିତ୍ୟ । ତେବେ କୁଆଡ଼େ ଧାଇଁ ଚାଲିଛୁ ଆମେ, କେଉଁ ଦେଶରେ ପହଞ୍ଚିବା ପାଇଁ, କେଉଁ ସୂର୍ଯ୍ୟର ସନ୍ଧାନରେ ?

ସରଳ କଥା– ଆଗେ ବୁଢ଼ୀକୁ ଛୁଅଁ, ତା' ପରେ ଯାହା କରୁଛ କର । ଆଗେ ବ୍ରହ୍ମଜ୍ଞାନ ଲାଭ କର, ତା' ପରେ ଲୀଳା ଆସ୍ୱାଦନ କର ।

ସାଧୁ ଆସିଛନ୍ତି ସହର ବୁଲିବାକୁ । ବୁଲି ବୁଲି ସହରର ଶୋଭା ଦେଖୁଛନ୍ତି । ଭେଟ ହେଲା ଆଉ ଜଣେ ମୁସାଫିର ସାଧୁଙ୍କ ସହିତ । ମୁସାଫିର ପଚାରିଲେ, ତୁମେ ତ ବେପରବାୟ ହୋଇ ବୁଲୁଛ ଏଣେ ତେଣେ, ତୁମ ଜିନିଷପତ୍ର କେଉଁଠି ରଖିଲ ? କାହିଁକି ? ଏଠିକି ଆସି ଆଗେ ଗୋଟାଏ ବସା ଘର ଯୋଗାଡ଼ କଲି, କୋଲପ-କାଠି କିଣିଲି । ପୁଟୁଳା-ପୁଟୁଳି ଘର ଭିତରେ ରଖି କବାଟ ବନ୍ଦ କରି କୋଲପ ପକେଇଲି । ତା' ପରେ ଆସି ବୁଲୁଛ ନିଶ୍ଚିନ୍ତ ହୋଇ- ।

ଶୁଣ ଗୋଟେ' କଥା । ଶ୍ୱଶୁର ଘରକୁ ଯାଇଥିଲି । ସେଠି ସଂକୀର୍ତ୍ତନ ହେଲା । ବହୁତ ଲୋକ ଆସିଲେ । ମାଙ୍କୁ କହିଲି, ମା ଏ ସବୁ କ'ଣ ସତ ? ଯଦି ସତ, ତେବେ ଜମିଦାର ବାବୁ କାହିଁକି ଆସୁ ନାହାନ୍ତି ? ପହଞ୍ଚିଲେ ଆସି ଜମିଦାର । ଯାଚି ହୋଇ କଥା କହିଲେ, କେତେ ଆଦର-ଯତ୍ନ ଦେଖେଇଲେ ।

ଆରେ ହୁରୁଦା, ଗୋଟାଏ ସୁନ୍ଦରୀ କୋଉଠୁ ଧରି ଆଣି ଦେ ମୋତେ ।

ହୃଦୟ ଅବାକ୍ ।

ଆଣ୍, ଯୋଉଠୁ ହେଲେ । ମୁଁ ପୂଜା କରିବି ।

ହୃଦୟର ବୋଧହୁଏ ମନେ ପଡ଼ିଲା ମାଈଙ୍କ କଥା । ପଦ୍ମଫୁଲରେ ତାଙ୍କ ପାଦପଦ୍ମ ସେ ନିଜେ ସେଦିନ ପୂଜା କରିଥିଲା । କିନ୍ତୁ ମାଈଁ'ତ ଏବେ ପାଖରେ ନାହାନ୍ତି ।

ଚଉଦ ବର୍ଷ ବୟସର ସୁନ୍ଦରୀ ସଧବା କନ୍ୟାଟିଏ ଯୋଗାଡ଼ କଲା ହୃଦୟ । କାହା ଘରର ବୋହୂ କି ଝିଅ ହୋଇଥିବ ।

କିନ୍ତୁ ରାମକୃଷ୍ଣ ଦେଖିଲେ ସାକ୍ଷାତ ଭଗବତୀ । ପୂଜା କଲେ । ପ୍ରଣାମ କଲେ । ପ୍ରଣାମ ସାରି କହିଲେ, ଆରେ, ପ୍ରଣାମୀ ଟଙ୍କାଟା କିଏ ଜଣେ ଆଣିଦିଅ ମାଙ୍କୁ ।

ଏତିକିରେ କିନ୍ତୁ ମନ ଶାନ୍ତ ହେଲା ନାହିଁ । ଯେତେବେଳେ ପାଖରେ କୌଣସି କୁମାରୀ

ଝିଅଙ୍କୁ ଦେଖନ୍ତି, ଧରି ଆଣି ପୂଜା କରନ୍ତି । ସେ ଯେତେ ଅକୁଳୀନ ବା ଯେତେ ଅପରିଚ୍ଛନ୍ନ ହୋଇଥାଉ ପଛକେ ।

ଶୁଦ୍ଧାତ୍ମା କୁମାରୀ ଠାରେ ହିଁ ଭଗବତୀଙ୍କର ଅଧିକ ପ୍ରକାଶ ।

ରାମଲୀଳା ହେଉଛି । ଦେଖିବାକୁ ଗଲେ ରାମକୃଷ୍ଣ । ଯେଉଁମାନେ ରାମ-ଲକ୍ଷ୍ମଣ ହୋଇଥିଲେ, ହନୁମାନ-ବିଭୀଷଣ ହୋଇଥିଲେ, ସମସ୍ତଙ୍କୁ ପୂଜା କଲେ । ମନେ ହେଉଥିଲା ଅସଲ-ନକଲରେ ଫରକ ନାହିଁ । ସତେ ଅବା ନାରାୟଣ ନିଜେ ଏଇ ସବୁ ରୂପ ଧାରଣ କରିଛନ୍ତି ।

ବୈଷ୍ଣବଚରଣ ମଧ୍ଯ ଏଇ କଥା କହୁଥିଲେ । କହୁଥିଲେ, ନର-ଲୀଳାରେ ବିଶ୍ୱାସ ଆସିଲେ ଯାଇ ପୂର୍ଣ୍ଣ ଜ୍ଞାନ ଉଦୟ ହେବ ।

ଦିନେ ଦେଖିଲେ ଗଙ୍ଗା କୂଳର ବଉଳ-ଘାଟ ପାଖରେ ସ୍ତ୍ରୀଲୋକଟିଏ ନୀଳ ଶାଢ଼ି ପିନ୍ଧି ଠିଆ ହୋଇଛି । କୁଳ-ନାରୀ କି ବାର-ନାରୀ ଏ ପ୍ରଶ୍ନ ମନକୁ ଆସିଲା ନାହିଁ । ମୁହୂର୍ତ୍ତକ ଭିତରେ ମନରେ ସୀତାଙ୍କ ଉଦ୍ଦୀପନ ଆସିଲା । ଦେଖିଲେ, ଲଙ୍କାରୁ ଉଦ୍ଧାର ପାଇ ସୀତା-ମାତା ରାମଙ୍କ ପାଖକୁ ଯାଉଛନ୍ତି ।

'ଏ ଭଳି ଭାବ କେଉଁଠି ହେଲେ ଦେଖି ନାହିଁ । ଏ ରକମ ରୋଗ ବି କାହାରି ଠାରେ ହେବାର ଦେଖି ନାହିଁ ।' ଏଇ କଥା କହୁଥିଲା ହୃଦୟରାମ ।

ମୁହଁରେ ସିନା କହେ, କିନ୍ତୁ କାମରେ ଜମି-ବାଡ଼ି ପାଇଁ ପାଗଳ । ଏତେ ଦିନ ତ ୟା'ଙ୍କ ସେବା-ପୂଜା କଲି, ହେଲେ ଫଳ କଅଣ ମିଳୁଛି, କାହିଁ ? ରାମକୃଷ୍ଣ ସତେ କି ପୂରାପୂରି ତା' ହାତମୁଠାରେ ଅଛନ୍ତି, ଆଉ କିଏ ତାଙ୍କ ପାଦରେ ହାତ ଦେବ- ଏଥିରେ ବି ତା'ର ଆପତ୍ତି । ତଥାପି, ହାତରେ ଥାଇ ବି ଆଙ୍ଗୁଠି ଫାଙ୍କରେ ସତେ ଅବା ବାହାରି ଯାଉଛନ୍ତି । ହୃଦୟର ଦରକାର ଟଙ୍କା; ତା'ର ଦରକାର ଜମି, ବାଡ଼ି, ଗାଈ, ଗୋରୁ- ଏଇ ସବୁ ।

ଦିନେ ଯାଇ ଶମ୍ଭୁ ମଲ୍ଲିକଙ୍କ ପାଖରେ ପହଞ୍ଚି କହିଲା, 'ମୋତେ କିଛି ଟଙ୍କା ଦିଅ ।'

ଶମ୍ଭୁ ମଲ୍ଲିକ ଇଂରାଜୀ ମତର ଲୋକ । କହିଲେ, 'ତୁମକୁ କାହିଁକି ଟଙ୍କା ଦେବି ? ତୁମର ଏଡ଼େ ସୁନ୍ଦର ସୁସ୍ଥ ସବଳ ଦେହ, ତୁମେ ଖଟି ରୋଜଗାର କରି ପାରିବ ।'

'ସୁନ୍ଦର ସୁସ୍ଥ ଦେହ ?'

'କିଛି ତ ରୋଜଗାର କରୁଛ । ତୁମକୁ ଟଙ୍କା ଦେବି କାହିଁକି ? ଯିଏ ନିହାତି ଗରିବ, କିଛି ନାହିଁ ଯାହାର, କିମ୍ବା ଯିଏ ଛୋଟା, କୁଜା, କଣା ହୋଇଥିବ ସେଭଳି ଲୋକକୁ ଦେଲେ ବରଂ କାମରେ ଆସିବ । ତୁମେ ତ ଯା' ହେଉ କିଛି ରୋଜଗାର କରିପାରୁଛ, ତୁମକୁ ଦେବି କାହିଁକି ?'

'ଆଉ ଆଜ୍ଞା, ବହୁତ ହୋଇଗଲା ।' ରାଗରେ ଗର ଗର ହୋଇ କହିଲା ହୃଦୟ; 'ଠାକୁରେ କରନ୍ତୁ, ମୋତେ ଯେମିତି ଛୋଟା-କଣା-କୁଜା ବା ହୀନ-ଦରିଦ୍ର ହେବାକୁ ନ ପଡ଼େ । ଆପଣଙ୍କର ଦେବା ଦରକାର ନାହିଁ, ମୋର ନେବା ବି ଦରକାର ନାହିଁ । ଖୁରାକୁ ଜୁହାର, ଆଜ୍ଞା !'

ଯାଇ ପହଞ୍ଚିଲା ରାମକୃଷ୍ଣଙ୍କ ପାଖରେ । କଅଣ ସବୁବେଳେ ଖାଲି ସେଇ ଭାବକୁ ନେଇ ରହିଛ ? ମାଙ୍କ ପାଖରୁ କିଛି ସିଦ୍ଧି କି କ୍ଷମତା ମାଗି ଆଣି ପାରୁ ନାହଁ ? ଅସଲ ଜିନିଷ କିଛି ଯେଉଁଥିରେ ହୋଇ ପାରିବ, ସେଭଳି କିଛି ଶକ୍ତି ଦେବା ପାଇଁ ମାଙ୍କୁ କହୁ ନାହଁ କାହିଁକି ? ତୁମର ଏଇ ଭାବକୁ ନେଇ କଅଣ ଅଭାବ ମେଣ୍ଟିବ ?

ପୁଣି ? ଗର୍ଜି ଉଠିଲେ ରାମକୃଷ୍ଣ । ଥରେ ତୋ ପାଲରେ ପଡ଼ି ମାଙ୍କୁ ସିଦ୍ଧି ମାଗି ଦେଇ ଯାହା ଦେଖିଥିଲି ଆଜି ପର୍ଯ୍ୟନ୍ତ ଭୁଲି ନାହିଁ । ବୁଝିଲୁ ? 'ମାଗ୍‌ନେସେ ଛୋଟା ହୋ ଯାତା ।' ମାଗିବା ଲୋକ ଛୋଟ ହୋଇଯାଏ । ଏତେ ବଡ଼ ବିରାଟ ଭଗବାନ, ସେ ପୁଣି ଯେତେବେଳେ ଭିକ୍ଷା ମାଗିବାକୁ ଗଲେ ତାଙ୍କୁ ବାମନ ରୂପ ଧରିବାକୁ ପଡ଼ିଥିଲା । ମିଛରେ ହାତ ପତେଇ ନିଜକୁ ଛୋଟ କରିବୁ କାହିଁକି ?

ରଖି ଦିଅ ତମର ସେ ସବୁ ତତ୍ତ୍ୱକଥା । ତତ୍ତ୍ୱକଥାରେ ପେଟ ପୂରେ ନାହିଁ ।

ଗୋଟାଏ ଅଣ୍ଡିରା ବାଛୁରୀ କିଣିଲା ହୃଦୟ । ଘାସ ଚରିବା ପାଇଁ ନିତି ତାକୁ ଆଣି ବଗିଚା ଭିତରେ ବାନ୍ଧି ଦିଏ । ବହୁତ ସେବା-ଯତ୍ନ କରେ । ତା' ପିଠି ବେକ ଆଉଁସି ଦେଇ ଗେଲ କରେ ।

ରାମକୃଷ୍ଣ ଦିନେ ପଚାରିଲେ, 'ତାକୁ ସେଠି ନିଇତି ବାନ୍ଧି ରଖୁଛୁ କାହିଁକି ? କରିବୁ କଅଣ ?'

'ଗାଁକୁ ପଠେଇବି ।'

'କାହିଁକି ରେ ? କଅଣ କରିବ ସେଠି ?'

'ବଡ଼ ହୋଇଗଲେ ହଳ ଟାଣିବ ।'

କାହିଁ କାମାରପୁକୁର-ସିଓଡ, କାହିଁ କଲିକତା ! ବାଛୁରୀଟା ଏତେ ବାଟ ଚାଲି ଚାଲି ଯିବ ସେଠିକି ! ସେଠି ଯାଇ ବଡ଼ ହେବ ! ପୁଣି ହଳ ଟାଣିବ !

ଭାବୁ ଭାବୁ ବେଦନାରେ ମୂର୍ଚ୍ଛିତ ହୋଇ ପଡ଼ିଲେ ରାମକୃଷ୍ଣ ।

ଏଇ ହେଉଛି ମାୟା । ଏଇଆକୁ କହନ୍ତି ସଂସାର ।

ଚାଉଳ ଗୋଦାମରେ ବଡ଼ ବଡ଼ ଅଖା ଭିତରେ ଚାଉଳ ରହିଛି । ମୂଷା ଆସି ଅଖା କାଟି ଖାଇଯିବେ, ତେଣୁ ଗୋଦାମ-ମାଲିକ ଗୋଟାଏ କୁଲାରେ କିଛି ଖଇ-ଉଖୁଡ଼ା ରଖି ଦେଇଥାଏ ଚାଉଳ ବସ୍ତା ପାଖରେ । ମୂଷା ଆସିଲେ ସେଇଆକୁ ଖାଉଥିବେ ରାତି ସାରା କୁଟୁର କୁଟୁର କରି, ଆଉ ଚାଉଳ କତିକି ଯିବେ ନାହିଁ ।

ଆରେ ! ମାୟା କଅଣ, ତାକୁ ଚିହ୍ନିବାକୁ ଚେଷ୍ଟା କର । ଯଦି ମାୟାକୁ ଚିହ୍ନି ପାରିବୁ ସେ ଲାଜରେ ବାଟ କାଟି ଆପେ ପଳେଇଯିବ । ହରିଦାସ ଦେହରେ ବାଘ-ଛାଲ ଗୁଡ଼େଇ ହୋଇ ଆସିଲା ଗୋଟାଏ ପିଲାକୁ ଡରେଇବା ପାଇଁ । ପିଲା ମହା ଚଲାଖ । କହିଲା, ମୁଁ ତୋତେ ଚିହ୍ନି ସାରିଛି, ତୁ ବାଘ ନୋହୁଁ, ତୁ ଆମ ହରିଆ । ହରି ଦାସ ଧରା ପଡ଼ିଗଲା । ପଳେଇଗଲା ହସି ଦେଇ ।

ହୃଦୟ କିନ୍ତୁ ହରି ଦାସକୁ ଚିହ୍ନିବାକୁ ଚାହେଁ ନାହିଁ । ସେ ତା'ର ସେଇ ବାଘ-ଛାଲଟାକୁ କେବଳ ଦେଖୁଥିବ ।

## ୩୯

ମୋର ତ ମାମୁଁ ଅଛନ୍ତି । ମୋର ପୁଣି ଚିନ୍ତା କଅଣ ? ମୋର ସାଧନ ଭଜନ ବା କଅଣ ଦରକାର ?

ମନରେ ଏଇ ଭଳି ଚାରି-ଦଉଡ଼ି-କଟା ଭାବ ନେଇ ବୁଲୁଥାଏ ହୃଦୟ ଏବଂ ଫନ୍ଦି-ଫିକର କରୁଥାଏ କେମିତି ସମ୍ପତ୍ତି-ବାଡ଼ି କରିବ । କେଉଁଠି ଖଣ୍ଡିଏ ଜମି, କେଉଁଠି ଗୋଟାଏ ବଳଦ, କୋଉଠୁ କିଛି ଟଙ୍କା । ସ୍ତ୍ରୀ ପାଇଁ ଗୋଟାଏ କିଛି ଅଳଙ୍କାର । ନିଜ ପାଇଁ ଖଣ୍ଡେ ଶାଲ । ଏଇ ସବୁ ତା'ର ଚିନ୍ତା ।

ସାଧକ-ଭକ୍ତମାନେ ବେଳେ ବେଳେ ରାମକୃଷ୍ଣଙ୍କର ଅଲୌକିକତ୍ୱ ବିଷୟରେ ଆଲୋଚନା କରନ୍ତି । ହୃଦୟ ଶୁଣେ ଏବଂ ଭାବେ, ଭଲ ହେଲା, ମୋ ମେହନତ୍ କମିଗଲା । ମୋର ଆଉ ଭାବନା କଅଣ ? କଥାରେ ଅଛି, ମାମୁଁର ହେଲେ ଭଣଜାର ହେଲା । ମୋର ତ ସେଇ ଅବସ୍ଥା । ତାଙ୍କର ହେଲା ମାନେ ମୋର ବି ଷୋହୋଳ ଅଣା ହୋଇ ଯାଇଛି । ମହାଦେବ ଯେତେବେଳେ ପାର ହୋଇଯିବେ, ନନ୍ଦୀ-ଭୃଙ୍ଗୀଙ୍କୁ ବଳେ ବଳେ ଟାଣି ନେଇଯିବେ ।

ତା'ଛଡ଼ା,ସେବା କ'ଣ ମୁଁ କମ୍ କରୁଛି ତାଙ୍କର ? ମୁଁ ନ ଥିଲେ ତାଙ୍କୁ ଆଉ ସାଧୁଗିରି କରିବାକୁ ପଡ଼ନ୍ତା ନାହିଁ । ମୁଁ ଅଛି ବୋଲି ସିନା ତାଙ୍କର ଏତେ ଖାତିର ! ମୋତେ କ'ଣ ସେ ଅଣହେଳା କରି ପାରିବେ ?

ମୋର ତେବେ ଆଉ କୋଉ କଥାକୁ ପରବାୟ ? ବରଂ ସୁବିଧା ସୁଯୋଗ ଦେଖି ମଝିରୁ କିଛି ଫାଇଦା ଉଠେଇ ନେଇ ପାରିଲେ ଭଲ ।

ଅକସ୍ମାତ୍ ଦିନେ ତା' ସ୍ତ୍ରୀ ସଂସାରରୁ ବିଦାୟ ନେଇ ଚାଲିଗଲା ।

ମୁହୂର୍ତ୍ତକ ଭିତରେ ମନର ଗତି ବିପରୀତ-ମୁଖୀ ହୋଇଗଲା । ସଂସାର ଭୁଷୁଡ଼ି ପଡ଼ିଲା ତାସ-ଘର ପରି । ଟଙ୍କାର ଥଳୀ ତାକୁ ମନେ ହେଲା ଆବର୍ଜନା-ଝୁଡ଼ି ପରି ।

ପିନ୍ଧା ଲୁଗା ଦେହରୁ ବାହାର କରିଦେଲା । କାନ୍ଧରୁ ପଇତା ବାହାର କରି ଫୋପାଡ଼ି ଦେଲା । ଉଗ୍ର ଭଙ୍ଗୀରେ ବସିଲା ଧ୍ୟାନାସନରେ । କିନ୍ତୁ ଯେତେ ଯାହା କଲେ ବି କିଛି ହେଲା ନାହିଁ । ଶେଷକୁ ଦିନେ ଯାଇ ଧରି ବସିଲା ରାମକୃଷ୍ଣଙ୍କୁ । କହିଲା, 'ତୁମର ଯେଉଁ ରକମ ଭାବ ହୁଏ, ମୋର ସେଇ ଭଳି କରେଇ ଦିଅ । ମୋତେ ବୁଡ଼େଇ ଦିଅ ଅତଳ ଭିତରେ । ତୁମ ମହାମାୟାଙ୍କୁ ଆଣି ଦେଖାଅ ମୋତେ-'

ରାମକୃଷ୍ଣ କହିଲେ, 'ତୋର ସେ ସବୁ ଦରକାର ନାହିଁ ।'

'ଅଲବତ୍ ଅଛି !' ଝାଡ଼ି ହେଲା ପରି କହିଲା ହୃଦୟ । 'ତୁମେ କେବଳ ସବୁ ଫଳ ପାଇବ, ଆଉ କେହି ପାଇବେ ନାହିଁ ? ମା କଅଣ ଏକା ତୁମର ?'

'ଶୁଣ୍, ତୁ କେବଳ ମୋରି ସେବା କର । ସେତିକି କଲେ ଫଳ ପାଇବୁ ।'

'ବହୁତ ଦିନ ଧରି ବହୁତ ସେବା କରି ସାରିଛି । କଅଣ ହେଇଛି ? କିଛି ନାହିଁ । ମୋର ଏବେ ଭାବ ଆସିବା ଦରକାର । ମୋତେ ଭାବ କରେଇ ଦିଅ ।'

'କଅଣ ତୁ କହୁଛୁ ପାଗଳଙ୍କ ଭଳି ?' ରାମକୃଷ୍ଣ ତାକୁ ବୁଝେଇବା ପାଇଁ ଚେଷ୍ଟା କଲେ । 'ଆରେ, ଆମେ ଦୁଇ ଜଣ ଯାକ ଯଦି ଭାବରେ ବିଭୋର ହୋଇ ରହିଥିବା, ତେବେ କିଏ କାହା କଥା ବୁଝିବ ?'

'ସେ କଥା ମୁଁ ଜାଣେ ନା ।' ହୃଦୟ ଛାଡ଼ିବା ଲୋକ ନୁହେଁ । ତା' ମନକୁ ପ୍ରଚଣ୍ଡ ବୈରାଗ୍ୟ ଆସି ଯାଇଛି । କହିଲା, 'ମୁଁ କିଛି ଶୁଣିବି ନାହିଁ । ମୋତେ ବତେଇ ଦିଅ, କଅଣ କଲେ କଅଣ ହେବ !'

'ଆରେ, ମୁଁ ଚାହିଁଲେ କ'ଣ କିଛି ହୋଇ ପାରିବ ? ସବୁ ସେଇ ମାଙ୍କ ଇଚ୍ଛା । ଯାଇ ମାଙ୍କୁ କହ, ତାଙ୍କ ଇଚ୍ଛା ହେଲେ ତୁ ଯାହା ଚାହୁଁଛୁ ହୋଇପାରିବୁ । ସେ ଯଦି ଚାହିଁବେ, ନିଃସ୍ୱକୁ ବିଶ୍ୱଜୟୀ କରେଇ ଦେଇ ପାରିବେ।'

ବେଶ୍ ! ଯାଉଛି ତେବେ ମାଙ୍କୁ ଧରିବି ! ହେଇ, ଧଇଲି । ବସିଲି ଦୃଢ଼ାସନରେ ।

ଧୀରେ ଧୀରେ ଦର୍ଶନ ଆରମ୍ଭ ହେଲା ହୃଦୟର । ପୂଜା କଲା ବେଳେ କିମ୍ବା ଧ୍ୟାନରେ ବସିଥିବା ବେଳେ ତା'ର ଅର୍ଦ୍ଧ-ବାହ୍ୟ ଦଶା ଆରମ୍ଭ ହୋଇଗଲା । ବେଳେ ବେଳେ ପୁଣି ନିବିଡ଼ ଭାବାବେଶ ମଧ୍ୟ ।

ମଥୁର ବାବୁ ଚିନ୍ତିତ ହେଲେ । ଯାଇ ରାମକୃଷ୍ଣଙ୍କୁ ପଚାରିଲେ, 'ହୃଦୟର ପୁଣି ଏ ସବୁ କଅଣ ଆରମ୍ଭ ହେଲା ? ସତରେ ନା ଲୋକ-ଦେଖାଣିଆ ?'

'ସତ । ଖୁବ୍ ବ୍ୟାକୁଳ ହୋଇ ସେ ମାଙ୍କୁ ଧରିଛି । ମା ନିଜେ ତାକୁ ଏଇ ଭାବ ଅଣେଇ ଦେଇଛନ୍ତି ।'

'ଇଏ ତ ମହା ସମସ୍ୟା ଆସି ପହଞ୍ଚିଲା । ତା'ହେଲେ ହେବ କଅଣ ହୃଦୟର ?'

'ଡରିବାର କିଛି ନାହିଁ । ମା ନିଜେ ତାକୁ ସବୁ କଥା ଦେଖେଇ, ବୁଝେଇ, ଦି' ଦିନ ପରେ ପୁଣି ତାକୁ ସ୍ୱାଭାବିକ କରି ଦେବେ ।'

ମଥୁର ବାବୁ ବୁଝି ପାରିଲେ, ସବୁ ଏଇ ରାମକୃଷ୍ଣଙ୍କ ଖେଳ । କହିଲେ, 'ବାବା, ତୁମେ ନିଜେ ତ ତାକୁ ଭାବ ଅଣେଇ ଦେଇଛ, ତୁମେ ଇ ତାକୁ ପ୍ରକୃତିସ୍ଥ କରେଇ ଦିଅ । ଆମେ ଦୁଇ ଜଣ ତୁମର ଦୁଇ ଭୃତ୍ୟ, ଦୁଇ ସେବକ-ନନ୍ଦୀ ଆଉ ଭୃଙ୍ଗୀ । ଆମେ କେବଳ ତୁମ ପାଖେ ପାଖେ ରହିଥିବୁ । ତୁମ ସେବା-ଯତ୍ନ କରୁଥିବୁଁ । ଏହା ବାଦ୍ ଆମର ଆଉ ଅନ୍ୟ ଭାବ ନାହିଁ, ଅନ୍ୟ କାମ ନାହିଁ, କି କାମନା ନାହିଁ । ଆମର ଅଦ୍ୱୈତ ଅବସ୍ଥା କଅଣ ହେବ ?'

ପଞ୍ଚବଟୀ ଆଡ଼କୁ ଯାଉଛନ୍ତି ରାମକୃଷ୍ଣ । ହୁଏତ ଦରକାର ପଡ଼ିପାରେ, ହୃଦୟ ତେଣୁ ପାଣି-ଢାଳ ଗାମୁଛା ଧରି ଚାଲିଛି ପଛେ ପଛେ । ଯାଉଁ ଯାଉଁ ହଠାତ୍ ଗୋଟାଏ ଅପୂର୍ବ ଦର୍ଶନ ହେଲା ତା'ର । ଅଲୋକ-ଅବଲୋକିତ ଦର୍ଶନ । ଦେଖିଲା, ରାମକୃଷ୍ଣ ଦେହଧାରୀ ମନୁଷ୍ୟ

ନୁହନ୍ତି, ଗୋଟିଏ ଚଳମାନ ଜ୍ୟୋତି-ବର୍ତ୍ତିକା । ଦିବ୍ୟ ଅଙ୍ଗରେ ଅରୁଣରକ୍ତିମ ରୁଚି । ସେହି ଆଲୋକରେ ସମଗ୍ର ପଞ୍ଚବଟୀ ପ୍ଲାବିତ, ଉଦ୍‌ଭାସିତ ହୋଇ ଯାଉଛି । ରାମକୃଷ୍ଣଙ୍କର ଜ୍ୟୋତିର୍ମୟ ପାଦ ଦୁଇଟି ଯେପରି ମାଟି ସ୍ପର୍ଶ କରୁ ନାହିଁ, ଶୂନ୍ୟରେ ଶୂନ୍ୟରେ ଚାଲି ଯାଉଛି । ଯେପରି, ଶୂନ୍ୟ-ସରୋବରରେ ରକ୍ତ-ପଦ୍ମ ଫୁଟି ଫୁଟି ଯାଉଛି ।

ଆଖି ମଳି ପୁଣି ଚାହିଁଲା ହୃଦୟ । ସବୁ ତ ଠିକ୍ ଅଛି, କେବଳ ରାମକୃଷ୍ଣ ଆଉ ଦେହ ହୋଇ ନାହାନ୍ତି, ଶିଖାମୟ ହୋଇ ଯାଇଛନ୍ତି ।

ଚାହିଁଲା ନିଜ ଦେହକୁ । ଆଶ୍ଚର୍ଯ୍ୟ ! ଦେଖିଲା, ନିଜର ମଧ ସେହି ଦିବ୍ୟ ସତ୍ତା । ନିରଙ୍ଗ-ଉଜ୍ଜ୍ୱଳ ହୋଇ ଯାଇଛି ସେ ନିଜେ ମଧ । ସେ ଯେପରି ଅଗ୍ରବର୍ତ୍ତୀ ସେହି ଦିବ୍ୟ ଅଙ୍ଗର ଅଂଶ ସ୍ୱରୂପ । ଦେବତାଙ୍କ ଅନୁଗାମୀ ଦେବାନୁଚର । କେବଳ ଦେବତାଙ୍କ ସେବା-ସଙ୍ଗ କରିବା ନିମନ୍ତେ ଦେବ ବେଶରେ ତା'ର ଏହି ପୃଥକ୍ ସ୍ଥିତି ।

ହଠାତ୍ ଚିତ୍କାର କରି ଉଠିଲା ହୃଦୟ, 'ହେ ରାମକୃଷ୍ଣ ! ଶୁଣୁଛ ? ଆମେ ମଣିଷ ନୋହୁଁ, ଆମେ ଦେବତା ।'

ଥରେ ନୁହେଁ, ହିତାହିତ ଜ୍ଞାନଶୂନ୍ୟ ହୋଇ, ବାରମ୍ବାର ଚିତ୍କାର କରି କହିଲା ସେହି କଥା ମୂର୍ଖଙ୍କ ଭଳି, 'ଆରେ, ହେ ରାମକୃଷ୍ଣ ! ରୁହ, ରୁହ ! ଦେଖିଲ, ଆମେ କିଏ ! ଆରେ, ଆମେ ସବୁ ତେବେ ଏଠି ପଡ଼ି ରହିଛୁଁ କାହିଁକି ?'

ରାମକୃଷ୍ଣ ତାକୁ ଅନନୟ କଲା ପରି କହିଲେ, 'ଚୁପ୍, ଚୁପ୍, ପାଟି କର ନା ।'

'କାହିଁକି ପାଟି କରିବି ନାହିଁ ? ତୁମେ ଯାହା ମୁଁ ବି ସେଇଆ । ଆମେ ଦୁଇ ଜଣ ଯାକ ଅବତାର !'

'ଆରେ ରହ, ରହ ଭଲା ! ଲୋକ ଆସି ଘେରି ଯିବେ ଆମକୁ ।'

'ଆସନ୍ତୁ, କିଏ ଆସୁଛନ୍ତି ।' ହୃଦୟ ତଥାପି କଥା ବନ୍ଦ କରିବାକୁ ଚାହେଁ ନା । ଆହୁରି ଜୋରରେ ଗଳା ଫଟେଇ ସେଇ କଥା କହି ଚାଲିଲା, 'ଏଠି ରହି ଆଉ ଲାଭ କଅଣ ? ଚାଲ, ଅନ୍ୟ ଆଡକୁ ଯିବା । ଦେଶ ଦେଶ ବୁଲି ଜୀବୋଦ୍ଧାର କାମ କରିବା ।'

ପାଟି ଆଉ ବନ୍ଦ କରୁ ନାହିଁ ହୃଦୟ ।

ରାମକୃଷ୍ଣ ଚାଲି ଆସିଲେ ପାଖକୁ । ହାତ ରଖିଲେ ତା' ଛାତି ଉପରେ । କହିଲେ, 'ଏ ଶଳାକୁ ଏଥର ଜଡ଼ କରି ଦେ, ମା !'

ମୁହୂର୍ତ୍ତକ ଭିତରେ ଦିବ୍ୟ-ଦର୍ଶନ ଉଭେଇ ଗଲା । ଗୋଟାଏ ନିଶ୍ୱାସରେ ଶୁଖିଗଲା ଆନନ୍ଦର ଅତଳ ସମୁଦ୍ର । ଶରୀରୀ ଶିଖା ଲିଭିଯାଇ ଆଖି ଆଗରେ ରହିଲା ପୂର୍ବ ଭଳି ରକ୍ତ-ମାଂସର ଦେହ ।

'ଏ କଅଣ କଲ, ମାମୁଁ ?' କହୁ କହୁ କାନ୍ଦି ପକାଇଲା ହୃଦୟ । 'ମୋତେ ଜଡ଼ କରି ଦେଲ ?'

'ତୋତେ କେବଳ ଟିକିଏ ସ୍ତବ୍ଧ କରେଇ ଦେଲି ।'

'ଆଉ ସେ ଦୃଶ୍ୟ ଦେଖି ପାରିବି ନାହିଁ ?' ନିଃସ୍ୱ ପରି ଚାହିଁ ରହିଲା ହୃଦୟ ।

'ତୁ ବହୁତ ପାଟିଗୋଳ କରୁଛୁ । କଅଣ ଟିକିଏ ଦେଖି ପକେଇଲୁ, ସଙ୍ଗେ ସଙ୍ଗେ ପାଗଳଙ୍କ ଭଳି ଚିତ୍କାର କରି ରାଇଜ ଯାକର ଲୋକଙ୍କୁ ଡାକି ଆଣି ହାଟ ବସେଇ ଦେବାକୁ ଚାହିଁଲୁ ।'

ହଉ । ହେଲା ଏବେ ! ରାମକୃଷ୍ଣଙ୍କ ସାହାଯ୍ୟ ମୋର ଆଉ ଦରକାର ନାହିଁ । ମୁଁ ଏକା ଏକା ପାରିବି । ରାମକୃଷ୍ଣ ଯଦି ପାରିଛନ୍ତି, ମୁଁ କାହିଁକି ନ ପାରିବି ? ମୁଁ କଅଣ କମ୍ ! ... ଅଧିକରୁ ଅଧିକ ଧ୍ୟାନ-ଜପରେ ଲାଗି ପଡ଼ିଲା ହୃଦୟ । ରାତି ଅଧରେ, ସମସ୍ତେ ଶୋଇ ପଡ଼ିଲେ, ଉଠି ଚାଲିଲା ପଞ୍ଚବଟୀ ।

ମନେ ମନେ ଠିକ୍ କଲା, ରାମକୃଷ୍ଣ ଯେଉଁଠି ବସି ଜପଧ୍ୟାନ କରନ୍ତି ସେହି ଜାଗାରେ ବସି ଧ୍ୟାନ କରିବ । ସେଇ ଜାଗାଟା ବୋଧହୁଏ ଲକ୍ଷ୍ମୀବନ୍ତ, ସେ ଜାଗାର ମାଟିରେ ବୋଧହୁଏ କିଛି ଗୋଟାଏ କରାମତି ଅଛି । ହଉ, ଦେଖାଯାଉ, କଅଣ ହେଉଛି ।

ଯାଇ ବସିଲା ସେହି ଜାଗାରେ ଆସନ କରି ।

ଠିକ୍ ବସି ପଡ଼ିଛି କି ନାହିଁ, ହଠାତ୍ ଆତଙ୍କରେ ଚିତ୍କାର କରି ଉଠିଲା, 'ପୋଡ଼ିଗଲି, ପୋଡ଼ିଗଲି, ମାମୁଁ ! ଧାଇଁ ଆସ । ବଞ୍ଚାଅ ମୋତେ !'

ସେ, ଆର୍ତ୍ତନାଦ ଶୁଭିଗଲା ରାମକୃଷ୍ଣଙ୍କ କାନକୁ । ଅସ୍ତ-ବ୍ୟସ୍ତ ହୋଇ ଘରୁ ବାହାରି ଆସି ଧାଇଁଲେ ପଞ୍ଚବଟୀ ଆଡ଼କୁ । ମୁହଁରେ କରୁଣ ଜିଜ୍ଞାସା: 'କି ରେ ! କଅଣ ହେଲା ?'

ଯନ୍ତ୍ରଣା-କାତର କଣ୍ଠରେ ଉତ୍ତର ଦେଲା ହୃଦୟ, 'ମୁଁ ଆସି ଏଇଠି ବସି ପଡ଼ିଲି ଧ୍ୟାନ କରିବା ପାଇଁ । ବସି ପଡ଼ିଛି କି ନାହିଁ,କିଏ ଯେମିତି ମୋ ଉପରେ ଜଳନ୍ତା ନିଆଁ ଅଜାଡ଼ି ଦେଲା । ସାରା ଦେହ ଜଳି ଯାଉଛି ।'

'କାହିଁକି ତୁ ଏ ସବୁ କରୁଛୁ, କହିଲୁ ? ତୋତେ ପରା ମୁଁ କହିଥିଲି, ମୋ'ରି ସେବା କଲେ ତୋର ସବୁ ହେବ । କାହିଁକି ମିଛରେ ଏ ସବୁ ଝମେଲା ଭିତରେ ପଶୁଛୁ ? ହଉ, ଆ ପାଖକୁ । ଥଣ୍ଡା କରି ଦେଉଛି -' କହି ତା' ଦେହରେ ବୁଲାଇ ଦେଲେ ସ୍ନେହ-କରୁଣ ହାତ ।

ସେହି ଦିବ୍ୟ ସ୍ପର୍ଶରେ ଶାନ୍ତି ଆସିଲା ହୃଦୟର । ଅନୁଭବ କଲା ଗଙ୍ଗା-ସ୍ନାନର ଶୀତଳ ନିର୍ମଳତା । ମନେ ମନେ ବୁଝିଲା, ସେବା କରିବା ଛଡ଼ା ତା'ର ଆଉ ଅନ୍ୟ ଉପାୟ ନାହିଁ । ଶୁଶ୍ରୁଷା ବ୍ୟତିରେକେ ନାହିଁ ତା'ର ଆଉ କୌଣସି ଜିଜ୍ଞାସା ।

ଯେମିତି ଅଛି, ଭଲ ଅଛି । ଯେଉଁଠି ଥିଲେ ବି, ଯେଉଁଠି ଅଛି ସେଇଠି ମୋର ରାମଙ୍କ ଅଯୋଧ୍ୟା । 'ହରିବୋଲ', 'ହରିବୋଲ' କହି ମୁଁ କେବଳ ସଞ୍ଜ ସକାଳେ ହାତ-ତାଳି ଦେଇ ହରି-ନାମ କରେ । ଏତିକିରେ ସମସ୍ତ ପାପତାପର ଅନ୍ତ । ପାପ ହରଣ କରନ୍ତି ବୋଲି ତ ସେ ହରି । ଦେହ-ବୃକ୍ଷରେ ପାପ ହେଉଛି ପକ୍ଷୀ । ନାମ-କୀର୍ତ୍ତନ ହେଉଛି ହାତ-ତାଳି । ଗଛ ମୂଳରେ ଛିଡ଼ା ହୋଇ ହାତରେ ତାଳି ମାରିଲେ ଗଛ ଉପରେ ବସିଥିବା ଚଢ଼େଇମାନେ ଉଡ଼ି ପଳାନ୍ତି । ଠିକ୍ ସେହିପରି ହାତ-ତାଳି ଦେଇ ହରି-ନାମ କଲେ ଦେହରୁ ପଳାଇ ଯାଏ ଅବିଦ୍ୟା ।

ମୋ ଦେଇ ଯାହା ହୋଇ ପାରିବ ନାହିଁ ମୁଁ କାହିଁକି ଧାଇଁବି ତା' ପଛରେ ? ମୋ କାମ କେବଳ ଡାକ ଶୁଣିବା ପାଇଁ ଛିଡ଼ା ହୋଇ ରହିବା ।''ହୁଜୁରେତେ ଆର୍‌ଜି ଦିୟେ ମା, ଦାଁଡ଼ିୟେ ଆଛି କରପୁଟେ ।'' ଶ୍ରୀ ହଜୁରଙ୍କ ଇଜ୍‌ଲାସରେ ଅର୍‌ଜି ଦାଖଲ କରି ଦେଇ ଛିଡ଼ା ହୋଇଛି ହାତ ଯୋଡ଼ି ।

ଏହି ଭଳି ବହୁତ ଭାବନା ମନକୁ ଆସେ । ତଥାପି ମନର ଗହନରେ କେଉଁଠି ଟିକିଏ ଅହଂ ରହିଥାଏ । କାର୍ନିସରେ କେଉଁଠି ଲୁଚି ରହିଥାଏ ଗୋଟାଏ ଅଶ୍ୱତ୍ଥ ମଞ୍ଜି, ଧୀରେ ଧୀରେ ସେଥିରୁ ଗଜା ବାହାରେ ।

ହୃଦୟ କହିଲା, 'ଏଥର ଆମ ନିଜ ଘରେ ଦୁର୍ଗା-ପୂଜା କରିବି । ଦେଖିବି, ମା ମୋ ପୂଜା ଗ୍ରହଣ କରୁଛନ୍ତି କି ନାହିଁ ।' ଯାଇ ମଥୁର ବାବୁଙ୍କୁ କହିଲା, 'କିଛି ଟଙ୍କା ଦିଅନ୍ତୁ ।'

ମଥୁର ବାବୁ ସଙ୍ଗେ ସଂଗେ ରାଜି: କହିଲେ, 'କିନ୍ତୁ, ବାବାଙ୍କୁ ଏଠୁ ନେଇ ଯାଇ ପାରିବ ନାହିଁ ।'

'ସେ କଥା  କେମିତି ହେବ ? ମୋ ଘରେ ପ୍ରଥମ ଦୁର୍ଗା-ପୂଜା, ଅଥଚ ମାମୁଁ ରହିବେ ନାହିଁ ?'

'ନ ରହିଲି ତ କଅଣ ହେଲା ? ତୁ ସେଥିପାଇଁ ମନ କଷ୍ଟ କର ନା' - ସାନ୍ତ୍ୱନା ଦେଇ କହିଲେ ରାମକୃଷ୍ଣ । 'ମୁଁ ପ୍ରତି ଦିନ ସୂକ୍ଷ୍ମ ଦେହରେ ଯାଇ ତୋ ପୂଜା ଦେଖି ଆସିବି । କିନ୍ତୁ, ମନେ ରଖିବୁ, ତୁହି କେବଳ ଦେଖି ପାରିବୁ ମୋତେ, ଆଉ କେହି ପାରିବେ ନାହିଁ ।'

ଆଉ, ଶୁଣ୍ । କାହା ହାତରେ ପ୍ରତିମା ତିଆରି କରେଇବୁ, ତନ୍ତ୍ରଧାରକ କିଏ ହେବେ, ତୋତେ ସବୁ କହି ଦେଉଛି । ମନେ ରଖିବୁ । ନିଜ ମନ ଅନୁସାରେ ନିଜେ ପୂଜା କରିବୁ । ପୂରାପୂରି ଓପାସ ରହିବୁ ନାହିଁ । ଦୁଧ, ଗଙ୍ଗା ଜଳ, ମିଶ୍ରି ସରବତ ଖାଇ ପାରିବୁ । ବୁଝିଲୁ ?

ହେଲା ବି ଠିକ୍ ସେଇଆ । ପ୍ରତିଦିନ ପୂଜା ଶେଷରେ ଆଳତି କଲା ବେଳେ ହୃଦୟ ଦେଖେ ରାମକୃଷ୍ଣ ଆସି ଛିଡ଼ା ହୋଇଛନ୍ତି ପ୍ରତିମା ପାଖରେ ।

ପୁଣି ଆଶ୍ଚର୍ଯ୍ୟ ! ପ୍ରତିମା ଜାଗାରେ ପ୍ରତିମା ରହିଥାଆନ୍ତି, କରୁଣାଘନ ରାମକୃଷ୍ଣ ଆସି ଉଭା ହୁଅନ୍ତି ଭକ୍ତର ଗୃହାଙ୍ଗନରେ ।

ଚାଲ ତେବେ ଏଥର ସେହି କରୁଣା-ନିଳୟଙ୍କ ପାଖକୁ । ସେଇଠିକି ଯାଇ ମନ-ପ୍ରାଣ ଢାଳି ଦେବି ତାଙ୍କରି ସେବା-ପୂଜାରେ । ହୃଦୟ ଫେରିଲା ଦକ୍ଷିଣେଶ୍ୱର ।

ତେବେ ଫେରିବା ଆଗରୁ ଦ୍ୱିତୀୟ ବିବାହ କରି ସାରିଥିଲା ।

## ୪୦

ସତର ବର୍ଷର ପିଲା ଅକ୍ଷୟ, ସୁନ୍ଦର ସୁଦର୍ଶନ ରୂପ । ବାପ-ମା ଛେଉଣ୍ଡ । ବିଷ୍ଣୁ ମନ୍ଦିରରେ ପୂଜା କରେ । ଧ୍ୟାନରେ ନିଷ୍ପନ୍ଦ ହୋଇ ବସି ରହେ ଦୁଇ ତିନି ଘଣ୍ଟା । ନିଜ ହାତରେ ରାନ୍ଧି ଖାଏ । ଦିନ ସାରା ଗୀତା ପାଠ କରୁଥାଏ ।

କେବଳ ପୁତୁରା ବୋଲି ନୁହେଁ, ତା'ର ଭକ୍ତି ଭାବ ଦେଖି ଭାରି ଭଲ ପାଆନ୍ତି ତାକୁ ରାମକୃଷ୍ଣ ।

ସେଇ ଅକ୍ଷୟର ବିବାହ ହେଲା । ବିବାହ ପରେ ଅସୁସ୍ଥ ହେଲା । ଡାକ୍ତର ଦେଖି କହିଲେ, ସାମାନ୍ୟ ଜ୍ୱର, ଛାଡ଼ି ଯିବ ।

କିନ୍ତୁ ହୃଦୟକୁ ଡାକି ନେଇ ନିରୋଳାରେ କହିଲେ ରାମକୃଷ୍ଣ, 'ହୃଦୁରେ, ଲକ୍ଷଣ ଭଲ ନୁହେଁ । ଏ ପିଲା ବଞ୍ଚିବ ନାହିଁ ।'

'ଛି, ମାମୁଁ, ତୁମ ତୁଣ୍ଡରୁ ଏ ଭଳି କଥା ବାହାରୁଛି କାହିଁକି ?'

'କାହିଁକି, ସେ କଥା କହି ପାରିବି ନାହିଁ । ମା ମୋତେ ଯାହା କୁହାନ୍ତି ମୁଁ ତ ସେଇଆ କହେଁ । ନ ହେଲେ, ତୁ କ'ଣ ଭାବୁଛୁ, ମୁଁ ଚାହେଁ ଅକ୍ଷୟ ଯାଉ ?'

ହୃଦୟ ଅଣ୍ଟା ଭିଡ଼ି ଲାଗି ପଡ଼ିଲା ଅକ୍ଷୟକୁ ଭଲ କରେଇବା ପାଇଁ । ଯେତେ ଡାକ୍ତର ପାଖ-ଆଖରେ ଥିଲେ କାହାକୁ ବାଦ୍ ଦେଲା ନାହିଁ । ମାତ୍ର ଯାହାକୁ ତେଣୁ ଡାକରା ଆସିଛି ଡାକ୍ତର ତା' ପାଇଁ କଅଣ କରିବେ ?

ପ୍ରାୟ ମାସେ ପର୍ଯ୍ୟନ୍ତ ବିଛଣାରେ ପଡ଼ି ରହିଲା । ସଳିତା ଜଳି ଜଳି ଆସି ପହଞ୍ଚିଲା ସେଇଠି ଯେଉଁଠି ତାକୁ ଆଉ ତେଜିବା ସମ୍ଭବ ନୁହେଁ । ଶେଷରେ ଆସିଲା ସେହି ଅନ୍ତିମ ମୁହୂର୍ତ୍ତ । ରାମକୃଷ୍ଣ ଆସି ପାଖରେ ବସିଲେ । ନାଁ ଧରି ଡାକି ଗମ୍ଭୀର ସ୍ୱରରେ କହିଲେ, 'ଅକ୍ଷୟ, କୁହ, ଗଙ୍ଗା ନାରାୟଣ, ଓଁ ରାମ ।' ଏହି ମନ୍ତ୍ର ତିନି ଥର ଉଚ୍ଚାରଣ କଲା ଅକ୍ଷୟ । ତା'ପରେ ଧୀରେ ଧୀରେ ଲୀନ ହୋଇଗଲା ।

ତଳେ କଚାଡ଼ି ହୋଇ ପଡ଼ି କାନ୍ଦିବାକୁ ଲାଗିଲା ହୃଦୟ । ରାମକୃଷ୍ଣ ସେତେବେଳେ ଭାବ-ଭୂମିରେ ।

ହୃଦୟ ଯେତେ ଯେତେ କାନ୍ଦୁଥାଏ, ରାମକୃଷ୍ଣ ସେତେ ବେଶୀ ହସନ୍ତି, ନାଚନ୍ତି, ଗୀତ ଗାଆନ୍ତି । ଅମୃତ-ତୀର୍ଥକୁ ଉତ୍ତୀର୍ଣ୍ଣ ହୋଇ ଯାଇଛି ଅକ୍ଷୟ । ଚାଲି ଯାଇଛି କ୍ଷୟହୀନ ଆନନ୍ଦ ଧାମକୁ । ଏଥିରେ ଯଦି ଆନନ୍ଦ ନ ଆସିବ ମନକୁ, ତେବେ ଆଉ କେଉଁଥିରେ ଆସିବ ?

ଛିଡ଼ା ହୋଇ ରହି ସ୍ପଷ୍ଟ ଦେଖିଲେ ଆଖି ଆଗରେ । ଦେଖିଲେ, ମଣିଷ କେମିତି ମରେ, କେମିତି ଦେହରୁ ବାହାରି ଆସେ ଆତ୍ମା, ବାହାରି ଆସି କେଉଁଠାକୁ ଯାଏ । ଦେଖିଲେ ଖୋଲି ଭିତରୁ ବାହାରି ଆସିଲା ଚକ୍ ଚକ୍ ତରବାରି । ତରବାରିର କିଛି ପରିବର୍ତ୍ତନ ନାହିଁ, କେବଳ ଖୋଳଟା ପଡ଼ି ରହିଲା । ସେହି ଉଜ୍ଜ୍ୱଳ ନିର୍ଭୀକ ତରବାରି ଏହି ମାୟା-ମିଥ୍ୟାର ତମସା ଭେଦ କରି ଚାଲିଗଲା ଲୋକାତୀତ ଆଲୋକତୀର୍ଥକୁ ।

କିନ୍ତୁ ଭାବ-ଲୋକରୁ ପୁଣି ଓହ୍ଲାଇ ଆସିଲେ ସ୍ଥୂଳ ମାଟିକୁ । ତହିଁ ଆର ଦିନ ରାମକୃଷ୍ଣ ଛିଡ଼ା ହୋଇଛନ୍ତି କାଳୀ ମନ୍ଦିରର ଅଗଣାକୁ ଲାଗି ଯେଉଁ ବାରନ୍ଦା, ତାହାରି ଉପରେ । ଦେଖିଲେ, ଅକ୍ଷୟର ନର-ଦେହ ଦାହ କରି ସାରି ଫେରୁଛନ୍ତି ଶ୍ମଶାନଯାତ୍ରୀ ମାନେ । ଦେଖି ପକାଇଲା ମାତ୍ରେ ଭୋ ଭୋ ହୋଇ କାନ୍ଦିବା ଆରମ୍ଭ କରିଦେଲେ । କି ବିକଳ ସେ କାନ୍ଦ ! ଓଦା ଗାମୁଛାକୁ

ଚିପୁଡ଼ିଲା ଭଳି କିଏ ଯେପରି ଛାତି ଭିତରକୁ ଜୋରରେ ଚିପୁଡ଼ି ଦେଉଛି । ଅବୁଝା ଅଶ୍ରୁର ଉଚ୍ଛ୍ୱାସରେ ଉଛୁଳି ପଡ଼ିଲା ସମସ୍ତ ଦୁଃଖ । କାହାର ସାଧ ରୋଧ କରିବ ସେହି ଜଳ-ତରଙ୍ଗ !

'ମା, ଏହାର ତ ପିନ୍ଧା ଲୁଗା ସହିତ ସଂପର୍କ ନଥାଏ, ପୁତୁରା ଅକ୍ଷୟ ସହିତ କେତେ ବା ସଂପର୍କ ଥିଲା ! ତଥାପି ଏହାର ଯଦି ଏ ଭଳି ହୋଇ ପାରୁଛି, ତେବେ ମୃତ୍ୟୁ-ଶୋକରେ ଗୃହୀ ଲୋକ ମାନଙ୍କର ଅବସ୍ଥା କଅଣ ହେଉ ନଥିବ ! ସେଇ କଥାଟା ଦେଖେଇ ଦଉଛୁ, ନୁହେଁ ?'

ନିଜ ପ୍ରସଙ୍ଗରେ 'ମୁଁ', 'ମୋର' ବୋଲି କହନ୍ତି ନାହିଁ ରାମକୃଷ୍ଣ । କହନ୍ତି, 'ଇଏ', 'ଏଠି', 'ଏହାର', 'ଏଠାରେ'- ଏଇ ଭଳି ।

'ମୁଁ' ଗଲେ ଜଂଜାଳ ମେଣ୍ଟିଯାଏ ।

'କୃଷ୍ଣକିଶୋରଙ୍କର ଦୁଇ ପୁଅ । ଦୁଇଟି ରତ୍ନ । ଏକକୁ ଆରେକ । ଦୁଇ ତିନିଟା ପାଶ୍ ବି କରି ସାରିଲେଣି । ହଠାତ୍ ମରିଗଲେ । ଏତେ ବଡ଼ ଜ୍ଞାନୀ କୃଷ୍ଣକିଶୋର, ତଥାପି ଥୟ ଧରି ରହି ପାରିଲେ ନାହିଁ । ପୁତ୍ରଶୋକରେ ପାଗଳ ଭଳି ହୋଇଗଲେ । ... ଭାଗ୍ୟକୁ ଈଶ୍ୱର ମୋତେ ଦେଇ ନାହାନ୍ତି... ।' ଆତ୍ମଗତ ଭାବରେ କହିଲେ ଠାକୁର ।

ଜଣେ ଭକ୍ତ କହିଲେ, 'ଈଶ୍ୱରଙ୍କ ଠାରେ ଭକ୍ତି ଆସିବା ଭଲ । ଶୋକ-ଦୁଃଖ ଆଉ ରହେ ନାହିଁ ।'

'ନା ରେ, ତା' ନୁହେଁ । ଶୋକ ଧକ୍କା ମାରି ଠେଲି ବାହାର କରିଦିଏ ଭକ୍ତିକୁ ।'

ବିଧବା ବ୍ରାହ୍ମଣୀ । ଗୋଟିଏ ବୋଲି ଝିଅ - ନାଁ ଚଣ୍ଡୀ । ଖୁବ୍ ବଡ଼ଲୋକ ଘରେ ବିବାହ ଦେଇଛି । ଜୋଇଁ ବିରାଟ ବଡ଼ ଜମିଦାର । ରାଜା ଉପାଧି ପାଇଛନ୍ତି । ରହନ୍ତି କଲିକତାରେ । ଜାକଜମକ ଭରା ଚଳଣି । ଝିଅ ଯେତେବେଳେ ବାପ ଘରକୁ ଆସେ, ଆଗରେ ପଛରେ ସିପାହୀ ବରକନ୍ଦାଜ । ମାର ଛାତି ଦଶ ହାତ ଫୁଲି ଉଠେ । କିନ୍ତୁ, କଅଣ ହେଲା କେଜାଣି, ଦମକାଏ ପବନରେ ନିଭିଗଲା ସଳିତା । ସାମାନ୍ୟ ଅସୁସ୍ଥ ହେଲା ଝିଅଟି, ଦିନ କେତୁଟା ଭିତରେ ଆଖି ବୁଜି ଦେଲା ।

ବିଧବା ରହନ୍ତି ସେହି ବାଗ୍‌ବଜାରରେ । ଶୋକ ସହି ପାରନ୍ତି ନାହିଁ, ମଝିରେ ମଝିରେ ଧାଇଁ ଆସନ୍ତି ପାଗଳ ପରି, କାଳେ ଠାକୁର କିଛି ଉପାୟ ବତେଇ ଦେବେ । କାଳେ, ତାଙ୍କର ଶାନ୍ତ ଶୀତଳ ମୂର୍ତ୍ତି ଦେଖି ମନକୁ ଶାନ୍ତି ଆସିବ ।

ବ୍ରାହ୍ମଣୀଙ୍କ ଆଡ଼କୁ ଚାହିଁଲେ ଠାକୁର । କହିଲେ, 'ସେଦିନ ଗୋଟାଏ ଅଜବ ଲୋକ ଆସିଥିଲା ଏଠିକି । କିଛି ସମୟ ବସିଲା, ତା' ପରେ କହିଲା, ଯାଉଛି ଏବେ । ଯାଇ ଥରେ ଦେଖେ ମୋ ପୁଅର ଚାନ୍ଦ-ମୁହଁଟି । ମୁଁ ତ ସମ୍ଭାଳି ପାରିଲି ନାହିଁ । କହି ପକାଇଲି, ଶଳା,ଉଠ୍ ଏଠୁ । ଯା, ପଳା ! ଈଶ୍ୱରଙ୍କ ଚାନ୍ଦ-ମୁହଁ କୁଆଡ଼େ ଗଲା, କହୁଛି ପୁଅର ଚାନ୍ଦ-ମୁହଁ ଦେଖିବ !'

ସେହି ବାଗବଜାରରେ ରହନ୍ତି ନନ୍ଦ ବୋଷ । ତାଙ୍କ ଘରକୁ ଠାକୁର ଆସିଛନ୍ତି । ନନ୍ଦ ବୋଷ ଘରୁ ପୁଣି ଯିବେ ସେଇ ବ୍ରାହ୍ମଣୀଙ୍କ ଘରକୁ ।

ବ୍ରାହ୍ମଣୀ ଅନେଇ ବସିଛନ୍ତି, ଠାକୁର କେତେବେଳେ ଆସିବେ । ଅଥୟ ହୋଇ ଘର-

ବାହାର ହେଉଛନ୍ତି । ନାଃ, ବୋଧହୁଏ ଆସିବେ ନାହିଁ ଅଭାଗିନୀ ମୁଁ, ମୋ ଅଙ୍ଗନରେ ସ୍ଥାନ କାହିଁ ଭଗବାନଙ୍କର ପଦାର୍ପଣ ପାଇଁ ?

ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । ଘରୁ ବାହାରି ପଡ଼ିଲେ । ଯାଇ ପହଞ୍ଚିଲେ ନନ୍ଦ ବୋଷଙ୍କ ଘରେ । ପଚାରିବେ, ଅଛନ୍ତି ନା ଫେରି ଗଲେଣି ଦକ୍ଷିଣେଶ୍ୱର । ଅଥବା ନନ୍ଦ ବୋଷଙ୍କ ଆନନ୍ଦଭବନରେ ଥାଇ ଭୁଲିଗଲେ ଦୁଃଖିନୀର ଶୋକମ୍ଳାନ ଦୀନ ପୁରାଙ୍ଗନ !

ବ୍ରାହ୍ମଣୀ ଠିକ୍ ବାହାରି ଯାଇଛନ୍ତି, ଠାକୁର ଆସି ପହଞ୍ଚିଗଲେ ଭକ୍ତମାନଙ୍କୁ ସାଙ୍ଗରେ ଧରି ।

ଘରେ ଆଉ କେହି ନାହାନ୍ତି, କେବଳ ବ୍ରାହ୍ମଣୀଙ୍କ ସାନ ଭଉଣୀ । ସେ ମଧ୍ୟ ବିଧବା । କହିଲା, 'ଅପାତ ଏଇ ଲାଗେ ବାହାରି ଗଲେ ନନ୍ଦ ବୋଷଙ୍କ ଘରକୁ ଖବର ବୁଝିବା ପାଇଁ । ଆସିଯିବେ ସଙ୍ଗେ ସଙ୍ଗେ ।'

ସମସ୍ତଙ୍କୁ ସାଙ୍ଗରେ ଧରି ଯାଇ ଛାତ ଉପରେ ବସିଲେ ଠାକୁର । ପିଲା-ବୁଢ଼ା, ପୁରୁଷ-ସ୍ତ୍ରୀ ସମସ୍ତେ ଛିଡ଼ା ହୋଇଛନ୍ତି ଆଗରେ ଧାଡ଼ି ବାନ୍ଧି । ପ୍ରତି ପ୍ରାଣରେ ବହି ଯାଉଛି ଭକ୍ତିର ସ୍ରୋତସ୍ୱତୀ । ଏତେ ଲୋକ ଅଛନ୍ତି, ଅଥଚ ମନେ ହେବ, ଜଣେ ହେଲେ କେହି ନାହିଁ ।

'ଏହି ତ ଅପା ଆସିଲେଣି !' କହିଲେ ସାନ ଭଉଣୀ ।

ବ୍ରାହ୍ମଣୀ ଉଠିଗଲେ ଛାତ ଉପରକୁ । ଠାକୁରଙ୍କୁ ଦେଖି ପକାଇ କଅଣ କହିବେ, କଅଣ କରିବେ କିଛି ଠଉରେଇ ପାରିଲେ ନାହିଁ । ପାଗଳଙ୍କ ପରି ଖାଲି ଏ ପାଖ ସେ ପାଖ ହେଲେ । କହିଲେ, 'ଦିନ ରାତି କାନ୍ଦୁଥିଲି । କିନ୍ତୁ ମୋର ଯେ ଏବେ ଆନନ୍ଦରେ ଛାତି ଫାଟି ଯାଉଛି ! ମୁଁ କେମିତି ବଞ୍ଚିବି, ମୋତେ କହି ଦିଅ ତୁମେ ସବୁ । ମୋ ଚଣ୍ଡୀ ଯେତେବେଳେ ଆସୁଥିଲା, ତା' ସାଙ୍ଗର ସିପାହୀ ବରକନ୍ଦାଜ ମୋ ଘର ଆଗରେ ପହରା ଦେଉଥିଲେ । ସେତେବେଳେ ବି ମୋ ମନକୁ ଏତେ ଆନନ୍ଦ ଆସୁ ନଥିଲା । ... ଏ ମୋର ହେଲା କଅଣ ! ଚଣ୍ଡୀ ପାଇଁ ମୋ ମନରେ ଆଉ ଟିକିଏ ହେଲେ ଦୁଃଖ ନାହିଁ । ... ଭାବୁଥିଲି, ସେ ତ ଆସିଲେ ନାହିଁ, ଆୟୋଜନ ଯାହା ତାଙ୍କ ପାଇଁ କରିଛି ସବୁ ନେଇ ଗଙ୍ଗାରେ ଫୋପାଡ଼ି ଦେଇ ଆସିବି । ତାଙ୍କ ସହିତ ଆଉ କଥା କହିବି ନାହିଁ, ଯେଉଁଠିକି ଆସିବେ, ଥରେ କେବଳ ଯାଇ ଦୂରରୁ ଦେଖି ଦେଇ ଚାଲି ଆସିବି । ସେଥିପାଇଁ ସମସ୍ତଙ୍କୁ କହୁଛି, ଆସ, ମୋ ସୁଖ ଦେଖିଯାଅ, ମୋ ଭାଗ୍ୟ ଦେଖି ଯାଅ । ଦେଖି ଯାଅ ମୋ ଘରକୁ ଆଜି କିଏ ଆସିଛନ୍ତି । ... ନା, ନା ! ମୁଁ ମରିଯିବି । ଏତେ ସୁଖ ମୋତେ ସହିବ ନାହିଁ । ତୁମେ ସମସ୍ତେ ମିଶି ମୋତେ ଆଶୀର୍ବାଦ କର, ନ ହେଲେ ମୁଁ ସତ ସତ ମରିଯିବି -'

ଅକ୍ଷୟ ମରିବା ଦିନରୁ ରାମକୃଷ୍ଣଙ୍କ ମନରେ ସୁଖ ନାହିଁ । ମଥୁର ବାବୁ କହିଲେ, ଚାଲ, ଥରେ ମୋ ଜମିଦାରୀ ଆଡ଼ୁ ବୁଲି ଆସିବ ।

ହଉ, ଚାଲ । ଆରେ ହୃଦୟ, ଚାଲ୍ ଜମିଦାରୀ ଦେଖି ଆସିବୁ ।

ଛୋଟ ନଈ, ଚୂର୍ଣ୍ଣି । ନୌକାରେ ବସି ଯାଉଛନ୍ତି ତିନି ଜଣ । ରାନାଘାଟ ଆଉ ଅଳ୍ପ ଦୂର ଅଛି । ନୌକା ଆସି ପହଞ୍ଚିଲା କଲାଇଘାଟାରେ । ରାମକୃଷ୍ଣଙ୍କ ଆଖି ପଡ଼ିଲା ସେଠାକାର ଦରିଦ୍ର

ଦଳିତ ଅଧିବାସୀଙ୍କ ଉପରେ । କହିଲେ, 'ଏଇ ତୁମ ଜମିଦାରୀର ଚେହେରା ? ଏଇ ଭଳି ତୁମ ମାହାଲର ହାଲ ?'

କାହିଁକି, କଅଣ ହେଲା ?

ଟିକିଏ ଅନେଇଲ ସେଇ ଲୋକମାନଙ୍କ ଆଡ଼କୁ । ପିନ୍ଧିଛନ୍ତି ଛିଣ୍ଡା ଗାମୁଛା, ପେଟ-ପିଠି ଲାଗି ଯାଇଛି । ସମସ୍ତେ ଏଇ ଭଳି ।

ଶୁଣ, ସମସ୍ତଙ୍କୁ ଖଣ୍ଡିଏ ଲେଖାଏ ଲୁଗା ଦିଅ । ଓଳିଏ ପେଟ ପୂରା ଖୁଆଇ ଦିଅ ସମସ୍ତଙ୍କୁ ।

ସବୁ ଥର ପରି, ଏଥର ବି ମଥୁର ବାବୁ ଭିଡ଼ି ମୋଡ଼ି ହେଲେ ।

ଚୂଲିକି ଯାଉ ତୁମ ଜମିଦାରୀ ! ଉଠ୍‌ରେ ହୃଦୁ, ଜମିଦାରୀ ଦେଖିବା ହେଇଗଲା । ଚାଲ, ଏଥର ଦକ୍ଷିଣେଶ୍ୱର ।

ମଥୁର ବାବୁ ବାଧ ହୋଇ ଟଙ୍କା ଥଳୀ ମୁହଁ ଫିଟେଇଲେ । ଗ୍ରାମର ସବୁ ଲୋକଙ୍କୁ ଅନ୍ନବସ୍ତ୍ର ବିତରଣ କଲେ ।

ସାତକ୍ଷୀରା ପାଖରେ ସୁନାବେଡ଼େ ଗାଁରେ ମଥୁର ବାବୁଙ୍କ ପୈତୃକ ଭିଟା । ଅଳ୍ପ ଦୂରରେ ତାଳମାଗରୋ ଗାଁ । ତାଙ୍କ ଗୁରୁଙ୍କ ଘର ସେଇଠି । ଗୁରୁଙ୍କ ବଂଶରେ ସଂପତ୍ତି ଭାଗ-ବଣ୍ଟରାକୁ କେନ୍ଦ୍ର କରି ବିବାଦ ଲାଗି ରହିଛି । ସାଲିସରେ ନିଷ୍ପତ୍ତି କରେଇ ଦେବା ପାଇଁ ମଥୁର ବାବୁଙ୍କୁ ଡକା ହେଲା ।

ଆବୁଡ଼ା-ଖାବୁଡ଼ା ରାସ୍ତା । ଅତି କଦର୍ଯ୍ୟ । ରାମକୃଷ୍ଣ ଓ ହୃଦୟ ଯାଉଛନ୍ତି ସବାରିରେ ବସି । ମଥୁରବାବୁ ଯାଉଛନ୍ତି ହାତୀ ପିଠିରେ ।

ହଠାତ୍ ସାନ ପିଲାଟିଏ ପରି ହୋଇଗଲେ ରାମକୃଷ୍ଣ । କହିଲେ, 'ହାତୀ ଚଢ଼ିବି ।'

ମଥୁର ବାବୁ ଓହ୍ଲେଇ ଆସିଲେ ! ରାମକୃଷ୍ଣ ଓ ହୃଦୟକୁ ହାତୀ ପିଠିରେ ବସାଇ ନିଜେ ସବାରିରେ ବସିଲେ । ହାତୀ ପିଠିରେ ବସି ରାମକୃଷ୍ଣଙ୍କ ଆନନ୍ଦ କହିଲେ ନ ସରେ ।

ସର୍ବ ଭୂତରେ ନାରାୟଣ ଗପ ଜାଣିଛୁ ? ଗୁରୁ ଶିଖେଇ ଦେଇଛନ୍ତି ଶିଷ୍ୟକୁ । ଆଉ ଶିଷ୍ୟକୁ ପାଏ କିଏ ? ରାସ୍ତାରେ ହାତୀ ଯାଉଛି, ଉପରେ ଥାଇ ମାହୁନ୍ତ ପାଟି କରି କହିଲା, ଘୁଞ୍ଚି ଯାଅ । ଶିଷ୍ୟ ତ ଶିଖିଛି ସର୍ବ ଭୂତରେ ନାରାୟଣ । ଭାବିଲା, ଘୁଞ୍ଚିଯିବି କାହିଁକି ? ମୁଁ ନାରାୟଣ, ହାତୀ ବି ନାରାୟଣ । ଆମ ଭିତରେ ତ ବିରୋଧ ନାହିଁ । ଛିଡ଼ା ହୋଇ ରହିଲା ହାତୀ ଆଗରେ । ପାଦେ ହେଲେ ଘୁଞ୍ଚିଲା ନାହିଁ । ହାତୀ ଆସି ତାକୁ ଶୁଣ୍ଢରେ ଟେକି ଫୋପାଡ଼ି ଦେଲା ଖଣ୍ଡେ ଦୂରକୁ । ଦେହ ମୁଣ୍ଡ ଖଣ୍ଡିଆ ଖାବରା ହୋଇ ଲହୁ ଲୁହାଣ ହୋଇଗଲା । ଭଲ ହେଲା ପରେ ଯାଇ ଗୁରୁଙ୍କ ପାଖରେ ଫେରାଦ ହେଲା । ଗୁରୁ କହିଲେ, ଉତ୍ତମ କଥା, ତୁମେ ନାରାୟଣ, ହାତୀ ବି ନାରାୟଣ । ଆଉ ସେଇ ହାତୀ ପିଠିରେ ବସିଥିଲା ଯେଉଁ ମାହୁନ୍ତଟି, ସିଏ ନାରାୟଣ ନୁହେଁ ? ମାହୁନ୍ତ-ନାରାୟଣର କଥା ନ ଶୁଣିବାର ଫଳ ପାଇଲ ।

ସମସ୍ତେ ଫେରିଲେ ଦକ୍ଷିଣେଶ୍ୱର । କଲୁଟୋଲାର କାଳୀ ଦତ୍ତଙ୍କ ଘରେ

ବୈଷ୍ଣବମାନଙ୍କର ବିରାଟ ହରିସଭା ଚାଲିଛି । ଦିନେ ସେଠାକୁ ଯିବା ପାଇଁ ରାମକୃଷ୍ଣଙ୍କ ପାଖକୁ ନିମନ୍ତ୍ରଣ ଆସିଲା । ଆଉ, ଯେଉଁଠି ରାମକୃଷ୍ଣ, ସେଠି କାୟା ପଛରେ ଛାୟା ପରି ହୃଦୟରାମ ।

ଭାଗବତ-ପାଠ ଚାଲିଛି । ତନ୍ମୟ ହୋଇ ଶୁଣୁଛନ୍ତି ସମସ୍ତେ । ରାମକୃଷ୍ଣ ବସିଲେ ଆସି ଗୋଟାଏ କଡ଼କୁ ।

ଆଗରେ ମହାପ୍ରଭୁଙ୍କ ଆସନ । ଅର୍ଥାତ୍ ମଣ୍ଡପ ଉପରେ ଗୋଟାଏ ଖାଲି ଆସନ ବିଛା ହୋଇ ରହିଛି । ସେଇଟା ଶ୍ରୀ ଚୈତନ୍ୟଙ୍କ ଆସନ ।  ବୈଷ୍ଣବମାନଙ୍କର ପୂଜା-ପାଠ ସମୟରେ ଏହିପରି ଗୋଟାଏ ଆସନ ବିଛାଇ ରଖିବା ବିଧି । ସମସ୍ତଙ୍କର ବିଶ୍ୱାସ, ସ୍ୱୟଂ ଗୌରାଙ୍ଗ ଦେବ ଆସି ସେହି ଆସନ ଉପରେ ବସି ହରିକଥା ଶୁଣନ୍ତି । ଭକ୍ତଙ୍କ ମଧ୍ୟରେ ଭଗବାନଙ୍କ ଅଧିଷ୍ଠାନ - ଏହି ଭାବର ପ୍ରତୀକ ସେହି ଆସନଟି ।

ରାମକୃଷ୍ଣଙ୍କୁ ପାଇ ଭକ୍ତିର ସ୍ରୋତ ଆହୁରି ଉତ୍ତରଙ୍ଗ ହୋଇ ଉଠିଲା । ହରି- କଥାରେ ଅତଳତର ଅନୁରକ୍ତି ଆସିଗଲା ସମସ୍ତଙ୍କର ।

କଅଣ କେମିତି ହେଲା କେହି ଜାଣି ପାରିଲେ ନାହିଁ, ରାମକୃଷ୍ଣ ହଠାତ୍ ଉଠି ଯାଇ ସେହି ଚୈତନ୍ୟାସନ ଉପରେ ଛିଡ଼ା ହୋଇ ପଡ଼ିଲେ । ଛିଡ଼ା ହେବା ମାତ୍ରେ ସମାଧିସ୍ଥ । ଗୋଟିଏ ହାତ ଟେକି ରଖିଛନ୍ତି ଉପରକୁ, ଅଙ୍ଗୁଷ୍ଠି ମୁଦ୍ରାରେ କେଉଁ ବାକ୍ୟାତୀତ ଭାବଲୋକ ଆଡ଼କୁ ନିର୍ଦ୍ଦେଶ । ସର୍ବାଙ୍ଗ ନିର୍ବାୟୁ-ନିଶ୍ଚଳ ଦୀପ-ଶିଖା ପରି ସ୍ଥିର, ମୁଖମଣ୍ଡଳରେ ପ୍ରେମପୂର୍ଣ୍ଣ ପ୍ରସାଦ-ଶାନ୍ତି । ପ୍ରତି ଅଙ୍ଗରେ ଚୈତନ୍ୟ ଦେବଙ୍କ ସମସ୍ତ ଲକ୍ଷଣ ଦେଦୀପ୍ୟମାନ ।

ଶ୍ରୋତା ବକ୍ତା ସମସ୍ତେ ସ୍ତମ୍ଭିତ । ଭଲ ମନ୍ଦ କୌଣସି କଥା କାହାରି ତୁଣ୍ଡରୁ ବାହାରିଲା ନାହିଁ । ଭୟ-ବିସ୍ମୟରେ ସମସ୍ତେ ସତେ କି କାଠ ପାଲଟି ଯାଇଛନ୍ତି । ଇଏ କି ଅଘଟଣ ! ... ଜନତାର ଉଗ୍ର ଦୃଷ୍ଟି ଶାନ୍ତ ହୋଇ ଆସିଲା ଧୀରେ ଧୀରେ । ବିମୂଢ଼ ଦୃଷ୍ଟିରେ ଫୁଟି ଉଠିଲା କୋମଳ ମୁଗ୍ଧତା ।

ଯେଉଁ ନାମ ଶ୍ରବଣରେ ସମାଧି ସେହି ନାମ ଶ୍ରବଣରେ ପୁଣି ବହିର୍ଜ୍ଞାନ । ଅତଏବ କୀର୍ତ୍ତନ ଚଳାଅ । କୀର୍ତ୍ତନ କାନରେ ପଡ଼ିଲେ ପ୍ରଭୁଙ୍କର ଧ୍ୟାନ ଭଙ୍ଗ ହେବ ।

ସମବେତ ସମସ୍ତ ବୈଷ୍ଣବ ଏକାଗ୍ର ଚିତ୍ତରେ କୀର୍ତ୍ତନ ଆରମ୍ଭ କଲେ । ନାମ-ଝଙ୍କାର କାନରେ ପଡ଼ି ଜ୍ଞାନ ଫେରିଲା ରାମକୃଷ୍ଣଙ୍କର । ଦୁଇ ହାତ ଟେକି ନୃତ୍ୟ ଆରମ୍ଭ କଲେ । ମାଧୁର୍ଯ୍ୟରେ ଉଚ୍ଛଳ ପୁଣି ଉଦ୍ଦାମତାରେ ଉତ୍ତାଳ ସେହି ନୃତ୍ୟ— ସେ ନୃତ୍ୟ ନଟଶ୍ରେଷ୍ଠ ମହାଦେବଙ୍କର । ନାମ-ସୌରଭରେ ବିଭୋର ହୋଇ ପଡ଼ିଲେ ସମସ୍ତେ । ଆଖି ଆଗରେ ନୟନ-ରଂଜନଙ୍କୁ ଦେଖି ସମସ୍ତଙ୍କର ଆଖି ନିଷ୍ପଲକ ।

ଚୈତନ୍ୟଦେବଙ୍କ ପାଇଁ ଉଦ୍ଦିଷ୍ଟ ଆସନ ଅଧିକାର କରିବା ରାମକୃଷ୍ଣଙ୍କ ପକ୍ଷରେ ନ୍ୟାୟ କି ଅନ୍ୟାୟ - ଏ ପ୍ରଶ୍ନ ଅଣୁ ମାତ୍ର ଉଦୟ ହେଲା ନାହିଁ କାହାରି ମନରେ ।

କିନ୍ତୁ କେତେ ସମୟ ରହିବେ ଭାବର ଗିରିଚୂଡ଼ାରେ ! ଓହ୍ଲାଇ ଆସିଲେ ଦୈନନ୍ଦିନ ଜୀବନର ସମତଳତାକୁ । ସେତେବେଳେ ଆରମ୍ଭ ହେଲା ତର୍କ- ଏହି ଆସନ ଅଧିକାରର ଔଚିତ୍ୟ

ସଂପର୍କରେ । ଥୋକେ କହିଲେ, ଅନ୍ୟାୟ, ଘୋରତର ଅନ୍ୟାୟ ହୋଇଛି । କେବଳ ଅନ୍ୟାୟ ନୁହେଁ, ଆସ୍ପର୍ଧା । ଆଉ ଥୋକାଏ କହିଲେ, ପ୍ରାଣ ଯାହା ଚାହୁଁଥିଲା, ଠିକ୍ ତାହା ହିଁ ହୋଇଛି । କେବଳ ନ୍ୟାଯ୍ୟ ନୁହେଁ, ବାଞ୍ଛନୀୟ ମଧ୍ୟ ।

ମୀମାଂସା ହୋଇ ପାରିଲା ନାହିଁ । ବୈଷ୍ଣବ ସମାଜ ମଧ୍ୟରେ ଆରମ୍ଭ ହୋଇଗଲା ପ୍ରଚଣ୍ଡ ଆଲୋଡ଼ନ । ଏ ପ୍ରକାର ଆଚରଣ ଧର୍ମର କଳଙ୍କୀକରଣ । ଏହାର ପ୍ରତିକାର ଆବଶ୍ୟକ । ଅତଏବ, ଚାଲ ଯିବା କାଲ୍‌ନା ।

ସମସ୍ତେ ଗଲେ କାଲ୍‌ନା, ଭଗବାନ ଦାସ ବାବାଜୀଙ୍କ ପାଖକୁ ।

ଘଟଣା ଶୁଣି ଭଗବାନ ଦାସ କ୍ରୋଧରେ କମ୍ପମାନ ।

ଭଣ୍ଡ ! ଧୂର୍ତ୍ତ ! ରାମକୃଷ୍ଣଙ୍କ ଉଦ୍ଦେଶ୍ୟରେ ଅକଥ୍ୟ ଉତ୍ତପ୍ତ ଗାଳି ବର୍ଷି ଚାଲିଲେ ବାବାଜୀ । ପାଖରେ ପାଇଲେ ଦାନ୍ତରେ ନଖରେ ସତେ ଅବା ବିଦାରି ପକାନ୍ତେ ! କହିଲେ, 'ଆଉ ଦିନେ ହେଲେ ତାକୁ ହରି ସଭାରେ ପଶିବାକୁ ଦେବ ନାହିଁ ।'

କି ଅଘଟଣ କଥା !

ଅଥଚ, ସମସ୍ତ ଅଘଟଣର ଘଟୟିତା ଯେଉଁ ରାମକୃଷ୍ଣ, ସେ ସାତରେ ନାହାନ୍ତି କି ପାଞ୍ଚରେ ବି ନାହାନ୍ତି । ନିର୍ଲିପ୍ତ, ନିର୍ବିକାର । ଏତେ କଥା ହୋଇଗଲା, କିଛି ଜାଣି ବି ପାରିଲେ ନାହିଁ ।

ଏବେ ସେ ବସିଛନ୍ତି ଆସି ତୃଣାସନରେ । ସମସ୍ତ ତୃଣାସନ ତାଙ୍କ ପାଇଁ ଚୈତନ୍ୟାସନ ।

## ୪୧

'ଆଶ୍ରମକୁ କିଏ ଜଣେ ଆସିଛି, ନା କଅଣ ?' ଭଗବାନ ଦାସ ବାବାଜୀ ଏଣେ ତେଣେ ଆଖି ପକାଇଲେ ।

'କିଏ,ଆଉ ଆସିବ !'

'ନାଁ, କେହି ଜଣେ ମହାପୁରୁଷ ଆସିଛନ୍ତି ନିଶ୍ଚୟ । ନିଶ୍ୱାସରେ ବାରି ହେଉଛି ତାଙ୍କ ଦେହର ସୁଗନ୍ଧ । ତୁମେ ସବୁ ଯାଇ ସବୁ ଆଡ଼େ ଟିକିଏ ଆଖି ପକେଇ ଆସିଲ ?'

ଆଶ୍ରମକୁ ତ କେତେ ଲୋକ ଯିବା ଆସିବା କରୁଛନ୍ତି । କାଲ୍‌ନାର ସିଦ୍ଧ ବାବାଜୀ । ସାରା ଭାରତବର୍ଷରେ କିଏ ନ ଜାଣେ ତାଙ୍କୁ ? ଏ ଭଳି କୃଷ୍ଣଭକ୍ତ ସ୍ୱୟଂ ଏଠି ଥାଉ ଥାଉ ଆଉ କାହା ଦେହର ସୁଗନ୍ଧରେ ପବନ ଆମୋଦିତ ହେବ ?

କେତେ ରକମ ଲୋକ ଆସୁଛନ୍ତି ଆଜିକାଲି, କେତେ ଢଙ୍ଗରେ । ହେଇ, ଦେଖୁନ୍ ? କିଏ ଜଣେ ଆସିଛି ସାରା ଦେହରେ ଲୁଗା ଢାଙ୍କି ହୋଇ । ହାତ ଗୋଡ଼ ମୁହଁ ସବୁ ଲୁଚି ରହିଛି, କିଛି ଦେଖିବାର ଉପାୟ ନାହିଁ । ଇଏ ପୁରୁଷ ଲୋକ, ନା - ? କିଛି ବେମାରୀ ଅଛି ?

'ଆଜ୍ଞା ନା, ତାଙ୍କର ଭାରି ଭୟ ଏବଂ ଲାଜ । ସେଇଥିପାଇଁ ସେ ଏମିତି ହୋଇ ଆସିଛନ୍ତି ।' କହିଲା ସାଙ୍ଗରେ ଆସିଥିବା ଲୋକଟି । 'ତାଙ୍କର, ଆଜ୍ଞା, ବାଳକ-ସ୍ୱଭାବ ।

ଅଜଣା ଅଚିହ୍ନା ନୂଆ ଜାଗାକୁ ଆସିଲେ ତାଙ୍କର ଏହି ଭଳି ଭାବ ହୁଏ ।'

'ତୁମର ସିଏ କଅଣ ହେବେ ?'

'ମୋ ମାମୁଁ । ସବୁବେଳେ ଈଶ୍ୱର-ଭାବରେ ଥାଆନ୍ତି । ଆପଣଙ୍କର ଏହି ଆଶ୍ରମ ତ ଈଶ୍ୱର-ଭାବର ଆଶ୍ରମ– ଆପଣଙ୍କ ନାମ ମଧ୍ୟ ଭଗବାନ । ଆପଣଙ୍କୁ ଦେଖିବା ପାଇଁ ଆସିଛନ୍ତି ।'

ବସ ସେ, ପାଖରେ । ଆଜିକାଲି ତ କେତେ ରକମ ଲୋକ ଆସୁଛନ୍ତି, କେତେ ଭେକରେ । କଅଣ ଟିକିଏ ଅଧେ ଭାବ-ଫାବ ଆସିଗଲା– କଅଣ, ନା ଈଶ୍ୱର-ଭାବ ! କିଏ କହିଲା ପରି, ବଡ଼ ବଡ଼ ଗଲେ ଫସର ଫାଟି, ସାନ ଅଇଲେ ବେସର ବାଟି ।ହଉ, ବସ, ସେ ପାଖକୁ ।

'କିନ୍ତୁ ଆଶ୍ରମକୁ ଆସିଛି କିଏ ? ଏ ଭଳି ଦିବ୍ୟ ସୌରଭ ମୁଁ ଆଘ୍ରାଣ କରୁଛି କାହିଁକି ?' ବାବାଜୀ ଉନ୍ମନା ହୋଇ ପଡୁଥିଲେ ।

କାହିଁ, କିଏ, କେଉଁଠି ? କିଏ ଆଉ ସେ ଭଳି ଲୋକ ଆସିବ ହଠାତ୍ !

ବାବାଜୀଙ୍କୁ ପ୍ରଣାମ କରି ଗୋଟିଏ କଡ଼କୁ ବସିଲେ ଦୁଇ ଜଣ । ହୃଦୟ ଓ ରାମକୃଷ୍ଣ । ବସିଲେ ଅତି ଦୀନ ଭାବରେ, ବିନୟ-ବିନତ ହୋଇ ।

ଦିବ୍ୟ ଗନ୍ଧର ଉତ୍ସ କେଉଁଠି ବୁଝି ପାରୁ ନାହାନ୍ତି ବାବାଜୀ ।

ହଉ, ଛାଡ଼ । କୋଉ କଥା ପଡ଼ିଥିଲା ? ହଁ, ସେହି ବୈଷ୍ଣବ-ସାଧୁ କଥା । ଯେଉଁ ଗର୍ହିତ କାମ ସେ କରିଛି, କଅଣ କରାଯିବ ସେଥିପାଇଁ ? କେଉଁ ଶାସ୍ତି ତା' ପାଇଁ ଉପଯୁକ୍ତ ?

'ଶୁଣ !' ଶାସନ-କଠୋର କଣ୍ଠରେ କହିଲେ ଭଗବାନ ଦାସ । 'ତା ବେକରୁ କଣ୍ଠି ବାହାର କରି ଆଣି ନିକାଲି ଦିଅ ତାକୁ ସମାଜରୁ । ମୁଁ ଭାବୁଛି, ଏଇଟା ତା' ପାଇଁ ଉଚିତ ଶାସ୍ତି !'

ବାବାଜୀଙ୍କର ଯାହା ଅଭିମତ ତାହା ହିଁ ତାଙ୍କର ପ୍ରତ୍ୟାଦେଶ ।

କହି ଦେଇ ବାବାଜୀ ପୁଣି ମାଳା ଧରି ଜପ ଆରମ୍ଭ କଲେ ।

'ଆଚ୍ଛା, ଆପଣ ଆଉ ଅକାରଣରେ ମାଳା ଧରି ବସୁଛନ୍ତି କାହିଁକି ?' ପଚାରି ଦେଲା ହୃଦୟ: 'ଆପଣଙ୍କର ତ ଅନେକ ଦିନରୁ ସିଦ୍ଧି ଲାଭ ହୋଇସାରିଛି ।'

ଏ ପ୍ରଶ୍ନ ହୃଦୟ କଲା, ନା ଆଉ କେହି ତା' ତୁଣ୍ଡରେ କୁହେଇଲା ?

'ମୁଁ କଅଣ ନିଜ ପାଇଁ କରୁଛି ? ମୋତେ ତ ପୁଣି ଲୋକଶିକ୍ଷା ଦେବାକୁ ପଡ଼ିବ !'

'ଲୋକଶିକ୍ଷା ?'

'ନୁହେଁ ତ ଆଉ କଅଣ ? ସେଇଥିପାଇଁ ତ ଅଛି । ମୋ ଦେଖା ଦେଖି ଆଉ ସମସ୍ତେ ବି ଯଦି ମାଳା-ତିଳକ ଛାଡ଼ିଦେବେ, ଦେଶଟା ଯାକ ଯେ ରସାତଳକୁ ଚାଲିଯିବ !'

ଆରେ ! ଏ ତ କଅଣ ସୋଽହଂ କହୁଛି ! ସରିଗଲା କଥା ! ଆରେ, ଦା ଲଗା ରେ, ଦା ବସା । ସୋଽହଂ ଆଗରୁ ଗୋଟାଏ ଦା ବସେଇ କହ । କହ ଦାସୋଽହଂ । ଦେହବୁଦ୍ଧିରେ

ଦାସୋଽହଂ ଛଡ଼ା ଆଉ ବାଟ ନାହିଁ । କୁହ, ମୁଁ ଦାସ, ମୁଁ ଭକ୍ତ, ମୁଁ ବାଳକ । ଜ୍ଞାନ ଆସିଲା ପରେ ଆଉ ଅହଂ କାହିଁ ? ସୂର୍ଯ୍ୟ ଯେତେବେଳେ ଠିକ୍ ମୁଣ୍ଡ ଉପରେ ଥାଏ ସେତେବେଳେ ଆଉ ଛାୟା ପଡ଼େ ? କିନ୍ତୁ ଅନ୍ୟ ସମୟରେ ? ଯେତେବେଳେ ଏ ପାଖରେ ଥାଏ ବା ସେ ପାଖରେ ଥାଏ ? ଯେତେବେଳେ ଦେହର ଛାୟାବାଜି ଚାଲିଥାଏ ? ଯେତେବେଳେ ଜ୍ଞାନ ନାହିଁ ? ସେତେବେଳେ ? ସେତେବେଳେ ଭକ୍ତି, ସେତେବେଳେ ପ୍ରେମ, ସେତେବେଳେ ସେବା । ସେବା-ପ୍ରେମକୁ ଛାଡ଼ି ମଣିଷ ଆଉ କାହାକୁ ଆଶ୍ରା କରି ବଞ୍ଚିବ ? କେମିତି ତା'ର ଦିନ କଟିବ ?

ଯାହାର ଅଟଳ ଅଛି, ତାହାର ପୁଣି ଟଳ ବି ଅଛି । ଏଇ ମୁହୂର୍ତ୍ତରେ ସ୍ଥିର ହୋଇ ବସିଛ, ପର ମୁହୂର୍ତ୍ତରେ ପୁଣି କାମରେ ଲାଗି ପଡୁଛ । ତୁମର ସ୍ଥିରତାଟା ବା କେତେ ? ବେଶୀ ଭାଗ ତ ଚାଞ୍ଚଲ୍ୟ । ଠିକ୍ ମୁଣ୍ଡ ଉପରେ ସୂର୍ଯ୍ୟ କେତେ ସମୟ ରହନ୍ତି ? ବେଶୀ ସମୟ ତ ରହନ୍ତି ଡାହାଣକୁ ନ ହେଲେ ବାଁକୁ । ତେଣୁ ଜ୍ଞାନକୁ ଧରି କେତେ ସମୟ ବସି ରହି ପାରିବ ? ଅତଏବ ଚାଲି ଆସ ଭକ୍ତିକୁ । ଭକ୍ତିରେ ତରଳି ଯାଅ । ଯାହା ଜ୍ଞାନ ତାହା ହିଁ ଭକ୍ତି । ଜ୍ଞାନ କହେ, ଏହା ଜଳ । ଭକ୍ତି କହେ, ଜାଣେ ନା ଏହା କଅଣ, କେବଳ ଏତିକି ଜାଣେ ଏହା ଶୀତଳତା । ଏହାର ସ୍ପର୍ଶ ଶୀତଳ, ଆସ୍ୱାଦ ଶୀତଳ ।

ଜ୍ଞାନ ହେଉଛି ବସ୍ତୁ, ଭକ୍ତି ହେଉଛି ସ୍ୱାଦ । କିନ୍ତୁ ତୁମେ ତ ଏଠି ଏକା ଏକା ରହିବ ନାହିଁ, ଜୀବ-ଜଗତ ସହିତ ରହିବ । ତେଣୁ ଏଠି ପ୍ରତି ଜଣକୁ ସ୍ୱାଦ ଦେଇ ଯାଅ, ପ୍ରତି କ୍ଷଣରେ ସ୍ୱାଦ ନେଇ ଯାଅ ।

ତା' ବୋଲି ଏତେ ଅହଂକାର ! ଏତେ ପ୍ରଗଲ୍‌ଭତା ! ମୁହୂର୍ତ୍ତକ ଭିତରେ ଘଟିଗଲା ଘଟଣା । ମୁହଁ ଉପରୁ ହଠାତ୍ ଖସି ପଡ଼ିଲା ବସ୍ତ୍ରାବରଣ । ରୋଷାନଳରେ ପ୍ରଦୀପ୍ତ ହୋଇ ଛିଡ଼ା ହୋଇ ପଡ଼ିଲେ ରାମକୃଷ୍ଣ । କହିଲେ, 'ତୁମେ ଲୋକଶିକ୍ଷା ଦେବ ? ତୁମେ ଲୋକଙ୍କୁ ବାହାର କରି ଦେବ ? ତୁମ ମର୍ଜିରେ ତୁମେ ରଖିବ, ତଡ଼ିବ ? କିଏ ତୁମେ ? ଏହି ଜଗତ୍-ସଂସାର ଯାହାଙ୍କର ସେ ଯଦି ଶିକ୍ଷା ନ ଦିଅନ୍ତି, ସେ ଯଦି ତଡ଼ି ନ ଦିଅନ୍ତି, ସେ ଯଦି ନ-ରଖନ୍ତି ନ-ଛାଡ଼ନ୍ତି, ତୁମେ ପାରିବ ? କେତେ ଶକ୍ତି ତୁମର ? କାହିଁକି ? କେଉଁଥିପାଇଁ ଏତେ ଅହଂକାର ?

କଟିତଟରୁ ଖସି ପଡ଼ିଲା ବସ୍ତ୍ର ଖଣ୍ଡ । ଆନନରେ ଦିବ୍ୟ ଜ୍ୟୋତି, ଅଙ୍ଗରେ ଦିବ୍ୟ ଦ୍ୟୁତି, କଣ୍ଠରେ ଦିବ୍ୟ ବାଣୀ । ସମାଧିସ୍ଥ ହୋଇଗଲେ ରାମକୃଷ୍ଣ ।

ପୂର୍ଣ୍ଣ ଦୃଷ୍ଟିରେ ଥରେ ଚାହିଁଲେ ବାବାଜୀ । ପ୍ରାଣ ଭରି ନିଶ୍ୱାସ ନେଲେ । ବୁଝିଲେ ସେହି ଦିବ୍ୟ ସୌରଭର ଉତ୍ସ କେଉଁଠି ।

କେହି କେବେ ତାଙ୍କ ମୁହଁ ଉପରେ କଥା କହି ନାହାନ୍ତି । ସାହସ କରି ନାହାନ୍ତି ପ୍ରତିବାଦ କରିବାକୁ । ଯାହା ସେ କହିଛନ୍ତି ଶିରୋଧାର୍ଯ୍ୟ କରି ନେଇଛନ୍ତି ।

କିନ୍ତୁ କିଏ ଏହି ଉଦ୍ୟତଦଣ୍ଡ ମହାଶାସନ ? ଅଥଚ ଏହାଙ୍କ ପ୍ରତି ତାଙ୍କର ସ୍ୱାଭାବିକ କ୍ରୋଧ ଆସୁ ନାହିଁ କାହିଁକି ? କାହିଁକି ଆସୁନାହିଁ ମନରେ ପ୍ରତିହିଂସାର ପ୍ରବୃତ୍ତି ? ମୁଁ କ'ଣ ବଦଳି ଗଲି ମୁହୂର୍ତ୍ତ ଭିତରେ ? କିନ୍ତୁ, ଏ କିଏ ?

ଏ ସେହି ବିଶ୍ୱ-ଭୁବନର ତମୋହର । ତୁମ ଅଭିମାନର ତମୋନାଶ କରିବା ପାଇଁ ଆସିଛନ୍ତି । ଆସିଛନ୍ତି ତୁମର ଅନ୍ତଶ୍ଚକ୍ଷୁ ଖୋଲି ଦେବା ପାଇଁ । ବୁଝାଇ ଦେବା ପାଇଁ, ତୁମେ କିଏ, ତୁମେ କେତେ କ୍ଷୁଦ୍ର । ତୁମକୁ ଶୀତଳ କରି ଦେବା ପାଇଁ ।

ଭାବ-ମୋହିତ ହୋଇଗଲେ ଭଗବାନ । କହିଲେ, କଣ୍ଠରେ ବିନୟ ନମ୍ର ମଧୁରତା, 'ମୋ ନାଁ ସିନା ଭଗବାନ, କିନ୍ତୁ ଆଜି ଠାରୁ ମୋର ପ୍ରକୃତ ନାମ ହେଲା ଭାଗ୍ୟବାନ । ଭାଗ୍ୟବାନ ବୋଲି ଆଜି ଆପଣଙ୍କୁ ପାଇଛି, ମୋତେ ଦେଖା ଦେଇଛନ୍ତି -'

ବାସ୍ତବରେ ଦେଖା ଦେଇଛନ୍ତି ! ଚାହିଁ ଦେଖିଲେ ବାବାଜୀ, ମହାପ୍ରଭୁଙ୍କର ମହାଭାବର ଯେଉଁ ଲୀଳାବର୍ଣ୍ଣନ ଅଛି, ତାହା ହିଁ ଅବିକଳ ତାଙ୍କ ଦିବ୍ୟ ଅଙ୍ଗରେ ପ୍ରକାଶିତ ।

ବନ୍ଦନାର ଆନନ୍ଦ-ସ୍ରୋତରେ ଆପ୍ଲୁତ ହୋଇ ଉଠିଲା ଆଶ୍ରମ ।

କିଏ ଏ ? କିଏ ଏହି ବନ୍ଧ ମୁକ୍ତ ବିଭାବସୁ ? ଅହଂକାରର ସଂହତ ତୁଷାରକୁ ତରଳାଇ ଭକ୍ତିର ସ୍ରୋତସ୍ୱିନୀ କରି ବୁହାଇ ଦେଲେ - ଏ କିଏ !

ଏ ସେହି ଦକ୍ଷିଣେଶ୍ୱରର ପରମହଂସ । କଲୁଟୋଲାର ହରିସଭାରେ ଯିଏ ସେଦିନ ଭାବାବେଶରେ ଯାଇ ଦଣ୍ଡାୟମାନ ହୋଇଥିଲେ ଚୈତନ୍ୟାସନ ଉପରେ ।

ଦୁଇ ହାତ ଯୋଡ଼ି କ୍ଷମା ପ୍ରାର୍ଥନା କଲେ ବାବାଜୀ । ବହୁ କଟୁ କଥା କହିଛି ସେଦିନ । ବୁଝି ନ ଥିଲି । ଯିଏ ସମସ୍ତ ଜୀବର ଚୈତନ୍ୟ ଆଣି ଦେଇଛନ୍ତି, ଚୈତନ୍ୟାସନରେ ତ ଏକମାତ୍ର ତାଙ୍କରି ଅଧିକାର !

ମଥୁର ବାବୁ ଏବଂ ହୃଦୟକୁ ସାଙ୍ଗରେ ଧରି କାଲନା ଆସିଥିଲେ ରାମକୃଷ୍ଣ । ଆସିଥିଲେ ନୌକାରେ ବସି । କାହିଁକି ଆସିଥିଲେ କେହି ଜାଣନ୍ତି ନାହିଁ । କାଲନାରେ ପହଞ୍ଚି ମଥୁର ବାବୁ ଗଲେ ବସା ଘର ଠିକଣା କରିବା ପାଇଁ । ରାମକୃଷ୍ଣ କହିଲେ ହୃଦୟକୁ, ଚାଲ୍, ଥରେ ସହର ଭିତରଟା ବୁଲି ଦେଖି ଆସିବା । କିଛି ବାଟ ଆସିଲା ପରେ ବାଟ-ଗଲା ଲୋକଙ୍କୁ ପଚାରିଲେ, 'ଭଗବାନ ଦାସ ବାବାଜୀଙ୍କ ଆଶ୍ରମ କେଉଁ ଆଡ଼େ ?'

ଆସି ପହଞ୍ଚିଲେ ଆଶ୍ରମରେ । ତା' ପରେ ଏଇ ଘଟଣା ।

ତୋତାପୁରୀଙ୍କୁ ଶିଖାଇଥିଲେ କ୍ରୋଧ ଜୟ କରିବାକୁ, ଭଗବାନ ଦାସ ବାବାଜୀଙ୍କୁ ଶିଖାଇଲେ ଅହଂକାର ଜୟ କରିବାକୁ, ପ୍ରତିହିଂସା ଜୟ କରିବାକୁ ।

ମଥୁର ବାବୁଙ୍କୁ କହିଲେ, 'ଏଠାରେ ଗୋଟାଏ ମହୋତ୍ସବର ଆୟୋଜନ କରାଅ ।'

ମଥୁର ବାବୁ କହିଲେ, 'ତଥାସ୍ତୁ ।'

ଏଥର ନବଦ୍ୱୀପ । ଚାଲ ଥରେ ଦେଖି ଆସିବା ନିମାଇଙ୍କ ଜନ୍ମସ୍ଥାନ ।

କେହି କେହି କହନ୍ତି, ନିମ ଗଛ ତଳେ ଜନ୍ମ ହୋଇଥିଲେ, ତେଣୁ ନିମାଇ । କେତେକ କହନ୍ତି, ଯମକୁ ପିତା ଲାଗିବ ବୋଲି ନିମାଇ । ଆଉ କେତେକ ପୁଣି କହନ୍ତି, ଆଠ-ଆଠଟା ଝିଅ ଜନ୍ମ ହୋଇ ମରିଯିବା ପରେ ଜନ୍ମ ହେଲେ, ତେଣୁ ନିମାଇ ।

କିନ୍ତୁ ପିଲାଟା ଏତେ କାନ୍ଦୁରା, ଯେତେ ଯାହା କଲେ ବି ଶାନ୍ତ ହେବ ନାହିଁ । ସାଇ-

ପଡ଼ିଶାରେ ଯେତେ ସ୍ତ୍ରୀଲୋକ ଥିଲେ, କିଏ କେତେ ରକମ ଚେଷ୍ଟାକଲେ, କିନ୍ତୁ ପିଲାର କାନ୍ଦଣା ବନ୍ଦ ହେବାକୁ ନାହିଁ । ଶେଷକୁ ନିରୁପାୟ ହୋଇ ସମସ୍ତେ ମିଶି ହରି-ନାମ ଆରମ୍ଭ କଲେ । ସଙ୍ଗେ ସଙ୍ଗେ କାନ୍ଦଣା ବନ୍ଦ, ଶିଶୁ ମୁହଁରେ ଫୁଟି ଉଠିଲା ଖିଲି-ଖିଲି ହସ ।

ପରମ ସଂକେତ ଜାଣିଗଲେ ସମସ୍ତେ । ଶିଶୁ କ୍ରନ୍ଦନ ଆରମ୍ଭ କରିବା ମାତ୍ରେ ହରିନାମ କୀର୍ତ୍ତନ ଆରମ୍ଭ କରିଦିଅ । ଆଉ ଶିଶୁ ବି ସିହାଣିଆ, ଥିବ ଥିବ, ହଠାତ୍ କାନ୍ଦଣା ଆରମ୍ଭ କରିଦେବ ।

କିନ୍ତୁ ବୈଷ୍ଣବ-ବୈଷ୍ଣବୀ ମାନଙ୍କର ଘଟଣା କଅଣ ? ଚୈତନ୍ୟ କଅଣ ସତରେ ଅବତାର ? ନା, ବୈଷ୍ଣବ-ବୈଷ୍ଣବୀ ମାନେ କୌଶଳରେ ଏ କଥାଟା ତିଆରି କରିଛନ୍ତି ? ନିଜେ ଯାଇ ଦେଖି ଆସିବି ।

ହଁ, ନିଜେ ଯାଇ ସେଠି ପହଞ୍ଚିଗଲେ ସବୁ କଥା ଠିକ୍ ଠିକ୍ ବୁଝା ପଡ଼ିଯିବ । ଚୈତନ୍ୟ ଯଦି ପ୍ରକୃତରେ ଅବତାର, ତେବେ ସେଠି କିଛି - ନା– କିଛି ପ୍ରକାଶ ନିଶ୍ଚୟ ଥିବ, ତା'ର ସଙ୍କେତ ବି ମିଳିଯିବ ସଙ୍ଗେ ସଙ୍ଗେ ।

ଆସି ପହଞ୍ଚିଲେ ନବଦ୍ୱୀପରେ । ବଡ଼ ଗୋସାଇଁଙ୍କ ଘର, ସାନ ଗୋସାଇଁଙ୍କ ଘର, ସବୁ ଦେଖିଲେ ବୁଲି ବୁଲି । ଏଠି ସେଠି ଚାରିଆଡ଼େ କେତେ ଦିଅଁ-ଦେବତାଙ୍କ ଆସ୍ଥାନ । କୋଉଠି ହେଲେ କିଛି ନଜରରେ ପଡ଼ିଲା ନାହିଁ । ସବୁଠାରେ ଶୂନ୍ୟତା, ଶୂନ୍ୟ ହାଣ୍ଡିର ଫମ୍ପା ଆବାଜ୍ । ଦେବଭାବ ନାହିଁ କୋଉଠି ହେଲେ । ସବୁ ଜାଗାରେ କେବଳ ଗୋଟାଏ ଗୋଟାଏ କାଠର ମୂର୍ତ୍ତି, ହାତ ଟେକି ଛିଡ଼ା ହୋଇଛି, ଆଉ କିଛି ନାହିଁ ।

ଧେତ୍ । କାହିଁକି ମିଛଟାରେ ଆସିଲି ଏଠିକି ? ଚାଲ, ଫେରିଯିବା ନୌକାକୁ ।

ହଉ, ଚାଲ ।

ଆସି ଉଠିଲେ ନୌକାକୁ । ମାତ୍ର ନୌକାକୁ ଉଠିବା ମାତ୍ରେ ଦୃଶ୍ୟପଟ ବଦଳିଗଲା । ଅଲୌକିକ ଦର୍ଶନ ଲାଭ କଲେ ରାମକୃଷ୍ଣ । 'ଆସି ଗଲେ ! ଆସି ଗଲେ !' କହୁ କହୁ ମୁହୂର୍ତ୍ତକ ଭିତରେ ସମାଧିସ୍ଥ ହୋଇଗଲେ । ପଡ଼ି ଯାଇ ଥାଆନ୍ତେ ପାଣିରେ, ହୃଦୟ ଧରି ପକାଇଲା ।

କଅଣ ଦେଖିଲ ଏମିତି ଅକସ୍ମାତ୍ ?

'ଦେଖିଲି, ଦୁଇଟି ସୁନ୍ଦର ପିଲା - ଆହା, ଏତେ ସୁନ୍ଦର ରୂପ କେବେ କେଉଁଠି ଦେଖି ନାହିଁ, ଆଉଟା ସୁନା ପରି ଦେହର ରଙ୍ଗ, କିଶୋର ବୟସ, ମୁଣ୍ଡକୁ ଘେରି ରହିଛି ଗୋଟାଏ ଗୋଟାଏ ଜ୍ୟୋତି-ମଣ୍ଡଳ– ହାତ ଟେକି ମୋ ଆଡ଼କୁ ଅନାଇ ହସି ହସି ଆକାଶ ପଥରେ ଚାଲି ଆସୁଛନ୍ତି । ଆସି ଏକାବେଳକେ ପଶିଗଲେ ମୋର ଏଇ ଦେହ ଭିତରେ । ତା' ପରେ ତ ମୁଁ ବେହୋସ ! ସେଇ ଦୁଇ ଜଣ ହେଉଛନ୍ତି ନିମାଇ-ନିତାଇ । ନିମାଇ ଯେ ଅବତାର ଏଥିରେ କଅଣ ଆଉ କିଛି ସନ୍ଦେହ ଅଛି ?'

କିନ୍ତୁ ଏଇ ଭାବାବେଶ ନବଦ୍ୱୀପର ମାଟି ଉପରେ ନ ଆସି ଗଙ୍ଗା ଉପରେ ଆସିଲା କାହିଁକି ?

ମଥୁର ବାବୁ କହିଲେ, 'ଯେଉଁ ନବଦ୍ୱୀପରେ ମହାପ୍ରଭୁଙ୍କର ଜନ୍ମ ସେ ନବଦ୍ୱୀପ ବର୍ତ୍ତମାନ ଗଙ୍ଗା ଗର୍ଭରେ । ଆଗରେ ଏଇ ଯେଉଁ ବାଲି-ପଠା ଦେଖୁଛ, ସେଇ ଜାଗାଟା ଥିଲା ପ୍ରକୃତ ନବଦ୍ୱୀପ । ତେଣୁ ଏବେ ଯାହାକୁ ନବଦ୍ୱୀପ ସହର ବୋଲି କହୁଛନ୍ତି ସେଠି ତୁମର ଭାବ ନ ଆସି ଆସିଲା ଏଇ ବାଲି-ପଠା ପାଖରେ ପହଞ୍ଚିବା ପରେ ।'

ତୁମେ ଭାବାମ୍ବୁନିଧି । ତୁମେ ସର୍ବଗୁଣେଶ୍ୱର ।

ମୁଁ କେହି ନୁହେଁ । ମୁଁ ପୁଣି ଗୋଟାଏ କିଏ !

## ୪୨

କର୍ମଯୋଗରେ ଅଙ୍ଗାର ମଧ୍ୟ ହୀରା ପାଲଟିଯାଏ ।

ଭକ୍ତିରେ ବିଶ୍ୱାସରେ ମଥୁର ବାବୁ କ୍ରମଶଃ ଉଜ୍ଜ୍ୱଳ ହୋଇ ଉଠିଲେ ।

ଦିନେ ଆସି ଅତି କାତର ଭାବରେ ରାମକୃଷ୍ଣଙ୍କୁ କହିଲେ, 'ବାବା, ମୋତେ ଭାବ-ସମାଧି ଦିଅ ।'

ରାମକୃଷ୍ଣ ହସିଲେ । କହିଲେ, 'ବେଶ୍ ତ ଅଛୁ । ଭଲରେ ଥାଉ ଥାଉ କାହିଁକି ମନ କରୁଛୁ ବଳଦ-ଭୁଷା ଖାଇବା ପାଇଁ ?'

'ମୁଁ ସେ ସବୁ କଥା ଶୁଣିବି ନାହିଁ—'

ନ ଶୁଣି ଯିବୁ କୁଆଡ଼େ । ତୋର ଏ କୂଳ ସେ କୂଳ— ଦୁଇ କୂଳ ଠିକ୍ ଠିକ୍ ଚାଲିଛି । ଭାବ ଆସିଗଲେ ତ ଅଥଳ ଜଳରେ ବୁଡ଼ିଯିବୁ । ସଂସାରରୁ ମନ ଛାଡ଼ିଯିବ । ସେତେବେଳେ ତୋର ଏହି ବିଷୟ-ସଂପତ୍ତି କିଏ ଦେଖା-ଶୁଣା କରିବ ? ଭୂତ ଖାଇଯିବେ ତୋର ସର୍ବସ୍ୱ ।

ମଥୁରବାବୁ ତଥାପି ଜିଦ୍ ଧରି ବସିଲେ ।

'ଆରେ, ବେଳ ଆସିଲେ ହେବ, ବୁଝିଲୁ ? ବେଳ ଆସିଗଲେ ଆପେ ଆପେ ହୋଇଯିବ । ଗୋଟାଏ ମଞ୍ଜି ପୋତି ଦେଲେ ସଙ୍ଗେ ସଙ୍ଗେ ଗଛ ହୁଏ ? ନା, ଗଛ ହେଲା ମାତ୍ରେ ସଙ୍ଗେ ସଙ୍ଗେ ଫଳ ଧରେ ?'

ଭକ୍ତ ଭୃତ୍ୟ ଓ ଭଣ୍ଡାରୀ— ଏକାଧାରରେ ଏହି ତିନି— ଏଇ ମଥୁର ବାବୁ । କେତେବେଳେ ପ୍ରଭୁଜ୍ଞାନରେ ଇଷ୍ଟପୂଜା, କେତେବେଳେ ପୁଣି ସନ୍ତାନ ଭାବରେ ସ୍ନେହଶ୍ରାବଣ । କେତେବେଳେ ଅଭିଭାବକ ଜ୍ଞାନରେ ସତର୍କ-ସମ୍ମାନ, କେତେବେଳେ ପୁଣି ମିତ୍ର-ବୁଦ୍ଧିରେ ସମତା-ମମତା ଏବଂ ଯେ ସ୍ୱୟଂ ବିଶ୍ୱଜନକ, ଯେ ଆତ୍ମୀୟ ଠାରୁ ପ୍ରିୟତର, ସର୍ବତ୍ର ଯାହାଙ୍କର କ୍ଷମା, ଦୟା, ବିଶ୍ୱାସ ଓ ଆଶୀର୍ବାଦ, ତାଙ୍କୁ ମଝିରେ ରଖି ଦୁଇ ପାଖରେ ଶୋଇଛନ୍ତି ଦୁଇ ଜଣ । ମଥୁର ବାବୁ ଏବଂ ଜଗଦମ୍ବା । ଧୈର୍ଯ୍ୟର ଏକ ଶଯ୍ୟାରେ ।

ରାମକୃଷ୍ଣ ଭାବ ଦେବାକୁ ସମ୍ମତ ହେଲେ ନାହିଁ । ମଥୁର ବାବୁ ମନ ଊଣା କଲେ । ଯାଇ ମାଙ୍କୁ କହିଲେ, ମା, ମୋତେ କାହିଁକି ବଞ୍ଚନା କରୁଛୁ ?

କେଉଁ ଖେଳ ଦେଖେଇବା ପାଇଁ ମଥୁର ବାବୁଙ୍କୁ ମା ଆଣିଥିଲେ ରାମକୃଷ୍ଣଙ୍କ ପାଖକୁ,

ମଥୁର ବାବୁ ନିଜେ କଅଣ ଜାଣନ୍ତି ସେ କଥା ? ବାରମ୍ବାର ରାମକୃଷ୍ଣଙ୍କୁ ପରୀକ୍ଷା କରିବା ପାଇଁ । ତୁଚ୍ଛାଟାରେ କଅଣ ମଥୁର ବାବୁ ଲୋଟି ପଡ଼ିଲେ ମାଟିରେ ! ଦେଖିଲେ, ନିଆଁ ଯେତେ ବେଶୀ ବେଶୀ ଜାଳୁଛନ୍ତି, ସୁନାର ରଙ୍ଗ ସେତିକି ଉଜ୍ଜ୍ୱଳ ହୋଇ ଉଠୁଛି । ନିର୍ଜନ ଘର, ଏକୁଟିଆ ଅଛନ୍ତି, ରୂପସୀ ଷୋଡ଼ଶୀଟିଏ ଆଣି ରଖି ଦେଇଗଲେ ସେଇ ଘରେ । ରାମକୃଷ୍ଣ ଦୁର୍ଗା-ସ୍ତବ ଆରମ୍ଭ କରିଦେଲେ । ଶାଲ-ବନାତ ଆଣିଦେଲେ ଅଙ୍ଗାବରଣ ପାଇଁ, ଥୁ ଥୁ କରି ତା' ଉପରେ ଛେପ ପକାଇ ଫିଙ୍ଗିଦେଲେ । ସୁନା-ରୂପାର ଜରି-ଲଗା ପୋଷାକ କରେଇ ଦେଲେ, ରାଜକୀୟ ଠାଣିରେ ଧୂଆଁ ପିଇବା ପାଇଁ ରୂପାର ଗଡ଼-ଗଡ଼ା ନଳ କିଣେଇ ଦେଲେ । କହିଲେ, ଗାମୁଛା ଖଣ୍ଡେ ଦେହରେ ବେଢ଼େଇ ହୋଇ, ସଢ଼େଇ ହୁକାରେ ଭୁଡ଼-ଭୁଡ଼ କରି ଧୂଆଁ ଟାଣିଲେ କ'ଣ ଚଳିବ ନାହିଁ ? ତାଙ୍କ ନାଁରେ ସଂପତ୍ତି ଲେଖି ଦେବାକୁ ଚାହିଁଲେ, ରାଗରେ ମାରିବାକୁ ଧାଇଁ ଆସିଲେ ଠାକୁର । ନିଜ ଘର-ସଂସାର ଉପରେ ଦେଲେ ଅପ୍ରତିହତ ପ୍ରଭୁତ୍ୱର ଅଧିକାର, ଭୁଲରେ ବି ଥରେ ନଜର ଦେଲେ ନାହିଁ ସେ ଆଡ଼କୁ । କେତେ ପଇସା ଖରଚ କରି କାମାରପୁକୁର ଘରକୁ ଘର ପରି ଘରଟାଏ କରେଇ ଦେଲେ, ଟିକିଏ କାତରତା କି କୃତଜ୍ଞତା ମଧ୍ୟ ପ୍ରକାଶ କଲେ ନାହିଁ ସେଥିପାଇଁ ।

କିଏ ତୁମେ ବୈରାଗ୍ୟ ବାରାନ୍ନିଧି ! ମୁଁ ଅନେକ ଦୁଷ୍କର୍ମ କରିଛି, ଜମିଦାରୀ ସମ୍ଭାଳିବା ପାଇଁ ଖୁନଖରାପି କରିବାକୁ ବି ପଛେଇ ନାହିଁ । ଏଥର ମୋର କର୍ମାସକ୍ତି ତୁଟେଇ ଦେଇ ନୈଷ୍କର୍ମ୍ୟର ନିକ୍ରେତି ଦିଅ । ମୋତେ ଭାବ ଦିଅ ।

ତଦ୍‌ଭାବେ ତଦ୍‌ଭାବଃ, ତଦଭାବେ ତଦଭାବଃ ।

'ଶୁଣ୍ କଥା । ଯିଏ ଖାଣ୍ଟି ଭକ୍ତ ସେ କ'ଣ ତାଙ୍କୁ ଦେଖିବାକୁ ଚାହେଁ ? ସେ ଚାହେଁ କେବଳ ତାଙ୍କର ସେବା କରିବାକୁ ।' ପ୍ରବୋଧ ଦେଇ କହିଲେ ରାମକୃଷ୍ଣ: 'ତାଙ୍କ ସେବାରେ ହିଁ ତା'ର ପରମାନନ୍ଦ । ଆଉ ବେଶୀ କିଛି ସେ ଚାହେଁ ନା ।'

ତଥାପି ମନ ବୁଝିଲା ନାହିଁ ମଥୁର ବାବୁଙ୍କର ।

'ହଉ ରେ ବାପା, ଯାଏଁ ତେବେ ମାଙ୍କୁ କହେଁ । ଦେଖାଯାଉ, କଅଣ ତାଙ୍କର ଇଚ୍ଛା ।'

ଗଲା କିଛି ଦିନ । ଦିନେ ହଠାତ୍ ମଥୁର ବାବୁଙ୍କର ଭାବ-ସମାଧି ଆରମ୍ଭ ହେଲା । ପୂରା ତିନି ଦିନ ରହିଲେ ଜଡ଼ ଅବସ୍ଥାରେ ।

ଖବର ପଠେଇଲେ ରାମକୃଷ୍ଣଙ୍କ ପାଖକୁ । ଆସ, ଦେଖି ଯାଅ, କେଉଁଠି ଆସି ପହଞ୍ଚିଛି ଶେଷରେ ।

ରାମକୃଷ୍ଣ ଦେଖିଲେ, ଆଶ୍ଚର୍ଯ୍ୟ ହେଲେ, ମଥୁରର ଅବସ୍ଥା ଏ କଅଣ ହୋଇ ଯାଇଛି ! ଯେପରି ଗୋଟାଏ ଭିନ୍ନ ଦେଶର ମଣିଷ । ଚାହିଁ ଦେଲେ ହଠାତ୍ ଚିହ୍ନି ହେବ ନାହିଁ । ଦୁଇ ଆଖି ଲାଲ, ଆଖିରୁ ବହୁଛି ଅବାରିତ ଧାରା । ତୁଣ୍ଡରେ କେବଳ ଈଶ୍ୱରଙ୍କ କଥା, କେବଳ ଅଧ୍ୟାତ୍ମରତି ।

କିନ୍ତ ରାମକୃଷ୍ଣଙ୍କ ଉପରେ ଆଖି ପଡ଼ିଲା ମାତ୍ରେ ତଳେ ପଡ଼ି ଯାଇ ତାଙ୍କର ଦୁଇ ପାଦକୁ

ଢାବୁଡ଼ି ଧରି ରହିଲେ ମଥୁର ବାବୁ । ବିକଳ କଣ୍ଠରେ କହିଲେ, 'ବାବା, ମୋର କସୁର ହୋଇଛି, ତୁମ ଭାବ ତୁମେ ଫେରେଇ ନିଅ–'

'କାହିଁକି ? କଅଣ ହେଲା ?'

'ସବୁ ଓଲଟ-ପାଲଟ ହୋଇଗଲା । ତିନି ଦିନ ହେଲା ଏଇ ଅବସ୍ଥା । ବିଷୟକର୍ମରେ ମନ ଦେଇ ପାରୁ ନାହିଁ, ଯେତେ ଚେଷ୍ଟା କଲେ ବି ମନ ବସୁ ନାହିଁ । ଉଠି ଉଠି ଯାଉଛି ଉପରକୁ । ସବୁ ଗଣ୍ଡଗୋଳ ହୋଇଗଲାଣି–'

'କାହିଁକି ? ସେତେବେଳେ ତ ଭାରି ଜିଗର କରୁଥିଲ ଭାବ ଦେବା ପାଇଁ ? ଏବେ ଆଉ ଫେରେଇ ନିଅ କହିଲେ ଚଳିବ ?'

'ଏଣେ ପରା ସବୁ ଉଜୁଡ଼ି ଯିବାକୁ ବସିଲାଣି !'

'କାହିଁକି ? ଆନନ୍ଦ ମିଳୁ ନାହିଁ ?'

'ମିଳୁଛି, କିନ୍ତୁ ସେ ଆନନ୍ଦ, ତୁମ ଭଳି ଯିଏ ନିତ୍ୟାନନ୍ଦ, ତାହାରି ପାଇଁ । ଆମ ପାଇଁ ନୁହେଁ । ଆମର ଦରକାର ନାହିଁ ସେଥିରେ । ଆମ ପାଇଁ କେବଳ ସେବା, ପଦସେବା । ପର-ଜ୍ଞାନରେ ପରା-ସେବା ।

ହସିଲେ ରାମକୃଷ୍ଣ । କହିଲେ, 'ସେଇ କଥା ତ କହିଥିଲି ମୂଳରୁ ।'

'ଏତେ କଥା ମୁଁ କ'ଣ ବୁଝିଥିଲି ସେତେବେଳେ ? ମୁଁ କ'ଣ ଜାଣିଥିଲି ଚବିଶ ଘଣ୍ଟା ସେଇ ଭାବ ମନକୁ ଅଧିକାର କରି ରହିବ ? ଇଚ୍ଛା ଥିଲେ ବି ଆଉ କୌଣସି କାମରେ ମନ ଲଗେଇ ହେବ ନାହିଁ ?'

ପରମ ସ୍ନେହରେ ମଥୁର ବାବୁଙ୍କ ଛାତିରେ ହାତ ବୁଲାଇ ଆଣିଲେ ରାମକୃଷ୍ଣ । ମଥୁର ବାବୁ ପ୍ରକୃତିସ୍ଥ ହେଲେ ।

କଅଣ ମିଳିବ ସେଇ ସବୁ ଭାବ-ଫାବରୁ ? କେବଳ ତାଙ୍କ ନାମ କର, ତାଙ୍କ ଦୟାରେ ବିଶ୍ୱାସ ରଖ । ବ୍ୟାକୁଳ ଭାବରେ ପ୍ରାର୍ଥନା କର ତାଙ୍କୁ । କଅଣ ମାଗିବ ? କେବଳ ଆଶ୍ରୟ, କେବଳ ଶାନ୍ତି, କେବଳ ପ୍ରସନ୍ନତା । କେବଳ ଧ୍ୟାନ କର, ପ୍ରେମରେ ହଜିଯାଅ ।

ସାଧନ-ଭଜନ ସବୁ କେବଳ ଡେଣାକୁ ପୀଡ଼ା ଦେବା ପାଇଁ । ଚଢ଼େଇ ଉଡୁଛି ଆକାଶରେ । ଉଡ଼ି ଯାଉଛି ବହୁତ ଉପରକୁ । ଉଡୁ ଉଡୁ ଡେଣା ଯେତେବେଳେ ବଥା ହୋଇଯାଏ, ସେ ଆସି ବସି ପଡ଼େ କୌଣସି ଉଚ୍ଚ ଜାଗା ଉପରେ । ସେହି ଉଚ୍ଚ ଜାଗାଟି ସେ । ପୁଣି ତାଙ୍କରି ପାଇଁ ସାଧନ ।

ଚୁଡ଼ା କୁଟୁଛ, ମନ ଦେଇଥିବ ଢିଙ୍କି ମୂଷଳ ଆଡ଼କୁ । ତୁଳସୀ ଦାସ କଅଣ କହିଥିଲେ ? ''ତୁଲ୍‌ସୀ, ଏୟ୍‌ସା ଧେୟାନ୍ ଧର, ଯ୍ୟେୟ୍‌ସା ବିୟାନ୍‌କା ଗାଇ । ମୁଁ ମେ ତୃଣ ଚାନା ଚୁଟେ ଚେତ୍ ରାଖୟେ ବାଛାଇ ।'' ପ୍ରସୂତି ଗାଈ ମୁହଁରେ ଘାସ ଖାଉଥାଏ, କିନ୍ତୁ ତା' ମନ ରହିଥାଏ ତା' ବାଛୁରୀ ପାଖରେ । ଠିକ୍ ସେହିଭଳି ସାଂସାରିକ କାମରେ ଲାଗିଥାଅ, ମାତ୍ର ମନଟି ରଖିଥିବ ଈଶ୍ୱରଙ୍କ ଠାରେ ।

ମଥୁର ବାବୁଙ୍କ ଦେହ ଅସୁସ୍ଥ । ଗୋଟାଏ ବଥ ବାହାରିଛି, ଯନ୍ତ୍ରଣାରେ ଛଟପଟ ହେଉଛନ୍ତି । ହୃଦୟ ହାତରେ ଖବର ପଠେଇଲେ, ବାବା ଥରେ ଆସିବେ ।

ରାମକୃଷ୍ଣ କହିଲେ, 'ମୁଁ ଯାଇ କଅଣ କରିବି ? ମୁଁ କ'ଣ ଡାକ୍ତର ନା ବୈଦ୍ୟ ? ମୁଁ କ'ଣ ତା' ବଥ ଭଲ କରିଦେଇ ପାରିବି ?' ଗଲେ ନାହିଁ ।

ମଥୁର ବାବୁ ପୁଣି ଲୋକ ପଠେଇଲେ । ପବନରେ ପଠେଇଲେ ତାଙ୍କ ଯନ୍ତ୍ରଣାର କାତରତା । ବାଧ ହୋଇ ଶେଷକୁ ଗଲେ ରାମକୃଷ୍ଣ ।

ଅତି କଷ୍ଟରେ ତକିଆ ଉପରେ ଭରା ଦେଇ ଉଠି ବସିଲେ ମଥୁର ବାବୁ । କହିଲେ, 'ବାବା, ତୁମେ ଆସିଛ ? ମୋତେ ଟିକିଏ ପାଦ-ଧୂଳି ଦିଅ ।'

'ତୁମେ କ'ଣ ଭାବୁଛ ମୋ ପାଦ-ଧୂଳିରେ ତୁମ ବଥ ଭଲ ହୋଇଯିବ ?'

ନିଜ ପ୍ରତି ଧିକ୍କାର ଆସିଲା ମଥୁର ବାବୁଙ୍କର । କହିଲେ, 'ବାବା, ମୁଁ କ'ଣ ସେଇ ଭଳି ଲୋକ ? ମୁଁ କ'ଣ ମୋ ବଥ ପାଇଁ ତୁମ ପାଦ-ଧୂଳି ମାଗୁଛି ?' ଲୁହ ବହି ଆସିଲା ଦୁଇ ଆଖିରୁ । 'ବଥ ପାଇଁ ତ ଡାକ୍ତର ଅଛନ୍ତି । ତୁମ ଶ୍ରୀପାଦ-ଧୂଳି ଟିକିଏ ଚାହୁଁଛି ଭବ-ସାଗର ପାର ହେବା ପାଇଁ ।'

ଶୁଣିବା ମାତ୍ରେ ରାମକୃଷ୍ଣଙ୍କର ଭାବାବେଶ ଆସିଗଲା । ସ୍ୱଚ୍ଛ ଭକ୍ତିର ସ୍ପର୍ଶରେ ଉଦ୍‌ବେଳିତ ହୋଇ ଉଠିଲା ଭାବ-ତରଙ୍ଗ ।

ସୁଯୋଗ ଦେଖି ରାମକୃଷ୍ଣଙ୍କ ଯୁଗ୍ମପଦରେ ମଥା ଲଗେଇଲେ ମଥୁର ବାବୁ । ଦେହର ଚିକିତ୍ସା ପାଇଁ ଆୟୁର୍ବେଦୀ ଅଛନ୍ତି, ତୁମେ ଭବରୋଗ-ବୈଦ୍ୟ ।

ତୁମେ ଅତୀନ୍ଦ୍ରିୟ ରାଜ୍ୟର ସ୍ୱରାଟ-ବିରାଟ ସମ୍ରାଟ, ତୁମେ ପୁଣି ଏଇ କ୍ଷୁଦ୍ର ହୃଦୟର ଅଧିପତି । ତୁମେ ସ୍ନେହରେ ମାତା, ପାଳନରେ ପିତା, ଜୀବନରେ ଖେଳର ସାଥୀ ।

ମଝିରେ ମଝିରେ ଗୋଟାଏ ଗୋଟାଏ ଖିଆଲ ପଶେ ମଥୁର ବାବୁଙ୍କ ମୁଣ୍ଡରେ ।

ସେ-ଥର ବି ହେଲା ସେଇଆ । ଦଶହରା ଦିନ ହଠାତ୍ କହିଲେ, ପ୍ରତିମା ବିସର୍ଜନ ଦିଆଯିବ ନାହିଁ, ମୁଁ ନିତ୍ୟପୂଜା କରିବି ।

କାହାରି କଥା ଶୁଣିଲେ ନାହିଁ । ସ୍ତ୍ରୀ ଆସି ବୁଝେଇଲେ, ତଥାପି ନିଜ ଜିଦ୍‌ରେ ଅଟଳ । ମହା ବିପଦ ଆସି ପହଞ୍ଚିଲା । ତହୁଁ ରାମକୃଷ୍ଣଙ୍କୁ ଖବର ଦେଲେ ଜଗଦମ୍ବା । ତାଙ୍କ ମଥା ନିଶ୍ଚୟ ବିଗିଡ଼ିଛି । ନ ହେଲେ ଚେହେରା ହଠାତ୍ ଏ ଭଳି ହେଲା କାହିଁକି ?

ମୁହଁ ଆଖି ଲାଲ, ଆଖିରେ ଉଦ୍‌ଭ୍ରାନ୍ତ ଚାହାଣି । ଘର ଭିତରେ ଏ-ପାଖ ସେ-ପାଖ ଲଟ ପଟ ହେଉଛନ୍ତି । ନା, ମାଙ୍କୁ ବିସର୍ଜନ ଦେବି ନାହିଁ; ମାଙ୍କୁ ଛାଡ଼ି ମୁଁ ବଞ୍ଚି ପାରିବି ନାହିଁ ।

ରାମକୃଷ୍ଣ ଆସି ବୁଝାଇଲେ, ତଥାପି ଶୁଣିଲେ ନାହିଁ ।

'ମାଙ୍କୁ ଛାଡ଼ି ବଞ୍ଚି ପାରିବି ନାହିଁ । ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ କେହି ନେଇ ପାରିବେ ନାହିଁ ମୋ ମାଙ୍କୁ ।'

ରାମକୃଷ୍ଣ ଧୀରେ ଧୀରେ ତାଙ୍କ ଛାତି ଆଉଁଷି ଦେଲେ । କହିଲେ, 'କିଏ କହୁଛି ତୁମେ

ମାଙ୍କୁ ଛାଡ଼ି ରହିବ ? ତା' ଛଡ଼ା ବିସର୍ଜନ ଦେଲେ ବି ମା ଯିବେ କୋଉଠିକି ? ପୁଅକୁ ଛାଡ଼ି ମା କେବେ ରହିପାରେ ? ତିନି ଦିନ ପୂଜା ନେଲେ ବାହାର ଘରେ ବସି, ଆଜି ଠାରୁ ଭିତର ଘରେ ବସି ପୂଜା ପାଇବେ । ହଁ, ଭିତର ଘର, ତୁମ ଅନ୍ତର ମହଲ । ଆହୁରି ନିକଟ ହେବେ, ବାହାର ଘରୁ ଉଠି ଆସି ବସିବେ ତୁମ ଅନ୍ତରର ଅନ୍ଦର-ଘରେ ।'

ସେହି ସ୍ପର୍ଶରେ ନରମ ହୋଇଗଲେ ମଥୁର ବାବୁ । ସତ୍ୟ-ଦର୍ଶନର ସୌମ୍ୟ ଶାନ୍ତି ଫୁଟି ଉଠିଲା ଦୁଇ ଆଖିରେ ।

ଦିନେ ଭକ୍ତ ମାନଙ୍କ ସହିତ କଥା-ପ୍ରସଙ୍ଗରେ ଠାକୁର କହିଲେ, 'କଥା କହୁଁ କହୁଁ ଏମିତି ଛୁଇଁ ଦିଏ କାହିଁକି ଜାଣିଛ ? ଯେଉଁ ଶକ୍ତିଟା ତାଙ୍କ ମନକୁ ଜିଦ୍ ଆଣି ଦେଇଥାଏ, ତା'ର ଜୋର କମିଯିବ, ଅସଲ ସତ୍ୟ ସେମାନେ ବୁଝି ପାରିବେ । ସେଇଥିପାଇଁ ।'

୧୨୭୮ ସାଲ ଆଷାଢ଼ ମାସର ଶେଷ ଆଡ଼କୁ ମଥୁର ବାବୁଙ୍କୁ ଜ୍ୱର ହେଲା । ରୋଗ କ୍ରମଶଃ ପ୍ରବଳ ହେଲା ଏବଂ ରୋଗୀର ବିକାର ଅବସ୍ଥା ଆସିଗଲା ।

ରାମକୃଷ୍ଣ ଯାଇଛନ୍ତି ତାଙ୍କୁ ଦେଖିବା ପାଇଁ ।

ମଥୁର ବାବୁ କହିଲେ, 'ଆଚ୍ଛା ବାବା, ତୁମେ ଯେ କହୁଥିଲ ତୁମର ଅନେକ ଭକ୍ତ ଆସି ଜୁଟିବେ, କାହିଁ, କେହିତ ଆଜି ପର୍ଯ୍ୟନ୍ତ ଆସିଲେ ନାହିଁ ?'

'କେଜାଣି, କେବେ ଆସିବେ । ମା ଯାହା ଯାହା ମୋତେ ଦେଖେଇ ଥିଲେ, ସବୁ ତ ଠିକ୍ ଠିକ୍ ଫଳୁଛି, କେବଳ ଏଇ କଥାଟା ବୋଧହୁଏ ଫଳିବ ନାହିଁ !' ଟିକିଏ ବିଷାଦର ଛାଇ ବୋଧହୁଏ ପଡ଼ିଲା ମୁହଁ ଉପରେ ।

ଗୋଟାଏ ଭୂତ ସାଙ୍ଗ ଖୋଜୁଥିଲା— ଜାଣ ସେଇ ଗପଟା ? ବିଚରା ଭୂତ ଏକା ଏକା ବୁଲାବୁଲି କରେ, ସାଙ୍ଗ ସାଥୀ କେହି ଜୁଟୁ ନାହାନ୍ତି । ଶନିବାର ମଙ୍ଗଳବାରରେ ଯଦି କିଏ କୋଉଠି ଅପଘାତରେ ମରିଯାଏ, ଧାଇଁ ଯାଏ ତା ପାଖକୁ ତାକୁ ଡାକି ଆଣିବା ପାଇଁ । ତା'ର ଧାରଣା, ଶନିବାର କି ମଙ୍ଗଳବାରରେ ଯିଏ ମରିଛି, ସିଏ ନିଶ୍ଚୟ ଭୂତ ହେବ, ତାକୁ ସାଙ୍ଗଟିଏ ମିଳିବ ଏଥର । କିନ୍ତୁ ଯାଇ ପାଖରେ ପହଞ୍ଚି ଦେଖେ, ଲୋକଟା ହୁଏତ ମରି ନାହିଁ, ଅଥବା ତା' ନିଜର ବାର ହିସାବ ଭୁଲ । ଭୂତ ଆଉ ସାଙ୍ଗ ପାଇଲା ନାହିଁ ।

ମୋର ବି ଠିକ୍ ସେଇ ଅବସ୍ଥା । ଖୋଜି ବୁଲୁଛି ମନର ମଣିଷ- ଯିଏ ମୋ କଥା ଶୁଣିବ, ବୁଝିବ । ଜଣେ ବଡ଼ ଭକ୍ତ କିଏ ହୁଏତ ଆସି ପହଞ୍ଚିଲା, ଭାବିଲି ଏଇ ଲୋକଟି ବୋଧହୁଏ ମୋ ଭାବ ଗ୍ରହଣ କରି ପାରିବ, ମୋ ମନ ଅନୁରୂପ ହେବ । ଦି' ଦିନ ପରେ ଦେଖିଲା ବେଳକୁ ସେ ଆଉ ପ୍ରକାରେ ହୋଇ ଯାଇଛି ।

କଥାରେ କାରୁଣ୍ୟର ବେଦନା ।

ମଥୁର ବାବୁ କହିଲେ, 'ସେମାନେ ଆସନ୍ତୁ ବା ନ ଆସନ୍ତୁ, ମୁଁ ତ ଅଛି । ମୁଁ ଏକୁଟିଆ ଶହେ ଭକ୍ତଙ୍କ ସମାନ । ସେଇଥିପାଇଁ ବୋଧହୁଏ ମା ମୋତେ ଉପଲକ୍ଷ୍ୟ କରି କହିଥିଲେ ତୁମକୁ, ବହୁତ ଭକ୍ତ ଆସିବେ—'

'କେଜାଣି, ବାବା, ମାଙ୍କ କଥା, ମା ଜାଣନ୍ତି ।'

କିନ୍ତୁ ରାମକୃଷ୍ଣଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ମା ଏଥର ନିଜେ ଆସିଛନ୍ତି ମଥୁରକୁ ନେଇଯିବା ପାଇଁ ।

ଯା, ଏଥର ମାଙ୍କ ପାଖକୁ ଯା । ଦେଖିବୁ ଯା ଦେବୀଲୋକ ।

ଆଉ ନିଜେ ଆସିଲେ ନାହିଁ ରାମକୃଷ୍ଣ । ଖବର ବୁଝି ଆସିବା ପାଇଁ ପ୍ରତିଦିନ ପଠେଇ ଦିଅନ୍ତି ହୃଦୟକୁ ।

କାଶୀରେ ଥିଲା ବେଳେ ରାମକୃଷ୍ଣଙ୍କ ଅନୁରୋଧରେ ମଥୁର ବାବୁ ଥରେ କଳ୍ପତରୁ ହୋଇଥିଲେ । ଯେ ଯାହା ଚାହୁଁଥିଲା ଆନନ୍ଦରେ ଦାନ କରୁଥିଲେ ।

ରାମକୃଷ୍ଣଙ୍କୁ କହିଲେ, 'ତୁମେ କିଛି ମାଗ ।'

ଚନ୍ଦ୍ରମଣି ମାଗିଥିଲେ ଚାରି ପଇସାର ଦୁକ୍ତା । ରାମକୃଷ୍ଣ କହିଲେ, 'ମୋତେ ଗୋଟାଏ କମଣ୍ଡଳୁ ଦିଅ ।'

ସେହି କମଣ୍ଡଳୁରୁ ଟିକିଏ ଗଙ୍ଗା ଜଳ ମୋତେ ଏବେ ଦେବ ନାହିଁ ? କୃପଣ ମଥୁରକୁ ମୁକ୍ତହସ୍ତ କରେଇ ଦେଇ, ହେ କୃପାନିଧି, ତୁମେ ନିଜେ ଆଜି କୃପଣ ସାଜି ବସିଗଲ ?

କିଛି ଦରକାର ନାହିଁ । ଗଙ୍ଗା ନିଜେ ଆସୁଛନ୍ତି ତୋତେ ନେଇଯିବା ପାଇଁ । ଆସୁଛନ୍ତି ସେହି ବେଦମୟୀ ଶବ୍ଦମୟୀ ଗଙ୍ଗା । ତୃପ୍ତିକର୍ତ୍ତ୍ରୀ ଭବତାରିଣୀ । କ୍ରମଶଃ ପାଖକୁ ଆସୁଛନ୍ତି ସେ, ତାଙ୍କ ପାଦ-ଶବ୍ଦ ଶୁଣି ପାରୁନୁ ?

ଶ୍ରାବଣ ସଂକ୍ରାନ୍ତି । ମଥୁର ବାବୁଙ୍କର ଆଜି ଶେଷ ଦିନ । ଆଜି ବି ରାମକୃଷ୍ଣ ଯାଇ ନାହାନ୍ତି ଜାନବଜାର ।

ତୋର ଭକ୍ତିବ୍ରତ ଉଦ୍‌ଯାପନ ହୋଇ ସାରିଛି, ମା ନିଜେ ଆସିଛନ୍ତି ତୋତେ କୋଳକୁ ନେବା ପାଇଁ ।

କାଳୀଘାଟ ନେଇଗଲେ ମଥୁରବାବୁଙ୍କୁ । ନିକଟ ହୋଇ ଆସୁଛି ଜୀବନର ଅନ୍ତିମା ।

ରାମକୃଷ୍ଣ ସେତେବେଳେ ଦକ୍ଷିଣେଶ୍ୱରରେ ସମାଧିସ୍ଥ । ଜ୍ୟୋତି-ପଥରେ ତାଙ୍କ ସୂକ୍ଷ୍ମ ଦେହ ଚାଲି ଆସିଲା ମଥୁର ବାବୁଙ୍କ ଶଯ୍ୟା ପାଖକୁ । ଶେଷ ଥର ପାଇଁ ଆଖିପତା ବୁଜିବା ପୂର୍ବରୁ ମଥୁର ବାବୁ ଦେଖିଲେ ରାମକୃଷ୍ଣଙ୍କୁ ।

ଅପରାହ୍ଣ ପାଞ୍ଚଟା ସମୟରେ ଧ୍ୟାନରୁ ଉଠିଲେ । ହୃଦୟକୁ ଡାକି କହିଲେ, 'ଆରେ, ମଥୁର ରଥରେ ବସିଲା । ରଥ ଉଡ଼ିଗଲା ବହୁତ ବେଗରେ, ଯାଇ ପହଞ୍ଚିଲା ଦେବୀ ଲୋକରେ ।'

ରାତିରେ ଖବର ଆସି ପହଞ୍ଚିଲା ଦକ୍ଷିଣେଶ୍ୱରରେ, ଆଜି ଉପର ଓଳି ପାଞ୍ଚଟା ବେଳେ ମଥୁର ବାବୁ ଲୋକାନ୍ତରିତ ହୋଇଛନ୍ତି ।

କଥା ପଡୁ ପଡୁ ଠାକୁର ଦିନେ କହିଲେ ତାଙ୍କ ଭକ୍ତମାନଙ୍କୁ, 'ମୋତେ ଦେଖି ସେ କଅଣ

କହୁଥିଲା, ଜାଣ ? କହୁଥିଲା, ବାବା, ତୁମ ଭିତରେ ଆଉ କିଛି ନାହିଁ, ଅଛନ୍ତି କେବଳ ଈଶ୍ୱର । ତୁମ ଦେହଟା ଗୋଟାଏ ଖୋଳ, ବାହାରକୁ ଲାଉ ଭଳି, ଭିତରେ କିନ୍ତୁ ଶସ ମଞ୍ଜି କିଛି ନାହିଁ । ତୁମେ ଯାଉଛ, ମୁଁ ଦେଖୁଛି କିଏ ଜଣେ ଓଢ଼ଣାରେ ମୁହଁ ଢାଙ୍କି ଚାଲି ଯାଉଛି ।'

ତଥାପି ତୁମେ ମନେ କର ନା ମଥୁର ବାବୁ, ଯେ ତୁମ ଭଳି ଜଣେ ବଡ଼ ମଣିଷ ମୋତେ ମାନୁଛି ବୋଲି ମୁଁ କୃତାର୍ଥ ହୋଇ ଯାଇଛି । ମଣିଷ ହାତରେ କଅଣ ଅଛି ? ମନେଇବା ଲୋକ ହେଲେ ଈଶ୍ୱର ନିଜେ । ଈଶ୍ୱରଙ୍କ ଶକ୍ତି ଆଗରେ ମଣିଷ କାଠି-କୁଟା ସମାନ ।

କି ଜ୍ୱଳନ୍ତ ବିଶ୍ୱାସ ତାଙ୍କର ଥିଲା ! କି ଉର୍ଜ୍ଜୀ ଭକ୍ତି ! କାମ କରିବାକୁ ହେଲେ ପ୍ରଥମେ ଗୋଟାଏ ବିଶ୍ୱାସ ଦରକାର । ଆନନ୍ଦମୟ ବିଶ୍ୱାସ । ମାଟି ତଳେ ସୁନା-କଳସୀ ଅଛି— ଏହି ଆନନ୍ଦମୟ ବିଶ୍ୱାସ ଥିଲେ ସିନା ମାଟି ଖୋଳିବାକୁ ମନ ବଳିବ । ଖୋଳୁ ଖୋଳୁ ଯଦି ଠଣ୍ କରି ଗୋଟାଏ ଶବ୍ଦ ହୁଏ, ଛାତି ଭିତରଟା ଆନନ୍ଦରେ ନାଚି ଉଠେ । ଆହୁରି କିଛି ମାଟି ବାହାର କଲ, କଳସୀର ମୁହଁଟା ଦିଶିଗଲା । ସେତେବେଳେ ମନରେ ଆହୁରି ତୀବ୍ରତର ଆନନ୍ଦ । ସେତେବେଳେ ଆହୁରି ଆଗ୍ରହରେ, ଆହୁରି ବଳ ଖଟେଇ, ବେଗେ ବେଗେ ଖୋଳିବାକୁ ଲାଗିଯାଅ । ନୁହେଁ ? ସାଧୁ ଚିଲମ ଟାଣିବ, ଗଞ୍ଜେଇ ଦଳୁଛି, ଦଳିବାରେ ତା'ର ଆନନ୍ଦ । ଟାଣିବା ଆଗରୁ ହିଁ ତା'ର ଆନନ୍ଦ । ହନୁମାନ ରାମ-ନାମରେ ବିଶ୍ୱାସ ରଖିଥିଲା, ସେଇ ବିଶ୍ୱାସ ବଳରେ ସେ ସମୁଦ୍ର ଲଂଘନ କଲା । ଅଥଚ ସ୍ୱୟଂ ରାମଚନ୍ଦ୍ର— ସମୁଦ୍ର ପାର ହେବା ପାଇଁ ତାଙ୍କୁ ସେତୁ ବାନ୍ଧିବାକୁ ପଡ଼ିଥିଲା ।

'ଆଜ୍ଞା, ମଲା ପରେ ମଥୁର ବାବୁଙ୍କର କଅଣ ହେଲା ?' ଜଣେ ଭକ୍ତ ଦିନେ ପଚାରି ଦେଲେ ରାମକୃଷ୍ଣଙ୍କୁ: 'ନିଶ୍ଚୟ ତାଙ୍କର ଆଉ ଜନ୍ମାନ୍ତର ହେବ ନାହିଁ ?'

'କିଏ କହିଲା ? ସେ ନିଶ୍ଚୟ କୋଉଠି ଗୋଟାଏ ରଜା-ଫଜା ହୋଇ ଜନ୍ମ ନେଇଥିବ । ତା' ଭିତରେ ଭୋଗ-ବାସନା ଥିଲା ପରା !'

ଯୋଗଭ୍ରଷ୍ଟ ହେଲେ ମଣିଷ ଭାଗ୍ୟବାନ ଲୋକ ଘରେ ଜନ୍ମ ହୁଏ । ତା' ପରେ ପୁଣି ଈଶ୍ୱର-ପ୍ରାପ୍ତି ପାଇଁ ସାଧନା କରେ । ପୂର୍ବ ଜନ୍ମରେ ଈଶ୍ୱର-ଚିନ୍ତା କରୁ କରୁ ଦୈବାତ୍ ଭୋଗ-ଲାଳସା ଆସିଗଲା ।ତେଣୁ ସେ ଯୋଗଭ୍ରଷ୍ଟ ହେଲା । କାମନା ଧାଉଁ ଥାଉଁ, ଲାଳସା ଥାଉଁ ଥାଉଁ ମୁକ୍ତି ନାହିଁ ।

'ଛିଃ ! କାମନା-ବାସନା ମୁହଁରେ ନିଆଁ !' ଏଇ ପଦେ କଥା ଶୁଣି ଘର ଛାଡ଼ିଲେ ଲାଲା ବାବୁ । ଅଚଳାଚଳ ସମ୍ପତ୍ତି । ବର୍ଷକୁ ଆୟ ସାତ ଲକ୍ଷ ଟଙ୍କା । ସବୁ ଛାଡ଼ି ଚାଲିଗଲେ ବୃନ୍ଦାବନ ।

ଧର୍ମର ସୂକ୍ଷ୍ମ ଗତି । ଛୁଞ୍ଚିରେ ସୂତା ପୂରଉଛ, ସୂତାରେ ଯଦି ଟିକିଏ ଆଁଶୁ ବାହାରିଥିବ, ଛୁଞ୍ଚି ଭିତରେ ପଶିବ ନାହିଁ । କାମନା ଥିଲେ ଭଗବାନ ନାହିଁ ।

ଭଗବାନଙ୍କୁ କଅଣ ମାଗିବୁ ? ଭକ୍ତି-ମୁକ୍ତି, ଜ୍ଞାନ-ବୈରାଗ୍ୟ— କିଛି ନୁହେଁ ଏ ଗୁଡ଼ାକ ।

ଶ୍ରୀ ମା କହିଲେ, 'ମାଗିବୁ କେବଳ ନିର୍ବାସନା ।'

'ତୁମେ ସବୁ କୁଆଡ଼େ ଯିବା ପାଇଁ ସଜ ହେଉଛ ?'

'ଆମେ ପରା କଲିକତା ଯିବୁଁ, ଗଙ୍ଗାସ୍ନାନ କରିବା ପାଇଁ ।'

'କଲିକତା ଯିବ ?'

'ହଁ, କଲିକତା । ତୁ ଜାଣି ନାହୁଁ କି ? ଆସନ୍ତା ଫାଲ୍‌ଗୁନ ପୂର୍ଣ୍ଣିମା ଦିନ ଗୋଟାଏ ବଡ଼ ସ୍ନାନ-ଯୋଗ ପଡୁଛି । ଗୌରାଙ୍ଗ ମହାପ୍ରଭୁ ପରା ସେଇ ଦିନ ଜନ୍ମ ହୋଇଥିଲେ ।'

'ମୋତେ ନେଇଯିବ ସାଥିରେ ?'

'କଅଣ ? ତୁ ଯିବୁ ଗଙ୍ଗାସ୍ନାନ କରିବା ପାଇଁ ?' ଆଶ୍ଚର୍ଯ୍ୟ ହେଲେ ସ୍ତ୍ରୀ ଲୋକମାନେ । ପ୍ରାୟ ସମସ୍ତେ ବୟସ୍କା । କେତେ ଜଣ ବି ଆତ୍ମୀୟା ଥିଲେ ତାଙ୍କ ଭିତରେ ।

'ନା, ମୁଁ ଥରେ ଦକ୍ଷିଣେଶ୍ୱର ଯାଆନ୍ତି । ତାଙ୍କୁ ଦେଖିବା ପାଇଁ ଭାରି ମନ ହେଉଛି ।'

'ଯିବୁ ଯଦି, ତୋ ବାପାଙ୍କୁ କହ । ବାପା ନ କହିଲେ ଯିବୁ କେମିତି ?'

ଲଜ୍ଜାରେ ସତେ କି ମାଟିରେ ମିଶିଗଲେ ସାରଦା । ମନକୁ ଡର ବି ଆସିଲା । କାଳେ ବାପାଙ୍କ କାନରେ କଥାଟା ପଡ଼ିଯିବ ! ଛିଃ, ଛିଃ, ବାପା ଜାଣିଲେ କଅଣ ଭାବିବେ !

କେବେ ଥରେ ଦେଖା ହୋଇଥିଲା ତାଙ୍କ ସହିତ । ଚାରି ବର୍ଷ ପୂର୍ବେ । ଗଲା ପୌଷରେ ସାରଦାଙ୍କୁ ଅଠର ବର୍ଷ ପୂରି ଯାଇଛି । ଭରା ଯୌବନ, କିନ୍ତୁ ବୟସ-ସୁଲଭ ଚଟୁଳ-ଚାପଲ୍ୟ ନାହିଁ । ପ୍ରଶାନ୍ତ ଗମ୍ଭୀର ସ୍ୱଭାବ । ହୃଦୟର ଅଭ୍ୟନ୍ତରରେ ସର୍ବ ସମୟରେ ଆନନ୍ଦର ପରିପୂର୍ଣ୍ଣ ଘଟ । ଉଲ୍ଲାସ ଅଛି, କିନ୍ତୁ ତାହା ଉଚ୍ଛଳିତ ନୁହେଁ, ନିୟତନିଶ୍ଚଳ ।

ସତକୁ ସତ କଥାଟା ଯାଇ ବାପାଙ୍କ କାନରେ ପଡ଼ିଲା । ସାରଦା ଦକ୍ଷିଣେଶ୍ୱର ଯିବାକୁ ମନ କରୁଛି । ଚାହୁଁଛି ତା ସ୍ୱାମୀ ପାଖକୁ ଯିବା ପାଇଁ । ତା' ପୁରୁଷ ପାଖକୁ ।

ଲଜ୍ଜାରେ ମୁଣ୍ଡ ଟେକି ପାରିଲେ ନାହିଁ ସାରଦା । ମନେ ମନେ କହିଲେ, ତୁମ ପାଖକୁ ଯିବାକୁ ଚାହୁଁଛି, ତୁମେ ହିଁ ମୋର ମାନ ରଖ ।

ରାମଚନ୍ଦ୍ର ଡାକିଲେ ସାରଦାଙ୍କୁ । କହିଲେ, 'ହଉ ମା, ଯିବୁ । ମୁଁ ନିଜେ ନେଇ ତୋତେ ଛାଡ଼ି ଦେଇ ଆସିବି । ତୁ ସଜ ହୋ ।'

ହୃଦୟସ୍ଥ ଆନନ୍ଦ-ଘଟ ଆଡ଼କୁ ସାରଦା ଚାହିଁ ରହିଲେ ଏକ-ଦୃଷ୍ଟିରେ । କୃତଜ୍ଞ କରୁଣ ଆଖି ଦୁଇଟିରେ ପ୍ରତୀକ୍ଷାର ପ୍ରଶାନ୍ତି ।

କାହିଁ ଜୟରାମବାଟି କାହିଁ କଲିକତା ! ପାଦରେ ଚାଲି ଯିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ରେଳ ଗାଡ଼ିର ନାଁ ବି କେହି ଶୁଣି ନାହାନ୍ତି ସେ ଅଞ୍ଚଳରେ । ଏ ପାଖେ ବିଷ୍ଣୁପୁର, ସେ ପାଖେ ତାରକେଶ୍ୱର । ମଝିରେ ଆଉ କିଛି ନାହିଁ । ଖାଲି ପାଟ । ଚାରିଆଡ଼ ଖାଁ- ଖାଁ, ଶୂନ୍ ଶାନ୍ । ଘାଟାଲ ପାଖରେ ବଡ଼ ନଈ, ହେଲେ ସେଠିକି ବି ଷ୍ଟିମର ଆସି ନାହିଁ । ଚତୁର୍ଦ୍ଦିଗ ବ୍ୟାପ୍ତ କରି ସ୍ଥାନ ଓ ସମୟର ଗୋଟାଏ ବିସ୍ତୀର୍ଣ୍ଣ ହା-ହା-କାର । କେଉଁ ବାଟରେ କେଉଁଆଡ଼େ ଯିବା, କେଉଁ ବାଟରେ ଯାଇ କେତେ ଦିନରେ ପହଞ୍ଚିବା— ସବୁ ଧୂସର, ଅସ୍ପଷ୍ଟ । କିଛି ଯେପରି ନାହିଁ

ଧରା-ଛୁଆଁ ଭିତରେ, ସବୁ ଯେମିତି ମିଶି ରହିଛି ପ୍ରହେଳିକାମୟ ଦୂରର ଦିଗନ୍ତ ସହିତ ।

ତଥାପି ଚାଲ । ଚାଲିବା ବ୍ୟତୀତ ଅନୁପାୟର ଆଉ କେଉଁ ଉପାୟ ବା ଅଛି ? କେବଳ ଆଗକୁ ଚାଲ । ପଦେ-ପଦେ ବିପଦ; ଆଗେଇବା ହିଁ ଏକମାତ୍ର ଉପାୟ ।

ସାରଦା ଯାଉଛନ୍ତି କେବଳ ସ୍ୱାମୀ-ଦର୍ଶନ ପାଇଁ ନୁହେଁ, ତୀର୍ଥ ଦର୍ଶନ ପାଇଁ । ହିମାଳୟ ଅତିକ୍ରମ କରି ମାନସ ସରୋବର ଅଭିମୁଖରେ ।

ଦିନେ ହେଲେ କେବେ ଦାଣ୍ଡକୁ ଗୋଡ଼ କାଢ଼ି ନାହାନ୍ତି ସାରଦା । କେବେ ଦିନେ ଚାଲି ନାହାନ୍ତି ଦୂର ବାଟ । ତଥାପି ସେ ଡରିବେ ନାହିଁ, ତଥାପି ସେ ପଛେଇ ପଡ଼ିବେ ନାହିଁ । ଯେ ସ୍ୱୟଂ ତୀର୍ଥପତି ସେ ନିଜେ ଟାଣିନେବେ ଏହି ତୀର୍ଥ-ପଥିକକୁ ।

ରାସ୍ତା ଠାଏ ଠାଏ ହଜିଯାଇଛି । ବିଲରୁ ଧାନ କଟା ସରିଛି । ଚାଲିବାକୁ ପଡୁଛି ବେଳେ ବେଳେ ସେହି ସବୁ ବିଲ ଭିତର ଦେଇ । ଆବୁଡ଼ା-ଖାବୁଡ଼ା ମାଟି । କଟା ଧାନ ଗଛର ଥୁଣ୍ଟା ମୂଳ ଏବେ ବି ରହିଛି । ଚାଲ ତାହାରି ଭିତର ଦେଇ । ଯଦି ବିଲ୍ ମଝିରେ ଗଛଟିଏ କେଉଁଠି ଅଛି, ଟିକିଏ ବସି ପଡ଼ ତା' ଛାଇରେ । ତାଳ-ବଣ ଘେରା ପୁଷ୍କରିଣୀଟିଏ କେଉଁଠି ଆଖିରେ ପଡ଼ିଲା, ଆଞ୍ଜୁଳା ଆଞ୍ଜୁଳା ଜଳ ପିଇ ନିଅ । ହେ ସୂର୍ଯ୍ୟ ଦେବ, ତୁମ ରଶ୍ମିଜାଳକୁ ଟିକିଏ ସ୍ତିମିତ କରି ଦିଅ !

କମଳ-କୋମଳ ପାଦ ପକାଇ ପକାଇ ଚାଲୁଛନ୍ତି ସାରଦା । ଖରା-ଧାସରେ ସିଝି ଯାଇଛି ମୁହଁଟି । ଆଉ ବୋଧହୁଏ ଚାଲି ହେବ ନାହିଁ । ପଥଶ୍ରମରେ ପାଦ ଘୋଳେଇ ହେଉଛି । ଦେହ ଅବଶ ଲାଗୁଛି ।

'ବାଟ ଚାଲିବାକୁ କଷ୍ଟ ହେଉଛି, ନୁହେଁ ରେ ମା ?' ପଚାରିଲେ ରାମଚନ୍ଦ୍ର ।

'ନାଇଁ ବାପା ।' ମୁହଁରେ ହସ ଫୁଟାଇ କହିଲେ ସାରଦା । ଚେଷ୍ଟା କଲେ ଜୋରରେ ପାଦ ପକେଇବା ପାଇଁ ।

'ତେବେ ଏତେ ପଛେଇ ପଡୁଛୁ କାହିଁକି ?'

'ଏଇ, ଟିକିଏ ସବୁ ଆଡ଼କୁ ଆଖି ପକେଇ ପକେଇ ଯାଉଛି ତ -'

ଝିଅର ମୁହଁକୁ ଚାହିଁଲେ ରାମଚନ୍ଦ୍ର ମୁହଁ ଝାଉଁଳି ପଡ଼ିଛି । ଦେହ ଯେମିତି ଟଳ-ମଳ ହେଉଛି । ମାତ୍ର ଦୁଇ ତିନିଦିନ ତ ଯାଇଛି, ଆହୁରି କେତେ ଦିନର ବାଟ ରହିଛି ଆଗକୁ । ହେଲେ, ଆଉ ତ ଉପାୟ ନାହିଁ । ଏହି ଭଳି, ରାସ୍ତାର ଚଟି ଘରମାନଙ୍କରେ ରହି ରହି ଧୀରେ ଧୀରେ ଆଗେଇବାକୁ ପଡ଼ିବ । ବିଶ୍ରାମର ସମୟ ହୁଏ ଟିକିଏ ବଢ଼େଇ ଦେଇ ହେବ, କିନ୍ତୁ ବାଟ ତ ଆଉ କମେଇ ହେବନାହିଁ ।

ହଠାତ୍ ଜ୍ୱର ଆସିଲା ସାରଦାଙ୍କୁ । ଢଳି ପଡ଼ିଲେ ସେଇ ବାଟ ମଝିରେ । ରାମଚନ୍ଦ୍ରଙ୍କୁ ଚାରିଆଡ଼ ଅନ୍ଧାର ଦିଶିଲା । ଝିଅଟାକୁ ନେଇ ଏବେ କରିବି କଅଣ ?

ସାଙ୍ଗରେ ଆଉ ସବୁ ଯେଉଁମାନେ ଥିଲେ ସେମାନେ ଅଟକି ରହିବାକୁ ରାଜି ନୁହନ୍ତି । ତୁମ ଝିଅ ଲାଗି ଆମେ କ'ଣ ସ୍ନାନଯୋଗଟା ହରେଇବୁ ? ଆମେ ଯାଉଛୁ, ତୁମେ ଝିଅକୁ ନେଇ

ଆସୁଥାଅ ପଛରେ, ଆଗ ଚଟିରେ ଦେଖା ହେବ ।

କିଛି ଆଉ କରିବାର ନାହିଁ । ଜରୁଆ ଝିଅଟା ଚାଲିବ ବା କେମିତି ? ସବାରି ପାଲିଙ୍କି ଏଠି ମିଳିବା ସ୍ୱପ୍ନ । ନିରୁପାୟ ରାମଚନ୍ଦ୍ର ସାରଦାଙ୍କୁ ଧରି ଧରି ନେଇ ଯାଇ ବହୁ ଆୟାସରେ ପହଞ୍ଚିଲେ ଆଗ ଚଟିରେ ।

ସାରଦାଙ୍କ ମନରେ ଦୁଃଖର ସୀମା ନାହିଁ । ନିଜେ ତ ଜରରେ ପଡ଼ିଲି, ବାପାଙ୍କୁ ବି ବିପଦରେ ପକାଇଲି । ତୁମକୁ ଦେଖିବାର ଦିନଟି ମଧ ପଛେଇଗଲା ।

ଗ୍ରାମ୍ୟ ବଧୂ । ଲଜ୍ଜା-ସଂକୋଚର କେତେ ଆବରଣ । ଅଥଚ, ଏଠି, ଏଇ ଅଜଣା ଜାଗାର ଚଟି ଘରଟିରେ ଜ୍ୱରରେ ସଂଜ୍ଞାହୀନ ହୋଇ ପଡ଼ି ରହିଛନ୍ତି ଲାଜ-ଲଜ୍ଜା ସବୁ ଜଳାଞ୍ଜଳି ଦେଇ । ଲଜ୍ଜା-ନିବାରଣ ହରି, ତାଙ୍କରି ସ୍ନେହଦୃଷ୍ଟିର ଛାୟା ହିଁ ତାଙ୍କର ଆଚ୍ଛାଦନ ।

ସାରଦା ଦେଖିଲେ, କିଏ ଗୋଟିଏ ଝିଅ ଆସି ବସିଲା ପାଖରେ ।

ଝିଅଟି ଦେଖିବାକୁ କଳା, ମାତ୍ର କଳା ରୂପ ଯେ ଏଭଳି ଅପରୂପ ହୋଇପାରେ, କଳାର ପୁଣି ଏଭଳି ଆଲୋକ ଥାଇପାରେ, ସ୍ୱପ୍ନରେ ବି କେବେ କଳ୍ପନା କରି ନଥିଲେ ସାରଦା । ପାଖରେ ବସି ଝିଅଟି ସ୍ନେହ-ଶୀତଳ ହାତରେ ଆଉଁଷି ଦେଲା ସାରଦାଙ୍କ ଦେହ-ମୁଣ୍ଡ । ନରମ ହାତର ସ୍ପର୍ଶ ଦେଇ ଯେପରି କି ପୋଛି ଆଣୁଥିଲା ତାଙ୍କ ତପ୍ତ ଦେହର ଦାହ । ଟଣା ଟଣା ଦୁଇଟି ବଡ଼ ବଡ଼ ଆଖିରେ ଅସରନ୍ତି ମମତା– ଭାରି ଶୀତଳ ବୋଧ ହେଉଥିଲା ।

କେତେବେଳ ପରେ ସାରଦା ପଚାରିଲେ, 'ତୁମେ କେଉଁଠୁ ଆସିଲ ?'

'ଦକ୍ଷିଣେଶ୍ୱରରୁ ।'

'କଅଣ କହିଲ ? ଦକ୍ଷିଣେଶ୍ୱରରୁ ? ମୁଁ ତ ସେଇ ଦକ୍ଷିଣେଶ୍ୱର ଯିବା ପାଇଁ ସଂକଳ୍ପ କରି ଘରୁ ବାହାରିଥିଲି । ବାଟରେ ଜ୍ୱର ହେଲା । ଆଚ୍ଛା, ଦକ୍ଷିଣେଶ୍ୱରରେ ତୁମେ ତାଙ୍କୁ ଦେଖିଛ ? ଠାକୁରଙ୍କୁ ?'

'ହଁ, ଦେଖିଛି ତ ।'

'ବହୁତ ଆଶା କରିଥିଲି, ଯାଇ ତାଙ୍କୁ ଦେଖିବି, ତାଙ୍କ ସେବା କରିବି । ସେ ଆଶା ବୋଧହୁଏ ମୋର ଆଉ ମେଣ୍ଟିବ ନାହିଁ । ଏଇ ଜ୍ୱରଟା କୁଆଡୁ ଆସି ମୋର ସବୁ ଆଶା ଭାଙ୍ଗି ଚୂନା କରି ଦେଲା ।'

ଦରଦଭରା କଣ୍ଠରେ ଝିଅଟି କହିଲା, 'ନା, ନା । ତୁମେ ନିଶ୍ଚୟ ଦକ୍ଷିଣେଶ୍ୱର ଯିବ । ତୁମେ ଭଲ ହୋଇଯିବ । ଭଲ ହୋଇ ସେଠି ପହଞ୍ଚି ତାଙ୍କୁ ନିଶ୍ଚୟ ଦେଖିବ । ତୁମରି ପାଇଁ ତ ମୁଁ ତାଙ୍କୁ ଅଟକେଇ ରଖିଛି ସେଠି !'

'ସତ କହୁଛ ? ମୁଁ ଭଲ ହୋଇଯିବି ? ଭଲ ହୋଇ ସେଠିକି ଯିବି ? ତାଙ୍କୁ ଦେଖିବି ?' ଚାହିଁଲେ ସାରଦା ସେହି ମମତାମୟୀ କୃଷ୍ଣାରମଣୀର ମୁହଁକୁ । 'ତୁମେ ଆମର କଅଣ ହେବ ?'

'ମୁଁ ତୁମ ଭଉଣୀ ।'

'ସତେ ? ସେଥିପାଇଁ ମୋତେ ଜ୍ୱର ହେଇଛି ଶୁଣି ଦେଖିବାକୁ ଆସିଲ ? ଭାରି ଭଲ

ହେଲା ।' ତୁଣ୍ଡରୁ କଥା ସରିଛି କି ନାହିଁ, ଶୋଇ ପଡ଼ିଲେ ଗାଢ଼ ନିଦରେ ।

ରାତି ପାହି ସକାଳ ହେଲା । ନିଦରୁ ଉଠିଲେ ସାରଦା । ଦେଖିଲେ, ଭଉଣୀ ଚାଲି ଯୋଇଛନ୍ତି । ଜ୍ୱର ବି ଛାଡ଼ି ଯୋଇଛି ।

ପୁଣି ଆରମ୍ଭ ହେଲା ଯାତ୍ରା । କିଛି ଦୂର ଆସିଲା ପରେ, ଆଶ୍ଚର୍ଯ୍ୟ କଥା, ଗୋଟାଏ ସବାରି ମିଳିଗଲା । ଭଉଣୀ ବୋଧହୁଏ ଗଲା ବେଳେ ପାଖ ଗାଁରୁ ଯୋଗାଡ଼ କରି ପଠେଇ ଦେଇ ଯାଇଛି ।

ଦି'ପହର ବେଳକୁ ପୁଣି ଜ୍ୱର ଆସିଲା ।

'କେମିତି ଅଛ, ମା ?' ପଚାରିଲେ ରାମଚନ୍ଦ୍ର ।

'ଭଲ ଅଛି, ବାପା ! ତୁମେ କିଛି ଚିନ୍ତା କର ନାହିଁ ।' - ସବାରି ମିଳି ଯାଇଛି, ଆଉ ଅସୁବିଧା କଅଣ ? ଯାଉଛି ତ ଏବେ ସର୍ବରୋଗପାବନଙ୍କୁ ପାଖକୁ ।

ଶେଷକୁ ଦିନେ ବାଟ ସରିଲା । ସବାରିରୁ ଓହ୍ଲାଇ ବସିଲେ ନୌକାରେ । ରାତି ନଅଟା ବେଳକୁ ନୌକା ଆସି ଲାଗିଲା ଦକ୍ଷିଣେଶ୍ୱର ଘାଟରେ ।

ରାମକୃଷ୍ଣ ଖବର ପାଇଲେ । ଡକେଇଲେ ହୃଦୟକୁ । କହିଲେ, 'ଆରେ, ଏବେ ବାରବେଳା ନୁହେଁ ତ ? ପ୍ରଥମ ଥର ଆସୁଛି ତ ?'

ସେ କଥାର ମୀମାଂସା ଆଗରୁ ହୋଇ ସାରିଛି । ସାରଦା ଗଙ୍ଗା ଉପରେ ସେହି ନୌକାରେ ଥାଇ ବରବେଳା ଗଡ଼ାଇ ଆସିଛନ୍ତି ।

ଯିଏ ଯେଉଁଠି ସୁବିଧା ହେଲା ଯାଇ ବିଶ୍ରାମ ନେଲେ । ନହବତଖାନା ଘରେ ଚନ୍ଦ୍ରମଣି ଅଛନ୍ତି, ସେଠିକି ବି କେହି କେହି ଗଲେ । ସାରଦା ସିଧା ଆସିଲେ ରାମକୃଷ୍ଣ ଯେଉଁ ଘରେ ରହୁଥିଲେ ସେଇ ଘରକୁ । ମୁହଁରେ ସଲଜ୍ଜ ଓଢ଼ଣା ।

'ଆସିଲ ?' ଖୁସି ହେଲେ ରାମକୃଷ୍ଣ । 'ଭଲ କଲ ।' କହି ହଠାତ୍ ବ୍ୟସ୍ତ ହେଲା ପରି ଡାକ ପକାଇଲେ, 'ଆରେ, କିଏ ଅଛରେ ? ସପ ଖଣ୍ଡିଏ ଆଣ, ପାରି ଦିଅ, ସେ ବସି ପଡୁ । କେତେ ବାଟରୁ ଆସିଛି, ପୁଣି ଦେହ ଖରାପ ।' କହି ସାରି ମନକୁ ମନ ଖେଦୋକ୍ତି କଲା ଭଳି ପୁଣି କହିଲେ, 'ଆଉ କ'ଣ ମୋ ମଝିଆଁ ବାବୁ ଅଛନ୍ତି ଯେ ତୁମ କଥା ବୁଝିବେ ! ମୋ ଡାହାଣ ହାତଟା ତ ଭାଙ୍ଗି ଯାଇଛି । ତୁମକୁ ମୁଁ ରଖିବି ଏବେ କୋଉଠି ? ମଝିଆଁ ବାବୁ ଯଦି ଥାଆନ୍ତେ, ତୁମକୁ ନେଇ ଉଆସରେ ରଖେଇ ଥାଆନ୍ତେ । ଆସିଲ ସିନା, ହେଲେ ବହୁତ ଡେରି କଲ । ମଝିଆଁ ବାବୁଙ୍କୁ ଆଉ ଦେଖିବାର ସୁଯୋଗ ପାଇଲ ନାହିଁ ।'

ହୃଦୟ ସପ ପାରି ଦେଲା । ଢାକିଢୁକି ହୋଇ ବସିଲେ ସାରଦା ।

ଆଖି-କାନର ବିବାଦ ମେଣ୍ଟିଲା । ଗାଁରେ ଥିଲା ବେଳେ କେତେ କଅଣ ଶୁଣୁଥିଲେ । ପାଗଳ ହୋଇ ଯାଇଛନ୍ତି । ଦେହରେ ଲୁଗା-ପଟା ରଖନ୍ତି ନାହିଁ, ତୁଣ୍ଡରେ ସବୁବେଳେ ଏଣୁ ତେଣୁ ବକୁଛନ୍ତି । ଏଇ ଭଳି ନାନା କଥା ଶୁଣି ଶୁଣି ଭାବିଥିଲେ ନିଶ୍ଚୟ ପାଗଳ ହୋଇ ଯାଇଛନ୍ତି । ଅଥଚ ପାଖକୁ ଆସି ଦେଖୁଛନ୍ତି, ପରମାନନ୍ଦ ମହାପୁରୁଷ ! ଏବଂ ଆହୁରି ଆଶ୍ଚର୍ଯ୍ୟ, ସାରଦାଙ୍କୁ

ଭୁଲି ନାହାନ୍ତି, ଠିକ୍ ମନେ ରଖିଛନ୍ତି । କେବଳ ମନେ ରଖିଛନ୍ତି ନୁହେଁ, ତାଙ୍କ ପ୍ରତି କରୁଣାରେ ଅଜସ୍ର ହୋଇ ରହିଛନ୍ତି ।

ଘରୁ ଉଠି ବାହାରି ଆସିବାକୁ ମନ ହେଉ ନାହିଁ ସାରଦାଙ୍କର । ତଥାପି କହିଲେ, 'ମୁଁ ଯାଉଛି ନହବତ ଘରକୁ, ମାଙ୍କ ପାଖକୁ ।'

'ନା, ନା, ସେଠି ଡାକ୍ତର ଦେଖେଇବାକୁ ଅସୁବିଧା ହେବ ।' ଚିନ୍ତିତ ହେଲା ପରି କହିଲେ ରାମକୃଷ୍ଣ । 'ତୁମେ ଏଇ ଘରେ ରୁହ, ମୋ ବିନା ତୁମକୁ ପଥ୍ୟ ଔଷଧ ଆଉ କିଏ ଦେବ ?'

ଚନ୍ଦ୍ରମଣି ଆଗରୁ ରହୁଥିଲେ କୋଠୀ ଭିତରେ ଉପର ମହଲାର ଗୋଟାଏ ଘରେ । ଅକ୍ଷୟ ମଧ୍ୟ ରହୁଥିଲା ସେଇଠି ତାଙ୍କରି ପାଖରେ । ସେଇ ଘରେ ଅକ୍ଷୟ ମଲା । ତା'ପରେ ଚନ୍ଦ୍ରମଣି ଆଉ ସେ ଘରେ ରହିଲେ ନାହିଁ । କହିଲେ, 'ମୁଁ ତଳ ମହଲାର ନହବତ ଘରେ ରହିବି । ସବୁବେଳେ ଗଙ୍ଗା ଦର୍ଶନ କରୁଥିବି । ଉପର ଘରେ ରହିବା ପାଇଁ ମୋର ଆଉ ମନ ଚାହୁଁ ନାହିଁ ।'

ସେହି ଦିନ ଠାରୁ ଆସି ଅଛନ୍ତି ନହବତ ଘରେ ।

ରାତିର ଖିଆପିଆ କାମ ସେତେବେଳକୁ ସରି ଯାଇଥିଲା । ହୃଦୟ ଦୁଇ ତିନି କଠା ଭଳି ମୁଢ଼ି ନେଇ ଆସିଲା । ଯେମିତି ଅସମୟରେ ଆସି ପହଞ୍ଚିଲ, ସେମିତି ରାତି ସାରା ବସି ମୁଢ଼ି ଚୋବାଉ ଥାଅ ।

ରାତିରେ ସେହି ଘରେ ଶୋଇଲେ ସାରଦା । ଅଲଗା ବିଛଣାରେ, ପାଖରେ ଆଉ ଗୋଟିଏ ଝିଅ ।

ନିଦ ଭିତରେ ଭାବୁଥାଆନ୍ତି ସାରଦା, ଏହା ପ୍ରକୃତରେ ନିଦ, ନା ଜାଗରଣ !

ତହିଁ ଆର ଦିନ ଡାକ୍ତର ଅଣେଇଲେ ରାମକୃଷ୍ଣ । ତିନି ଚାରି ଦିନ ରଖିଲେ ସାରଦାଙ୍କୁ ସେଇଠି ଖୁବ୍ ହେପାଜତରେ । ନିଜ ହାତରେ ପଥ୍ୟ ଖୁଆଇ ଦେଲେ । ଘଣ୍ଟାଧରି ଔଷଧ ଦେଲେ । ନିଜ ହାତରେ ସବୁ ରକମ ସେବା-ଯତ୍ନ କରି ତାଙ୍କୁ ଭଲ କରାଇଲେ । ତା'ପରେ କହିଲେ, 'ଏଥର ତୁମେ ଯାଇପାର ମାଙ୍କ ପାଖକୁ ।'

ସାରଦା ଆସିଲେ ନହବତ ଘରକୁ । ଶାଶୁଙ୍କ ସେବାରେ ମନ ଦେଲେ । ଆଉ ରାମକୃଷ୍ଣଙ୍କ ସେବା ? ଯେତିକି ଚାହିଁବେ ସେତିକି ।

ସେବା ଭଳି ଆନନ୍ଦ ଆଉ କଅଣ ଅଛି ! ସେବା ବ୍ୟତିରେକେ ଆଉ କଅଣ ବା ଅଛି ଜୀବନର କବିତା !

ରାମଚନ୍ଦ୍ର ସବୁ ଦେଖିଲେ ନିଜ ଆଖିରେ, ସବୁ ଶୁଣିଲେ । ସବୁ ସନ୍ଦେହ ଦୂର ହେଲା ମନରୁ । ସନ୍ତୋଷରେ ଫେରିଲେ ନିଜ ଗାଁକୁ ।

କିନ୍ତୁ ସାରଦାଙ୍କୁ ନନହବତ ଘରକୁ ପଠାଇ ଦେଇ ରାମକୃଷ୍ଣ ଚିନ୍ତିତ ହେଲେ । କାହିଁକି ମୁଁ ତାଙ୍କୁ ଦୂରେଇ ରଖୁଛି ? ମୋର କ'ଣ ତା' ପ୍ରତି ଭୟ, ନା ଘୃଣା ? ସେ କ'ଣ ମୋର ତାଚ୍ଛଲ୍ୟର ଲୋକ, ଅନୁକମ୍ପାର ଲୋକ ? ପ୍ରତିମାକୁ ତ ଈଶ୍ୱର-ଜ୍ଞାନରେ ପୂଜା କରି ହେଉଛି,

ଜୀବନ୍ତ ମଣିଷ ଠାରେ ଏହା କ'ଣ ହୋଇପାରିବ ନାହିଁ ? ମୁଁ କ'ଣ ଗୋଟାଏ କଣା ମାଠିଆ ଯେ ମୋ ଭିତରେ ଜଳ ରଖିଲେ ଜଳ ସବୁ ବାହାରି ଯିବ ? ମୁଁ କ'ଣ ଗୋଟାଏ ଦୁର୍ବଳ ବାଲି-ବନ୍ଧ ଯେ ଆଷାଢ଼ର ବନ୍ୟାକୁ ଅଟକେଇ ପାରିବି ନାହିଁ ?

ମନେ ପଡ଼ିଗଲା ତୋତାପୁରୀଙ୍କ କଥା । ତୋତାପୁରୀ କହିଥିଲେ, ତୁମେ ଯେ କାମ ଜୟ କରିଛି, ପ୍ରମାଣ କଅଣ ? ସ୍ତ୍ରୀକୁ ଗାଁରେ ଛାଡ଼ି ଦେଇ ନିଜେ ଏଠି ବନବାସରେ ରହି କାମଜୟ କରିଛି ବୋଲି କହିବା ସହଜ । ସ୍ତ୍ରୀକୁ ପାଖରେ ରଖି ଯଦି ଏ କଥା କହି ପାରିବ, ତେବେ ଜାଣିବି ।

ଏଥର ଆସିଛି ସେହି ପରୀକ୍ଷାର ସୁଯୋଗ । ଜୋର କରି, ନିଜର ବୀରତ୍ୱ ଦେଖେଇବା ପାଇଁ ତ ସେ କିଛି କରୁ ନାହାନ୍ତି; ସୁଯୋଗ ପାଖକୁ ଆସିଛି, ତେଣୁ ପରୀକ୍ଷା । ସବୁ ସେହି ମହାମାୟାଙ୍କର ଇଙ୍ଗିତ ।

ରାମକୃଷ୍ଣ କହି ପଠାଇଲେ, 'ସାରଦା ଆସି ମୋ ଘରେ ଶୋଇବ ।'

ମନେ ମନେ ଶଙ୍କିଗଲେ ସାରଦା । ଇଏ ପୁଣି କଅଣ ହେଲା ତାଙ୍କର ? କିନ୍ତୁ 'ନା' କହିବାର ଉପାୟ ନାହିଁ । ଶାଶୁ କହିଲେ, 'ଯାଅ, ସେ ଯଦି କହୁଛି ।'

ଘର ଭିତରେ ଏକାନ୍ତକୁ ଡାକି ନେଇ ରାମକୃଷ୍ଣ ପଚାରିଲେ ସାରଦାଙ୍କୁ, 'ତୁମେ କ'ଣମୋତେ ସଂସାର-ପଥକୁ ଟାଣି ନେବା ପାଇଁ ଆସିଛ ?'

ଅବଗୁଣ୍ଠିତା ସାରଦା ଛିଡ଼ା ହୋଇଥିଲେ ମୁହଁ ତଳକୁ କରି । କହିଲେ, 'ନା, ତୁମକୁ ସଂସାର-ପଥକୁ ମୁଁ କାହିଁକି ଟାଣିବି ? ତୁମକୁ ଇଷ୍ଟ-ପଥରେ ସାହାଯ୍ୟ କରିବା ପାଇଁ ମୁଁ ଆସିଛି ।'

ଭଲ । ବସ ମୋ ପାଖରେ । ଶୁଣ ।

ଖଇ ଭାଜିବା ବେଳେ ଯେଉଁ ଖଇଟି କରେଇରୁ ଛିଟିକି ଆସି ତଳେ ପଡ଼ିଯାଏ, ସେଥିରେ କୌଣସି ଦାଗ ନଥାଏ, ଦେଖିଥିବ । କିନ୍ତୁ କରେଇ ଭିତରେ ତତଲା ବାଲି ଉପରେ ରହିଲେ କୌଣସି ନା କୌଣସି ଜାଗାରେ କଳା ଦାଗ ନିଶ୍ଚୟ ପଡ଼ିବ । ଈଶ୍ୱରଙ୍କ ପଥରେ ଯାହା ବିଘ୍ନ ବୋଲି ମନେ ହେବ, ମା ହେଉ ବା ସ୍ତ୍ରୀ ହେଉ, ତାକୁ ତତ୍‌କ୍ଷଣାତ୍ ତ୍ୟାଗ କରିବା ଉଚିତ । ଈଶ୍ୱର ଭଳି ଆଉ କିଛି ନାହିଁ । ସୀତାଙ୍କୁ ଭୁଲେଇବା ପାଇଁ ରାବଣ ମାୟା ବଳରେ କେତେ ରୂପ ଧରି ଆସୁଥିଲା, ସୀତା ଟଳିଲେ ନାହିଁ । ଜଣେ କିଏ କହିଲା, 'ଥରେ ରାମ-ରୂପରେ ଯାଇ ଦେଖୁନ' !'

ରାବଣ କହିଲା, 'ରାମ-ରୂପ ଥରେ ହୃଦୟରେ ଧାରଣ କଲେ ବ୍ରହ୍ମପଦ ତୁଚ୍ଛ ମନେ ହେବ; ଆଉ ପର-ସ୍ତ୍ରୀ ବା କେଉଁ ଛାର କଥା ! ରାମ-ରୂପ ଧରିବି !'

'କିନ୍ତୁ ମୁଁ ତୁମର କିଏ ?' ସହଜ, ସରଳ ଅନ୍ତରରେ, ଗମ୍ଭୀର ଭାବରେ ପଚାରିଲେ ସାରଦା ।

'ତୁମେ ମୋର ବିଦ୍ୟା । ତୁମେ ସାରଦା, ସରସ୍ୱତୀ । ତୁମେ ମୋ ପାଇଁ ରୂପ ନେଇ

ଆସି ନାହଁ, ବିଦ୍ୟା ନେଇ ଆସିଛ । ରୂପ ଥିଲେ ଲୋକେ ଅଶୁଦ୍ଧ ମନରେ ଦେଖି ନିଜର ଅକଲ୍ୟାଣ କରି ପକାଇବେ, ତେଣୁ ଏଥର ତୁମେ ରୂପ ଢାଙ୍କି ଆସିଛ । ଆସିଛ ବିଦ୍ୟାର ଆଲୋକ ଜଳାଇ । ତୁମେ ଜ୍ଞାନଦାତ୍ରୀ ।'

ସାରଦା କ'ଣ ଏତେ କଥା କିଛି ବୁଝିଲେ ? ବୁଝିବା ଦରକାର ବି ନାହିଁ । ମୁଁ କେବଳ ସେବା କରି ଯିବି । ଜ୍ଞାନ କଅଣ ମୁଁ ଜାଣେ ନା; ମୁଁ ଜାଣେ ଭକ୍ତି, ମୁଁ ଜାଣେ ସେବା ।

ରାମକୃଷ୍ଣଙ୍କ ଗୋଡ଼ ଘଷି ଦେବାକୁ ବସିଲେ ସାରଦା ।

ଗୋଡ଼ ଘଷି ଦେଇ ସାରି ଯେତେବେଳେ ଉଠି ଆସୁଥିଲେ, ରାମକୃଷ୍ଣ ଉଠି ପଡ଼ି ପ୍ରଣାମ କଲେ ସାରଦାଙ୍କୁ ।

ଏ କଅଣ ! ଏ କଅଣ ! ଛି ! ସର୍ବାଙ୍ଗରେ କୁଣ୍ଠିତ ହୋଇ ପଡ଼ିଲେ ସାରଦା । କହିଲେ, 'ମୁଁ ତୁମ ଦାସୀ ।'

'ତୁମେ ମୋର ଆନନ୍ଦମୟୀ । ଯେଉଁ ମା ମନ୍ଦିର ଭିତରେ ଅଛନ୍ତି ସେହି ମା ମୋର ଏ ଶରୀରକୁ ଜନ୍ମ ଦେଇଛନ୍ତି । ସେହି ମା ଅଛନ୍ତି ନହବତ ଘରେ, ସେହି ମା ପୁଣି ଏବେ ମୋର ପଦସେବା କରୁଛନ୍ତି । ତୁମେ କ'ଣ କେବଳ ଏଇ ଘର ଭିତରେ ଅଛ ? ତୁମେ ରହିଛ ମୋର ବିଶ୍ୱବ୍ୟାପିନୀ ହୋଇ ।'

## ୪୪

'ଆରେ ମନ, ଚାହିଁ ଦେଖ । ଦେଖୁଛୁ ?'

ବଡ଼ ତକ୍ତପୋଷଟିଏ । ତା' ଉପରେ ବସିଛନ୍ତି ରାମକୃଷ୍ଣ । ତକ୍ତପୋଷକୁ ଲାଗି ଆଉ ଗୋଟାଏ ସାନ ଖଟ । ସେଇ ଖଟରେ ଶୋଇଛନ୍ତି ସାରଦା । ଶୋଇଛନ୍ତି ଲଜ୍ଜାରେ ସଂକୁଚିତ ହୋଇ । ସର୍ବାଙ୍ଗ ଢାଙ୍କି ହୋଇ ରହିଛି ଲୁଗାରେ । କେବଳ ପାଦତଳ ଦୁଇଟି ଅନାବୃତ । ପଦ୍ମଦଳ ପରି ପାଦତଳ । ସେ ପାଦରେ ପଦ୍ମରାଗର ଆଭା ।

ଘର ଭିତରେ କେବଳ ଦୁଇ ଜଣ । ଆଉ କେହି ନାହାନ୍ତି । ଦରଜା ଭିତରୁ ବନ୍ଦ ।

ଅର୍ଦ୍ଧ ରାତ୍ରି । ଚାରିଆଡ଼ ନୀରବ ନିସ୍ତବ୍ଧ । ଏଇଟା ବୋଧ ହୁଏ ବସନ୍ତ ଋତୁ । ''ଋତୁନାଂ କୁସୁମାକରଃ-'' ସେହି ମଧୁ ଋତୁ । ଦକ୍ଷିଣେଶ୍ୱରର ବଗିଚାରେଫୁଲ ଫୁଟିଛି, ଚାରିଆଡ଼େ ଫୁଲର ମହକ । ଗଙ୍ଗାର ପବନ ମନ୍ଥର ।

'ଆଖି ପୂରେଇ ଦେଖ ! ଦେଖୁଛୁ ?'

ଘର କୋଣରେ ପ୍ରଦୀପଟିଏ ଜଳୁଛି ପରା ? ଝରକା ବାଟେ ଜ୍ୟୋସ୍ନା ଆସି ପଡୁ ନାହିଁ ଘର ଭିତରେ ?

ଦେଖି ପାରୁନୁ ତୋର ଅନୁଭୂତିର ଅନ୍ତର୍ଗୂଢ଼ ଅନ୍ଧକାର ଭିତରେ !

'ପାରୁଛି ।'

'କଅଣ ଦେଖୁଛୁ ?'

'ଗୋଟିଏ ଅମଳ ଅନୁପମ ସୌନ୍ଦର୍ଯ୍ୟ । ଗୋଟିଏ ଅନାଘ୍ରାତ ପୁଷ୍ପ । ଗୋଟିଏ ସର୍ବତୋମୁଖୀ ଶ୍ରୀ ।'

'ଆଖିରେ କାବ୍ୟର ଅଞ୍ଜନ ଲଗାଇ ଦେଖୁଛୁ । ସେପରି ନୁହେଁ । ଚର୍ମଚକ୍ଷୁରେ ଚାହିଁ ଦେଖ୍ । କଅଣ ଦେଖୁଛୁ ?'

'ଗୋଟିଏ ଉଦ୍‌ଭିନ୍ନ ଯୌବନା ନାରୀ । ଲାବଣ୍ୟ ଉର୍ମିଳା ସ୍ରୋତସ୍ୱତୀ ।'

'କେବଳ ସେତିକି ?'

'ସ୍ୱାସ୍ଥ୍ୟ ସାରଲ୍ୟ ଓ ପବିତ୍ରତାର ସମାବେଶ । ଅସ୍ପୃଷ୍ଟ, ଅନୁପଭୁକ୍ତ । ବିରଜ-ବିଶୁଦ୍ଧ ବିଶଦ-ବିଶୋକ ।'

'ସେ ତୋର କଅଣ ହେବ, କହି ପାରିବୁ ?'

'ସ୍ତ୍ରୀ । ଯାହା ପାଇଁ କୌଣସି ନିଷେଧ ନାହିଁ, ନିବାରଣ ନାହିଁ । ଶାସ୍ତ୍ର ଯାହା ସପକ୍ଷରେ, ଯାହା ସପକ୍ଷରେ ସମସ୍ତ ସଂସାର ସୃଷ୍ଟି ।'

'ସେହି ସ୍ତ୍ରୀ ଆଜି ଆସି ଶୋଇଛି ତୋର ନିଭୃତ ଶଯ୍ୟାରେ । ବେଷ୍ଟନ କରି ଯେ ଦୀପ୍ତି ଲାଭ କରେ ସେହି ସ୍ତ୍ରୀ । ଯାହା ଠାରେ ନିଜକୁ ନୂତନ ଭାବରେ ଜନ୍ମ ଦିଆଯାଇପାରେ ସେହି ଜାୟା । ଚାହିଁ ଦେଖ । ସଦ୍ୟ-ପ୍ରାଣକରା ସ୍ତ୍ରୀ । ଏ ସଂପୂର୍ଣ୍ଣ ଭାବରେ ତୋର । ତୋ ଆୟତ୍ତ ମଧ୍ୟରେ- ।'

'ହଁ, ଦେଖୁଛି । ଅନିନ୍ଦ୍ୟକାନ୍ତି । ଅପରୂପ-ସୁନ୍ଦର ।'

'ହଁ, ଏଇଆକୁ କହନ୍ତି ସ୍ତ୍ରୀ-ଦେହ ।' ରାମକୃଷ୍ଣ ନିଜ ମନ ପାଖରେ ନିଜକୁ ଆହୁରି ଖୋଲିଦେଲେ । କହିଲେ, 'ଲୋକେ କହନ୍ତି ଏହାଠାରୁ ଅଧିକ ଭୋଗ୍ୟ, ଅଧିକ ଉପାଦେୟ ଆଉ କିଛି ନାହିଁ ସଂସାରରେ । କଅଣ କହୁଛୁ ? ଗ୍ରହଣ କରିବୁ ?'

'କିନ୍ତୁ—' ଉନ୍ମନା ମନ ବିମନା ହୋଇ ରହିଲା ।

'ହଁ, ତେବେ ସେହି ଦେହରେ ଯଦି ଆବଦ୍ଧ ହୋଇ ରହିଯାଉ ତେବେ ସଚ୍ଚିଦାନନ୍ଦଘନ ଈଶ୍ୱରଙ୍କୁ ଆଉ ପାଇବୁ ନାହିଁ । ଭଲ କରି ଭାବି ଦେଖ । ନାରୀ ଚାହୁଁ, ନା ନାରାୟଣୀ ଚାହୁଁ ?'

ମନ ତଥାପି ଇତସ୍ତତଃ କରିବାକୁ ଲାଗିଲା । ତୃଷ୍ଣାର କୁଜ୍‌ଝଟିକା ଘୋଟି ଆସିବା ମାତ୍ରେ ଉଇଁ ଆସିଲା ବୈରାଗ୍ୟର ତ୍ୱିଷାମ୍ପତି । କହିଲା, 'କିନ୍ତୁ କାମ-ଭୋଗ ଦ୍ୱାରା କ'ଣ କାମର ନିବୃତ୍ତି ହୋଇପାରିବ ?'

'ନା । ଯଯାତି କଅଣ କହିଥିଲେ ମନେ ନାହିଁ ? ପୁତ୍ରର ଯୌବନ ମାଗି ନେଇ ମଧ୍ୟ ତାଙ୍କ କାମର ଉପଶମ ହେଲା ନାହିଁ । ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି । ଯେତେ ଆହୁତି ତେତେ ଆକୁତି ।'

'ଆଉ ଈଶ୍ୱରାନନ୍ଦ ?'

'ଈଶ୍ୱରାନନ୍ଦ ! ଏ କ୍ଷେତ୍ରରେ ମଧ୍ୟ ଯେତେ ପାନ ତେତେ ପିପାସା । ପ୍ରଭେଦ ଏତିକି, ସେଠି ଅଛି କ୍ଷୟ, ଗ୍ଲାନି, କ୍ଲାନ୍ତି, ଖେଦ; ମାତ୍ର ଏଠି ନିରଂଶ, ନିରନ୍ତର, ନିରତିଶୟ ଆନନ୍ଦ ।

ସେଇ ଯେଉଁ କଥା କହିଥିଲୁ, ବିରଜ-ବିଶୋକ, ବିଶଦ-ବିଶୁଦ୍ଧ —'

'ମୁଁ ଈଶ୍ୱରାନନ୍ଦ ଚାହେଁ ।' ମନ ମୁହଁ ଫେରାଇ ଆଣିଲା ।

'କିନ୍ତୁ, ସାବଧାନ ! ଧର୍ମକୁ ଆଖି ମିଟିକା ମାରୁ ନାହୁଁ ତ ? ପେଟର କଥା ମୁହଁର କଥା ଏକ ହେବା ଦରକାର । ମୁହଁରେ ଟାଣପଣ ଦେଖାଉଥିବୁ, ଏଣେ ପେଟରେ ଭୋକ ଥିବ, ସେମିତି ହେଲେ ଚଳିବ ନାହିଁ । ଯଦି ମନ ହେଉଛି, ଟାଣି ଆଣ ପାଖକୁ, କିଛି ଆପତ୍ତି କରିବାର ନାହିଁ । ତୋ ହାତ-ପାଆନ୍ତା ଭିତରେ ତ ସେ ରହିଛି, ରହିଛି ପୂରାପୂରି ତୋ ଅଧିକାରର ସୀମା ଭିତରେ । ଲୁଚକାଳି ଖେଳିବା ଦରକାର ନାହିଁ ।'

ମନ ଟିକିଏ ଇତସ୍ତତ କଲା । ସାରଦାଙ୍କ ଅଙ୍ଗ ସ୍ପର୍ଶ କରିବା ପାଇଁ ହାତ ବଢ଼େଇଲେ ରାମକୃଷ୍ଣ । ଉଦ୍ୟତି ମାତ୍ରେ ହିଁ ମନ ବୁଲି ପଡ଼ିଲା । ଧୀରେ ଧୀରେ ବୁଡ଼ିଗଲା କେଉଁ ଅତଳରେ । ଲୀନ ହୋଇଗଲା ଆତ୍ମସ୍ୱରୂପରେ । ଦେହମନୋହୀନ ଅନାଦ୍ୟନ୍ତ ସଚ୍ଚିଦାନନ୍ଦରେ ।

ଯେ ହୃଦୟୋତ୍ସବରୂପା ସମାନମନୋରମା, ସେ କ'ଣ ଏତେ ଅଳ୍ପ, ଏତେ ଲଘୁ, ଏତେ ସହଜଲଭ୍ୟ ? ମୁଁ ତାକୁ କେଉଁ ମୂଲ୍ୟ ଦେଲି, ପରୀକ୍ଷା ହେବ କେମିତି ? କେଉଁଠି ଆଣି ମୁଁ ତାକୁ ପ୍ରତିଷ୍ଠିତ କଲି- ତା' ନିଜ ରୂପରେ । ତାହାରି ମୂଲ୍ୟରେ ତ ମୁଁ ମୂଲ୍ୟବାନ । ତା'ରି ମହତ୍ତ୍ୱରେ ମୁଁ ମହନୀୟ ।

ହଠାତ୍ ଉଠି ବସିଲେ ସାରଦା । କିଏ ଯେପରି ତାଙ୍କୁ ଜୋର କରି ଟାଣି ଉଠାଇ ଦେଲା ।

ଏ କ'ଣ ! ସେ ଏ ପର୍ଯ୍ୟନ୍ତ ଶୋଇ ନାହାନ୍ତି ? ବିଛଣା ଉପରେ ଯେମିତି ବସିଥିଲେ ସେଇମିତି ବସି ରହିଛନ୍ତି ? କେତେ ସମୟ ଆଉ ବସିଥିବେ ଏଇ ଭଳି ? ରାତି ପାହିବାକୁ ଆଉ କେତେ ଡେରି ?

ଏ ଭଳି ଭାବାରୂଢ଼ କୂଟସ୍ଥ ମୂର୍ତ୍ତି ଆଗରୁ କେବେ ଦେଖି ନଥିଲେ ସାରଦା । ଡରି ଗଲେ । ସେହି ଜ୍ୟୋତିଃ ପୁଞ୍ଜମୟ ଦିବ୍ୟ ମୂର୍ତ୍ତି ସ୍ପର୍ଶ କରିବାକୁ ସାହସ ପାଇଲା ନାହିଁ । କିନ୍ତୁ କେଉଁ ଉପାୟରେ ଏହି ଭାବ ଭଙ୍ଗେଇବେ ରାମକୃଷ୍ଣଙ୍କର ? କଅଣ କଲେ ସେ ଫେରିବେ ତାଙ୍କର ସ୍ୱଚ୍ଛ ସ୍ୱାଭାବିକ ଅବସ୍ଥାକୁ ? ଏହିପରି ବସି ରହୁ ରହୁ ଶେଷକୁ ଚାଲିଯିବେ ପରା !

ବ୍ୟସ୍ତ ହୋଇ ଘରୁ ବାହାରି ଆସିଲେ । ଯୋଗକୁ ପରିଚାରିକା କାଳୀ- ମା ସେଇଠି ପାଖରେ ଥିଲା । ନେହୁରା ହେଲା ପରି କହିଲେ ତାକୁ, 'ଚଞ୍ଚଳ ଯାଇ ଭଣଜାକୁ ଡାକି ଆଣ । ସେ କିଭଳି ଗୋଟାଏ ହୋଇ ଯାଇଛନ୍ତି !'

କାଳୀ-ମା ଯାଇ ଡକା ଡକି କରି ଉଠେଇଲା ହୃଦୟକୁ ।

କଅଣ ଆଉ ହୋଇଥିବେ ! ସବୁବେଳେ ତ ଭାବକୁ ନେଇ ଥାଆନ୍ତି, ଭାବର ଆବେଶରେ ଭବ ହୋଇ ଯାଇଥିବେ । ନିଜେ ତ ତୁମେ ଭବାନୀ, ଏତେ ଭାବିନୀ ହେଉଛ କାହିଁକି ?

ହୃଦୟ ଆସି ରାମକୃଷ୍ଣଙ୍କ କାନ ପାଖକୁ ମୁହଁ ନେଇ ନାମ ଉଚ୍ଚାରଣ କଲା ।

ଯେଉଁ ନାମରେ ଆକର୍ଷଣ ସେହି ନାମରେ ଜ୍ଞାନ । ସେହି ନାମରେ ପୁଣି ପରିତ୍ରାଣ ।

''ଆମାର ପ୍ରାଣ-ପିଞ୍ଜରେର ପାଖି, ଗାଅ ନା ରେ,
ବ୍ରହ୍ମକଳ୍ପତରୁ ଶାଖେ ବସେ ରେ ପାଖି, ବିଭୁଗୁଣଗାନ ଗାଅ ଦେଖି,
ଧର୍ମ ଅର୍ଥ କାମ ମୋକ୍ଷ ସୁପକ୍ୱ ଫଲ ଖାଅ ନା ରେ ।''

(ଆରେ ମୋର ପ୍ରାଣ-ପଞ୍ଜୁରିର ପକ୍ଷୀ, ବ୍ରହ୍ମ ରୂପକ କଳ୍ପବୃକ୍ଷର ଶାଖାରେ ବସି ଈଶ୍ୱରଙ୍କ ଗୁଣଗାନ କରୁ ଥା; ଧର୍ମ ଅର୍ଥ କାମ ମୋକ୍ଷ ରୂପକ ପାଚିଲା ଫଳମାନ ଖାଉ ଥା ।)

କାଶୀପୁରରେ ରହନ୍ତି ମହିମା ଚରଣ ଚକ୍ରବର୍ତ୍ତୀ । ଠାକୁରଙ୍କ ଭକ୍ତ । କିନ୍ତୁ ପାଣ୍ଡିତ୍ୟାଭିମାନ ସବୁ ପଣ୍ଡ କରି ଦେଇଛି । ଭକ୍ତି ଅପେକ୍ଷା ଶାସ୍ତ୍ରକୁ ଶ୍ରେୟଃ ମନେ କରନ୍ତି । ସବୁବେଳେ ଦେଖେଇ ହେବାକୁ ଚାହାନ୍ତି ଯେ ବହୁତ କିଛି ପଢ଼ାପଢ଼ି କରିଛନ୍ତି । ମୁହଁରେ କଥା କଥାକେ ଇଂରାଜୀ ଓ ସଂସ୍କୃତ ବୋଲି । ଶବ୍ଦାଡମ୍ବର ପ୍ରତି ପ୍ରଚଣ୍ଡ ଅନୁରାଗ । ଗୋଟାଏ ସ୍କୁଲ ବି ଖୋଲିଛନ୍ତି । ନାଁ ରଖିଛନ୍ତି ପ୍ରାଚ୍ୟ-ଆର୍ଯ୍ୟ-ଶିକ୍ଷା-କାଣ୍ଡ ପରିଷଦ୍ । ନିଜ ପୁଅର ନାଁ ଦେଇଛନ୍ତି ମୃଗାଙ୍କମୌଳି ପତିତୁଣ୍ଡି । ହରିଣ ଗୋଟିଏ ପାଳିଛନ୍ତି, ତା ନାଁ କପିଞ୍ଜଳ । ଆଉ ତାଙ୍କ ଗୁରୁଙ୍କ ନାମ ଆଗମାଚାର୍ଯ୍ୟ ଡମରୁବଲ୍ଲଭ ।

ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ଗଲେ ଠାକୁର ଯେଉଁ ଘରେ ବସିଥିଲେ ସେହି ଘର ଭିତରକୁ । ଠାକୁର କହି ପକାଇଲେ, 'ଆରେ ! ଆରେ ! ଜାହାଜ କ'ଣ ଆସି ଏଠି ହାଜର ! ଏଠିକି ସିନା ଛୋଟିଆ-ମୋଟିଆ ଡଙ୍ଗା-ଫଙ୍ଗା ଆସି ପାରନ୍ତି । ଇଏ ଯେ ଏକାଥରକେ ଜାହାଜ !'

ଏଇଟା ଅବଶ୍ୟ ତାଙ୍କ ପଣ୍ଡିତମ୍ମନ୍ୟତା ପ୍ରତି କଟାକ୍ଷ । ଯେଉଁମାନେ ବସିଥିଲେ ସେଠି ସମସ୍ତେ ହସି ଉଠିଲେ । ମାତ୍ର ମହିମାଚରଣ ବୋଧହୁଏ ମନେ ମନେ ଖୁସି ହେଲେ । ସେ ତେବେ ସାମାନ୍ୟ ଡଙ୍ଗା ବା ନୌକା କୁହନ୍ତି, ସେ ଜାହାଜ !

ଏଇ ଜାହାଜଟାକୁ ଟିକିଏ ସହଜ କରେଇ ଦେବି, ଠାକୁର ଭାବିଲେ ମନେ ମନେ । କହିଲେ, ନାମ କର । ନାମ କଲେ ଅହଂକାର ଯିବ । ଅହଂକାର ଗଲେ ହିଁ ପାଣ୍ଡିତ୍ୟ ବାହାରେ ଯେଉଁ ସୁଧାଭାଣ୍ଡଟି ଅଛି ତାକୁ ଦେଖିବାକୁ ସମର୍ଥ ହେବ ।

ଦିନେ ଦିନେ ଗେରୁଆ ବସ୍ତ୍ର ପିନ୍ଧି ରୁଦ୍ରାକ୍ଷ ଧାରଣ କରି ଆସି ପହଞ୍ଚି ଯାଆନ୍ତି ମହିମା ଚରଣ । ପଞ୍ଚବଟୀକୁ ଯାଇ ବାଘ ଛାଲ ବିଛାଇ ତା' ଉପରେ ବସି ରୁଦ୍ରାକ୍ଷମାଳା ଧରି ଜପ କରନ୍ତି । କେତେବେଳେ ପୁଣି ତାନ୍‌ପୁରାଟାଏ ଧରି ଗୀତ ଗାଆନ୍ତି । ସତେ ଯେମିତି ଜଣେ ବହୁତ ବଡ଼ ତନ୍ମୟ ସାଧକ ।

ଫେରିବା ବେଳେ ବାଘ-ଛାଲଟିକୁ ଠାକୁରଙ୍କ ଘରର କାନ୍ଥରେ ଟାଙ୍ଗି ଦେଇ ଯାଆନ୍ତି ।

'ଏଇଟାକୁ ସେ କାହିଁକି ଏଠି ରଖି ଦେଇଯାଏ, ଜାଣିଛ ? ଦେଖିଲେ ଲୋକେ ପଚାରିବେ, ଏ ବାଘ-ଛାଲଟା କାହାର ? ମୁଁ କହିବି, ମହିମା ଚରଣର । ଏଥିରେ ତା' ମାନ ବଢ଼ିବ ।'

କେବଳ ନିଜର ନାମ ! କେବଳ ନିଜର ମାନ ! ଆରେ ! ତାଙ୍କ ନାମ କର୍ । ତାଙ୍କ ମାନ ରଖ । ତାଙ୍କରି ନାମରେ ବନ୍ଧନମୋଚନ । ବରଗଛର ବୀଜ ଦେଖିଛ ? ନେଉଟିଆ ଶାଗ ମଞ୍ଜି ଠାରୁ ଆହୁରି ସାନ । ଆଉ, ଭଗବାନଙ୍କ ନାମର ବୀଜ କେତେ ଟିକିଏ ! ମାତ୍ର ଗୋଟିଏ ଅକ୍ଷର, ନ ହେଲେ ଦୁଇଟି । ସେତିକିରୁ ଧୀରେ ଧୀରେ ଭାବ, ଭକ୍ତି, ପ୍ରେମ- କେତେ କଅଣ !

ସେହି ନାମ-ରୂପକ ମନ୍ତ୍ର ଦେଲେ ମହିମା ଚରଣଙ୍କୁ । ସହଜ ହେବାର ସହଜ ସୂତ୍ର । ମୁକ୍ତ ହେବାର ସରଳ ସୂକ୍ତ ।

'କେବଳ ଆଗେଇ ଚାଲ । ଆହୁରି ଆଗକୁ । ଚନ୍ଦନ ବନର ସନ୍ଧାନ ପାଇବ । କିନ୍ତୁ ସେଇଠି ଅଟକି ଗଲେ ଚଳିବ ନାହିଁ । ଆହୁରି ଆଗକୁ ଚାଲ । ପାଇବ ରୂପାର ଖଣି । ନା, ଅଟକି ଯାଅ ନାହିଁ, ଆହୁରି ଚାଲ– ପାଇବ ସୁନା-ଖଣି, ହୀରା-ମୋତି-ମାଣିକ୍ୟର ଖଣି । ତଥାପି ଅଟକି ଯାଅ ନାହିଁ । ଆଗେଇ ଚାଲ -'

ହତାଶ ହେଲା ପରି କହିଲେ ମହିମାଚରଣ, 'ଆଜ୍ଞା, ଟାଣି ଧରୁଛି । ଆଗକୁ ଯିବାକୁ ଦେଉ ନାହିଁ ।'

'କାହିଁକି ? ଲଗାମ କାଟି ଦିଅ । ଘୋଡ଼ା ଛୁଟେଇ ଦିଅ ।'

'କେମିତି କାଟିବି ?'

'କବଳ ତାଙ୍କ ନାମର ଗୁଣରେ କାଟି ପାରିବ । କାଳୀଙ୍କ ନାମରେ କାଳପାଶ ପରା କାଟିହୁଏ !'

ଆଉ କିଛି ଦରକାର ନାହିଁ, କେବଳ ତାଙ୍କ ନାମ କରୁଥାଅ । ଟିକିଏ ସ୍ଥିର ହୋଇ ବସ, ତାଙ୍କୁ ସ୍ମରଣ କର, ଆହ୍ୱାନ କର ।

ଯିଏ ନାମ-ଦାତା ସେହି ପୁଣି ନାମ-ଶ୍ରୋତା । ହୃଦୟ ନାମ ଶୁଣାଇବାକୁ ଲାଗିଲା ।

ସାରା ରାତି ରାମକୃଷ୍ଣ ରହିଲେ ଭାବଭୂମିରେ । ରାତି ପାହି ଆସିଲା ବେଳକୁ ସମାଧି ଭାଙ୍ଗିଲା ନାମଧ୍ୱନିରେ ।

ସାରଦାଙ୍କୁ ପାଖକୁ ଡାକିଲେ ରାମକୃଷ୍ଣ ।

'ମୁଁ ତ କାଠ ହୋଇ ବସିଥିଲି, ତୁମେ ଏକୁଟିଆ ଘର ଭିତରେ ବସି ମୋତେ ସେହି ଅବସ୍ଥାରେ ଦେଖି ଭାରି ଡରି ଯାଇଥିଲ, ନୁହେଁ ?'

ଡରି ଯିବାର କଥା ତ ! ତୁମେ ଟିକିଏ ଶାନ୍ତିରେ ଶୋଇ ଥାଆନ୍ତ । ସେତକ କରେଇ ଦେଲି ନାହିଁ । ବରଂ ତୁମ ମନକୁ ଡର ଆଣିଦେଲି । ପ୍ରକୃତରେ କିନ୍ତୁ ତାହା ଡର ନୁହେଁ, ଆନନ୍ଦ ।

'ଶୁଣ । ରାତିରେ ମୋର ଆହୁରି ଅନେକ ରକମ ଭାବ ହୋଇପାରେ । ଡରିବ ନାହିଁ । କେଉଁ ପ୍ରକାର ଭାବରେ ଯେଉଁ ମନ୍ତ୍ର ଶୁଣାଇଲେ ମୋର ବାହ୍ୟ ଜ୍ଞାନ ଫେରିବ, ସବୁ ଶିଖେଇ ଦେଉଛି ତୁମକୁ ।'

ସାରଦା ଟିକିଏ ଭରସା ପାଇଲେ ବୋଧହୁଏ ।

କିନ୍ତୁ ଜାଣି ରଖ, ଭାବ ବିନା ଲାଭ ନାହିଁ । 'ସେ ହେଉଛନ୍ତି ଭାବର ବିଷୟ, ଭାବ ବିନା

ଅଭାବରେ ତାଙ୍କୁ ଧରିବା ସମ୍ଭବ ନୁହେଁ । ଭାବ ଉଦୟ ହେଲେ ସେ ଟାଣି ଧରନ୍ତି, ଠିକ୍ ଯେପରି ଲୁହାକୁ ଟାଣି ଧରେ ଚୁମ୍ବକ ।'

ମୁଁ ଲୁହା, ସେ ଚୁମ୍ବକ । ସେ- ହିଁ ମୋତେ ଧରିଛନ୍ତି । ମର୍ତ୍ତ୍ୟଶୟନରୁ ନେଇ ଯାଉଛନ୍ତି ସେହି ଅନନ୍ତଶୟନକୁ । ଯେଉଁଠି ଅନନ୍ତନାଗ କୋଳରେ ଶୟନରତ ବିଷ୍ଣୁ ।

## ୪୫

କେବଳ ସେହି ପ୍ରଥମ ରାତ୍ରି ନୁହେଁ, ପ୍ରତି ରାତ୍ରି ।

ମୁହଁ ଉପରକୁ ଓଢ଼ଣା ଟାଣି ଆଣି, ସର୍ବାଙ୍ଗ ସଂକୁଚିତ କରି ନିଃଶବ୍ଦରେ ଶୋଇ ଥାଆନ୍ତି ସାରଦା । ଶୋଇଥାଆନ୍ତି ତରଳିତ ସରଳତାରେ । ସମର୍ପିତ ପ୍ରଶାନ୍ତିରେ । ସ୍ପୃହାନାହିଁ, ପ୍ରତିବାଦ ନାହିଁ । ପ୍ରତୀକ୍ଷା କରି ରହି ଥାଆନ୍ତି ମୂର୍ତ୍ତିମତୀ ଧୈର୍ଯ୍ୟ ପରି, ତିତିକ୍ଷା ପରି । ତପସ୍ୟା ପରି ।

ରାତିର ଆଖିରେ ନିଦ ନାହିଁ । ନିଶା ଗର୍ଜୁଛି । କାନରେ ଆସି ପଡୁଛି ଗଙ୍ଗାର କଳସ୍ୱର ।

ହାତ ବଢ଼େଇ ଧରି ପକେଇଲା ହେଲା । ଆଲିଙ୍ଗନ ଭିତରକୁ ଟାଣି ଆଣିଲେ ହେଲା । ବୃନ୍ତ ଅଗରେ ଫୁଟି ରହିଛି ଫୁଲଟି, କଣ୍ଟା ନାହିଁ, କେବଳ ହାତ ବଢ଼େଇ ତୋଳି ଆଣିଲେ ହେଲା । ସ୍ନାନାବତରଣରେ ନାହିଁ ସାମାନ୍ୟତମ ପଦସ୍ଖଳନର ଆଶଙ୍କା ।

କିନ୍ତୁ ମୁଁ ତ କେବଳ ଜୈବ ପ୍ରୟୋଜନ ପାଇଁ ନୁହେଁ, ମୁଁ ଯେ ଦୈବ ପ୍ରୟୋଜନ ପାଇଁ । ମୁଁ ଷୋହଳ ଅଣା କରିଥିଲେ ସିନା ଲୋକେ ହୁଏତ ପଇସାଏ କରିବେ ।

କିନ୍ତୁ ଅହେତୁକ ଜିଦରୁ କିଛି କରନ୍ତି ନାହିଁ, କିମ୍ବା ଅନ୍ଧ ଏକବୁଝା ପଣରୁ ବି ନୁହେଁ । ଯାହା କରନ୍ତି, ସଦସତ୍ ବିବେଚନା କରି କରନ୍ତି । ନିରନ୍ତର ବୁଝାମଣା ଚାଲିଛି ମନ ସହିତ । ଜଟିଳ ବାଦାନୁବାଦ, ସୂକ୍ଷ୍ମ ବିଚାରମୀମାଂସା । ମନର ତଣ୍ଟି ଚିପି ଧରନ୍ତି ନାହିଁ, ବରଂ ତାକୁ ଦିଅନ୍ତି ସଂପୂର୍ଣ୍ଣ ଛୁଟି, ସଂପୂର୍ଣ୍ଣ ସ୍ୱାଧୀନତା । ଯାହା କହିବାକୁ ଚାହୁଁ, କହ ସ୍ପଷ୍ଟ କରି । ଯା, କେତେ ବାଟ ଯିବୁ; ନେ, ତୋର ଯାହା ଇଚ୍ଛା । କିନ୍ତ ତା' ଆଗରୁ ଟିକିଏ ବସ ମୋ ପାଖରେ ଶାନ୍ତ ହୋଇ । ଅନା ମୋ ମୁହଁକୁ, କଥା କହ । ଅବୁଝା ପରି ମୁହଁ ବନ୍ଦ କରି ବସି ରହନା । ଖୋଲା ମନରେ ତର୍କ କର ମୋ ସହିତ । ବିଚାରରେ ତୁ ଯଦି ଜିତିବୁ, ନେଇ ଯା ମୋତେ ବାନ୍ଧି ଜେଲଖାନାକୁ ! ମାତ୍ର ତୁ କଅଣ କହିବୁ ମୁଁ ଜାଣେ । ହେଲେ, କେତେ ଦିନ କରି ପାରିବୁ ଏଇ ଦେହସ୍ତବ, ସେତିକି ଖାଲି ମୋତେ କହି ଦେ । ଲତାପତ୍ରଘେରା ଶାନ୍ତଶୀତଳ ଯେଉଁ ମାଟିର କୁଟୀରକୁ ତୁ ଯିବାକୁ ଚାହୁଁଛୁ, ତାହାର ମାଧୁର୍ଯ୍ୟ କ'ଣ ମୋତେ ଜଣା ନାହିଁ ?... କିନ୍ତ ଚାହିଁ ଦେଖିଲୁ - ରାତ୍ରିର ଏହି ଆକାଶକୁ, ଏହି ଅବିଚ୍ଛିନ୍ନ ଅନ୍ଧକାରକୁ, — ଏହି ମହାମୌନ ଭିତରେ ଈଶ୍ୱରଙ୍କ ମନ୍ଦିରଟି ଅଧିକ ରମଣୀୟ, ଅଧିକ ମୋହନୀୟ ନୁହେଁ ? ଆଉ କଅଣ ଚାହୁଁ ତୁ ଏହି ଶ୍ମଶାନ-ନାଟ୍ୟର ରଙ୍ଗଶାଳାରେ ? ଯୁବତୀର ଚର୍ମ-ମାଂସ-ରକ୍ତ-ବାଷ୍ପ ? ଯୋଗବାଶିଷ୍ଠ ପଢ଼ି ନାହୁଁ ? କଅଣ କହୁଛନ୍ତି ରାମଚନ୍ଦ୍ର ? କହୁଛନ୍ତି, ଯୁବତୀର ଚର୍ମ ମାଂସ ରକ୍ତ ବାଷ୍ପ ଅଲଗା ଅଲଗା କରି ରଖି ସେଥିରେ ଯଦି ସୌନ୍ଦର୍ଯ୍ୟର ସନ୍ଧାନ ପାଇବ, ତେବେ ଦେଖୁଥାଅ ଅପଲକ ଆଖିରେ । ତାହା ଯଦି ନ ହୋଇ

ପାରିଲା, କଅଣ ଦରକାର ଏତେ ମୁଗ୍ଧ ହେବାର ?

ସମୁଦ୍ରର ଜୁଆର ପରି ଆସେ ଯୌବନ । ଅଚ୍ଛୋଚ୍ଛ୍ୱସିତ, ଅଚିରସ୍ଥାୟୀ । କିନ୍ତୁ ଭୁବନବ୍ୟାପୀ ଏହି ଈଶ୍ୱରସିନ୍ଧୁ ? ଏହା ଚିରକାଳ ସମାନସ୍ରୋତ, ଅଚ୍ଛିନ୍ନ ପ୍ରବାହ । କହ, ସ୍ନାନ ପାଇଁ କେଉଁ ଘାଟରେ ତୁ ଅବତରଣ କରିବୁ ?

ମୁଁ ତୋ ଉପରେ ଜୋର କରିବାକୁ ଚାହୁଁ ନାହିଁ । ତୁ ଜାଗ୍ରତ, ବୁଦ୍ଧିମାନ, କୁଶାଗ୍ରତୀକ୍ଷ୍ଣ । ତୁ ନିଜେ ବିଚାର କରି ଦେଖ । କ୍ଷୟଦ୍ୱାରକୁ ଯିବୁ, ନା ଅକ୍ଷୟ ମନ୍ଦିରକୁ ?

ବୁଦ୍ଧଦେବ ସଂସାରତ୍ୟାଗର ସଂକଳ୍ପ କଲେ । ସେତେବେଳେ କେତେ ଜଣ ସୁନ୍ଦରୀ ଯୁବତୀ ଆସିଲେ ତାଙ୍କୁ ପ୍ରଲୁବ୍ଧ କରିବା ପାଇଁ । ଦୀର୍ଘ ରାତ୍ରି ଅତିବାହିତ ହେଲା ପ୍ରମୋଦ ଉତ୍ସବରେ । ଉତ୍ସବ ଶେଷରେ ଶୋଇ ପଡ଼ିଲେ ସମସ୍ତେ କ୍ଳାନ୍ତ ନିସ୍ତେଜ ହୋଇ । ବୁଦ୍ଧଦେବ ଚାହିଁଲେ ସେମାନଙ୍କ ଆଡ଼କୁ । ନିଦ୍ରାର ବିକୃତିରେ କେତେ କୁତ୍ସିତ ଦେଖା ଯାଉଛନ୍ତି ଯୁବତୀଗୁଡ଼ିକ ! ବୁଦ୍ଧଦେବ ଦେଖିଲେ, ଇଏ ତ ଗୋଟାଏ ଶ୍ମଶାନ, ଏଠି ପ୍ରମୋଦ-ଲୀଳା କାହିଁ ?

ମନ, ସେଥିପାଇଁ ପଚାରୁଛି, ଓଳିକ ପାଇଁ କାଙ୍ଗାଳ ଭୋଜନକୁ ଯିବୁ, ନା, ଯିବୁ ଚିରନ୍ତନ ଅମୃତର ନିମନ୍ତ୍ରଣକୁ ?

ଭିକ୍ଷୁ ମହାତିସ୍‌ସ୍ ତପସ୍ୟା କରୁଥିଲେ ପର୍ବତ ଚୂଡ଼ାରେ ବସି । ପର୍ବତରୁ ଓହ୍ଲାଇ ଆସି ଦିନେ ଯାଉଥିଲେ ଅନୁରାଧାପୁର ଗ୍ରାମ ଆଡ଼କୁ । ସେହି ଗ୍ରାମର ଗୋଟିଏ ସୁନ୍ଦରୀ ଯୁବତୀ ସଦ୍ୟ ସ୍ୱାମୀତ୍ୟାଗ କରି ବାହାରି ଆସିଛି ଦାଣ୍ଡକୁ । ଭେଟ ହୋଇଗଲା ସେହି ସୌମ୍ୟ-ଦର୍ଶନ ଭିକ୍ଷୁଙ୍କ ସହିତ । ଆଖିରେ ବିଲୋଳ କଟାକ୍ଷ ଖେଳାଇ ମଦିର ଅଧରରୁ ହସ ଝରାଇ ଚାହିଁ ଦେଲା ଯୁବତୀ । ଭିକ୍ଷୁ ଅନାଇଲେ ତା' ମୁହଁକୁ । ଦେଖିଲେ ବିକଶିତ ମଲ୍ଲିକା ସଦୃଶ ସୁନ୍ଦର ଦନ୍ତପଙ୍‌କ୍ତି, କିନ୍ତୁ ସେହି ହସଟି ତାଙ୍କୁ ଜଣାଗଲା ଠିକ୍ କଙ୍କାଳର ହସ ପରି । ଗୋଟାଏ ଅସ୍ଥିସାର କଙ୍କାଳ ସତେ ଅବା ତାଙ୍କ ଆଡ଼କୁ ଅନାଇ ବିକଟ ବଦନରେ ହସି ଚାଲିଛି ।

କିଛି ଦୂର ଗଲା ପରେ ଦେଖା ହେଲା ସେହି ଯୁବତୀର ସ୍ୱାମୀ ସହିତ । ସ୍ୱାମୀ ପଚାରିଲା, 'ଏହି ବାଟରେ କୌଣସି ନାରୀ ଯାଉଥିବାର ଆପଣ ଦେଖିଛନ୍ତି ?'

'ନାରୀ ?' ଉଦାସୀନ କଣ୍ଠରେ ଉତ୍ତର ଦେଲେ ଭିକ୍ଷୁ, 'ନାରୀ କି ପୁରୁଷ କହି ପାରିବି ନାହିଁ । ଦେଖିଲି ଗୋଟାଏ କଙ୍କାଳ ଯାଉଛି ।'

ମନ ! କହ ମୋତେ ଠିକ୍ କରି - ନାରୀକୁ ତୁ କଙ୍କାଳକୁ ନେଇଯିବୁ, ନା, ତାକୁ ମନୋମୟୀ ପ୍ରତିମା କରି ବସାଇବୁ ହୃଦୟର ପଦ୍ମାସନ ଉପରେ ?

ମନରେ ! ଯୁବତୀ ମୁଣ୍ଡର ଖପୁରୀଟି କଥା ଥରେ ମନେ ପକେଇଲୁ ? ସେଇଟା ତ ତୋ ପାଇଁ ଥିଲା ମହାମୋହର ଫାନ୍ଦ । କିନ୍ତୁ ଅନା ଥରେ ଏ ଖପୁରୀକୁ – କାହିଁ ସେହି ମୁଖାରବିନ୍ଦ, କାହିଁ ସେହି ଅଧର ମଧୁ ? କାହିଁ ସେହି ଆୟତ-ନେତ୍ରର ଚଟୁଳ ଚାହାଣି ? କାହିଁ ସେହି ଦନ୍ତରୁଚି

କୌମୁଦୀ ? କେଉଁଠି ରହିଲା ସେହି ମଧୁଗୁଂଜ୍ଜ ଆଳାପନ ? କାହିଁ ଗଲା ସେହି ସ୍ମରଧନୁତୁଲ୍ୟ ଭଙ୍ଗୁର ଭ୍ରୂବିଳାସ ? ଏହି କରୋଟି ପାତ୍ରରେ ତୁ ଆଉ କେଉଁ ମଦିରା ପାନ କରିବୁ ?

ମନ, ଶୁଣୁଛୁ ? ଟିକିଏ ଅମୃତ-ମଦ ପିଇବୁ ? ପାତ୍ର ? ସରା-ଖୁରି କିଛି ଦରକାର ନାହିଁ । ସମଗ୍ର ବ୍ରହ୍ମାଣ୍ଡ ସେହି ଅମୃତର ଭାଣ୍ଡ ।

ରାମକୃଷ୍ଣ ପୁଣି ହଜିଗଲେ ସମାଧି ଭିତରେ ।

ନିସ୍ତବ୍ଧତାର ବୋଧହୁଏ ଗୋଟାଏ ଆହ୍ୱାନ ଅଛି । ସେହି ମୌନର ଡାକ ଶୁଣି ଉଠି ବସିଲେ ସାରଦା ।

ଦେଖିଲେ, ଆଗରେ ବସିଛନ୍ତି କର୍ପୂରଗୌର ମହାଦେବ । ପର୍ବତଙ୍କ ମଧ୍ୟରେ ମହାମେରୁ, ସରୋବରଙ୍କ ମଧ୍ୟରେ ମହାସାଗର ।

ତୁମେ ସର୍ବଧାତ୍ରୀ ଧରିତ୍ରୀ । ମୁଁ ଋତ, ସତ୍ୟ, ଧୈର୍ଯ୍ୟ, ଶ୍ରେୟ, ଶୌଚ, ସନ୍ତୋଷ ।

ତୁମେ ଦୟା, କ୍ଷମା, ନୀତି, କାନ୍ତି, ଲଜ୍ଜା, ସହିଷ୍ଣୁତା । ମୁଁ ବିଗତ-ବିଷୟ-ରସରାଗ ।

ତୁମେ ସର୍ବରାଗ ସ୍ୱରପିଣୀ ।

ତୁମେ ଦିବ୍ୟାମ୍ବରା, ମୁଁ ଦିଗମ୍ବର ।

ମନ୍ତ୍ରଟି ଠିକ୍ ମନେ ଅଛି ସାରଦାଙ୍କର । ଏହିପରି ଭାବ ଆସିଲେ କେଉଁ ମନ୍ତ୍ର ଉଚ୍ଚାରଣ କରିବାକୁ ହେବ, ସ୍ମୃତିରେ ଉଜ୍ଜ୍ୱଳ ହୋଇ ରହିଛି । ପରମ ନିଷ୍ଠା ଓ ଭକ୍ତି ସହକାରେ ସେହି ମନ୍ତ୍ର ସେ ଉଚ୍ଚାରଣ କଲେ । ଉଚ୍ଚାରଣ ସହିତ ମିଶି ରହିଥିଲା ତାଙ୍କ ଧୈର୍ଯ୍ୟର ମାଧୁର୍ଯ୍ୟ, ତାଙ୍କ ସମ୍ମତିର ସ୍ନିଗ୍ଧତା ।

ତୁମେ ସ୍ମୃତି ତୁମେ ମେଧା ତୁମେ ବାକ୍ୟ ।

ମୁଁ ଉପଲବ୍ଧି, ତୁମେ ଉଚ୍ଚାରଣ ।

ସମାଧି ଭାଙ୍ଗିଲା ରାମକୃଷ୍ଣଙ୍କର । ଓଢ଼ଣା ଟେକି ଦେଇ ପରିପୂର୍ଣ୍ଣ ଦୃଷ୍ଟିରେ ବୋଧହୁଏ ଦେଖୁଥିଲେ ସାରଦା । ରାମକୃଷ୍ଣଙ୍କ ଧ୍ୟାନ ଭାଙ୍ଗିବା ମାତ୍ରେ କ୍ଷିପ୍ର ହସ୍ତରେ ପୁଣି ଓଢ଼ଣା ଟାଣି ଆଣିଲେ ମୁହଁ ଉପରକୁ ।

ରାମକୃଷ୍ଣ କହିଲେ, 'ଏବେ ତୁମେ ଟିକିଏ ଶୋଇପଡ଼ । ରାତି ପାହିବାକୁ ଆହୁରି ଡେରି ଅଛି ।'

କିନ୍ତୁ ଠିକ୍ ଏହିପରି ଧାରାରେ କ'ଣ କଟିବ ରାତି ପରେ ରାତି ?

କିଏ ଜଣେ ସ୍ତ୍ରୀଲୋକ ଦିନେ ଧରି ବସିଲା ସାରଦାଙ୍କୁ । ଆଲୋ, ତୁ କ'ଣ ହୁଣ୍ଡୀ ନା ହାଉଡ଼ୀ ?

'କାହିଁକି ? କଅଣ ହେଲା ?' ସାରଦା ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ତା' ମୁହଁକୁ ।

'ଜମା ଜାଣିନୁ ଯିମିତି !' ବିଦ୍ରୂପ କରି କହିଲା ସ୍ତ୍ରୀଲୋକଟି । 'ହଁ, ମାନୁଛି, ତୁ ମଫସଲ-ଗାଁର ଝିଅ । ତା' ବୋଲି ତୁ ଏଡ଼ିକି ବୋକା ହେବୁ ? ମଫସଲ-ଗାଁର ଝିଅମାନେ କ'ଣ ବାହା ହେଉ ନାହାନ୍ତି ? ଗେରସ୍ତ ସାଥିରେ ଘର-ସଂସାର କରୁ ନାହାନ୍ତି ? ତାଙ୍କର ପିଲା-

ଝିଲା ହେଉ ନାହାନ୍ତି ?'

'ହେଲେ, ମୁଁ କଅଣ କରିବି ?'

'ତୁ ଗୋଟାଏ ନିପଟ ଓଲୁ, ତୁ କଅଣ କରିବୁ ! ଆଲୋ, ତୋ ସ୍ୱାମୀଟା ବେଆଡ଼ା ହେଇ ଯାଉଛି, ତୁ ତାକୁ ବାଟକୁ ଆଣିବୁ ନାହିଁ ? ସଂସାର ପ୍ରତି ତା' ମନ ନାହିଁ, ତୁ ତା' ମନ କରେଇବୁ ନାହିଁ ? ତାକୁ ଭୋଗ ଆଡ଼କୁ ଫେରେଇବୁ ନାହିଁ ? ନିଜ ହାତରେ ନିଜ ପାଇଁ ଗାଡ଼ ଖୋଳୁଛୁ ? ତୁ ତା'ର ଧର୍ମପତ୍ନୀ; ଧର୍ମପତ୍ନୀ ହୋଇ ଏ ଭଳି ଅଧର୍ମ କରୁଛୁ ?'

ବିମୂଢ଼ ପରି ଚାହିଁ ରହିଲେ ସାରଦା । ଅଧର୍ମ ! ଠାକୁର କ'ଣ ତେବେ ମୋତେ ନେଇ ଅଧର୍ମର ଅଭିନୟ କରାଉଛନ୍ତି ?

'ନୁହେଁ ତ ଆଉ କଅଣ ? ତୋତେ ବାହା ହେଇଚି, ଅଥଚ ତୋତେ ତୋର ସଂସାର-ଧର୍ମ କରିବାକୁ ଦେଉ ନାହିଁ, ଯା ଠାରୁ ବଡ଼ ଅଧର୍ମ ଆଉ କଅଣ ଅଛି ? ତୁ ସ୍ତ୍ରୀ ହେଇଛୁ, ମା ହେବୁ ନାହିଁ ? ତୋ ପାଉଣା ଗଣ୍ଡାକ ତୁ ଛାଡ଼ିବୁ କାହିଁକି ? ଗେରସ୍ତ ପାଖରୁ ଆଦାୟ କରି ଆଣିବୁ ଷୋହୋଳ ଅଣା । ଯାଇ ସିଧା କହ ମୁହଁ ଉପରେ– ମୋର ପିଲା ଦରକାର, ମୁଁ ମା ହେବି ।'

ସରଳତାର ପ୍ରତିମୂର୍ତ୍ତି ସାରଦା ।

ସେହି ଦିନ ରାତିରେ ସ୍ପଷ୍ଟ ଭାବରେ କହିଦେଲେ ସେହି କଥା ରାମକୃଷ୍ଣଙ୍କୁ । ମୁହଁରେ ଅବଶ୍ୟ ଓଢ଼ଣା ଥାଏ, ଓଢ଼ଣା ତଳୁ ଆସୁଥିବା କଥାଗୁଡ଼ିକ ଅଦ୍‌ଭୁତ ଲାଗୁଥାଏ ।

'ସମସ୍ତେ କହୁଛନ୍ତି, ମୋର କ'ଣ ପିଲା-ଝିଲା କିଛି ହେବେ ନାହିଁ ? ମୁଁ ବିବାହ କରିଛି, ପିଲା-ପିଲି ନ ହେଲେ ସଂସାର-ଧର୍ମ ରହିବ କେମିତି ?'

କଥା ଶୁଣି ଚମକି ପଡ଼ିଲେ ରାମକୃଷ୍ଣ । ସାରଦାଙ୍କ ତୁଣ୍ଡରେ ଏଇ କଥା !

ସାରଦା ଉପଯାଚିକା ଭାବରେ ଯାଇ ବସିଲେ ରାମକୃଷ୍ଣଙ୍କ ଗୋଡ଼ ଘଷି ଦେବା ପାଇଁ । ସାନ ଖଟରେ ତାଙ୍କର ଶୋଇବା କଥା, ଆସି ବସିଲେ ବଡ଼ ପଲଙ୍କଟା ଉପରେ ।

ମୁହୂର୍ତ୍ତକେ ରାମକୃଷ୍ଣ ବୁଝି ନେଲେ ମହାମାୟାଙ୍କ ଚାତୁରୀ । ମନେ ମନେ ହସିଲେ । ମନ୍ଦିରରେ ଅଛନ୍ତି ଭବତାରିଣୀ, ତାଙ୍କୁ ଉଦ୍ଦେଶ୍ୟ କରି କହିଲେ, 'ବୁଝିଗଲି ତୋ ଚଲାଖି । ଏତେ ଦିନ ତୁ ନିଜ ମୂର୍ତ୍ତିରେ ଏଠି ଥିଲୁ, ଆଜି ତୋର କଅଣ ମନ ହେଲା, ସ୍ତ୍ରୀ ମୂର୍ତ୍ତିରେ ଚାଲି ଆସିଲୁ ମୋ ପାଖକୁ । ତୁ ଯଦି ସେ ଭଳି ଭାବରେ ଆସି ପାରିବୁ ମୋ ପାଖକୁ, ତେବେ ଆ । ତୁ ନିଜେ ଯଦି ଆସି ପାରିବୁ, ମୋର ଆଉ ଡରିବାର କଅଣ ଅଛି ?

ସାରଦାଙ୍କ ତୁଣ୍ଡରେ ଆଉ କଥା ନାହିଁ । ମୁହୂର୍ତ୍ତକ ଭିତରେ ଅନ୍ୟ ପ୍ରକାର ହୋଇଗଲେ ।

ରାମକୃଷ୍ଣ କହିଲେ, 'ତୁମେ ମା ହେବାକୁ ଚାହୁଁଛ, ହେଲେ କେବଳ ଗୋଟିଏ ପୁଅର କାହିଁକି ? ଦେଶ-ଦେଶାନ୍ତରରୁ ତମର କେତେ ପୁଅ ଆସିବେ, ମାତୃ-ମନ୍ତ୍ରରେ ପାଗଳ ହୋଇ । ମା- ଡାକରେ ତୁମେ ସେତେବେଳେ ଶୋଇ-ବସି ପାରିବ ନାହିଁ ।'

ସାରଦା ନୀରବ, ନିସ୍ତବ୍ଧ । ଦେହରେ ଆଉ ଦେହବୋଧ ନାହିଁ ।

ଭଲ ହେଲା । ମହାମାୟା ଠିକ୍ ଭାବଟି ଆଣି ଦେଇଛନ୍ତି ତୁମ ଭିତରକୁ । ତୁମେ ଜୀବଙ୍କର ଜନନୀ ହେବ । ଯିଏ ବିଶ୍ୱଜନଙ୍କର ଜନନୀ ହେବେ ତାଙ୍କ ଭିତରେ ଏହି ସନ୍ତାନ-କାମନା ନ ରହିଲେ ଚଳିବ  କେମିତି ? ଏଇଟା ତୁମର କେବଳ ଦେହ-ସୁଖର ଛଳନା ମାତ୍ର ନୁହେଁ, ଏହା ତୁମର ମାତୃତ୍ୱ ଭାତି । ଈଶ୍ୱରଙ୍କର ଏହି ସଂସାରରେ, ପରମାନନ୍ଦଙ୍କର ଏହି ମନ୍ଦିର ଭିତରେ ତୁମେ ଲୀଳା ଲାବଣ୍ୟ କଲ୍ୟାଣୀ ଶ୍ରୀମତୀ ମାତା !

ସାରଦା ଉଠି ଆସିଲେ ନିଜ ଖଟକୁ । ଆତ୍ମାନନ୍ଦରେ ଶୋଇ ପଡ଼ିଲେ ନିଦରେ ।

ରାତି ରାତି ଧରି ଲାଗି ରହିଲା ଏହି ରତିହୀନ ବିରତିର ପରୀକ୍ଷା । ଏହି ବିରତିରେ ହିଁ ଈଶ୍ୱରଙ୍କ ଆରତି ।

ଏହାକୁ ହିଁ କୁହାଯାଏ ସହଜ ଅକ୍ଷୁଣ୍ଣ ଅବସ୍ଥା । ସହଜ, କାରଣ ସ୍ୱସ୍ଥାନରେ ନିୟତସ୍ଥିତ; ଅକ୍ଷୁଣ୍ଣ, କାରଣ ବ୍ରହ୍ମଚର୍ଯ୍ୟରୁ ବିଚ୍ୟୁତି ନାହିଁ ଅଣୁ ମାତ୍ର ।

ଏ ହେଉଛି ସେହି ଅବସ୍ଥା - 'ରମଣୀ ସଙ୍ଗତେ ଥାଏ ନ କରେ ରମଣ ।'

ଈଶ୍ୱର-ଦର୍ଶନ ହେଲେ ରମଣ ସୁଖର କୋଟି ଗୁଣ ଆନନ୍ଦ ଆସେ । ଗୌରୀ ଚରଣ କହୁଥିଲେ, ମହାଭାବ ଜାତ ହେଲେ ଦେହର ପ୍ରତିଟି ଲୋମକୂପ ମଧ୍ୟ ମହାଯୋନି ହୋଇଯାଏ । ସେତେବେଳେ ପ୍ରତି ଲୋମକୂପରେ ଚାଲେ ମହାରମଣ ।

ପତଞ୍ଜଳି କହିଛନ୍ତି, ବ୍ରହ୍ମଚର୍ଯ୍ୟ ପ୍ରତିଷ୍ଠାରେ ହିଁ ବୀର୍ଯ୍ୟଲାଭ । ବୀର୍ଯ୍ୟ ଯାହାର ଅଛି କେବଳ ତାହାରି ଭକ୍ତି ଅଛି । ବୀର୍ଯ୍ୟବାନ ବ୍ୟକ୍ତିର ବଜ୍ର-ବଂଧନ । ଯାହାର ବୀର୍ଯ୍ୟ ଅଛି ତାହାର ଅନନ୍ୟ ଚିତ୍ତତା ।

ରାମକୃଷ୍ଣ ଉତ୍ତୀର୍ଣ୍ଣ ହେଲେ ସେହି ବୀର୍ଯ୍ୟର ପରୀକ୍ଷାରେ । ସେହି ସ୍ଥୈର୍ଯ୍ୟର ପରୀକ୍ଷାରେ ।

''ରାଁଧୁନୀ ହଥିବି ବ୍ୟଂଜନ ରାଁଧିବି, ହାଁଡ଼ି ନା ଛୁଇଁବି ତାୟ,<br>
ସାପେର ମୁଖେତେ ଭେକେରେ ନାଚାବି, ସାପ ନା ଗିଲିବେ ତାୟ,<br>
ଅମିୟ ସାଗରେ ସିନାନ କରିବି, କେଶ ନା  ଭିଜିବେ ତାୟ ।''

(ରାଂଧୁଣୀ ହୋଇ ତରକାରୀ ରାନ୍ଧୁଥିବୁ, ମାତ୍ର ହାଣ୍ଡି ଛୁଇଁବୁ ନାହିଁ; ସାପ ମୁହଁ ପାଖରେ ବେଙ୍ଗକୁ ଧରି ନଚେଇବୁ, ମାତ୍ର ସାପ ତାକୁ ଗିଳିବ ନାହିଁ । ଅମୃତ-ସାଗରରେ ସ୍ନାନ କରିବୁ, ଅଥଚ କେଶ ଓଦା ହେଉ ନଥିବ ।)

ଉତ୍ତୀର୍ଣ୍ଣ ହେଲେ ସେହି ନିର୍ବିକଳ୍ପର ସାଧନାରେ ।

ତୁମେ ବୀର୍ଯ୍ୟବତୀ ବିଦ୍ୟା । ତୁମେ ବଳବତୀ ମେଧା । ତୁମେ ଧାରଣାବତୀ ସ୍ମୃତି ।

ସାରଦାଙ୍କୁ ଡାକି ଉଠେଇଲେ ରାମକୃଷ୍ଣ । କହିଲେ, 'ସାରଦା, ତୁମକୁ ପୁଣି ଥରେ ପଚାରୁଛି, ତୁମେ କ'ଣ ମୋତେ ସଂସାର-ପଥକୁ ଟାଣି ନେବାକୁ ଚାହଁ ?'

'ନା', ଉତ୍ତର ଦେଲେ ସାରଦା; 'ତୁମକୁ ତୁମ ଇଷ୍ଟ-ପଥରେ ଯିବା ଲାଗି ସାହାଯ୍ୟ କରିବାକୁ ଚାହେଁ ।'

'ଉତ୍ତମ !' ତୃପ୍ତିର ପ୍ରସାଦରେ ହୃଦୟ ପରିପୂର୍ଣ୍ଣ ହୋଇ ଆସିଲା ରାମକୃଷ୍ଣଙ୍କର । କହିଲେ, 'ଏଥର ଶୁଅ, ନିଶ୍ଚିନ୍ତ ମନରେ ।'

କିଛି ସମୟ ପରେ ପୁଣି ଉଠେଇଲେ ସାରଦାଙ୍କୁ । କହିଲେ, 'ସତ କହିଲ, ତୁମେ କଅଣ ଭାବୁଛ ? ମୁଁ କ'ଣ ତୁମକୁ ତ୍ୟାଗ କରିଛି ?'

'ନା, ମୁଁ ତ ସେ-ଭଳି କିଛି ଭାବୁ ନାହିଁ । ତୁମେ ମୋତେ ଗ୍ରହଣ କରିଛ ।'

ଶାନ୍ତ ସମର୍ପଣର ତୃପ୍ତିରେ ପୁଣି ଶୋଇ ପଡ଼ିଲେ ସାରଦା । ଏ ତ ଅର୍ପଣ ନୁହେଁ, ଏହା ଅର୍ଚ୍ଚନା ।

ରାମକୃଷ୍ଣ କହିଲେ, ତୁମେ ବାଣୀ ।ତୁମେ କରୁଣା । ତୁମେ ମୋର ନାମସ୍ୱାଦମୟୀ ଭିକ୍ଷା ।

ଯୋଗେନ-ମା ବିତ୍ତବାନ ପରିବାରର ବୋହୂ । କିନ୍ତୁ ସଂସାର-ତାପରେ ଜଳି-ପୋଡ଼ି ଯାଉଛନ୍ତି । ଦିନେ ଖବର ପାଇଲେ ତାପ-ହରଣଙ୍କର, ସିଧା ଚାଲି ଆସିଲେ ଦକ୍ଷିଣେଶ୍ୱର । ରାମକୃଷ୍ଣ ତାଙ୍କୁ ଆଶ୍ରୟ ଦେଲେ । କହିଲେ, ସାରଦାଙ୍କ ପାଖକୁ ଯାଅ । ତାଙ୍କରି ପାଖରେ ଶାନ୍ତିର ସ୍ପର୍ଶ । ଦିନ ଦି'ଟା ଭିତରେ ଘନିଷ୍ଠ ହୋଇ ଗଲେ ଯୋଗେନ-ମା । ଯେଉଁଠି ଏକନିଷ୍ଠ ସେହିଠାରେ ଘନିଷ୍ଠ !

ଦିନେ ଦୁଃଖ କରି ତାଙ୍କୁ କହିଲେ ସାରଦା, 'ତାଙ୍କର କି ଭଳି ଭାବ ହେଉଛି, ଦେଖିଛ ?'

'ଦେଖିଛି ।'

'ମୋର ଭାରି ମନ ହେଉଛି, ମୋର ବି ସେଇ ଭଳି ଭାବ ହୁଅନ୍ତା । ତୁମେ ଟିକିଏ ତାଙ୍କୁ କହିବ ?'

'କଅଣ କହିବି ?' ଯୋଗନେ-ମା ଆଶ୍ଚର୍ଯ୍ୟ ହେଲେ ।

'ମୋତେ ଟିକିଏ ଭାବ କରେଇ ଦେବେ । ନିଜେ କହିବାକୁ ମାଡ଼ି ପଡୁଛି ।'

ପଲଙ୍କ ଉପରେ ବସିଛନ୍ତି ରାମକୃଷ୍ଣ । ପଖରେ ଆଉ କେହି ନାହିଁ । ଯୋଗେନ-ମା ଆସି ପ୍ରଣାମ କଲେ । ଛିଡ଼ା ହେଲେ ଗୋଟାଏ କଡ଼କୁ । ସାରଦା ଯାହା କହିଥିଲେ କହିଦେଲେ ସରଳ ଭାବରେ ।

ରାମକୃଷ୍ଣ କିଛି କହିଲେ ନାହିଁ । ଗମ୍ଭୀର ହୋଇ ବସି ରହିଲେ ।

ଯୋଗେନ-ମା ଫେରି ଆସିଲେ ନହବତ-ଘରକୁ । ଦେଖିଲେ, ସାରଦା ପୂଜାରେ ବସିଛନ୍ତି । ଧୀରେ ଧୀରେ କବାଟ ଅଳ୍ପ ମେଲା କଲେ । ଦେଖିଲେ, ସାରଦା ମନକୁ ମନ ହସୁଛନ୍ତି । କିଛି ସମୟ ପରେ ପୁଣି ଆଖିରୁ ଝର ଝର ଲୁହ ଝରାଇ କାନ୍ଦି ଚାଲିଛନ୍ତି । ଆହୁରି କିଛି ସମୟ ଗଲା । ଦେଖିଲେ, ସାରଦା ସମାଧିସ୍ଥା ।

ସମାଧିରୁ ଉଠିଲା ପରେ, ହସ ହସ ମୁହଁରେ ପଚାରିଲେ ଯୋଗେନ-ମା, 'କଅଣ ! ତୁମେ ପରା କହୁଥିଲ, ତୁମର ଭାବ ହୁଏ ନାହିଁ ବୋଲି ?'

ଲାଜେଇ ହୋଇ ହସିଲେ ସାରଦା । କହିଲେ, 'ସତରେ ଯୋଗେନ-ମା, କଅଣ ହେଲା କେଜାଣି, ଗୋଟାଏ ମହାନନ୍ଦର ସ୍ରୋତ ଭିତରେ ଯାଇ ପଡ଼ିଗଲି । ତାଙ୍କରି ଭାବର ଢ଼େଉ ଆସି ମୋତେ ଭସେଇ ନେଇଗଲା । ସେ ସିନା ମୋର ଚର୍ମ ସ୍ପର୍ଶ କରି ନାହାନ୍ତି, ମାତ୍ର ମର୍ମସ୍ପର୍ଶ କରିଛନ୍ତି ।'

ତୁମେ ହିଁ ନେଇ ପାରିବ ମୋ ଭାବ । ତୁମେ ହିଁ ଭବଭୟଶମନୀ ସର୍ବସିଦ୍ଧିପ୍ରଦାତ୍ରୀ ।

## ଟ୪୬

ମୋ ସହିତ ଆଉ ଛଳନା କର ନା, ମା । ମୁଁ ସିନା କାମଜୟ କରିଛି, କିନ୍ତୁ ତା' ଭିତରକୁ କାମଭାବ ଆଣିବୁ ନାହିଁ ।

ଅସୀମ ବ୍ୟାକୁଳତାରେ ଏହି ପ୍ରାର୍ଥନା କରନ୍ତି ରାମକୃଷ୍ଣ । ସେ ଯଦି କାମମୟୀ କାମିନୀ ହୋଇଯିବେ, ମୋର ଏହି ତେଜ-ବୀର୍ଯ୍ୟ ରହି ପାରିବ ତ ? କେଜାଣି ବା, ସଂଯମର ବନ୍ଧ ଭାଙ୍ଗି ଯାଇ ଦେହବୁଦ୍ଧି ଚେଇଁ ଉଠିବ !

ତେଣୁ, ମା, ମୁଁ ତ ତୋତେ ହିଁ ଆଶ୍ରା କରି ପଡ଼ି ରହିଛି, ମୋ ପ୍ରତି କୃପା କର । ସାରଦାଙ୍କୁ ତୁ ସାରଭୂତା କରି ଦେ । ମା, ମୁଁ ଯଦି ପ୍ରେମ, ସାରଦା ହୁଅନ୍ତୁ ପବିତ୍ରତା ।

ସଂସାର-ରଙ୍ଗମଞ୍ଚରେ ଏହା ଏକ ଅଦ୍ଭୁତ ପ୍ରାର୍ଥନା । ନବଯୌବନା ସ୍ତ୍ରୀକୁ ଆଗରେ ରଖି ଜଣେ ସୁସ୍ଥ ସମର୍ଥ ବୀର୍ଯ୍ୟବାନ ଯୁବକର ଏହା ଏକ ଅସାଧାରଣ ଆରାଧନା । ମୋ ସ୍ତ୍ରୀଙ୍କୁ କାମମୋହିନୀ କର ନା, ମା, ତାଙ୍କୁ କରି ଦେ କାଳମୋହିନୀ ।

ମୁଁ ଆଉ କିଛି ଜାଣେ ନା, ମା, ଜାଣେ କେବଳ ତୋତେ । 'ମୋ ମା ଅଛନ୍ତି, ଆଉ ମୁଁ ଅଛି ।' ମୋତେ କିଏ ଟଳେଇବ ? ''ଝଡ଼େ ଗାଛ ନଡ଼େ ଯତ, ତରୁ ବଦ୍ଧମୂଳ ତତ ।'' ପବନରେ ଗଛ ଯେତେ ହଲିବ, ତା' ମୂଳ ସେତେ ଟାଣ ହେବ ।

ମାଙ୍କର କୃପା ହେଲା । ଧରା ଦେଲେ ଆସି ସେଇ ଘର ଭିତରେ । ଧରା ଦେଲେ ସାରଦାଙ୍କ ଭିତରେ ।

ଲବକୁଶ ଦଉଡ଼ିରେ ଭିଡ଼ି କରି ବାନ୍ଧିଲେ ହନୁମାନଙ୍କୁ । ଦେହକୁ ସାନ କରି ଦେଇ ସର୍ବାଙ୍ଗରେ ବନ୍ଧନ ନେଲେ ହନୁମାନ । ଲବକୁଶ ମହା ଖୁସି । ମହାବୀର ଏତର ଧରା ପଡ଼ିଛି, ଆଉ ଯିବ କୁଆଡ଼େ !

ତହୁଁ ହନୁମାନ କହିଲେ,

''ଓରେ କୁଶୀଲବ କରିସ କି ଗୌରବ
ଧରା ନା ଦିଲେ କି ପାରିସ୍ ଧରିତେ ?''

(ଆରେ ଲବ କୁଶ, ମନେ ମନେ ଭାରି ଫୁଲି ଉଠୁଛ, ନୁହେଁ ? କିନ୍ତୁ ମୁଁ ଯଦି ଆପେ ଆସି ଧରା ଦେଇ ନଥାଆନ୍ତି, ତୁମେ କଅଣ ମୋତେ ଧରି ପାରି ଥାଆନ୍ତ ?)

ମା ନିଜେ କୃପା ପ୍ରକାଶ କରି ଧରା ଦେଇଛନ୍ତି । କରେଇଲେ ସେଇ ମା, ମିଳେଇ

ଦେଲେ ପୁଣି ସେଇ ମା । ସେହି ମା ହିଁ ସାରଦାଙ୍କ ଭିତରେ ଦେଖାଇଲେ ଜଗଦୀଶ୍ୱରୀଙ୍କୁ ।

ଆଠ ମାସ କାଳ ଏକ ଶଯ୍ୟାରେ ରାତ୍ରି ଯାପନ କଲେ ଦୁଇ ଜଣ । ସେ ଗୋଟାଏ ବିଚିତ୍ର ସାଧନା । ଶବ-ସାଧନା ଠାରୁ ଭୀଷଣତର, କଠିନତର ସେ ସାଧନା । ଏହି ସଜୀବ ସାଧନା । ଏ ସାଧନାରେ ନିଆଁ ଯେତେ ଅଧିକ ଜଳେ, ଘିଅ ସେତେ ଅଧିକ ଘନ ହୁଏ । ସୂର୍ଯ୍ୟ ଯେତେ ପ୍ରଖର ହୁଏ ସେତେ ଅଧିକ ସଂହତ ହୁଏ ତୁଷାର । ଚନ୍ଦ୍ର ଯେତେ ପୂର୍ଣ୍ଣ ହୁଏ ସାଗର ସେତେ ଶାନ୍ତ ହୁଏ । ଏକ ଅଭିନବ ସାଧନା । ଶବ-ସାଧନା ନୁହେଁ, ନବ ସାଧନା ।

''ଆମାର ଅନ୍ତରେ ଆନନ୍ଦମୟୀ ସଦା କରିତେଛେନ କେଲି,
ଆମି ଯେ ଭାବେ ସେ ଭାବେ ଥାକି ନାମଟି କଭୁ ନାହି ଭୁଲି ।
ଆବାର ଦୁଆଁଖି ମୁଦିଲେ ଦେଖି ଅନ୍ତରେତେ ମୁଣ୍ଡମାଲୀ ।''

(ମୋ ଅନ୍ତର ଭିତରେ ଆନନ୍ଦମୟୀ ସର୍ବଦା କ୍ରୀଡ଼ାରତ ଅଛନ୍ତି । ମୁଁ ଯେଉଁ ଭାବରେ ଥାଏ ନା କାହିଁକି, ତାଙ୍କ ନାମ କେବେ ହେଲେ ଭୁଲି ପାରେ ନାହିଁ । ପୁଣି ଦୁଇ ଆଖି ମୁଦ୍ରିତ କଲେ ବି ଅନ୍ତର ଭିତରେ ସେହି ମୁଣ୍ଡ-ମାଳିନୀ କାଳୀଙ୍କୁ ପ୍ରତ୍ୟକ୍ଷ କରେ ।)

ସାଧନାର ଶେଷ ପର୍ଯ୍ୟାୟରେ ରାମକୃଷ୍ଣ ସଂକଳ୍ପ କଲେ ମହାସମାରୋହରେ ଥରେ କାଳୀପୂଜା କରିବେ । ୧୨୮୦ ସାଲ, ଇଂରାଜୀ ୧୮୭୨ ଖ୍ରୀଷ୍ଟାବ୍ଦ, ଜ୍ୟେଷ୍ଠ ମାସ ଅମାବାସ୍ୟା ତିଥି । ସେଦିନ ଫଳହାରିଣୀ କାଳୀପୂଜା । କାଳୀ ପୂଜା ପାଇଁ ସେହି ଦିନଟି ପ୍ରଶସ୍ତ ।

କାଳୀପୂଜା ହେବ, କିନ୍ତୁ ମନ୍ଦିରରେ ନୁହେଁ। କାଳୀଙ୍କର ପରା 'ଗୁପ୍ତଭାବରେ ଆପ୍ତଲୀଳା ।' ତେଣୁ ତାଙ୍କର ପୂଜା ମଧ୍ୟ ହେବ ଗୁପ୍ତଭାବରେ । ରାମକୃଷ୍ଣଙ୍କ ନିଜ ଘର ଭିତରେ ।

ପୂଜା କରିବେ ନିଜ ସ୍ତ୍ରୀଙ୍କୁ । ଷୋଡ଼ଶୀ ରୂପିଣୀ ସାରଦାଙ୍କୁ ।

''ମା ବିରାଜେ ଘରେ ଘରେ, ଜନନୀ ତନୟା ଜାୟା ସହୋଦରା କି ଅପରେ ।'' ମା ରୂପରେ, ଝିଅ ରୂପରେ, ସ୍ତ୍ରୀ ରୂପରେ, ଭଉଣୀ ରୂପରେ ଏବଂ ଆହୁରି ଅସଂଖ୍ୟା ରୂପରେ ମା ପ୍ରତି ଘରେ ବିରାଜିତ ହୋଇ ରହିଛନ୍ତି ।

ମନ୍ଦିର ଭିତରେ ଜାକଜମକରେ ସବୁ ଦିନ ପରି ପୂଜା ହେଉଛି । ହୃଦୟ ସେ ପୂଜାରେ ପୂଜକ । ସେଥିଲାଗି ସେ ଭାରି ବ୍ୟସ୍ତ । ରାମକୃଷ୍ଣ କେବଳ କହିଲେ, 'ଏ ଆଡ଼କୁ ଟିକିଏ ନଜର ରଖିଥିବୁ ।'

ହଉ, ହେଲା । ସବୁ ବ୍ୟବସ୍ଥା କରେଇ ଦେଲା ହୃଦୟ । ଦୀନୁ ବୋଲି ପିଲାଟିଏ- ପୁତୁରା ଲେଖା ହେବ, ରାଧାଗୋବିନ୍ଦ ମନ୍ଦିରରେ ପୂଜା କରେ । ତାକୁ କହିବାରୁ ସେ ଫୁଲ, ବେଲପତ୍ର ଆଦି ଯୋଗାଡ଼ କରି ଆଣିଦେଲା । ପଚାରିଲା, ଏଇଟା କୋଉ ଧରଣର ପୂଜା ?

ରାମକୃଷ୍ଣ କହିଲେ, ଏ ହେଉଛି ରହସ୍ୟ ପୂଜା ।

ରାତି ନ'ଟା । କାଳୀ ମନ୍ଦିରରେ ଭଜନ-କୀର୍ତ୍ତନ ଚାଲିଛି ପୂରା ଦମ୍‌ରେ । ଚାରିଆଡ଼େ ହୋ-ହା, ଘୋ-ଘା । ମନ୍ଦିର ସରଗରମ । ରାମକୃଷ୍ଣଙ୍କ ଘର ବନ୍ଦ । ରାମକୃଷ୍ଣ ଅନୁପସ୍ଥିତ ।

କିଏ ଆଉ ତାଙ୍କ ଖବର ବୁଝୁଛି !

ସାରଦାଙ୍କୁ ଆଗରୁ କୁହା ହୋଇଥିଲା । ରାତି ଠିକ୍ ନ'ଟା ବେଳକୁ ସେ ଆସି ରାମକୃଷ୍ଣଙ୍କ ଘର ଆଗରେ ପହଞ୍ଚି କବାଟରେ ହାତ ମାରିଲେ । ସବୁଦିନ ପରି ସାଧାରଣ ବେଶ । ମୁହଁରେ ଓଢଣା । କବାଟ ଆଉଜା ଥିଲା । ରାମକୃଷ୍ଣ ନିଜେ ଉଠି ଆସି ତାଙ୍କୁ ନେଇ ବସାଇଲେ ପୂଜା-ଆସ୍ଥାନ ଉପରେ- ଆସ୍ଥାନ ମାନେ ଖଣ୍ଡିଏ କାଠର ପିଢ଼ା ।

ପିଢ଼ା ଉପରେ ଝୋଟି ଦିଆ ହୋଇଛି । ପାଖରେ ପୂଜାର ସମସ୍ତ ଉପକରଣ ସଜା ହୋଇ ରହିଛି ।

ରାମକୃଷ୍ଣ କହିଲେ, 'ବସ । ପଶ୍ଚିମକୁ ମୁହଁ କରି ବସ ।' କହୁ କହୁ ଭିତରୁ କବାଟ ବନ୍ଦ କରିଦେଲେ ।

ରାମକୃଷ୍ଣଙ୍କ ପଲଙ୍କର ଉତ୍ତର ଆଡ଼କୁ ଗୋଟିଏ ବଡ଼ ମାଠିଆରେ ଗଙ୍ଗାଜଳ ରଖା ହୋଇଥାଏ । ସେଇ ଆଡ଼କୁ ମୁହଁ କରି ବସିଲେ ସାରଦା । ରାମକୃଷ୍ଣ ବସିଲେ ପୂର୍ବକୁ ମୁହଁ କରି । ପଶ୍ଚିମ ପାଖରେ ଯେଉଁ କବାଟ, ତା'ରି ପାଖରେ ।

ପ୍ରଥମେ ସାରଦାଙ୍କ ପାଦରେ ଅଳତା ଲଗାଇ ଦେଲେ ରାମକୃଷ୍ଣ । କପାଳରେ ଓ ମଥାରେ ସିନ୍ଦୂର ଲେପନ କଲେ ।

ସ୍ପର୍ଶନରେ ହିଁ ସାରଦାଙ୍କର ଅର୍ଦ୍ଧବାହ୍ୟଦଶା ଆସିଗଲା ।

ତା' ପରେ ପିନ୍ଧିଥିବା ଶାଢ଼ି ଖୋଲି ନେଇ ତାଙ୍କୁ ନୂଆ ଲୁଗା ପିନ୍ଧାଇଲେ । ଗୋଟାଏ ଥାଳିରେ ମିଷ୍ଟାନ୍ନ ରଖି ଖାଇବାକୁ ଦେଲେ । କହିଲେ, ଖାଅ । ଖାଇ ସାରିବା ପରେ ମୁହଁରେ ପାନ ଦେଲେ ।

ଷୋଡ଼ଶୋପଚାରରେ 'ଷୋଡ଼ଶୀ' ପୂଜା । ପୂଜାର ସମସ୍ତ ଉପକରଣ ସଂଶୋଧିତ ହେଲା । ଆଗରେ ଗୋଟିଏ ଘଟ, ଘଟରେ ମନ୍ତ୍ରପୂତ ଜଳ । ସେହି ଜଳରେ ଯଥାବିଧି ଅଭିଷିକ୍ତ କଲେ ସାରଦାଙ୍କୁ । ଇହାଗଛ, ଇହ ତିଷ୍ଠ- ପ୍ରାର୍ଥନା ମନ୍ତ୍ର ଉଚ୍ଚାରଣ କଲେ ।

'ହେ କାଳିକା, ହେ ସର୍ବଶକ୍ତିର ଅଧୀଶ୍ୱରୀ ଜନନୀ, ହେ ତ୍ରିପୁରସୁନ୍ଦରୀ, ସିଦ୍ଧିଦ୍ୱାର ଉନ୍ମୁକ୍ତ କର । ଏହାଙ୍କର ଦେହମନ ପବିତ୍ର କରି ଏହାଙ୍କ ଠାରେ ଆବିର୍ଭୂତ ହୁଅ, ଏହାଙ୍କ ଭିତରେ ବିରାଜିତ ହୋଇ ରୁହ । ଜଗତ୍‌ସଂସାରର ସର୍ବକଲ୍ୟାଣ ସଂପୂର୍ଣ୍ଣ ଭାବରେ ସଂପାଦନ କର ।'

ହେ କପାଳିନୀ, ମୋତେ ଭାର୍ଯ୍ୟା ଦିଅ ମନୋରମା । କେବଳ ମନୋରମା ନୁହେଁ, ମନୋବୃତ୍ତି-ଅନୁସାରିଣୀ । ମୁଁ ଯଦି ଭାବାତୀତ, ସେ ମଧ୍ୟ ହୁଅନ୍ତୁ ତଦ୍‌ଭାବଭାବିତ । ଆମର ବିବାହ ଦୈହିକ ନୁହେଁ, ଆମର ଆତ୍ମିକ ବିବାହ । ଆମର ଆତ୍ମାନନ୍ଦ ।

ପୂଜାର ଅନ୍ତିମ ଉପଚାର ପ୍ରଣାମ । ଜପ ଧ୍ୟାନ ପ୍ରାର୍ଥନା ଉପାସନା- ସମସ୍ତ କେବଳ ଏହି ଶେଷ ପ୍ରଣାମଟି ପାଇଁ । ଏହି ପ୍ରଣିପାତଟି ଶେଷ ଅର୍ଘ୍ୟ ।

ବିଲ୍ୱପତ୍ରରେ ନାମ ଲେଖିଲେ ରାମକୃଷ୍ଣ । ପୂର୍ବରୁ ଯେତେ ଯେତେ ସାଧନା କରିଛନ୍ତି ସେ ସବୁ ସାଧନା ସମୟରେ ସମସ୍ତ ବେଶ-ପୋଷାକ ଯତ୍ନରେ ସାଇତା ହୋଇ ରହିଥିଲା । ସେ ସବୁକୁ ବାହାରକରି ଏକତ୍ର କଲେ । ରୁଦ୍ରାକ୍ଷ ମାଳା, କବଚ, ଅନ୍ୟାନ୍ୟ ଭଜନ-ସାମଗ୍ରୀ ସମସ୍ତ

ବାହାର କଲେ । ସମସ୍ତ ଆବରଣ-ଆଭରଣ, ସମସ୍ତ ସାଧନା ଓ ସିଦ୍ଧଲବ୍ଧ ଧନ, ଯାହା କିଛି ସଞ୍ଚିତ ଥିଲା, ସବୁ ଏକତ୍ର କରି ସାରଦାଙ୍କ ପାଦରେ ଅଞ୍ଜଳି ଦେଲେ । କହିଲେ, 'ଯେତେ ସାଧନ-ଭଜନ, ଯେତେ ଆଚାର-ବିଚାର, କର୍ମକାଣ୍ଡର ଯେତେ ମାଳା - ସେ ସମସ୍ତ ଆଜି ତୁମରି ଏହି ପାଦ ଦୁଇଟିରେ ଅର୍ପଣ କରି ଦେଉଛି । ଆଜି ଏହି ପୂଜାରେ ମୋର ସମସ୍ତ ପୂଜା ସମାପ୍ତ ହେଲା ।'

କହି ସାରଦାଙ୍କୁ ପ୍ରଣାମ କଲେ ରାମକୃଷ୍ଣ ।

ସାରଦା ସବୁ ଦେଖୁଛନ୍ତି ଚକ୍ଷୁ ବିସ୍ଫାରିତ କରି, ସବୁ ଶୁଣୁଛନ୍ତି । କିନ୍ତୁ ସେ ନୀରବ, ନିଶ୍ଚଳ । ତୁଣ୍ଡରେ କଥା ନାହିଁ ।

ମୃଣ୍ମୟୀକୁ ଦିନେ ଚିନ୍ମୟୀ କରିଥିଲେ । ଆଜି ପୁଣି ଅପ୍ରମେୟାଙ୍କୁ ନେଇ ଆସିଲେ ପ୍ରତିମା ଭିତରକୁ ।

ସାରଦା ଶଙ୍ଖକଙ୍କଣଧାରିଣୀ ଲୋକମାତା ।

'ହେ ସର୍ବମଙ୍ଗଳସ୍ୱରୂପା ସର୍ବାର୍ଥସାଧିକା, ହେ ଶରଣଦାୟିନୀ ତ୍ରିନୟନୀ, ସନାତନୀ ନାରାୟଣୀ, ତୁମକୁ ପ୍ରଣାମ ।

ଆତ୍ମ ନିବେଦନ କରି ସାରିଲା ମାତ୍ରେ ରାମକୃଷ୍ଣ ସମାଧିସ୍ଥ ହୋଇଗଲେ ।

ଧ୍ୟାନରୁ ଉଠିଲା ବେଳକୁ ରାତ୍ରି ପ୍ରାୟ ତୃତୀୟ ପ୍ରହର ହୋଇ ଯାଇଥିଲା । ସାରଦା ସେ ପର୍ଯ୍ୟନ୍ତ ନିଶ୍ଚଳ ହୋଇ ବସି ରହିଛନ୍ତି ଆସ୍ଥାନ ଉପରେ । ତଦ୍‌ଗତ ତନ୍ମୟ ଭାବରେ ।

ଧ୍ୟାନରୁ ଉଠି ରାମକୃଷ୍ଣ କହିଲେ, 'ପୂଜା ସମାପ୍ତ ହୋଇଛି । ଏଥର ନହବତ ଘରକୁ ଯାଇପାର ।'

ଆସନରୁ ଉଠି ଛିଡ଼ା ହେଲେ ସାରଦା । ଘରୁ ବାହାରି ଆସି ଏକମୁହାଁ ଧାଇଁଲେ ନହବତ ଘର ଆଡ଼କୁ । ଆସିଲା ବେଳେ ପ୍ରଣାମଟିଏକରିବାକୁ ବି ଭୁଲିଗଲେ । ଛି, ଛି, କଅଣ କଲି ମୁଁ ? ପ୍ରଣାମ ନକରି ଚାଲି ଆସିଲି ! ହେଲେ, ଆଉ ତ ଉପାୟ ନାହିଁ । ମନେ ମନେ ପ୍ରଣାମ ନିବେଦନ କଲେ ରାମକୃଷ୍ଣଙ୍କୁ । ଭାବାତୀତ ରାଜ୍ୟରେ ପୂଜା-ପୂଜକର ଭେଦ ନ ଥାଏ ।

ଲକ୍ଷ୍ମୀ ପଚାରିଲା, 'ତୁମେ ତ ତାଙ୍କୁ ଏତେ ଲାଜ କର । ତାଙ୍କୁ ପୁଣି ଲୁଗା ପିନ୍ଧେଇବାକୁ ଦେଲ କେମିତି ?'

'ମୁଁ କିଛି କହିପାରିବି ନାହିଁ । ସେତେବେଳେ ମୁଁ କିଭଳି ଗୋଟାଏ ହୋଇ ଯାଇଥିଲି ।'

'ତା'ପରେ ପୁଣିସେ ତୁମକୁ ମିଠେଇ ଖୁଆଇ ଦେଲେ, ପାଦରେ ଫୁଲ ଦେଲେ, ହାତରେ ଛୁଇଁଲେ ତୁମ ପାଦ, ତୁମେ ସେମିତି ବସି ରହିଲ ?'

'କଅଣ ହେଲା କେଜାଣି ! ବସି ତ ରହିଲି ! ସବୁ ଦେଖୁଛି, ସବୁ ଜାଣୁଛି, କିଛି କହି ପାରୁ ନାହିଁ ।

'ଆଉ କେହି ଦେଖି ନାହାନ୍ତି ?'

'ଦେଖିବେ କେମିତି ? କବାଟ ପରା ଭିତରୁ ବନ୍ଦ ।'

'ତୁମେ ମହାଶକ୍ତି । ମହାଶକ୍ତି ନ ହେଲେ ଏଭଳି ପୂଜା ଗ୍ରହଣ କରି ପାରିବ- କାହାର ଆଉ ଅଛି ଏତେ ଶକ୍ତି ?'

ଏହି ଘଟଣା ପର ଠାରୁ ସାରଦାଙ୍କର ଭାବାବେଶ ଆରମ୍ଭ ହେଲା ।

ରାତିରେ ଶୋଇଛନ୍ତି ନହବତ ଘରେ । ଏକା ଶେଯରେ, ଗୋଟାଏ କଡ଼କୁ ଶୋଇଛନ୍ତି ଯୋଗେନ୍-ମା । ହଠାତ୍ କେଉଁଠି ବଂଶୀ ବାଜି ଉଠିଲା ।

ବଂଶୀ ସ୍ୱର ଶୁଣି ଭାବ ଉଦୟ ହେଲା ସାରଦାଙ୍କର । ତାଙ୍କୁ ଜଣାଗଲା ସେ ଯେପରି ବେଣୁ-ବିନୋଦିନୀ ରାଧିକା ହୋଇ ଯାଇଛନ୍ତି । ମନକୁ ମନ ହସିବାକୁ ଲାଗିଲେ । ହୁଏତ ବା ଦେଖି ପାରୁଛନ୍ତି ନିଜ ଆଖିରେ ସେହି ବଂଶୀବଟବିହାରୀଙ୍କୁ ।

ଯୋଗେନ୍- ମା ଉଠି ପଡ଼ି ଘୁଞ୍ଚି ବସିଲେ ଦୂରକୁ । ଅପେକ୍ଷା କରି ରହିଲେ ସାରଦାଙ୍କ ଭାବ ଭାଙ୍ଗିବା ପର୍ଯ୍ୟନ୍ତ । ନିଜେ ଅବଶ୍ୟ ସେ ଭକ୍ତିମତୀ । ତଥାପି, ସଂସାର ଭିତରେ ତ ଅଛନ୍ତି, ତେଣୁ ତାଙ୍କର ଭୟ କାଳେ ତାଙ୍କ ଛୁଆଁ ଲାଗି ସାରଦାଙ୍କ ଭାବ ନଷ୍ଟ ହୋଇଯିବ ।

ଭାବର ଚରମ ହୋଇଥିଲା ନୀଳାମ୍ବର ବାବୁଙ୍କ ଘରେ । ଛାତ ଉପରେ ବସି ଧ୍ୟାନ କରୁଥିଲେ ଶ୍ରୀମା । ପାଖରେ ଅଛନ୍ତି ଗୋପାଳ-ମା ଏବଂ ଯୋଗେନ ମା । ଧ୍ୟାନ ଶେଷ ହେଲା, କିନ୍ତୁ ସମାଧି ଆଉ ଭାଙ୍ଗୁ ନାହିଁ ଶ୍ରୀମାଙ୍କର । ବହୁତ ସମୟ ପର୍ଯ୍ୟନ୍ତ କାନ ପାଖରେ ନାମ ଉଚ୍ଚାରଣ କରିବା ପରେ ଚେତା ଅବଶ୍ୟ ଫେରିଲା ।ମାତ୍ର ସଙ୍ଗେ ସଙ୍ଗେ ଶ୍ରୀମା ଉଦ୍‌ଭ୍ରାନ୍ତ ପରି କହିବାକୁ ଲାଗିଲେ, 'ଯୋଗେନ-ମା, ମୋ ହାତ କାହିଁ ? ମୋ ଗୋଡ଼ କାହିଁ ? କେମିତି ପଶିବି ଏଇ ଦେହ ଭିତରକୁ ?'

ସ୍ତ୍ରୀ-ଭକ୍ତମାନେ ଶ୍ରୀମାଙ୍କର ହାତ ଗୋଡ଼ ଚାପି ଧରି କହିଲେ, ଏହି ପରା ଗୋଡ଼, ଏହି ପରା ହାତ । ତଥାପି ଦେହଟା ସତେ କି ଆଉ କେଉଁଠି ପଡ଼ିଛି, ଖୋଜି ପାଉ ନାହାନ୍ତି ଶ୍ରୀମା ।

ସାରଦା ଗଲେ ନହବତ ଘରକୁ । ରାମକୃଷ୍ଣ କହିଲେ, ଏଥର ଶୁଅ ଯାଇ ନିଶ୍ଚନ୍ତରେ । ମୋ ପାଖରେ ରହୁଥିଲେ, ରାତି ସାରା ନ ଶୋଇ ବସି ରହୁଥିଲ । ମୋର ତ କେତେବେଳେ କେଉଁ ଭାବ ଆସେ, କିଛି ଠିକଣା ନାହିଁ । ତୁମେ ନାମ ଉଚ୍ଚାରଣ କରି ମନ୍ତ୍ର ପଢ଼ି ମୋତେ ସଚେତନ କରାଉଥିଲ । ସବୁଦିନେ ଏଇ ଭଳି କରୁଥିଲେ ଭଲ ଲାଗିବ, ନା, ଦେହ ଭଲ ରହିବ ? ତୁମେ ଯାଇ ଏବେ ନହବତ ଘରେ ମାଙ୍କ ପାଖରେ ଶୁଅ ।

ଯିବି । ତୁମେ ଯେପରି ନଚେଇବ ସେହିପରି ନାଚିବ । ଯିବି ବିରହ- ମନ୍ଦିରକୁ, ସେଇଠି ଥାଇ ନିରନ୍ତର ଆରତି କରୁଥିବି ବିଶ୍ୱନାଥଙ୍କର । ମୋର ବସନ ତୁମେ ବାହାର କରି ନେଇଛ, ଏଥର ନିଅ ମୋର ସମସ୍ତ ବାସନା ।

ବିଦୁରଙ୍କ ସ୍ତ୍ରୀ ସ୍ନାନ କରୁଛନ୍ତି, ବାହାରୁ ଶୁଭିଲା କୃଷ୍ଣଙ୍କ ଡାକ: 'ବିଦୁର ! ବିଦୁର !' ଶ୍ରୀକୃଷ୍ଣଙ୍କ କଣ୍ଠ ସ୍ୱର ଶୁଣି ବିହ୍ୱଳ-ବ୍ୟାକୁଳ ଭାବରେ ଧାଇଁ ଆସିଲେ ବିଦୁର -ପତ୍ନୀ ଗୃହଦ୍ୱାରକୁ । ହଠାତ୍, ଛି, ଛି, କେଡ଼େ ଲଜ୍ଜାର କଥା- ମନର ବ୍ୟାକୁଳତାରେ ପିନ୍ଧିବାର ବସ୍ତ୍ରଟି ଦେହରେ ଦେଇ ଆସିବାକୁ ଭୁଲି ଯାଇଛନ୍ତି । ଫେରି ଯିବାର ଆଉ ବାଟ ନାହିଁ - କୃଷ୍ଣଙ୍କ ଆଗରେ

ସେ ସଂପୂର୍ଣ୍ଣ ଉନ୍ମୋଚିତା । କୃଷ୍ଣ ସେତେବେଳେ ନିଜର ଉତ୍ତରୀୟଟି ଅଙ୍ଗରୁ ବାହାର କରି ପକାଇ ଦେଲେ ବିଦୁର-ପତ୍ନୀଙ୍କ ଦେହ ଉପରକୁ । ନିରୁପାୟ ବିଦୁର-ପତ୍ନୀ ସେଇଟି ଧରି ନେଇ ଚଞ୍ଚଳ ହସ୍ତରେ ଦେହ ଢାଙ୍କିବାକୁ ଚେଷ୍ଟା କଲେ, କିନ୍ତ କୃଷ୍ଣଙ୍କ ଠାରୁ ତାଙ୍କ ଲଜ୍ଜା ବେଶୀ ନୁହେଁ । କୃଷ୍ଣଙ୍କୁ ନେଇ ଆସିଲେ ଘର ଭିତରକୁ । କିନ୍ତୁ କଅଣ ଦେବେ ଖାଇବାକୁ ? ଅତିଥି କ'ଣ ଅଭୁକ୍ତ ରହିବେ ? ଘରେ ଥିଲା ପାଚିଲା କଦଳୀ । ସେଇଥିରୁ ଗୋଟିଏ ଆଣି ଦେଲେ କୃଷ୍ଣଙ୍କୁ । କିନ୍ତୁ ଚୋପାଟି ବଢ଼େଇ ଦେଲେ କୃଷ୍ଣଙ୍କ ହାତକୁ ଏବଂ ସେହି ଚୋପାଟି ଖାଇଲେ ଶ୍ରୀକୃଷ୍ଣ ପରମ ତୃପ୍ତିରେ । ଭକ୍ତ ହାତର କଦଳୀ ତ ଚୋପା ଉଭୟ ସମାନ ଭଗବାନଙ୍କ ପାଖରେ ।

ମୋର ମଧ ସେହିପରି ଭକ୍ତି, ସେହିପରି ପ୍ରୀତି, ସେହିପରି ବ୍ୟାକୁଳତା । ତୁମକୁ ବୋଧହୁଏ ଚୋପାଟି ଦେଇ ପକାଇଛି । କିନ୍ତ ତୁମେ ସର୍ବସ୍ୱାଦଗ୍ରାହୀ, ଭାବଗ୍ରାହୀ । ତୁମେ ଦେଖ, ସେଥିରେ ଭାବ-ରସର ସ୍ୱାଦଟି ଅଛି କି ନାହିଁ ।

ପ୍ରଭୁ, ତୁମେ ଯଦି ଗ୍ରହଣ କରିବ, ତେବେ ମୁଁ ପୂର୍ଣ୍ଣ ହେବି । ତୁମେ ଯଦି ଆହାର କରିବ, ମୋ କ୍ଷୁଧା ବିଦୂରିତ ହେବ ।

ଗୋଲାପ-ମା'ର ଭଲ ନାମ ଅନ୍ନପୂର୍ଣ୍ଣ । ମଧ୍ୟବୟସୀ ବିଧବା । ଗୋଟିଏ ବୋଲି ଝିଅ ଥିଲା, ସେ ମରିଗଲା ପରେ କାନ୍ଦି କାନ୍ଦି ଆସି ଦକ୍ଷିଣେଶ୍ୱରରେ ଠାକୁରଙ୍କ ପାଦ ତଳେ କଚାଡ଼ି ହୋଇପଡ଼ିଲା ।

ଠାକୁରଙ୍କର ଭାବ ଆସିଲା । କହିଲେ, 'ତୁମେ ତ ମହା ଭାଗ୍ୟବତୀ ।'

ଗୋଲାପ-ମା ଆଶ୍ଚର୍ଯ୍ୟ ହେଲା ।

'ସଂସାରରେ ଯାହାର କେହି ନାହିଁ, କିଛି ନାହିଁ, ଈଶ୍ୱର ତ ତାହାରି ସହାୟ ।'

ତୁମେ ଅଶରଣର ଆଶ୍ରୟସ୍ଥଳ । ଗୋଲାପ-ମା ଆଶ୍ରୟ ନେଲା । ପଦଚ୍ଛାୟାରେ ।

ଠାକୁରଙ୍କ ଦେହ ଅସୁସ୍ଥ । ଗୋଲାପ-ମା କହିଲା, କଲିକତାରେ ତା'ର ପରିଚିତ ଜଣେ ଡାକ୍ତର ଅଛନ୍ତି, ନିଶ୍ଚୟ ଭଲ କରିଦେବେ । ସାନ ପିଲାଟିଏ ପରି ଖୁସି ହୋଇଗଲେ ଠାକୁର । କହିଲେ, କାଲି ମୋତେ ନେଇଚାଲ । ତହିଁ ଆର ଦିନ ସକାଳେ ବାହାରିଲେ ନୌକାରେ ବସି । ସାଙ୍ଗରେ ଗଲେ ଗୋଲାପ-ମା, ଲାଟୁ ଏବଂ କାଳୀ । ଡାକ୍ତର ଦେଖା-ଦେଖି କରୁ କରୁ ଦି'ପହର ଗଡ଼ିଗଲା । ଫେରିବା ବାଟରେ ସମସ୍ତଙ୍କୁ ଭୋକ ହେଲା । ସକାଳ ପହରୁ ବାହାରିଛନ୍ତି ସମସ୍ତେ । ଦିନ ଆସି କେତେ ହେଲାଣି ! ଠାକୁର ପଚାରିଲେ କାହାରି ପାଖରେ କିଛି ପଇସା-ପତ୍ର ଅଛି କି ନା । ହଁ, ଅଛି, ଗୋଲାପ-ମା ପାଖରେ । ଚାରିଟି ମାତ୍ର ପଇସା ।

ହଉ, ଚଳିବ । କାଳୀକୁ କହିଲେ, ବରାନଗର ବଜାରରୁ କିଛି ଜଳଖିଆ କିଣି ଆଣ ।

ଜଳଖିଆ କିଣି ଠୁଙ୍ଗାରେ ଧରି ଆସିଲା କାଳୀ । ଠୁଙ୍ଗାଟି ହାତକୁ ନେଲେ । ମାତ୍ର ଆଶ୍ଚର୍ଯ୍ୟ, କାହାକୁ କିଛି ନ ଦେଇ ସବୁ ତକ ନିଜେ ଖାଇଦେଲେ ଠାକୁର ! ଖାଇ ସାରି ଗଙ୍ଗାରୁ ଅଞ୍ଜଳିରେ ଜଳ ଆରି ପିଇଲେ । କହିଲେ, 'ଆଃ, ଭୋକ ମେଣ୍ଟିଲା ।'

ଆଶ୍ଚର୍ଯ୍ୟ ! ଆଉ ତିନି ଜଣଙ୍କର ଭୋକ ମଧ ସଂଗେ ସଂଗେ ଚାଲିଗଲା । କେହି କିଛି

ଖାଇଲେ ନାହିଁ, ଅଥଚ କାହାରି ଆଉ ଭୋକ ନାହିଁ । ମୁହୂର୍ତ୍ତକ ମଧ୍ୟରେ ମିଳେଇ ଗଲା ସମସ୍ତଙ୍କର ସେହି ବନ୍ୟ କ୍ଷୁଧା ।

ତୁମେ କ'ଣ ସେହି ମହାଭାରତର କୃଷ୍ଣ ? ତୁମେ ତୃଷ୍ଣାହର, ତୁମେ ତୃପ୍ତିକର ।

ନହବତ ଘରର ଅଣଓସାରିଆ ବାରନ୍ଦାରେ ତାଟି ଆଢୁଆଳରେ ଛିଡ଼ା ହୋଇ ଥାଆନ୍ତି ସାରଦା । ଅତୃପ୍ତ ନୟନରେ ଚାହିଁ ରହି ଥାଆନ୍ତି, କାଳେ କେତେବେଳେ ନୟନ-ଗୋଚର ହୋଇଯିବେ ସେହି ନୟନ ତୃପ୍ତିକର !

ରାମକୃଷ୍ଣଙ୍କ ପ୍ରତି ଭକ୍ତି ଦେଖି ହୃଦୟ ଥଟା କରେ । କହେ, 'ସମସ୍ତେ ତ ମାମୁଁଙ୍କୁ ବାବା ବୋଲି ଡାକୁଛନ୍ତି । ତୁମେ ବି ତାଙ୍କୁ ବାବା ବୋଲି ଡାକୁ ନାହଁ ?

ଟିକିଏ ହେଲେ ରୁଷ୍ଟ ବା ଅପ୍ରତିଭ ହେଲେ ନାହିଁ ସାରଦା । ନିବିଡ଼ ଭକ୍ତିରେ ଗଭୀର ପ୍ରୀତି ମିଶାଇ କହିଲେ, 'ତାଙ୍କୁ କେବଳ ବାବା କଅଣ କହୁଛ ? ସେ ତ ବାବା, ମା, ବଂଧୁ-ବାଂଧବ,ଆତ୍ମୀୟ-ସ୍ୱଜନ, ସବୁ । ଯେଉଁଠି, ଯେଉଁ ସଂପର୍କରେ କିଛି ହେଲେ ଆନନ୍ଦ ଅଛି, ସବୁ ସେ । ସେ ଆନନ୍ଦମୟ ।''

ମନେ ପକାଅ ସେହି ଗାନ୍ଧାରୀଙ୍କ କଥା :
'ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ।।''

ତୁମେ ମୋତେ ଦୂରରେ ରଖିଛ, କିନ୍ତୁ ଜାଣି ରଖ, ମୁଁ ତୁମର ଦ୍ୱାର ଆଗରେ ପଡ଼ି ରହିଛି ।

-ପ୍ରଥମ ଖଣ୍ଡ ସମାପ୍ତ -

ପରମ ପୁରୁଷ ଶ୍ରୀଶ୍ରୀ ରାମକୃଷ୍ଣ ସର୍ବଧର୍ମ ସମନ୍ୱୟର ଚଳନ୍ତି ପ୍ରତିମା ଭାବେ ଆଧୁନିକ ମଣିଷ ସାମନାରେ ଉଭା ହୋଇଛନ୍ତି । ସେ ଯେପରି ଭାବେ ସବୁ ଧର୍ମକୁ ସହଜ ଭାବେ ଆପଣେଇ ନେଇଛନ୍ତି ତାହା ଅତ୍ୟନ୍ତ ବିସ୍ମୟର ବ୍ୟାପାର । ଏଇ ସାଧାରଣ କାଳୀପୂଜକଙ୍କର ଅଦ୍ଭୁତ ଓ ଅସାଧାରଣ ବ୍ୟକ୍ତିତ୍ୱକୁ ଶ୍ରୀ ଅଚିନ୍ତ୍ୟ କୁମାର ସେନଗୁପ୍ତ ତାଙ୍କର ପରମ ପୁରୁଷ ଶ୍ରୀଶ୍ରୀ ରାମକୃଷ୍ଣ ଗ୍ରନ୍ଥରେ ଫୁଟାଇବାରେ ସଫଳ ହୋଇଛନ୍ତି । ଶ୍ରୀ ସେନଗୁପ୍ତଙ୍କ ଗ୍ରନ୍ଥଟି ବଙ୍ଗଳା ଭାଷାରେ ପ୍ରସିଦ୍ଧି ଲାଭ କଲାପରେ ଅନେକ ଭାରତୀୟ ଭାଷାରେ ଅନୁଦିତ ହୋଇସାରିଛି । ତାଙ୍କର ଏହି ଗ୍ରନ୍ଥକୁ ଜୀବନୀ, ଚରିତୋପନ୍ୟାସ ବା ସାହିତ୍ୟର କୌଣସି ବିଭାଗର ମୋହର ମାରି ଚିହ୍ନାଇ ହେବନାହିଁ । ଏକ ଅନୁପମ ହୃଦୁଳା, ନମନୀୟ ଶୈଳୀରେ ଲିଖିତ ଏହି ଗ୍ରନ୍ଥଟି ପାଠକକୁ ତନ୍ମୟ କରି ରଖିବା ସହିତ ତାର ଆଧ୍ୟାତ୍ମିକ ଚେତନାକୁ ଉଦ୍ରେକ କରିବାକୁ ସକ୍ଷମ ।

ମୂଳଗ୍ରନ୍ଥର ସରସତା ଓ ବୈଶିଷ୍ଟ୍ୟ ରକ୍ଷା କରି ଶ୍ରୀଯୁକ୍ତ ଜେନା ଓଡ଼ିଆ ଭାଷାରେ ଯେପରି ସୁନ୍ଦର ଭାବେ "ପରମ ପୁରୁଷ ଶ୍ରୀଶ୍ରୀରାମକୃଷ୍ଣ"ଙ୍କୁ ପରିବେଷଣ କରିଛନ୍ତି ସେଥିପାଇଁ ସେ ଅଭିନନ୍ଦନୀୟ । ଏହାଫଳରେ ଶ୍ରୀରାମକୃଷ୍ଣ କଥାମୃତ ପିପାସୁ ଓଡ଼ିଆ ପାଠକଙ୍କର ତୃଷ୍ଣା ଆଂଶିକ ଭାବେ ମେଣ୍ଟି ପାରିବ ବୋଲି ଆମେ ଆଶା କରୁଛୁ । ଏଇ ପ୍ରଥମଖଣ୍ଡ ସହିତ ମୂଳଗ୍ରନ୍ଥର ଅନ୍ୟ ତିନିଖଣ୍ଡକୁ ମଧ ଶ୍ରୀଯୁକ୍ତ ଜେନା ଭାଷାନ୍ତର କରି ସାରିଛନ୍ତି । ସେଗୁଡ଼ିକୁ ଆମେ ଯଥାଶୀଘ୍ର ପ୍ରକାଶ କରିବୁ ।

*Printed at* : Innprint. Ph. : 608862

ISBN 81-86354-84-3